କବି କମଳାକାନ୍ତ

# ମତ ଅଭିମତ ଭିନ୍ନମତ

[ ପ୍ରଥମ ପର୍ବ ]

ସଂପାଦନା :

ଅପୂର୍ବ ରଂଜନ ରାୟ

ଅଭୟ ଦ୍ୱିବେଦୀ

ସିତାଂଶୁ ଲେଙ୍କା

ପ୍ରଜ୍ଞା ପ୍ରକାଶ, ଭଦ୍ରକ

# କବି କମଳାକାନ୍ତ : ମତ ଅଭିମତ ଭିନ୍ନମତ


ସଂପାଦନା :

ଅପୂର୍ବ ରଞ୍ଜନ ରାୟ, ଅଭୟ ଦ୍ୱିବେଦୀ, ସିତାଂଶୁ ଲେଙ୍କା

ପ୍ରକାଶକ :

ପ୍ରଜ୍ଞା ପ୍ରକାଶ, ଭଦ୍ରକ

ମୁଦ୍ରଣ :

ପ୍ରିଣ୍ଟିଂ ମିଡିଆ, ଭଦ୍ରକ

ପ୍ରକାଶ କାଳ :

୧୯୯୪, ନଭେମ୍ବର ୧୯

ପରିବେଶକ :

ଜଗନ୍ନାଥ ରଥ, କଟକ-୨

ସ୍ୱତ୍ୱ :

ସିତିକଣ୍ଠ

ମୂଲ୍ୟ :

ଟ ୮୦-୦୦ ( ଅଶୀ ଟଙ୍କା ମାତ୍ର )

KAVI KAMALAKANT
MATA ABHIMATA BHINNA MATA

Edited by :

A, R. Roy, A. Dwibedi, S. Lenka

Publisher :

Prajna Prakash, Bhadrak

Printed at :

Printing Media, Bhadrak

Time of Publication :

1994, Nov. 19

Distributor :

Jagannath Rath, Cuttack-2

Copy Right :

Sitikantha

Price :

Rs. 80-00 only

# ଅଗ୍ରଲେଖ

କବି କମଳାକାନ୍ତ ଲେଙ୍କାଙ୍କ କାବ୍ୟ ସାଧନା ପାର୍ଦ୍ଧ ଛତିଶ ବର୍ଷର ସାରସ୍ୱତ ଇତିହାସ । ଭିନ୍ନ ଭିନ୍ନ କାବ୍ୟିକ ଶୈଳୀ, ଭାଷା ଓ ଅନୁପମ ଚିତ୍ରକଳ୍ପ ସ୍ଥାନ, କାଳ, ପାତ୍ର ଭେଦରେ ତାଙ୍କ ସୃଷ୍ଟି ସମ୍ଭାରକୁ ନାନାମତେ ସମୃଦ୍ଧ ଓ ସମୁଜ୍ଜ୍ୱଳ କରିଛନ୍ତି । ମୁଖ୍ୟତଃ ସେ ଜଣେ ଅନୁଭୂତି-ସିଦ୍ଧ କାବ୍ୟ କଳାର ଅନନ୍ୟ ରୂପକାର । ସ୍ୱକୀୟ ଜୀବନ ଚର୍ଯ୍ୟା, ଜୀବନାନୁଭବ ଓ ନିଷ୍ଠାପର କାବ୍ୟିକ ଉଚ୍ଚାରଣ ତାଙ୍କ କବି ବ୍ୟକ୍ତିତ୍ୱର ସଂବାହକ । ଗଭୀର ଜୀବନବୋଧ, ଓ ନିର୍ଲିପ୍ତ କାବ୍ୟଦୃଷ୍ଟି ଜୀବନର ନାନାବିଧ ସମସ୍ୟା ଓ ସଂକଟର ରୂପାଲୋକରେ ଉଦ୍ଭାସିତ । ତାଙ୍କ ପାଇଁ ଜୀବନ ଯେମିତି ଗୋଟେ ଆହ୍ୱାନ, କାବ୍ୟ ସାଧନା ସେମିତି ନିଚ୍ଛକ ବଞ୍ଚିବାର ଏକ ଅନାହତ ସ୍ୱର ।

୧୯୯୪ ନଭେମ୍ବର ୧୯, କବିଙ୍କର ଷାଠିଏତମ ସ୍ୱଜନ୍ମ ଦିବସ । ଏ ଅବସରରେ ଏହି ଗ୍ରନ୍ଥର ପ୍ରକାଶ ଓ ଉନ୍ମୋଚନ । କେବଳ ଆମ ପାଇଁ ନୁହେଁ, ସମଗ୍ର ଓଡ଼ିଶାର କାବ୍ୟାମୋଦୀ ମାନଙ୍କ ପାଇଁ ଏକ ଶୁଭ ସମ୍ବାଦ । ଅବଶ୍ୟ ଏଠାରେ ଉଲ୍ଲେଖ କରିବା ଅନାବଶ୍ୟକ ଯେ, ଏ ଗ୍ରନ୍ଥ ପ୍ରକାଶନ ଉଦ୍ୟମର ଅନେକ ପୂର୍ବରୁ ଡ଼ଃ ମଥୁରାନାଥ ହୋତା 'ଜୀବନ ତୀର୍ଥରେ କବି କମଳାକାନ୍ତ' ଗ୍ରନ୍ଥ ପ୍ରଣୟନକରି ତାଙ୍କ କାବ୍ୟ ସୃଷ୍ଟିର ସାମଗ୍ରିକ ମୂଲ୍ୟାଙ୍କନ କରିଛନ୍ତି ଓ ଡ଼ଃ ରମେଶ ପାଣି 'ସାଂପ୍ରତିକ ଯୁଗଚେତନା ଓ କବି କମଳାକାନ୍ତ' ନିବନ୍ଧ ପ୍ରସ୍ତୁତକରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି.ଏଚ.ଡ଼ି. ଡିଗ୍ରୀର ଅଧିକାରୀ ହୋଇଛନ୍ତି ।

ଏହି ଗ୍ରନ୍ଥ ପାଇଁ ଆମେ ବହୁ ବିଶିଷ୍ଟ, ମାନ୍ୟଗଣ୍ୟ ସମାଲୋଚକଙ୍କ ଠାରୁ ମୂଲ୍ୟବାନ ଆଲୋଚନା ପ୍ରାପ୍ତ ହୋଇଥିଲୁ । ତନ୍ମଧ୍ୟରୁ କେତୋଟି ଏଥିରେ ପଦସ୍ଥ ହୋଇଛି ଏବଂ ଅବଶିଷ୍ଟ ଦ୍ୱିତୀୟ ପର୍ବରେ ସ୍ଥାନିତ ହେବାର ଅଭିଳାଷ ପୋଷଣକରି ସଭିଙ୍କୁ ଗଭୀର କୃତଜ୍ଞତା ଜଣାଉଛୁ । ଆମର ଆଶା ଓ ବିଶ୍ୱାସ, କମଳାକାନ୍ତଙ୍କ କାବ୍ୟ-ମାନସର ମୂଲ୍ୟାୟନ ପାଇଁ, ଏହି ଗ୍ରନ୍ଥ ଅଲୋଚକ, ଲେଖକ ତଥା ତାଙ୍କ କବିତାପ୍ରେମୀ ବିଦଗ୍ଧ ପାଠକପାଠିକା ମାନଙ୍କୁ ବିଶେଷ ସାହାଯ୍ୟ କରିବ ।

ସଂକଳକଦ୍ୱୟ

# ସୂଚୀପତ୍ର

| ଲେଖକ | ପୃଷ୍ଠା |
|---|---|

## ସ୍ତବକ—୩

## ସ୍ତବକ - ୧

"ସୁନା ଫସଲ, ପ୍ରୀତି ଓ ପ୍ରତୀତି, ଉତ୍ତରଣ, ସ୍ମରଣ
ବିସ୍ମରଣ, ନିଜ ସହ ଗୋଟେ ସାକ୍ଷାତକାର, ସ୍ରୋତର
ନାମ ରକ୍ତ, ଚିତା ଅଙ୍କା କାନ୍ଥର ଛବି ଓ ପରିଧି
ବାହାରେ ଅପେକ୍ଷାରତ ପୃଥିବୀ "ର

**ମୁଖବଂଧ**

# ସୁନା ଫସଲ

( ୧୯୪୮ )

ଶ୍ରୀମାନ୍ କମଳାକାନ୍ତ ଉଦୟମାନ ତରୁଣ କବି । ତାରୁଣ୍ୟର ସକଳ ଆଶା, ସକଳ ସ୍ୱପ୍ନ ତାଙ୍କର ଏ କାବ୍ୟ-ସଂଚୟନରେ ଜାଜ୍ୱଲ୍ୟମାନ । ଏ ସକଳ ଆଶା ବା ସ୍ୱପ୍ନ ନିରର୍ଥକ ନୁହେଁ । ଏହାଦ୍ୱାରା ଅନେକ ସମୟରେ ଅସାଧ୍ୟ ସାଧନ ହୋଇଥାଏ । ଗିରି-ନିର୍ଝରଣୀ ପଥରର ବୁକୁ ଫଟାଇ ମହୋଦଧି ଲକ୍ଷ୍ୟରେ ବହିଚାଲି ପରି ଏହା ଜୀବନର ସକଳ ବାଧାବନ୍ଧ ଅତିକ୍ରମ କରି ପରିଶେଷ ବଳରେ ଅଗ୍ରସର ହୁଏ । ହେଉଥିଲେହିଁ ତାରୁଣ୍ୟ ଓ ଏହାର ଉଚ୍ଛ୍ୱସିତ ବହିଃପ୍ରକାଶ ସର୍ବଦା ଅଭିନନ୍ଦନୀୟ !

କମଳାକାନ୍ତଙ୍କର ଏହା ଏକ ପ୍ରତିଶ୍ରୁତି ମାତ୍ର; ପରିଶେଷ ନିଶ୍ଚୟ ଆସିବ—ସୂର୍ଯ୍ୟୋଦୟ ପରେ ଦ୍ୱିପ୍ରହର ଯେପରି ଆସେ । ତଥାସ୍ତୁ ।

**କୃଷ୍ଣ ଚରଣ ବେହେରା**

୧ । ୯ । ୧୯୪୮ — ଅଧ୍ୟାପକ, ଭଦ୍ରକ କଲେଜ, ଭଦ୍ରକ

ଶ୍ରୀମାନ୍ କମଳାକାନ୍ତଙ୍କର 'ସୁନା ଫସଲ' ଖଣ୍ଡି ପଢ଼ି ମୋତେ ଭଲ ଲାଗିଲା । ଫସଲ ବେଶ୍ ଆଶାଜନକ, କୃଷୀର ବେଶ୍ ବାହାଦୁରୀ ଅଛି । ଯତ୍ନମତେ ରକ୍ଷଣରେ ଲାଗିଲେ ଫଳ ଭଲ ହେବ । ଆମ ଦେଶର ଏହାପରି ଅନେକ କୃଷୀ ଅନେକ ସମୟରେ ଦେଖାଦେଉଛନ୍ତି ଏବଂ ଦେଶ ପ୍ରାଣରେ ଆଶାର ସଂଚାର କରାଉଛନ୍ତି; ମାତ୍ର ଅନେକ କାରଣରୁ କୃଷୀର ମନ ଭାଙ୍ଗି-ଯାଇଛି, ଆଶା ମଉଳି ଯାଇଛି, ଉପଯୁକ୍ତ ପାଣିପାଗ ନପାଇ ଏ ଦୁର୍ଦ୍ଦଶା ଘଟିଛି । କମଳାକାନ୍ତଙ୍କ ଭାଗ୍ୟରେ ସେ ଦଶା ନ ଘଟୁ, ଏତିକ କାମନା ।

'ସୁନା ଫସଲ'ର ଅନେକଗୁଡ଼ିଏ କବିତାରେ ମୌଳିକତାର ଆଭାସ ଅଛି । ସେହି ମୌଳିକତା ରକ୍ଷାକରି ଚଳିବାକୁ ମୁଁ ତରୁଣ ଲେଖକଙ୍କୁ ଅନୁରୋଧ କରୁଛି । ତାଙ୍କର ଲେଖନୀ ଉତ୍ତରୋତ୍ତର ଶୁଭଶ୍ରୀ ମଣ୍ଡିତ ହେଉ ।

**ଉପେନ୍ଦ୍ର ପ୍ରସାଦ ମହାନ୍ତି**

୧୭ । ୯ । ୧୯୪୮ — ପ୍ରଧାନ ଶିକ୍ଷକ, ଭଦ୍ରକ ଉଚ୍ଚବିଦ୍ୟାଳୟ, ଭଦ୍ରକ

## ମୋ ଦୃଷ୍ଟିକୋଣରୁ :

# ପ୍ରୀତି ଓ ପ୍ରତୀତି

( ୧୯୭୩ )

'ସୁନା ଫସଲ'ର କବି କଲ୍ୟାଣୀୟ କମଳାକାନ୍ତ ବର୍ତ୍ତମାନ ର ଅନ୍ୟ ଅନେକ କବିଙ୍କଠାରୁ ବୟସରେ କନୀୟାନ । ତାଙ୍କ ରଚନାରେ କିନ୍ତୁ ରହିଛି ପରିପକ୍ୱତାର ସ୍ୱାକ୍ଷର । ବହୁ ପତ୍ର ପତ୍ରିକାରେ ସେ ତାଙ୍କର ସୃଜନୀ ଶକ୍ତିର ଯେଉଁ ସ୍ଫୂର୍ତ୍ତି ବିକାଶ କରି ଦେଇଛନ୍ତି, ତାହାର ଉଜ୍ଜ୍ୱଳତର ପ୍ରକାଶ ଇନ୍ଦ୍ରଧନୁର ବୈଚିତ୍ର୍ୟ ଫୁଟାଇଛି 'ପ୍ରୀତି ଓ ପ୍ରତୀତି' କବିତା ଗ୍ରନ୍ଥରେ ।

'ସୁନା ଫସଲ'ରେ ଥିଲା ଶ୍ରେଷ୍ଠ ଶ୍ରେଷ୍ଠ କଥା, ଟିକି ଟିକି ନାଲି ଗୁଲୁ ଗୁଲୁ ଅଭିମାନ ଭରା ଟିକି ଟିକି ବେଦନାର ଅଶ୍ରୁ-ସୁରଭିତ ଚହଟ, ସରଳ ସ୍ୱପ୍ନର ତନ୍ଦ୍ରା-ମନ୍ଦିର ଟିକି ଟିକି ଗୁଡ଼ି ।

"ପଉଷର ସୁନା କ୍ଷେତେ ଢ଼ଳାଟିଆ ବାସ ପଡ଼େ ଫାଟି,
ନାଚିଉଠେ ସମୀରଣ ତାଳେ ହସିଉଠେ ଏ ମାଉସ ମାଟି ।"

କିଂବା

"ଏଇ ଗାଁଟି ଘରେ ରେ
ଏଇ ଗାଁଟି ଘରେ,
ରସିଆ ଭାଇ କଇଁ ଫୁଲଆ
ସୁଖର ଦିନ ସାରେ ।"

'ସୁନା ଫସଲ'ର ଏଇ ସବୁ ଧାଡ଼ିରେ ଝରିଚି ପ୍ରକୃତିର ଲାବଣ୍ୟ-

ଅନଂତ ରହିଛି, ରହିଛି ଟିକିଏ ସନ୍ଧ୍ୟାର ହାଲୁକା ଆବେଶ—ଯେଉଁଠି ବି ରହିଛି ଶପଥ ବା ବିଦ୍ରୋହର ଆହ୍ୱାନ, ସରଳ ମନର ନିବିଡ଼ ବିଶ୍ୱାସ ସେଠି ତଳ ତଳ ହୋଇ ଉଠିଛି ।

ଇତି ମଧ୍ୟରେ କବି ତାଙ୍କର ଧ୍ୟାନ ଓ ଧାରଣାକୁ ନାନା ଅଭିଜ୍ଞତାରେ ଉପାଣିତ କରି ତୋଳିଛନ୍ତି । ନାନା ଘାତ ପ୍ରତିଘାତ ଭିତର ଦେଇ, ସଂସାରର ନାନା ଘଟଣା ପ୍ରବାହର ଜଟିଳ ଆବର୍ତ୍ତ ଦେଇ ତାଙ୍କ ବିଶ୍ୱାସ ଏକ ଅପୂର୍ବ ମଧୁରତା ଲାଭ କରିଛି । ଫଳରେ 'ସୁନା ଫସଲ'ର ସେଇ ସରଳ କଥାଗୁଡ଼ିକ ବିଚିତ୍ରତର ରସ ବ୍ୟଞ୍ଜନାରେ ସମୃଦ୍ଧ ହୋଇ ଦେଖା ଦେଇଛି "ପ୍ରୀତି ଓ ପ୍ରଶାନ୍ତି"ରେ ।

ଅବିଶ୍ୱାସର ନାନା ଝଂଜା ଓ ବ୍ୟର୍ଥତାର ବହ୍ନି ମରୁଡ଼ି ଏ ଯୁଗର ଚିନ୍ତା ଓ ଚେତନାକୁ ନିର୍ଜୀବ କରି ତୋଳିଛି, ଶୀର୍ଣ୍ଣତର କରି ତୋଳିଛି ତା'ର ପ୍ରାଣ ପ୍ରବାହକୁ । ପ୍ରତି ମନୁଷ୍ୟର ଅନ୍ତର ଏଥିପାଇଁ ଉତ୍ପୀଡ଼ିତ, ଅଧିକ ଉତ୍ପୀଡ଼ିତ କବିର ହୃଦୟ । କାରଣ କବିର ଅନୁଭୂତି ଅଧିକ ପ୍ରଖର । କମଳାକାନ୍ତ କବି ରୂପେ ସେଇ ଦୁଃଖ, ସେଇ ବ୍ୟର୍ଥତାକୁ ସମସ୍ତ ପ୍ରାଣ ଦେଇ ଅନୁଭବ କରିଛନ୍ତି । ଏହାର ପ୍ରମାଣ ରହିଛି ତାଙ୍କ କବିତାଗୁଡ଼ିକରେ ।

"ମୋ ମନର ଯେତେ ଦୁଃଖ, ଯେତେ କ୍ଳେଶ, କ୍ଳାନ୍ତି ଅନ୍ତ ନମି
ତୁମେ ସବୁ ଠୁଳ ହୁଅ, ତୁମେ ସବୁ ହୁଅ ମୂର୍ତ୍ତିମନ୍ତ—
ମୋ ମନର, ମୋ ପ୍ରାଣର ଶିରା ପ୍ରଶିରାରେ
ଭରିଦିଅ ମୋ ଆଖିରେ ଶ୍ରାବଣର ପ୍ରାଣିତ ଉଚ୍ଛ୍ୱାସ ।
ଦୁଃଖ; ଦୈନ୍ୟ, କ୍ଳେଶ, କ୍ଳାଂତି ହୁଅ ସବୁ ଆଜ ମୂର୍ତ୍ତିମନ୍ତ ॥"

( ଏକ ଶାନ୍ତ ମନର କାହାଣୀ )

ଅଥବା

"ଏ ଗ୍ରୀଷ୍ମ ପାରିଚ ଗୁଟି ଦିବସର ସକଳ ବ୍ୟସ୍ତତା
କୋଳାହଳ ଭିଡ଼ଁ ଘିରେ ମ୍ରିୟମାଣ ବୃଦ୍ଧ ମରେ ଆହା !

ହସର ଚନ୍ଦନା ଛାରେ ନିରପେକ୍ଷ ଶୃଙ୍ଖଳ ତାଳରେ
ମଣିଷ ଶିକାର କରେ ମଣିଷ ଶାବକ ।"

( ଅନ୍ଧକାର ତା'ଠାରୁ ଭଲ )

ଜୀର୍ଣ୍ଣ ଧୂଳିର ରୁଦ୍ଧଶ୍ୱାସ ପରି ତିଳ ତିଳ ହୋଇ ଜଳିପୋଡ଼ି ଆଉଟି ପାଉଟି ହେଉଥିବା ପ୍ରାଣର ନିର୍ଜୀବ ଆଲୋଡ଼ନ ପରି ଏଇ ସବୁ କବିତାଂଶ ଜୀବନର ଚରମ ଅର୍ଥହୀନତାର ସଂଧାନ ଦିଏ । କିନ୍ତୁ କବିଙ୍କର ହୃଦୟ ଶକ୍ତିଶାଳୀ, ସେ ଏଇ ନୈରାଶ୍ୟରେ, ଏଇ ଅର୍ଥହୀନତାରେ ଅଟକି ଯାଇନାହାନ୍ତି । ଅର୍ଥହୀନତା ଭିତରୁ ସେ ଏକ ଗଭୀର ଅର୍ଥ ଓଟାରି ଆଣିବାକୁ ଚେଷ୍ଟା କରିଛନ୍ତି ଏବଂ ବିଶ୍ୱାସ ଓ ପ୍ରେମର ମାନଦଣ୍ଡରେ ତଉଲିଛନ୍ତି ସବୁ ଦୁଃଖ, କ୍ଲେଶ, ବେଦନା ଓ ନିଷ୍ଫଳତାକୁ । ଏହାର ଦୃଷ୍ଟାନ୍ତ ରହିଛି ବହୁ ସଫଳ କବିତାର ସ୍ମରଣୀୟ ଅଂଶରେ । ଯେପରି କି—

"ବନ୍ଧୁ ହେ, ତୁମେ ଆସ ଆଜ ଏଇ ଶୁନ୍ୟ ବନେ
ସ୍ନେହ ଶ୍ରଦ୍ଧାର ବର୍ତ୍ତିକା ଧରି ଆଲୋକର—
ପଥେ ପଥେ ଯିବା ପ୍ରତ୍ୟୟର ଗୀତ ବୁଣି ବୁଣି
ପୁଲକାଇ ପ୍ରତି ହୃଦୟତଂତ୍ରୀ ଧରଣୀର ।" (ଆଲୋକ ପଥେ)

କିମ୍ବା

"ତଥାପି ଏମାନଙ୍କର ହୃଦୟର ସମଗ୍ରତାରେ
ଏକ ବିରାଟ ନିର୍ଲିପ୍ତ ଆତ୍ମାର ସତ୍ତା
ମୋ ପ୍ରାଣର ଝଡର ଆବର୍ତ୍ତ ଭିତରେ
ଜାଳିଚି ଆଲୋକ ବର୍ତ୍ତିକା ।"

( ପ୍ରକୃତି ଓ ଜୀବନ )

କବିଙ୍କର ଏଇ ପ୍ରେମ ଓ ବିଶ୍ୱାସ, ଏଇ 'ପ୍ରୀତି ଓ ପ୍ରତୀତି' ବ୍ୟକ୍ତିଗତ ସ୍ୱାର୍ଥବୋଧ କିମ୍ବା କୌଣସି ସଂକୀର୍ଣ୍ଣ ମତବାଦର ସୀମା ଭିତରେ

ଆବେଗ ନୁହେଁ । ହୃଦୟର ନାନା ଅନୁଭୂତି ଓ ଜୀବନର ନାନା ଅଭିଜ୍ଞତା ଦ୍ୱାରା ଏହା ଯେପରି ବିଚିତ୍ର ଦ୍ୟୁତିରେ ମଣ୍ଡିତ, ବିଶ୍ୱଜନୀନତାର ବିପୁଳ ବିଭୂତି ଏବଂ ମାନବ କଲ୍ୟାଣରେ ନିର୍ଭୀକ ବାଣୀର ସଂସ୍ପର୍ଶରେ ଏହା ହୋଇଛି ତେଜସ୍ୱୀ । କବି ଜୀବନ ଲତିକାରେ ଯେଉଁ ଫୁଲ ଦେଖିଛନ୍ତି ତା'ର ଅନ୍ତରରେ 'ବସନ୍ତର କଳା କଜ୍ଜ୍ୱଳ ମେଘର' ସ୍ପନ୍ଦନ ରହିଛି- ରହିଛି ପୁଣି 'କଳ୍ପନା ଓ ଇନ୍ଦ୍ରଧନୁର ଛଟା ।' କବିଙ୍କର ଆଖି ଆଗରେ ଝଡ଼ର ଧୂସର ଘୂର୍ଣ୍ଣି ଭେଦକରି କଳାମେଘର ଯେଉଁ ଦ୍ୟୁତି ନଇଁଆସେ ପୃଥିବୀ ବକ୍ଷରେ ତାହାର ପ୍ରଥମ ଚୁମ୍ବନ କବିଙ୍କର ସମସ୍ତ ଉଚ୍ଛ୍ୱାସକୁ ଏକ ଅପୂର୍ବ ଗୌରବ ଦାନ କରେ । ରୂପହୀନାର ମର୍ମଦାହ ଭିତରେ ସେ 'ପ୍ରେମର ଅମୃତ କଣିକା'ର ସନ୍ଧାନ ପାଆନ୍ତି । ଶ୍ରାବଣ ରାତିର ଆତୁର ବ୍ୟାକୁଳତାରେ ଯେଉଁ ବେଦନାର ବାଣୀ ରୂପାଏ ସେଥିରେ ଦେହ ତଳର ଏକ ଉଷ୍ଣ ଉନ୍ମାଦନାର ଆସ୍ୱାଦ ପାଆନ୍ତି କବି । ଏହି ଅନନ୍ତ ଅନୁଭବର ଭିତ୍ତି ଉପରେ ବଳିଷ୍ଠ ମୂର୍ତ୍ତିରେ ଉଭା ହୋଇଛି କବିଙ୍କର ଉଜ୍ଜ୍ୱଳ ମାନବ ପ୍ରେମ । ଖାଲି କଳ୍ପନା ନୁହେଁ, ଖାଲି ଉଦାସୀ ସ୍ୱପ୍ନ ଜଡ଼ିତ ଶିଥିଳ ମନ୍ଥରତା ନୁହେଁ, ନିର୍ଭୀକ ପ୍ରେମ, ନିର୍ଭୀକ ବିଶ୍ୱାସ, ଶତ ଝରଣାର ଝଂକାର ତୋଳେ । ତାଙ୍କ କବିତା ପୁଞ୍ଜରେ—

'ଆଜି ଏ ମୁହୂର୍ତ୍ତ କହେ
ଆରବ କାହାଣୀ ଅବା ସୁରା ସାକୀ ପାରସ୍ୟର କଥା
ତୁମେ ମୋତେ ମୁକ୍ତି ଦିଅ ପିଇ ସବୁ ଯନ୍ତ୍ରଣା ଅମୃତ,
ନ ପାରିବ ଦୁର୍ବଳ ମୁଁ ଏଡ଼ି କେବେ ପ୍ରଣୟ ବାରତା ।'

( ହରପିଠାଲ )

\+ \+ \+

'ପ୍ରାଣରେ ସୁରଭି ବାଞ୍ଛବାଞ୍ଛ ଧୂଳିର ଗୌରବ ବରଣ କର,
ମୃତ୍ୟୁର କବର ଉପରେ କର୍ମର ପୁଷ୍ପ ପୁଷ୍ପିତ ହେଉ ।'

( ମାଙ୍ଗଳିକ )

କବିତା 'ଗ୍ରନ୍ଥର ନାମକରଣ କେତେଣ୍ଟ ସାର୍ଥକତାର ପ୍ରସ୍ତର ଦେହରେ ଖୋଦିତ । ଯୁଗ ବଦଳେ । ବଦଳେ ମନୁଷ୍ୟର ଆଶା ଓ ଆକାଂକ୍ଷା । ବଦଳେ ପୁଣି ଏଇ ଆଶା ଓ ଆକାଂକ୍ଷାର ପ୍ରକାଶ ଭଙ୍ଗୀ । କମଳାକାନ୍ତଙ୍କର ପ୍ରକାଶଭଙ୍ଗୀ ଏଇ ଯୁଗର ଅଯଥା ଅଳଙ୍କାର ଉତ୍ପୀଡ଼ନରେ ଭାରାକ୍ରାନ୍ତ ନୁହେଁ । ଚିରନ୍ତନର ଅଯଥା ମୋହରୁ ଏହା ମୁକ୍ତ । କିନ୍ତୁ ସେ ପ୍ରକାଶ କରିଛନ୍ତି ଯେଉଁ ସତ୍ୟକୁ, ତାହାର ଚିରନ୍ତନ ମୂଲ୍ୟ ରହିଛି । ତାଙ୍କର ପ୍ରତିଭା ଆହୁରି ପୁଷ୍ପିତ ଶ୍ରୀ ଲାଭ କରୁ—ଏହା ହିଁ ମୋ ଅନ୍ତରର ନିବିଡ଼ କାମନା । ତଥାସ୍ତୁ ।

**ଅଧ୍ୟାପକ ସୁଧାଂଶୁଶେଖର ରାୟ**
ଭଦ୍ରକ କଲେଜ, ଭଦ୍ରକ

## ଉତ୍ତରଣ

( ୧୯୭୭ )

ଅଧ୍ୟାପକ କମଳାକାନ୍ତ ଲେଙ୍କାଙ୍କ ଦୀର୍ଘ କବିତା 'ଉତ୍ତରଣ' ପଢ଼ିଲି । କବିତାଟି ଚାରୋଟି ଭାଗରେ ବିଭକ୍ତ— ସମ୍ରାଟ୍, ସ୍ୱପ୍ନଂସଂସୃଷ୍ଟି, ଉତ୍ତରଣ ଓ ଉପସଂହାର ।

ଦୀର୍ଘ କବିତାର ସଫଳତା ଯେ ଅତ୍ୟନ୍ତ ନିବିଡ ଓ ଶୃଙ୍ଖଳାବଦ୍ଧ ଭାବାବେଗ ଏବଂ କାବ୍ୟରୂପ ଉପରେ ପ୍ରଭୂତ ସଂଯମର ଅପେକ୍ଷା ରଖେ ଏଥିରେ ହୁଏତ ଦ୍ୱିମତ ନ ଥାଇପାରେ । କେନ୍ଦ୍ରମୁଖୀ ଅନୁଭୂତି, ଆବେଗ ଓ ଚିନ୍ତାକୁ ରୂପାୟନ କରିବା ଦୀର୍ଘ କବିତାରେ ଅପେକ୍ଷାକୃତ କଷ୍ଟସାଧ୍ୟ । ସୁତରାଂ ଦରକାର କୌଣସି ଏକ କେନ୍ଦ୍ର ଇମେଜ୍ ବା ଆର୍କିଟାଇପ୍ । ଏ ଇମେଜ୍ କୌଣସି ସମାଜର ଆଦିମ ଅବଚେତନରୁ ସଂଭୂତ ହୋଇପାରେ ବା ଅଗୀତ (ଯେମିତି ପାଉଣ୍ଡଙ୍କ କ୍ୟାଣ୍ଟୋଜ୍‌ରେ) 'ପ୍ରକୃତି' ବା ଯେମିତି କିଛି

ସାର୍ବଜନୀନ ସତ୍ତା ବା category ପ୍ରଭୃତି ଏକ ନିର୍ଦ୍ଦିଷ୍ଟ ନୈତିକ ଦୃଷ୍ଟିଭଙ୍ଗୀର ପରିପ୍ରକାଶ ହୋଇପାରେ । ପାଉଣ୍ଡଙ୍କ 'କ୍ୟାଣ୍ଟୋଜ୍'ରେ ଅତୀତ ଐତିହ୍ୟ ନୁହେଁ ତା ବେଶର ସାମଗ୍ରୀ ନୁହେଁ । ଋଣଦାନ ଓ ସୁଧ ଆଦାୟ ବା usuryର ଦର୍ଶନ ଉପରେ ପ୍ରତିଷ୍ଠିତ ଇତିହାସ ହେଉଛି ଏଠି ଐତିହ୍ୟ—ଯାହା ଦିନେ ଥିଲା ବା ଏବେ ବି ଅଛି । ଯେଉଁଠି ଦୀର୍ଘ କବିତାରେ କେନ୍ଦ୍ର ଇମେଜ୍ ବା ଆର୍କିଟାଇପ୍ ନଥାଏ (ଯାହା ଏକ ନିର୍ଦ୍ଦିଷ୍ଟ ସ୍ଥାନ ଓ ମୁହୂର୍ତ୍ତରେ ବିଶ୍ୱ ତଥା ସମସ୍ତଙ୍କୁ ଏକୀଭୂତ କରିଥାଏ) ସେଠାରେ ଅଂତତଃ କେତେକ ମୁଖ୍ୟ ପଂକ୍ତି ଥାଏ ଯେଉଁଗୁଡ଼ିକ ଭାବ-ସମ୍ପଦର ତରଙ୍ଗ-ଶୀର୍ଷ ସଦୃଶ । ସେଗୁଡ଼ିକ ଗୀତି-କବିତାର ପରିପୂରକ, ଶକ୍ତିଶାଳୀ ଶୈଳୀରେ ଲିଖିତ ହୁଏ । ଯେମିତି ପାଉଣ୍ଡଙ୍କ 'କ୍ୟାଣ୍ଟୋଜ୍' । ଜନ୍ ୱେନ୍‌ଙ୍କ ଭାଷାରେ--"The cantos move from one lyrical out burst to another by means of a recitation which mingles rough-hewn verse with scraps of dialogoue, verbatism quotations of documents, ideograms lists and anything that comes to hand. The technique is recognisable as a cross between the cinematic (changes of focus, tracking panning etc.) and the collage.'

'ଉତ୍ତରଣ'ରେ ନିର୍ଦ୍ଦିଷ୍ଟ ଢାଞ୍ଚାର ଉପାଦେୟତା. କେନ୍ଦ୍ର ଇମେଜ୍, ଆର୍କିଟାଇପ୍‌ର ସୁସଂହତ ପରିଚୟ ମିଳେନା । କାବ୍ୟରୂପ ମଧ୍ୟ ଅନେକାଂଶରେ ବିଶୃଙ୍ଖଳିତ । ମନେ ହୁଏ ଚେଷ୍ଟା ସତ୍ତ୍ୱେ କବି କବିତା ଆରମ୍ଭର ଆବେଗକୁ ଶୃଙ୍ଖଳିତ ଓ ନିର୍ଦ୍ଦିଷ୍ଟ କରି ରଖି ପାରିନାହାନ୍ତି ।

ଶୈଳୀ ଅତ୍ୟଧିକ ଭାବରେ ନାଟକୀୟ ହୋଇ ପଡ଼ିଛି । ତେଣୁ କବିତାଟି ଗଦ୍ୟ ନାଟକ ପରି ଅନେକ କ୍ଷେତ୍ରରେ ମନେ ହେଉଛି । ଶବ୍ଦ ସଂଭାରରେ ଆଟୋପ ଅଛି, ତତ୍ସମର ପ୍ରାଚୁର୍ଯ୍ୟ ଅଛି । କିନ୍ତୁ ଶବ୍ଦ ଗ୍ରନ୍ଥନରେ ଅନେକ କ୍ଷେତ୍ରରେ ଅସାବଧାନତା ପରିଦୃଷ୍ଟ ହୁଏ, ଯାହାଫଳରେ ଚିତ୍ରକଳ୍ପ ବା ରୂପକ ଜରିଆରେ ବ୍ୟକ୍ତି ନିରପେକ୍ଷ, ନିର୍ଲିପ୍ତ ଭାବପ୍ରକାଶ

ସମ୍ଭବ ହୋଇନ । ଅନ୍ୟ ପକ୍ଷରେ ଶବ୍ଦର ପଛୁଆରରେ କବି ଯେ ନିଜେ ବିମୁଗ୍ଧ ଓ ନିଜେ ଲାଇଟ୍ ମଶାଲ ଧରି ସେ ଶୋଭାଯାତ୍ରାରେ ଆଗେଇ ଯାଉଛନ୍ତି ଏ ଚିନ୍ତା ମନକୁ ବରାବର ଆସେ । ନିର୍ଦ୍ଦିଷ୍ଟ, କଠିନ ଓ ସଂଯତ ଶବ୍ଦ ବ୍ୟବହାରର ଅଭାବରେ ଇମେଜ୍‌ଗୁଡ଼ିକ ମଧ୍ୟ ବିଖଣ୍ଡିତ ଓ କ୍ଲିଷ୍ଟ । କୌଣସି ନିର୍ଦ୍ଦିଷ୍ଟ କଂକ୍ରୀଟ୍ ରୂପ ସେମାନେ ଦେଇ ପାରୁ ନାହାନ୍ତି । ନିମ୍ନ ଉଦାହରଣରୁ ଏହା ସ୍ପଷ୍ଟ ପ୍ରତୀୟମାନ ହେବ ଯେ ସଂସ୍କୃତି ବା ତତ୍ସମ ଶବ୍ଦର ବହୁଳ ବ୍ୟବହାର ଓ ସେ ବ୍ୟବହାରରେ ଆବଶ୍ୟକୀୟ ସଂଯମର ଅଭାବ ଇମେଜ୍ ସୃଷ୍ଟିର ପରିପନ୍ଥୀ ହୋଇଛି ।

'ବର୍ତ୍ତମାନ ଅଙ୍କିତା ନିଷ୍ଫଳ ଓ ବିଗତଂର ବିସ୍ମୃତ ଆତ୍ମାରେ ବାଦ୍‌ଶାହୀ ସିଂଧୁର ଅବଶ୍ରାଂତ ଗତି' ବା 'ତୁମମାନଙ୍କର ଆର୍ତ୍ତି ଓ ଦୁର୍ଗମ ସଂଘର୍ଷରେ ମୁଁ ଏକ ସ୍ଖଳିତ ଖିଆଲରେ ପ୍ରତିଶ୍ରୁତିର ରୁକ୍ଷତା' ବା 'ତୁମମାନଂକ ସଂଗତିର ଅସଂଗତ ଓ ସାଂକେତିକତାରେ ସ୍ପର୍ଶକେଂଦ୍ରିକ ସତ୍ତ୍ୱର ମୁଁ ଏକ ଦୁର୍ବିପାକର ଅନର୍ଗଳ ଆଶୀର୍ବାଦର ପ୍ରମାଣ ।'

ଶବ୍ଦ ବ୍ୟବହାରରେ ସଂଯମର ଅଭାବ ହେତୁ ଉପରୋକ୍ତ ବାକ୍ୟ ଗୁଡ଼ିକରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଗତ ଅନୁଭୂତି, ମିଥ୍, ଅନୁଚିନ୍ତନ ବା ଗଭୀର ଆବେଗର କୌଣସି ସୂଚନା ମିଳେନାହିଁ । କବିତାର ଅଧିକାଂଶ କ୍ଷେତ୍ରରେ ଏହା ଆବେଗ, ଶୈଳୀ ଓ ଇମେଜ କ୍ଷୁଣ୍ଣ କରିଛି । ତା'ଛଡ଼ା ଶିବାଜୀ ଓ ସଗର ବଂଶଧରଙ୍କୁ, କୁନ୍ତୀ ଓ 'କୈକେୟୀଙ୍କୁ କବିତାର ବିଭିନ୍ନ ଅଂଶରେ ଏକତ୍ର ଅଣାଯାଇଛି । ମାତ୍ର ସେମାନଙ୍କର ସାଧାରଣ ସ୍ପର୍ଶବିନ୍ଦୁ କେଉଁଠି ତାହା ଆଦୌ ସ୍ପଷ୍ଟ ବା ନିଶ୍ଚିତ ନୁହେଁ । 'ବର୍ତ୍ତମାନ' ଶବ୍ଦର ବହୁଳ ବ୍ୟବହାର ମଧ୍ୟ ଶ୍ରୁତିକଟୁ ହେଉଛି ।

କବିତାରୁ ମନେହେବ କବିଙ୍କର ଶବ୍ଦ ଭଣ୍ଡାର ବେଶ୍ ସମୃଦ୍ଧ । ଆଶା ସେଗୁଡ଼ିକ ଯେତେ ଶୀଘ୍ର ନିର୍ଦ୍ଦିଷ୍ଟ ଆବେଗ ଓ ବ୍ୟକ୍ତିଗତ ଅନୁଭୂତିର ନିଆଁରେ ପୋଡ଼ିହୋଇ ସୁନା ହେବେ ଏବଂ ଯେତେ ଶୀଘ୍ର ଇମେଜ ଓ

ଆର୍ଥିକ ଗତ ବା ବ୍ୟକ୍ତିଗତ ମିଥ୍‌ର ମାତ୍ରୁଭୂ ଓ ଫୁଙ୍କନଳୀରେ ସେ ସୁନା ଉପରେ ଯେ କାରୁକାର୍ଯ୍ୟ ରଚିପାରିବେ ସେତେ ଶୀଘ୍ର ତାଙ୍କର କବିତାରେ ଆଶାପ୍ରଦ ଅଭିବୃଦ୍ଧି ହେବ । ଅନାବଶ୍ୟକ ଚିନ୍ତା-ବିଶୃଙ୍ଖଳାରୁ ଗଭୀର ଅନୁଭବ, ଅସଂଯତ ଶବ୍ଦ ସମ୍ଭାରରୁ ସୁସଂହତ, ପରିମାର୍ଜିତ ତଥା ସଙ୍କେତ ସମ୍ପନ୍ନ ଶବ୍ଦ ବ୍ୟବହାର; ବ୍ୟାହତ, ଭାରାକ୍ରାନ୍ତ, ବିପର୍ଯ୍ୟସ୍ତ ଶୈଳୀରୁ ଧ୍ୟାନମଗ୍ନ ଆକାଶ ପରି ଗମ୍ଭୀର ଶୈଳୀ ଆଡ଼କୁ ପ୍ରତ୍ୟେକ କବିକୁ ଆଗେଇବାକୁ ହୁଏ । ଶ୍ରୀ ଲେଙ୍କା ଯେ ଏ ଦିଗରେ ପ୍ରଚେଷ୍ଟାବାନ, 'ଉତ୍ତରଣ' ସେ ଆଶାର ଝଲକ ନିଶ୍ଚେ ବହନ କରୁଛି ।

**ସୀତାକାନ୍ତ ମହାପାତ୍ର**
୨୦ । ୧୧ । ୭୭

## ଆଧୁନିକ ଓଡ଼ିଆ ଦୀର୍ଘ କବିତାର ପରିପ୍ରେକ୍ଷୀରେ

## 'ଉତ୍ତରଣ'

ଆଧୁନିକ ଓଡ଼ିଆ ସାହିତ୍ୟରେ ଅତି ଅଳ୍ପ ସଂଖ୍ୟକ ଦୀର୍ଘ କବିତା ଲେଖାଯାଉଛି । ସେଗୁଡ଼ିକ ଏକ ସ୍ୱତନ୍ତ୍ର ଶ୍ରେଣୀର କବିତା । ବର୍ତ୍ତମାନ ଯୁଗରେ ଦୀର୍ଘ କବିତା ଲେଖା ଏକ ନିତାନ୍ତ ଆକସ୍ମିକ ଘଟଣା ନୁହେଁ । ଏହା ପଛରେ ଜୀବନ ପ୍ରତି ଏକ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ରହିଛି । ଦିନ ଥିଲା ଦୀର୍ଘ ଉପନ୍ୟାସ, ମହାକାବ୍ୟ, କାବ୍ୟ ଓ ପାଞ୍ଚ ଅଙ୍କ ବିଶିଷ୍ଟ ବୃହତ ନାଟକ ଲେଖା ଯାଉଥିଲା । କ୍ରମେ ଦୀର୍ଘ ନାଟକରୁ ଏକାଙ୍କିକା, ମହାକାବ୍ୟ ଓ କାବ୍ୟରୁ କ୍ଷୁଦ୍ର କବିତା ଲେଖା ଆରମ୍ଭ ହେଲା । ଏହା ମଧ୍ୟ ଆକସ୍ମିକ ନଥିଲା । ଏହା ପଛରେ ସେତେବେଳର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ କାର୍ଯ୍ୟ କରୁଥିଲା । 'ଦୀର୍ଘ ଉପନ୍ୟାସ' ଓ

ମତ ଅଭିମତ ଭିନ୍ନମତ ॥

'ମହାକାବ୍ୟ' ଯୁଗର ମାନବ-ବ୍ୟକ୍ତିତ୍ୱ ଅଖଣ୍ଡିତ ଥିଲା । ସେ ଯୁଗର ଲେଖକ ଜୀବନକୁ ସଂପୂର୍ଣ୍ଣ ଭାବରେ ଉପଲବ୍ଧି କରିବାକୁ ଚେଷ୍ଟା କରୁଥିଲେ । ମାତ୍ର ମାନବର ବ୍ୟକ୍ତିତ୍ୱ ଏକ ବହୁଧା ବିଭକ୍ତ ସତ୍ତା ବୋଲି ଯେତେବେଳେ ଲେଖକମାନେ ହୃଦୟଙ୍ଗମ କଲେ ସେତେବେଳେ 'ସଂପୂର୍ଣ୍ଣ' ଜୀବନକୁ ଉପଲବ୍ଧି କରିବା ଅସମ୍ଭବ ହୋଇପଡ଼ିଲା । ଜୀବନର ଭଗ୍ନାଂଶକୁ ଉପଲବ୍ଧି କରିବା ଚେଷ୍ଟାରୁ ଜନ୍ମନେଲା କ୍ଷୁଦ୍ର ଗଳ୍ପ, କ୍ଷୁଦ୍ର କବିତା ଓ ଏକାଙ୍କିକା । ମାତ୍ର ବର୍ତ୍ତମାନ ପୁଣି ଦେଖିବାକୁ ମିଳୁଛି 'ରିମେମ୍ବ୍ରାନ୍ସ ଅଫ୍ ଥିଙ୍ଗ ପାଷ୍ଟ' ଭଳି ଦୀର୍ଘ ଉପନ୍ୟାସ, 'ମୋର୍ନିଂ ବିକମ୍ସ ଇଲେକ୍ଟ୍ରା' ଭଳି 'ଟ୍ରିଲୋଜି' ଓ ଓ୍ୱେଷ୍ଟଲ୍ୟାଣ୍ଡ, 'କାଳ ପୁରୁଷ' ବା ବର୍ତ୍ତମାନର ଆଲୋଚ୍ୟ 'ଉତ୍ତରଣ' ଭଳି ଦୀର୍ଘ କବିତା । ଏଗୁଡ଼ିକ ପଛରେ ପୁନର୍ବାର ଜୀବନକୁ ସଂପୂର୍ଣ୍ଣ ଭାବେ ଉପଲବ୍ଧି କରିବାର ଚେଷ୍ଟା ବିଦ୍ୟମାନ । ମାତ୍ର ସେ ଚେଷ୍ଟା କେତେଦୂର ସଫଳ ହୋଇଛି ସେ ଭିନ୍ନ କଥା ।

ବର୍ତ୍ତମାନ ଯୁଗରେ ଦୀର୍ଘ କବିତା ଲେଖିବା ସହଜସାଧ୍ୟ ନୁହେଁ । ବିଭିନ୍ନ ପ୍ରତିବନ୍ଧକ ମଧ୍ୟରୁ ବିଷୟବସ୍ତୁ ନିର୍ବାଚନ ଏକ ପ୍ରଧାନ ସମସ୍ୟା । ଆଗେ ଯେଉଁ ଦୀର୍ଘକବିତା ସବୁ ଲେଖାଯାଉଥିଲା ସେଗୁଡ଼ିକ ହୁଏତ ଗଳ୍ପ ପ୍ରଧାନ ଥିଲା ! ଏ ଦୁଇ ପ୍ରକାର ଦୀର୍ଘ କବିତା ଖୁବ ସାର୍ଥକ ହୋଇଥିଲା ମଧ୍ୟ । କିଟ୍ସଙ୍କର 'ଇଭ୍ ଅଫ୍ ସେଣ୍ଟ ଆଗ୍‌ନେସ୍' ଏବଂ ମାଥ୍ୟୁ ଆରନୋଲଡଙ୍କର 'ସ୍କଲାର ଜିପ୍‌ସି' କିଂବା 'ଥାଇରସିସ୍' ଏଇ ଶ୍ରେଣୀର କବିତା । ମାତ୍ର ବର୍ତ୍ତମାନ ଗଳ୍ପ ବା ଘଟଣାକୁ କେନ୍ଦ୍ର କରି ଆଉ କବିତା ଉପନ୍ୟାସ ଲେଖିବା ସମ୍ଭବ ନୁହେଁ । ଚେତନା ପ୍ରବାହ ଉପନ୍ୟାସରେ ଗଳ୍ପକୁ ହତ୍ୟା କରିବାର ଚେଷ୍ଟା ବିଦ୍ୟମାନ । ଫଳରେ ଉପନ୍ୟାସ ବିକଳାଙ୍ଗ ଓ ବିକୃତ ହୋଇପଡ଼ିଛି । କିନ୍ତୁ କବିତା କ୍ଷେତ୍ରରେ ଗଳ୍ପ ପ୍ରଧାନ କବିତାର ସ୍ଥାନ ନାହିଁ । ତେଣୁ ଦୀର୍ଘ କବିତା ପାଇଁ ବର୍ତ୍ତମାନ ଏକ ସ୍ୱତନ୍ତ୍ର ଶ୍ରେଣୀର ବିଷୟବସ୍ତୁ ନିର୍ବାଚନ କରିବାକୁ ପଡ଼ୁଛି । ଆଧୁନିକ କବି ତାଙ୍କର ଭାବାବେଗକୁ ପ୍ରକାଶ କରୁଛନ୍ତି ହୁଏତ କୌଣସି କେନ୍ଦ୍ର ଚରିତ୍ର, ମିଥ୍ ବା ଆର୍କିଟାଇପ୍‌ର ସାହାଯ୍ୟ ନେଇ ।

॥ କବି କମଲାକାନ୍ତ

ସେଥିପାଇଁ ଅତୀତରୁ ଲେଖା ଯାଇଥିବା ଅଧିକାଂଶ ଦୀର୍ଘ କବିତାରେ ଯେପରି ଆତ୍ମିକ କ୍ରମ-ବିକାଶ (Thematic development) ଦେଖିବାକୁ ମିଳେ, ବର୍ତ୍ତମାନର ଦୀର୍ଘ କବିତା ଗୁଡ଼ିକରେ ସେପରି ଦେଖିବାକୁ ମିଳେନା । ପ୍ରାୟ ଆଧୁନିକ ଦୀର୍ଘ କବିତାରେ ବିଷୟବସ୍ତୁର କୌଣସି କ୍ରମ ବିକାଶ ନାହିଁ କହିଲେ ଚଳେ ଏବଂ ରହିବା ସମ୍ଭବ ମଧ୍ୟ ନୁହେଁ । ଓ୍ୱେଷ୍ଟଲ୍ୟାଣ୍ଡରେ ଠିକ୍ ଏହାହିଁ ହୋଇଛି । କେତେ ଗୁଡ଼ିଏ ଇମେଜ, ସିମ୍ବଲ ଏବଂ ମିଥ୍‌କୁ ନେଇ କବିତାଟି ଲେଖାଯାଇଛି । ଓଡ଼ିଆରେ 'କାଳପୁରୁଷ' ଦ୍ୱିଧାପୁର ଓ୍ୱେଷ୍ଟଲ୍ୟାଣ୍ଡ ଗ୍ରନ୍ଥାରେ ଲେଖା ହୋଇଥିଲେ ମଧ୍ୟ ସେଥିରେ ସ୍ଥାନୀୟ ପରିବେଶ (local colour) ସୃଷ୍ଟି କରିବାରେ କବି ସମର୍ଥ ହୋଇଛନ୍ତି । 'ବାଘ ଶିକାର'ରେ ଏକ କେନ୍ଦ୍ର ଇମେଜ ରହିଛି ଏବଂ ତାହାହିଁ କବିଙ୍କର ଭାବାବେଗକୁ କେନ୍ଦ୍ରମୁଖୀ କରିପାରିଛି । 'ମାଟି ଓ ମଣିଷ'ରେ ଯେଉଁ କେନ୍ଦ୍ର ଇମେଜ ରହିଛି ତାହା ମିଥୋଲଜିରୁ ନିଆଯାଇଛି । ତା' ଛଡ଼ା ସେଥିରେ 'ମାଟି' ଏକ ଆର୍କିଟାଇପ୍ । 'ଉତ୍ତରଣ'ରେ ସେପରି କେନ୍ଦ୍ର ଇମେଜ ବା ଆର୍କିଟାଇପ୍ ନାହିଁ । ତେଣୁ ଆପାତ ଦୃଷ୍ଟିରେ ମନେହୁଏ ଯେ କବିତାରେ କୌଣସି ଏକତ୍ୱ (unity) ନାହିଁ । ମାତ୍ର ସଂପୂର୍ଣ୍ଣ କବିତାଟି ଗୋଟିଏ ନିର୍ଦ୍ଦିଷ୍ଟ ଭାବାବେଗ ଓ ଅନୁଭୂତିରୁ ଜନ୍ମ ନେଇଛି । ତାହାହିଁ ହେଉଛି କବିତାଟିର ଏକତ୍ୱର ସୂତ୍ର (unifying factor) । 'ସମ୍ରାଟ' ହେଉଛି ଆଧୁନିକ ଜୀବନର ଏକ ନିର୍ଦ୍ଦିଷ୍ଟ ବିଭାବର ବିଶ୍ଳେଷଣ । ଠିକ୍ ତା'ର ବିପରୀତ ହେଉଛି 'ସ୍ୱୟଂ-ସଂପୂର୍ଣ୍ଣ' । ଯାହାକୁ କବି 'ଖଦ୍ୟୋତର ମହିମା' ବୋଲି କହୁଛନ୍ତି।'ଉତ୍ତରଣ'ରେ ରହିଛି ଆତ୍ମାର ଉତ୍ତରଣର ସୂଚନା ଯାହା ଅସ୍ତିତ୍ୱବାଦ-ଦର୍ଶନ ଦ୍ୱାରା ପ୍ରଭାବିତ । ତେଣୁ 'ସମ୍ରାଟ'ରୁ 'ଉପସଂହାର' ପର୍ଯ୍ୟନ୍ତ ଯେତେ ଅସଂପୃକ୍ତ ହେଲେ ମଧ୍ୟ ଆତ୍ମିକ-ସମ୍ବନ୍ଧରେ ଦ୍ୟୋତନା ଅନୁଭୂତ ହୁଏ ।

ବିଷୟବସ୍ତୁର ଅଗ୍ରଗତି ଦୀର୍ଘ କବିତାରେ ଏକ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ନୁହେଁ । ଆପାତ ପୃଥକ ଦୃଶ୍ୟ ଭିତର ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ଚିନ୍ତାର ପରିପ୍ରକାଶ କବିତାକୁ ଅଧିକ ବଳିଷ୍ଠ କରେ । ଟେନିସନ୍‌ଙ୍କ 'ଇନ୍ ମେମୋରିଅମ୍'ରେ ଠିକ୍ ଏହାହିଁ ଦେଖିବାକୁ ମିଳେ । ଏଥିରେ ବିଷୟବସ୍ତୁର

ଅଗ୍ରଚଳ୍ତି ଅପେକ୍ଷା ଘଟଣାର ବିଶ୍ଳେଷଣଜନିତ ଦୃଷ୍ଟିଭଙ୍ଗି ବେଶୀ କାର୍ଯ୍ୟ କରୁଛି । ଆଧୁନିକ ଦୀର୍ଘ କବିତାରେ ଏହି ଆଭିମୁଖ୍ୟ (Tendency) ପରିଲକ୍ଷିତ ହୁଏ । ଏକ ବିଶେଷ ଭାବାବେଗ ଓ ଜୀବନାନୁଭୂତିକୁ କବି ବିଭିନ୍ନ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିବାରେ ପ୍ରୟାସୀ । ପୁଣି ସେ ପ୍ରୟାସ ଭିନ୍ନଭିନ୍ନ 'ଇମେଜ' ବା 'ସିମ୍ବଲ'ର ସାହାଯ୍ୟରେ ଆତ୍ମର ପ୍ରକାଶମାନ । କେନ୍ଦ୍ର ଇମେଜ ବା ଆର୍କିଟାଇପ୍ ଏକତ୍ରର ସୂତ୍ର ହିସାବରେ କାର୍ଯ୍ୟ କରିବା ସତ୍ତ୍ୱେ ଦୀର୍ଘ କବିତା ଏକ ଦିଗରୁ କେତେଗୁଡ଼ିଏ କ୍ଷୁଦ୍ର କବିତାର ସମଷ୍ଟି ରୂପେ ପ୍ରତିଭାତ ହେଉଛି ଓ ଏହି ଅଙ୍ଗାଙ୍ଗୀ ସମ୍ବନ୍ଧ ବିହୀନ ଯୋଗସୂତ୍ର ମଧ୍ୟରେ ଦୀର୍ଘ କବିତାର ବିଭିନ୍ନ ଅଂଶଗୁଡ଼ିକ ସ୍ୱୟଂସଂପୂର୍ଣ୍ଣ ହୋଇଯାଉଛି ।

ଆଲ୍‌ଡସ୍ ହକ୍ସଲେ ତାଙ୍କର 'ପଏଣ୍ଟ କାଉଣ୍ଟର ପଏଣ୍ଟ' ଉପନ୍ୟାସରେ ଏହା ସୂଚନା ଦେଇଛନ୍ତି । ଉପନ୍ୟାସର ନାୟକ କହନ୍ତି— ଗୋଟିଏ ଘଟଣାକୁ ବିଭିନ୍ନ ଦୃଷ୍ଟିକୋଣରୁ ଦେଖିବାହିଁ ହେଉଛି ଆଧୁନିକତା । ମାତ୍ର ଏକା ମଦକୁ ଭିନ୍ନଭିନ୍ନ ରଙ୍ଗର ବୋତଲରେ ପୂର୍ଣ୍ଣ କରିବାରେ କିଛି ବୈଚିତ୍ର୍ୟ ନାହିଁ । ବରଂ ଯେ ବସ୍ତୁଟିର ଅଖଣ୍ଡତା (totality) ଆମ ଉପଲବ୍ଧିର ଅଧୀନତା ସ୍ୱୀକାର କରେନାହିଁ । ଏହିସବୁ କେନ୍ଦ୍ରପଳାୟୀ ଶକ୍ତି-ସମୂହକୁ (centrifugal forces) ପ୍ରତିହତ କରିବା ପାଇଁ ଆଧୁନିକ କବି-ମାନେ 'କେନ୍ଦ୍ର ଇମେଜ', 'ଆର୍କିଟାଇପ୍' ବା 'ମିଥ୍' ଇତ୍ୟାଦିର ଆଶ୍ରୟ ନେଇଥାନ୍ତି । କିନ୍ତୁ ବିଭିନ୍ନ ଇମେଜ ଓ ସିମ୍ବଲ ମାଧ୍ୟମରେ କବିପ୍ରାୟ ଗୋଟିଏ କଥା କହୁଥାନ୍ତି କିମ୍ବା ବକ୍ତବ୍ୟ ବହିର୍ମୁଖୀ ହେଲେ ମଧ୍ୟ ଅନେକ କ୍ଷେତ୍ରରେ ଏଗୁଡ଼ିକ ବିଶୃଙ୍ଖଳ ଓ ସଂପର୍କବିହୀନ ଜଣାଯାନ୍ତି । 'କାଳ ପୁରୁଷ'ରେ ରମୁର ମୃତ୍ୟୁ ଓ ସ୍ୱାର୍ଥ ଦାସ ଇଞ୍ଜିନିୟରର ଅଭିସାର ମଧ୍ୟରେ ଅଙ୍ଗାଙ୍ଗୀ ସମ୍ବନ୍ଧ ଥିବା ପରି ମନେହୁଏନା । ପୁଣି ସେଠି ଲାବଣ୍ୟବତୀ, ଚନ୍ଦ୍ରଭାନ୍ ଏବଂ ଶେଷରେ ଅକ୍ରୁର, ଉଦ୍ଧବ ମଧ୍ୟରେ ଥିବା ଯୋଗସୂତ୍ର ସ୍ପଷ୍ଟ ନୁହେଁ । ଏହି ଇମେଜ ଓ ସିମ୍ବଲ ଗୁଡ଼ିକ ହୁଏତ ଏକ ନିର୍ଦ୍ଦିଷ୍ଟ ଭାବାବେଗ ପ୍ରକାଶ ପାଇଁ କବିଙ୍କ ଦ୍ୱାରା ଅନୁସୃତ ହୁଅନ୍ତି । କିନ୍ତୁ ସେଥିରୁ ଯେଉଁ ଭିନ୍ନଭିନ୍ନ ଅନୁଭୂତି ପ୍ରକାଶିତ ସେଗୁଡ଼ିକ

|| କବି କମଳାକାନ୍ତ

ସମ୍ପ୍ରସାରଣ ଓ ବିଶୃଙ୍ଖଳ । ଏସବୁ ସତ୍ତ୍ୱେ 'କାଳ ପୁରୁଷ'ର ଗୀତିଧର୍ମୀ ଆବେଦନ (lyrical appeal) ପାଠକକୁ ମୁଗ୍ଧ କରେ ।

'ବାଘ ଶିକାର'ରେ ମଧ୍ୟ ସେଇ ପ୍ରଣାଳୀ ଅନୁସୃତ । ଏହାର କେନ୍ଦ୍ର ଇମେଜ୍ ଖୁବ୍ ଶକ୍ତିଶାଳୀ ଏବଂ ଏହା କବିତାର କେନ୍ଦ୍ରାପସାରୀ ଶକ୍ତିସମୂହକୁ ପ୍ରତିହତ କରିବାରେ ଅନେକ ପରିମାଣରେ ସକ୍ଷମ ହୋଇଛି । 'ଦକ୍ଷିଣ ଭାରତ ଭ୍ରମଣରେ ବର୍ଣ୍ଣିତ ହାସ୍ପାତାଳରେ ଶ୍ରୁତିକଷ୍ଟ', 'କୃଷକର ସ୍ତ୍ରୀକୁ ବାଘ ଘୋଷାରି ନେବା', 'କ୍ଲବର ବାର୍ଷିକ ସଭା' କିମ୍ବା 'ବଣ ଭୋଜି'ରେ ଠିକ୍ ଉପରୋକ୍ତ ପ୍ରଣାଳୀ ଅନୁସୃତ । କିନ୍ତୁ ଏଠି କବିତାଟିର ଏକତ୍ୱ (unity) ବେଶ ରହିପାରିଛି ।

ଏ ଦୃଷ୍ଟିରୁ 'ମାଟି ଓ ମଣିଷ' କବିତା ସବୁଠୁ ବେଶୀ ସଫଳତା ହାସଲ କରିଛି । ଏଠି କେନ୍ଦ୍ର ଇମେଜ୍ ଓ ଆର୍କିଟାଇପ ପ୍ରୟୋଗ ଦ୍ୱାରା କବି କବିତାର ଏକତ୍ୱ ପୂର୍ଣ୍ଣମାତ୍ରାରେ ରକ୍ଷା କରିଛନ୍ତି । 'ପଥରର ବଂଧଶାଳା', 'ସାତଟି କବାଟ' ଆଉ 'ଅନର୍ଗଳ ଲୁହାର ଜିଳଣୀ'— ହେଉଛି କବିତାଟିର କେନ୍ଦ୍ର ଇମେଜ । ଏକ ନବଜାତକର ଆବିର୍ଭାବ ଏବଂ ଏଇ କାରାଗାରରୁ ମୁକ୍ତି— 'ମିଥୋଲଜି'ରୁ ଆନୀତ ଇମେଜଟି ଶକ୍ତିଶାଳୀ । 'ମାଟି' ଏକ ଆର୍କିଟାଇପ୍ । କବିଙ୍କର ବକ୍ତବ୍ୟ ସ୍ପଷ୍ଟ ଓ ସହଜବୋଧ୍ୟ ହେବା ସତ୍ତ୍ୱେ ପ୍ରକୃତ ଅର୍ଥରେ କବିତାଟିରେ ଆତ୍ମିକ କମ ବିକାଶ ନାହିଁ । ବିଭିନ୍ନ ଭାବାବେଗ ଓ ଅନୁଭୂତିକୁ ଆଣି କେନ୍ଦ୍ର ଇମେଜ ସାଙ୍ଗରେ ଖଞ୍ଜି ଦିଆଯାଇଛି । କେନ୍ଦ୍ର ଇମେଜ୍ କବିତାର ଏକତ୍ୱ ରଖିପାରିଛି; ମାତ୍ର ବିଷୟ ବସ୍ତୁର ଅଗ୍ରଗତିରେ ସାହାଯ୍ୟ କରିନାହିଁ ।

'ଉତ୍ତରଣ'ରେ ଏହି ସମସ୍ୟାଟି ଅନ୍ୟ ଏକ ରୂପ ନେଇଛି । କବିତାଟିରେ ଥିବା ତିନୋଟି ବିଭାଗ ମଧ୍ୟରେ କୌଣସି ସେତୁ ନାହିଁ । କବି ଲମ୍ଫ ଦେଇ ଗୋଟିକରୁ ଅନ୍ୟଟିକୁ ଯାଇଛନ୍ତି । ମାତ୍ର ସାଧାରଣ ପାଠକ ତାହା କରିବାକୁ ସକ୍ଷମ ହେବ କି ? ତା'ଛଡ଼ା ପ୍ରତ୍ୟେକ ବିଭାଗରେ ବିଷୟବସ୍ତୁର ଆଶାନୁରୂପ କୌଣସି ଅଗ୍ରଗତି ନାହିଁ । କବି ଏକ ନିର୍ଦ୍ଦିଷ୍ଟ ଭାବାବେଗ ଓ

ଅନୁଭୂତିକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଶ୍ଳେଷଣ କରିଛନ୍ତି । ତେଣୁ ଏହି ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀର ପରିବର୍ତ୍ତିତ ଭିନ୍ନ ବିଷୟବସ୍ତୁର ଅଗ୍ରଗତି ପରିଲକ୍ଷିତ ହୁଏନା ।

ଆଧୁନିକ ଜୀବନର ଘାତ ପ୍ରତିଘାତ ମଧ୍ୟରେ କବି ମାନସର ପ୍ରତିକ୍ରିୟା 'ଉତ୍ତରଣ'ର ବିଷୟବସ୍ତୁ । କିନ୍ତୁ ଏତିକରେ କବିତାର ସାମଗ୍ରିକ ଭାବ ସୀମିତ ନୁହେଁ । କବିତାର ମୂଲ୍ୟ ବିଗୃର କଲେ ପ୍ରଧାନତଃ ତିନୋଟି ବିଷୟପ୍ରତି ଦୃଷ୍ଟି ଦେବାକୁ ପଡ଼େ—କବି ମାନସର ପ୍ରତିକ୍ରିୟାର ବ୍ୟାପକତା, ଗଭୀରତା ଓ ତା'ର ପ୍ରକାଶଭଙ୍ଗୀ । କବି ଯୁଗ ଓ ସମାଜର 'ସଚେତନ ବିନ୍ଦୁ' । ତେଣୁ ଜୀବନ ଓ ସମାଜ ପ୍ରତି ତା'ର ପ୍ରତିକ୍ରିୟା ଯେ ଅନ୍ୟମାନଙ୍କ ଠାରୁ ତୀବ୍ରତର ହେବ, ଏହା ସୁନିଶ୍ଚିତ । କିନ୍ତୁ ସେ ତୀବ୍ରତାର ସ୍ୱରୂପ କ'ଣ ଏବଂ କବି ତାକୁ କିପରି ପ୍ରକାଶ କରିବାରେ ସମର୍ଥ ତା' ପୂରାପୂରି ଆପେକ୍ଷିକ କଥା । ସେ ଦୃଷ୍ଟିରୁ ବିଗୃର କଲେ ଦେଖାଯିବ 'ଉତ୍ତରଣ' ଏକ ସାର୍ଥକ ସୃଷ୍ଟି । ବର୍ତ୍ତମାନର ଜୀବନ ଓ ସମାଜର ଦୋଷତ୍ରୁଟି ପ୍ରତି କବି ସଚେତନ ଓ ବ୍ୟଥିତ । ମାତ୍ର ଏହି ସଚେତନତା ଓ ବ୍ୟଥା କଳାକାର ସୁଲଭ । ଏହା ଜୀବନ ପ୍ରତି ଘୃଣା ଜନ୍ମାଇବା ପରିବର୍ତ୍ତେ ଶତ ଦୋଷ ଦୁର୍ବଳତା ସତ୍ତ୍ୱେ ଜୀବନକୁ ଭଲପାଇବା ପାଇଁ ପାଠକଙ୍କୁ ପ୍ରେରଣା ଦିଏ । ସାଧାରଣ ଦୃଷ୍ଟି ବହିର୍ଭୂତ ନାନା ଅପାଂକ୍ତେୟ ବିଷୟ ପ୍ରତି କବିଙ୍କର ଦୃଷ୍ଟି 'ଉତ୍ତରଣ'ରେ ଶାଣିତ ଓ ସେଗୁଡ଼ିକୁ ରୁଚିସମ୍ମତ ରୂପଦାନ ପାଇଁ କବି ଆଲୋକ-ପ୍ରୟାସୀ ।

'ଯାବଜ୍ଜୀବ ଉଦ୍ଭାସିତ ନିର୍ମଳ ଆଲୋକର ବ୍ୟୋମାଙ୍ଗରେ ମୁଁ ତନ୍ଦ୍ରାତୁର ଅନ୍ଧାରର ପଦଧ୍ୱନି । ମୋ ଚତୁର୍ଦ୍ଦିଗରେ କଳା ମୁଖର ଅଧମତ୍ୱ ମୋର କରୁଣାର ଖୁଣ୍ଟ ।

ଏଠାରେ କବିଙ୍କର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଗଭୀର ଓ ସମବେଦନା-ଶୀଳ । 'ଉତ୍ତରଣ'ରେ କୌଣସି ନିର୍ଦ୍ଦିଷ୍ଟ ବକ୍ତବ୍ୟ ନଥିଲେ ହେଁ କବିମାନସର ବିକ୍ଷିପ୍ତ ଚିନ୍ତା ଓ ଅବସ୍ଥା ଆଶାପ୍ରଦ ସୌନ୍ଦର୍ଯ୍ୟ ସୃଷ୍ଟି କରିବା ପାଇଁ ଯତ୍ନଶୀଳ ।

॥ କବି କମଳାକାନ୍ତ ॥

ପ୍ରାଚୀନ ଓ ଆଧୁନିକ କବିମାନଙ୍କ ସୃଷ୍ଟିରେ ବିଷୟବସ୍ତୁର ଉପସ୍ଥାପନାରେ ଭିନ୍ନତା ଦେଖାଯାଏ । ଆଧୁନିକ କବିଙ୍କ ସୃଷ୍ଟିରେ ବିଶୃଙ୍ଖଳା ମଧ୍ୟରେ ଏକ ସେତୁବନ୍ଧ ସ୍ଥାପନର ଉପାୟ ଆହୁରି ତାତ୍ପର୍ଯ୍ୟକ ଓ ଭିନ୍ନ ପନ୍ଥାଶ୍ରୟୀ । ଉଦାହରଣ ସ୍ୱରୂପ ଅନ୍ୟ ଏକ ଦୀର୍ଘ କବିତା 'କାଳ ପୁରୁଷ'ର କେତୋଟି ପଂକ୍ତି ଉଦ୍ଧାର ଯୋଗ୍ୟ ।

"ମୁଁ ସର୍ବେ କ୍ଷଣ ଲକ୍ଷ ଦେହ ଆଉ ମନ ଓ ଆତ୍ମାର
ମୋ ଦେହରେ ଗନ୍ଧ ପୁଣି ପୁଷ୍ପବତୀ ତଣୀକାର
ଚନ୍ଦ୍ରଭାନୁ ହୁଂକାର ଓ ଇଷିକାର ଲାବଣ୍ୟବଣ୍ଡର
ମୋ ମାଂସର ଗନ୍ଧ ପୁଣି ମଦ ମତ୍ସ୍ୟ ନାରୀ ଗନ୍ଧ
ମୋ ଦେହରେ ପୃଥିବୀର ଯାଯାବର ଆଲୋକ ଅନ୍ଧାର" ।

( କାଳ ପୁରୁଷ )

ଉପରୋକ୍ତ ପଂକ୍ତି ଗୁଡ଼ିକ ସହିତ ନିମ୍ନୋକ୍ତ—

"ବର୍ତ୍ତମାନ ଅସୁସ୍ଥ ଅନୁଭୂତିର ରଞ୍ଜନ ବିଳାସ
କଦମ୍ବର ଗନ୍ଧ ଓ ପଶୁଧାନର ବାସ୍ନାରେ ନର୍ଦ୍ଦମାର
ସବୁମାଛ ଡାକରା । ବାରାଙ୍ଗନାର ପ୍ରୀତିପ୍ରଦ ଅଙ୍ଗନରେ
ସନ୍ଦେହମୁକ୍ତ କ୍ଷୁଧାର ଆର୍ତ୍ତନାଦ" ।

( ଉତ୍ତରଣ )

ପଂକ୍ତିଗୁଡ଼ିକ ତୁଳନା କଲେ ଏହି ସେତୁବନ୍ଧନ ପାଇଁ ଆଧୁନିକ କବିମାନେ କିପରି ବିଭିନ୍ନ ଉପାୟ ଅବଲମ୍ବନ କରନ୍ତି ତା' ସ୍ପଷ୍ଟ ବୁଝି ହେବ । ଦୁଇଟି କବିତାରୁ ଉଦ୍ଧୃତ ପଂକ୍ତି ଗୁଡ଼ିକରେ ବକ୍ତବ୍ୟର ବିଶେଷ ପାର୍ଥକ୍ୟ ନାହିଁ । ପାର୍ଥକ୍ୟ ଅଛି କେବଳ ପ୍ରକାଶ ଭଙ୍ଗୀରେ ।

"ଉତ୍ତରଣ"କୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଇଛି—

'ସମ୍ରାଟ', 'ସ୍ୱୟଂସମ୍ପୂର୍ଣ୍ଣ' ଓ 'ଉତ୍ତରଣ' । ପ୍ରତ୍ୟେକ ବିଭାଗରେ ନାମକରଣ ଏବଂ ସର୍ବୋପରି କବିତାର ନାମ କରଣରେ ସାର୍ଥକତା ରହିଛି । ପ୍ରତ୍ୟେକ ଭାଗ ଏକ ବିଶେଷ ମାନସିକ ଅବସ୍ଥାର 'ବିଶ୍ଳେଷଣ', ବର୍ତ୍ତମାନର ମନୁଷ୍ୟ— 'ଏକ ରୁଗ୍ଣ ଚେତନାର ପେଟଗାରର ଏକ ବିଷଧର କୁଟିଳ ସମ୍ରାଟ୍' । ଏହାହିଁ 'ସମ୍ରାଟ୍'ର ମୋଟାମୋଟି କଥା । ସେ ରୁଗ୍ଣ ଚେତନାର ପେଟରୁ ମୁକ୍ତି ପାଇଁ ଏକ ବ୍ୟାକୁଳ ପ୍ରାର୍ଥନା ପରିସ୍ଫୁଟ 'ସ୍ୱୟଂ-ସଂପୂର୍ଣ୍ଣରେ' ଓ 'ଉତ୍ତରଣରେ' ରେ ରହିଛି ଉତ୍ତରଣ ପାଇଁ କାମନା, ପ୍ରାର୍ଥନା ଓ ତାର କାଙ୍କ୍ଷିତ ଅନୁଭୂତି । ସଂକ୍ଷେପରେ ଏହାହିଁ ଏ ପାଞ୍ଚ କବିତାର ବିଷୟବସ୍ତୁ । ପ୍ରଥମ ଦୁଇଟି ବିଭାଗରେ ଈଶ୍ୱର ଅଟଳ ପ୍ରତ୍ୟୟର ଯେଉଁ ସ୍ୱର ଶୁଣାଯାଏ ତା' ଶେଷଟିରେ ନାହିଁ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଜୀବନର ଘାତ ପ୍ରତି-ଘାତ, ନିରାଶା ଓ ଆଧ୍ୟାତ୍ମିକ ଦୈନ୍ୟ ବିଷୟରେ କବିଙ୍କର ଅନୁଭୂତି ଯେପରି ପ୍ରତ୍ୟକ୍ଷ ଓ ଈଶ୍ୱର ଆତ୍ମାର 'ଉତ୍ତରଣ' ବିଷୟରେ ସେପରି ନୁହେଁ । ଅନେକ କ୍ଷେତ୍ରରେ ଏହାହିଁ ହୋଇଥାଏ ମଧ୍ୟ । ଏପରିକି "ଇନ୍ ମେମୋରିଅମ୍" ଭଳି କବିତାରେ ଏହାହିଁ ହୋଇଛି । ଏଲିଅଟ୍ ଯଥାର୍ଥରେ କହିଛନ୍ତି—

"In Memorium" is great not because of its faith which is a poor thing, but because of its doubt which is a grand spiritual experience"

'ଉତ୍ତରଣ' ପ୍ରତି ଏ ଉକ୍ତି ଏକାନ୍ତ ପ୍ରଯୁଜ୍ୟ ।

'ଉତ୍ତରଣ'ର ଭାଷା ଆଧୁନିକ କବିତାର ଭାଷାରୁ ଟିକିଏ ପୃଥକ । ଆଧୁନିକ କବିତାରେ ତତ୍ସମ, ତଦ୍ଭବ, ଦେଶଜ ଓ ବୈଦେଶିକ ସମସ୍ତ ପ୍ରକାର ଶବ୍ଦ ପାଖାପାଖି ଦେଖାଯାଏ । ଏହା ହେଉଛି ସରରିଅଲିଜମର ପ୍ରଭାବ । ଜଟିଳ ମାନସିକ ଅବସ୍ଥା ବା ଅନୁଭୂତିର ପ୍ରକାଶ ପାଇଁ ଅବଚେତନରୁ କେତେକ ଶବ୍ଦ ଆହରଣ କରିବାକୁ ପଡ଼େ । ଯେମିତି—

"ନାବାଳ ସ୍ୱପ୍ନରେ ମଟ୍ ଯେମାନେତ ଚୁକାଇଛନ୍ତି
ଚୋଟିଁକ ଉପରେ ଗୋଟିଏ ଝୁଲା ଝୁଲା ନଇଁ ନଇଁ

+ + +

ଯେମାନେ ଯମସ୍ତେ ମୃତ ଶର ମାରବାତ,
ମୁଁ ମାରୁଛି ଯମସ୍ତଙ୍କୁ, ନୈତ ନୈତ ପଥରରେ ॥

( ମାଟି ଓ ମଣିଷ )

ମାତ୍ର 'ଉତ୍ତରଣ'ର ଭାଷାରେ ଏକ ଗାମ୍ଭୀର୍ଯ୍ୟ ରହିଛି । ରହିବା ମଧ୍ୟ ସ୍ୱାଭାବିକ । ଭାଷା, ଭାବ ସାଙ୍ଗରେ ସମତାଳରେ ଗତି କରିବା ଦରକାର । କୁହାଯାଏ ଯେ ସାର୍ଥକ କବିତାରେ "Thought is born expressed !" 'ଉତ୍ତରଣ'ର ଭାବଗତ ଭାରସାମ୍ୟ ଏଇ ଭାଷାଯୋଗୁଁ ରକ୍ଷିତ ହୋଇଛି । ଯେଣ୍ଟସ୍‌ବେରୀ, "ସେକ୍‌ସପିଅର ଏଣ୍ଡ ଦ ଗ୍ରାଣ୍ଡ ଷ୍ଟାଇଲ୍" ପ୍ରବନ୍ଧରେ କହିଛନ୍ତି— ସେକ୍‌ସପିଅର୍ ଗ୍ରାଣ୍ଡ ଷ୍ଟାଇଲ୍ ପାଇଁ ନିଜର ଆବଶ୍ୟକାନୁଯାୟୀ ଭାଷା ବ୍ୟବହାର କରିଛନ୍ତି, ପୁଣି ତାହା ଭାବାବେଗ ଦ୍ୱାରା ନିୟନ୍ତ୍ରିତ ହୋଇଛି । ମିଲ୍‌ଟନ୍‌ଙ୍କ ସଂପର୍କରେ ମଧ୍ୟ କୁହାଯାଇଛି— 'ମିଲ୍‌ଟନ୍‌ଙ୍କ ଭାଷା ଜଣେ କୁଟୀରବାସୀର ଭାଷାଠାରୁ ଅଧିକ ସ୍ୱାଭାବିକ । ଏହି ଦୃଷ୍ଟିରୁ 'ଉତ୍ତରଣ'ର ଭାଷା କବିଙ୍କର ଭାବାବେଗର ପ୍ରକାଶ ପାଇଁ ଉପଯୁକ୍ତ ବାହନ ହୋଇଛି ।

କବିତାର ଶବ୍ଦ-ଯୋଜନା ଓ ଶବ୍ଦ ଗ୍ରଂଥନ ମଧ୍ୟ ଉଲ୍ଲେଖ-ଯୋଗ୍ୟ । ପରିସ୍ଥିତି ବିବୋଧି ଭାବ-ଦ୍ୟୋତକ ଶବ୍ଦ ଗ୍ରଂଥନ ଦ୍ୱାରା କବି କବିତାଟିକୁ ଶକ୍ତିଶାଳୀ କରିବାକୁ ସମର୍ଥ ହୋଇଛନ୍ତି । ଏଭଳି ଶବ୍ଦ ଚୟନରେ ଏକ ବ୍ୟଙ୍ଗର ସ୍ୱର ରହିଛି, ଯାହା କେତେକ କ୍ଷେତ୍ରରେ ସ୍ପଷ୍ଟ ଓ କେତେକ ସ୍ଥଳରେ ଏକ ଅନ୍ତଃ ସଲିଳା ଫଲ୍‌ଗୁ ଭଳି ପ୍ରବାହିତ ।

ଆଧୁନିକ ସାହିତ୍ୟରେ ସୁର୍‌ରିଅଲିଜ୍‌ମ ପ୍ରଭାବ ସ୍ପଷ୍ଟ । ସାର୍ଥ କବିତା କ୍ଷେତ୍ରରେ ମଧ୍ୟ ଏହାହିଁ ପରିଲକ୍ଷିତ ହୁଏ । ଏହାର ପ୍ରଭାବରେ କବି ମାନସ ବହିର୍ମୁଖୀ ନ ହୋଇ ଅନ୍ତର୍ମୁଖୀ ହୋଇଥାଏ । ପ୍ରଜ୍ଞା ଓ ଯୁକ୍ତିବାଦର ପ୍ରଭାବକୁ ଅସ୍ୱୀକାର କରି କବି ନିଜର ଅବଚେତନରେ ବୁଡ଼ି ତହିଁରୁ ରତ୍ନ ସଂଗ୍ରହର ଚେଷ୍ଟାକରେ । ଅବଶ୍ୟ ସେହି ସଂଗୃହୀତ ରତ୍ନକୁ ସଜାଇବା ଦାୟିତ୍ୱ କେତେକାଂଶରେ ଇନ୍‌ଟଲେକ୍‌ଟ ଉପରେ ନିର୍ଭରଶୀଳ । 'ବାଘ ଶିକାର' କବିତାରେ ଅବଚେତନ ହେଉଛି ବାଘ, ଯାହା ଆମକୁ ଗିଳିବାକୁ ଆସୁଛି । ସେହିପରି 'ମାଟି ଓ ମଣିଷ'ରେ କଂସ ହେଉଛି 'ଅମର ଦୈତ୍ୟ' । କବି ସ୍ପଷ୍ଟ ଭାବରେ ଏହାହିଁ ଉଲ୍ଲେଖ କରିଛନ୍ତି—

"ସଙ୍କୁଚିତ କାୟା ମୋର ଅନୁଭବେ କାର ଛୁଇ,
ଛୁଇ ଛୁଇ ଅନ୍ଧାରର ଛୁଇ" ।

\+ \+ \+

"ଜାତିସ୍ମର ମୋ ମନର ଅବଚେତନରେ
କାମନାର କଣ୍ଟାବୁଦା, ଭଙ୍ଗାସ୍ୱପ୍ନ ଯେତେ ଧଷ୍ଟା କାଳି"
( ମାଟି ଓ ମଣିଷ )

"ଫୁଲ କୁଣ୍ଡେ କଣ୍ଟା ଗଛ ପରି
ତମର କ୍ଷୀରର ଖଟେ ତାର ଚେର ତମକୁ ଫୋଡୁଛି
ଓ ତମର ହୃଦୟର ଅନ୍ୟ ଏକ କୋଠରୀର ବାଘ
ଛଟପଟ ହୁଏ ଏକ ପ୍ରାଣାନ୍ତକ ପିପାସା କଷ୍ଟରେ" ।
( ବାଘ ଶିକାର )

କିନ୍ତୁ 'ଉତ୍ତରଣ'ରେ ହେଉଛି ସରରିଅଲିଜମର ପ୍ରଭାବ ପରିବର୍ତ୍ତେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ (Psycho analysis) ର ପ୍ରଭାବ ଦେଖିବାକୁ ମିଳେ । କବି ଆଧୁନିକ ଜୀବନପ୍ରତି ତାଙ୍କ ମନର ପ୍ରତିକ୍ରିୟାକୁ ବିଶ୍ଳେଷଣ

॥ କବି କମଳାକାନ୍ତ

କରିଛନ୍ତି । 'ସମ୍ରାଟ୍' ଓ 'ସ୍ୱୟଂ ସଂପୂର୍ଣ୍ଣ' ଆଧୁନିକ ଜୀବନର ଏକ ବିଶେଷ ଦିଗପ୍ରତି କବି ମାନସର ପ୍ରତିକ୍ରିୟା ।

ଚିତ୍ରକଳ୍ପ ପ୍ରୟୋଗ ଦୃଷ୍ଟିରୁ କବିତାଟି ବେଶ୍ ଉଲ୍ଲେଖଯୋଗ୍ୟ । ସେ ଦିଗରେ କବି କବିତାଟିରେ ବିଭିନ୍ନ ପ୍ରକାର ପରୀକ୍ଷା କରିଛନ୍ତି । ଏବଂ କବିତାଟିକୁ ଏକ ଉନ୍ନତ ମାନକୁ ନେବା ପାଇଁ ଏହି ଚିତ୍ରକଳ୍ପହିଁ କବିଙ୍କୁ ଅନେକ ସାହାଯ୍ୟ କରିଛି । ଏଥିରେ ଅନେକ (କ) ଜଟିଳ ମାନସିକ ଅବସ୍ଥାର ରୂପାୟନ ପାଇଁ (ଖ) ଜୀବନ ଉପଲବ୍‌ଧିର ପ୍ରକାଶ ପାଇଁ (ଗ) ଜୀବନ ସମ୍ପର୍କୀୟ ଦୃଷ୍ଟିଭଙ୍ଗୀର ପରିଚୟ ଦେବାପାଇଁ ଚିତ୍ରକଳ୍ପର ସାହାଯ୍ୟ ନିଆଯାଇଛି । ତେଣୁ ଆପାତତଃ ଦୃଷ୍ଟିରେ ଅନେକ ଗୁଡ଼ିଏ ଚିତ୍ରକଳ୍ପ ସହଜବୋଧ ନୁହେଁ । ସେଗୁଡ଼ିକ ବୁଝିବାକୁ ହେଲେ କବିର ପ୍ରେରଣାଭୂମି ଓ ଜଟିଳ ଓ ମାନସିକ ଅବସ୍ଥା ପ୍ରତି ଧ୍ୟାନ ଦେବା ଆବଶ୍ୟକ ।

ଉଦାହରଣ ସ୍ୱରୂପ—

'ପିଙ୍ଗଳ ମାଟିର କଟିରେ ମୋ ଦୁର୍ବାର ତୃଷାର ମେଖଳା' ।
'ଅପୂର୍ଣ୍ଣତାର ବୃତ୍ତରେ ଏକ ଅଜ୍ଞାତ ଅବବୋଧର ବୈରାଗୀ ସଂଘାତ' ।
'ଖାରୁ ମନର ଓଢ଼ଣରେ ଫାଶି ଦେଇଛି ଅନେକ ପ୍ରାର୍ଥିତ ହସ ଓ
କାନ୍ଦୁଥିବା ମୁହଁରେ ହସିବାର ଉପକ୍ରମ' ।

ଏସବୁ ଚିତ୍ରକଳ୍ପ ଗୁଡିକରେ ଭାବଗତ ଆବେଦନ ଯଥେଷ୍ଟ ଏବଂ ଏଗୁଡ଼ିକ କବିଙ୍କର ଜୀବନକୁ ଉପଲବ୍‌ଧି କରିବାର ସ୍ୱରୂପ ଚିହ୍ନାଇ ଦିଏ ।

ଆଲୋଚ୍ୟ କବିତାର ଆଉ ଏକ ବିଶିଷ୍ଟ ଦିଗ ହେଉଛି ଏହାର ବ୍ୟଙ୍ଗମୂଳକ ସ୍ୱର । ଏଥିରେ ଜୀବନକୁ ନିର୍ମମ ଭାବରେ ବ୍ୟଙ୍ଗ କରାଯାଇଛି । ଅଧିକାଂଶ କବିତାରେ ଏହି ସ୍ୱର ଶୁଣାଯାଏ । ବ୍ୟଙ୍ଗ ଏକ

ମତ ଅଭିମତ ଭିନ୍ନମତ ॥

ସ୍ୱଚ୍ଛ ମନୋବୃତ୍ତିର ପରିଚୟସୂଚକ । କବି ଯେ ଆଧୁନିକ ଜୀବନକୁ ପ୍ରତ୍ୟକ୍ଷ ଓ ଗଭୀର ଭାବରେ ଉପଲବ୍ଧି କରିଛନ୍ତି, ତା' ଏଥିରୁ ସ୍ପଷ୍ଟ ସୂଚିତ ହୁଏ । କିନ୍ତୁ ଏ ବ୍ୟଙ୍ଗ ସେ କରିଛନ୍ତି କାହାକୁ ? ଏହା କ'ଣ ଜୀବନ ପ୍ରତି ? ସମାଜ ପ୍ରତି ? ନା ତାଙ୍କ ନିଜ ପ୍ରତି ? ମନେହୁଏ ଉପରୋକ୍ତ ସମସ୍ତ ପ୍ରକାର ବ୍ୟଙ୍ଗ 'ଉତ୍ତରଣ'ରେ ଅଛି ।

"ମୋର ଶବ୍ଦ, ବର୍ଣ୍ଣ, ଗନ୍ଧ ଓ ସ୍ପର୍ଶର ଝରକାରେ
ଦୋଷମୁକ୍ତ ହିଂସାର ତରବାରି" ।
"ଅକ୍ଷମତାର ଦମ୍ଭରୁ ବର୍ତ୍ତମାନ କୁହୁଡ଼ିର ଧୂଆଁ"
"ହେ ମୋର ଦଳ ଦଳ ଗୁଚିକେ ଓ ଭୁଜଙ୍ଗର ବଂଶଧର,
ହେ ମୋର ମଦମତ୍ତ ପ୍ରଦ୍ୟୋଜନର କ୍ଷିପ୍ର ଶୁଭ୍ର ଶିଖାର ଆଧିକ୍ୟ' !

କବିଙ୍କର ବେଦନାବୋଧ କେତେ ଗଭୀର ତାର ପ୍ରମାଣ ଉପରୋକ୍ତ ପଂକ୍ତି ଗୁଡିକରେ ସ୍ପଷ୍ଟ । କିଂତୁ 'ଉତ୍ତରଣ'ର ବ୍ୟଙ୍ଗ 'ସମ୍ରାଟ୍' ଓ 'ସ୍ୱପ୍ନ ସଂପୂର୍ଣ୍ଣ' ପରି ଶାଣିତ ଓ ତୀବ୍ର ନୁହେଁ ।

'ଉତ୍ତରଣ'ରୁ ଏକ ସ୍ୱସ୍ତିଭାବ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ବର୍ତ୍ତମାନ ସାହିତ୍ୟକୁ ଏ ଦୃଷ୍ଟିଭଙ୍ଗୀ ଗଭୀର ଭାବରେ ପ୍ରଭାବିତ କରିଛି । ଜୀବନର ଦୁଃଖ, ଦୈନ୍ୟ, ନିରାଶା ମଧ୍ୟରେ ହିଁ ଜୀବନର ସାର୍ଥକତା ନିହିତ । ଜୀବନ ଓ ସତ୍ୟ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଜୀବନର ବିଭିନ୍ନ ସମସ୍ୟା, ପ୍ରତିକୂଳତା ଓ ସଂଘର୍ଷମୁଖୀ ଚିନ୍ତାର ଆନୁଗତ୍ୟରେ ସତ୍ୟର ଦ୍ୟୁତି ପ୍ରକାଶିତ ହୁଏ । ମନେହୁଏ ଏଥିପାଇଁ କବି 'ଉତ୍ତରଣ'ରେ ପରିଷ୍କାର କହିଛନ୍ତି—

ମୋ ହୃତ୍‌ଗତରେ ତାଳଚେରର ଗୁଳି, ଗୁଳିର ସ୍ୱପ୍ନ
ଓ ସ୍ୱପ୍ନର ଭୂତ । ଅନେକ ସଂଶୟର ଛକରେ ସେମାନେ
ଠିଆହେଲେ ଏବଂ କିଛିକ୍ଷଣ ପରେ ଆର୍ତ୍ତନାଦର ସ୍ୱାକ୍ଷର
ଦେଇଗଲେ ! ଜୀବନ ଧନ୍ୟହେଲା !!"

|| କବି କମଲାକାନ୍ତ

ହେ ସମ୍ରାଟ, ହେ ସ୍ୱୟଂ ସଂପୂର୍ଣ୍ଣ ସତ୍ତାର ମାଙ୍ଗଳିକ ! ହେ ମୋ ଅଂଧ ନିର୍ମମ ବ୍ୟକ୍ତିତ୍ୱର ନମଶଃ ଉତ୍ତରଣ !! ତୁମମାନଙ୍କର ଜୟ ହେଉ, ଜୟହେଉ ମୋ ଦପ୍ତୁମୀୟ ଧାରୁଆ ଅଂଧାରର ଓ ଜୟ ହେଉ ମୋ ବିକଳ୍ପ ମମତାର" ।

'କାଳ ପୁରୁଷ', 'ବାଘ ଶିକାର' ଓ 'ମାଟି ଓ ମଣିଷ'ରେ ମଧ୍ୟ ମୋଟା ମୋଟି ଭାବରେ ଏଇ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ଜୀବନର ନବତ୍ତମ ଅନୁଭୂତି ଓ ନିର୍ମମ ସତ୍ୟର ସଂଧାନରେ ଉପରୋକ୍ତ ଦୀର୍ଘ କବିତା ଗୁଡ଼ିକ ଆମକୁ ଅଧିକ ସଚେତନ କରାନ୍ତି ।

"ଉତ୍ତରଣ"କୁ ନେଇ ଯେଉଁ ଗୁଡ଼ିଏ ସାର୍ଥକ ଦୀର୍ଘ କବିତା ଓଡ଼ିଆ ସାହିତ୍ୟରେ ଲେଖାଯାଇଛି ସେଗୁଡ଼ିକ ପୁନଃଆଲୋଚନା ସେନ୍ସିବିଲିଟୀ ପ୍ରସୂତ । ପ୍ରତ୍ୟେକଟି କବିତାରେ ଭାବବେଗ ଓ ବୌଦ୍ଧିକତା ପରସ୍ପର ଓତଃପ୍ରୋତଃ ଭାବେ ଜଡ଼ିତ । ଏଥିବୁ କବିତାର ଭିତ୍ତି ହେଉଛି— "Emotional apprehention of thought" । ତେଣୁ ମନେହୁଏ ଶତାଧିକ ବର୍ଷ ପୂର୍ବେ ଟେନିସନ୍ ଯେଉଁ ବ୍ୟାକୁଳ ପ୍ରାର୍ଥନା କରିଥିଲେ—

> "Let knowledge grow more to more
> But more of reverence in us dwell,
> That mind and soul according well
> May make one music as before."

ତାହା ଯେ ସଫଳ ହୋଇନି 'ଉତ୍ତରଣ' ତାର ସମକୋର୍ଣୀୟ କବିତା ମାନଙ୍କ ସହିତ ଏହି କଥା ସୂଚାଇ ଦେଉଛି ।

**ଅକ୍ଷୟ କୁମାର ଦାସ**
ଅଧ୍ୟାପକ, ଇଂରାଜୀ ବିଭାଗ
ଭଦ୍ରକ କଲେଜ

ମତ ଅଭିମତ ଭିନ୍ନମତ ॥

# ମୋ ଆଖିରେ

## ( ସ୍ମରଣ ବିସ୍ମରଣ - ୧୯୭୩ )

କବି ଜୀବନ ଏକ କ୍ଷେତ — ତ୍ରିକୋଣ ପରିମିତ । ସମାନ ଊର୍ଦ୍ଧ୍ୱ ବୈଶିଷ୍ଟ୍ୟ— ଯାହାର ତିନୋଟି କୋଣ ଯଥାକ୍ରମେ କ୍ଷୁଧା, ପ୍ରେମ ଓ ଯନ୍ତ୍ରଣା । ପ୍ରଥମ କୋଣ ଏକ ଅନାହତ ସ୍ଥିତି, ଦ୍ୱିତୀୟ ଏକ ଅସାମାନ୍ୟ ଆବଶ୍ୟକତା, ତୃତୀୟ ଏକ ସ୍ୱାଭାବିକ ଅନୁସରଣ । ଜୀବନର ତ୍ରିକୋଣ ଭୂମିର ସନାତନ ଶସ୍ୟ-ଅନୁଭୂତି ଓ ସ୍ମୃତି । ଜୀବନ କ୍ଷେତର ଫସଲ କଟାର ଗାନ ହେଉଛି କବିତା ।

ତେଣୁ କବିତା କେତେବେଳେ କ୍ଷୁଧାରେ କାତର, କେତେବେଳେ ପ୍ରେମରେ ମର୍ମର, କେତେବେଳେ ବା ଯନ୍ତ୍ରଣାରେ ଅସ୍ଥିର । ତଥାପି ପ୍ରେମ ଓ ଯନ୍ତ୍ରଣାର ସ୍ୱର ସାହିତ୍ୟରେ ଆଧିକ୍ୟ ରକ୍ଷାକରି ଆସିଛି । ପ୍ରେମ ଜଟିଳ, ତାତ୍ତ୍ୱିକ, ବ୍ୟାପକ ଓ ଗଭୀର । ଏହା ଦେହାତୀତ ପୁଣି ଦୈହିକ । ମାନସିକ ପୁଣି ଇନ୍ଦ୍ରିୟାନୁସାରୀ ।

Stendhal ପ୍ରେମକୁ ଚାରି ଭାଗରେ ବିଭକ୍ତ କରି "Only passionate love evokes poetry of highest order" ବୋଲି ମତ ଦେଇଛନ୍ତି । Passionate love ଆବେଗ ପ୍ରବଣ, ପୁଣି ଦେହ କୈନ୍ଦ୍ରିକ ଓ ଦାହକାରୀ । 'ସ୍ମରଣ ବିସ୍ମରଣ'ର ଆତ୍ମା ଏହି Passionate love ବା ଆବେଗପ୍ରବଣ ପ୍ରେମ । ପ୍ରେମ ପ୍ରତି କବିଙ୍କର ଦୃଷ୍ଟିକୋଣ 'ମାନଚିତ୍ର' କବିତାରେ ସ୍ପଷ୍ଟ । ତାଙ୍କ ପ୍ରେମ—

|| କବି କମଳାକାନ୍ତ

"ସମ୍ଭବତଃ ରକ୍ତର ନଈକୁ ଭିଡ଼ି
ବେଳେ ବେଳେ ରକ୍ତର ଭୁଠରେ
ଠିଆ କରାଇବା ।
ଓ
ମୁହୂର୍ତ୍ତର ଅର୍ଦ୍ଧଳ ଓ ଦର୍ମାସକ୍ତ
ଅଂଗର ସଂପଦ" ।

ଏ ପ୍ରେମ ଅନୁଭୂତି ଲବ୍ଧ । ଯନ୍ତ୍ରଣାର ମୂଲ ଦେଇ ସ୍ବୃତିର ଗନ୍ତାଘରେ ଏ ଅନୁଭୂତିକୁ ସାଇତା ହୋଇଥିଲା । ତେଣୁ ପାଠକ ଆଗରେ ଥୋଇବାକୁ ଗଲାବେଳେ ଯନ୍ତ୍ରଣାର ସ୍ୱର ସମାନ୍ତରାଳ ଭାବେ ରତ୍ତ କରିଛି । ପ୍ରେମ ଓ ଯନ୍ତ୍ରଣା ପରସ୍ପର ପରିପୂରକ । ଯନ୍ତ୍ରଣାବିହୀନ ପ୍ରେମ ଅସଂପୂର୍ଣ୍ଣ । ଯନ୍ତ୍ରଣା ଓ ପ୍ରେମର ବିମିଶ୍ରିତ ରୂପ 'ବନାନୀ', 'ଚିଠି : ସଂପର୍କର', 'ଚିଠି : ଶିମୂଳ ଓ ପଳାଶ ଫୁଲକୁ', 'ସଂପର୍କ-୨', 'ନର୍ତ୍ତକୀ', 'ରୋମାଂଥନ' ପ୍ରଭୃତି କବିତାରେ ଦେଖାଯାଏ । 'ହେ ମୋର ବାଂଧବୀମାନେ'ର—

"ଜଙ୍ଗଲର ଆକାଶକୁ ଡାକଆଣ ଯଂନ୍ତ୍ରଣାର ସାଗରେ ଗାଧୋଇ"

\+ \+ \+

"ଆଜି ତୁମେ ଏକା ଏକା । କୃଷ୍ଣଚୂଡ଼ା ଗଛ ମୂଳେ
ଠିଆହେବା ଦେଖି । କାଂଦେନା କାହିଁକି କୃଷ୍ଣ
ପରିଚିତ ଆକାଶର ମେଘ ?"

\+ \+ \+

ମୋ ସ୍ୱପ୍ନର ନଈ ଆଜି ଉକୂଳିଳା ଉତ୍କୂଳ ।
ମୋ ସମୁଦ୍ରର କଣ୍ଠେ ବିଳମ୍ବିତ କାଂଦଣାର ସ୍ୱର ।
ଆଷାଢ଼ର ଅରଣ୍ୟରେ ଚକ୍‌କଣ ଉଦାରତା,

ଯାହା ମୋର ଥିଲା ମିଳ ତରଙ୍ଗ ତ ସ୍ନାୟୁର ଭିତରେ
ମିଠା ମିଠା ଯନ୍ତ୍ରଣାର ଗୀତ" ।

'ଚିଠି : ଶିମୁଳ ଓ ପଳାଶ ଫୁଲକୁ'ର

"ମୋ ରକ୍ତ ହେଲାଣି ବୃଦ୍ଧା । ସ୍ୱପ୍ନ ମୋର ବୁଢ଼ୀ ପାଲଟିଛି ।
ଆଉ ତୁମେ ? କେଉଁ ରୁଗ୍‌ଣ ପରିସ୍ଥିତି ନଦୀର ଜଳରେ
ତୁମ ରଂଗ ଚଉପାଢ଼ୀ ଜଳିଗଲା ସମୟର ହାଓ୍ୱାରେ ଦୋହଲି" ।
"ଯାହା ହେବ ! ସତକଥା । ଯନ୍ତ୍ରଣାର ଦରିଆରେ ଡୁବ ଦେବାପରେ
ତୁମକୁ ଲେଖୁଛି ଚିଠି ସଂପର୍କିତ ମୁହୂର୍ତ୍ତର ଶାଖାରେ ଓହଳି" ।

ସଦୃଶ ପଂକ୍ତି ଭିତରେ ପ୍ରେମ ଓ ଯନ୍ତ୍ରଣା ଆଉରି ନିକଟବର୍ତ୍ତୀ, ଆଉରି ନିବିଡ଼ । କ୍ଷତର ଦାଗ କ୍ଷତକୁ, କ୍ଷତ ଯନ୍ତ୍ରଣାକୁ ଓ ଯନ୍ତ୍ରଣା ଘଟଣାକୁ ସ୍ମରଣ କରାଇଛି । ସ୍ମରଣ ଆବେଗର ସ୍ପନ୍ଦନକୁ ଘନୀଭୂତ କରିଛି । ଅଧିକାଂଶ କବିତା ତେଣୁ ଆବେଗ ପ୍ରଧାନ । କବିଙ୍କର ପ୍ରେମ Metaphysical ରୂପ ପରିଗ୍ରହ କରି ଜଟିଳ ହୋଇନି, କି ଆତ୍ମପ୍ରକାଶ କରିବାକୁ ବୈଷ୍ଣବୀୟ ପ୍ରେମ ପରି ବ୍ୟକ୍ତିନିଷ୍ଠ ଅନୁଭୂତି, ଦେହାତୀତ ଚେତନାର ମାଧ୍ୟମ ଖୋଜିନି । ଆବେଗର ଚାବିକାଠି ସ୍ମୃତିର ଗନ୍ତାଘରକୁ ଖୋଲିଦେଲା ମାତ୍ରେ, ଅନୁଭୂତି ସିଧା ସଳଖ ହୋଇ ପଡ଼ିଛନ୍ତି କବିତାର ଛାତି ଉପରକୁ । 'ଅନ୍ୟ ରୂପ ଦୁର୍ବଳ ମୁହୂର୍ତ୍ତର', 'ପୋଟଳି', 'କେଶ', 'ସ୍ତନ', 'ଶଂଖ', 'ଶାମୁକା', 'ପଥ-ରୁଷୀର ଗୀତ', 'ବନାନୀ', 'ମାଛ', 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା' ଭିତରେ ପ୍ରତ୍ୟକ୍ଷ ଇନ୍ଦ୍ରିୟ ସଂପର୍କ (Sensuousness) ସୂଚିତ । ତେଣୁ ସ୍ପର୍ଶଶୀଳ । ଏସବୁ କବିତା ଏତେ ଉଜ୍ଜ୍ୱଳ ଯେ କାହାରିକୁ ଚିହ୍ନିବା ସକାଶେ ପାଠକକୁ କଷ୍ଟ ଲାଗେନା । ଅନୁଭବ କରିବା ସମୟସାପେକ୍ଷ ହୁଏନା ।

'ସ୍ତନ' କବିତାରୁ—

"ମା'ର ସ୍ତନରୁ ମୋ ପ୍ରେମିକା ସ୍ତନକୁ
ଯୋଜନ ଯୋଜନ ଦୂର । ଏବଂ ମୋ
ସ୍ତ୍ରୀର ସ୍ତନ୍ତ୍ରକା ପ୍ରେମରେ ଯଉବନ
ଚଳାଚଳ ସାଜେ ।

+ + +

ମୋ ପ୍ରେମିକା, ମୋ ମା', ମୋ ସ୍ତ୍ରୀଙ୍କ ସ୍ତନରେ
ଜହ୍ନି ଫୁଲ, ବର୍ଷା ଏବଂ ଗ୍ରୀଷ୍ମର ଶାସନ" ।

"ମାଛ" କବିତାରୁ—

"ସଞ୍ଜ ନ ହେଉଣୁ, ରାତି ନ ପାହୁଣୁ
ତରବର ପିନ୍ଧିବାକୁ ନାଲି ନେଳି ଶବ୍ଦଙ୍କର ଶାଢ଼ୀ ?"

'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା'ରୁ—

"ଆରୋ ମୋ'ର ପ୍ରେମବତୀ ସ୍ତ୍ରୀ, ତୁମର ମାଂସଳ ଜଂଘ
ମୋ ହାତରେ ଲେଗ୍ କୋଗ୍ ବକ୍ଷ ଓ ବନ୍ଧ ନାଭି ନାଚିଯାଏ ଦେହ-
ଯାହା ଏହି ଏକୋଇଶିଆ ଶତାବ୍ଦୀର କର୍ଷାଙ୍କାରେ ଗାଧୋଇଲା ବେଳେ
ତତାଏ ମୋ କାମନାକୁ ସିଲ୍କ ଶାଢ଼ୀ ଭଳି ଦେହପରି" ।

ସଦୃଶ ଅନେକ ଉଦାହରଣ ଦେଇ ପ୍ରକାଶ ଭଙ୍ଗୀର ଧାବଲ୍ୟତା, ସ୍ପର୍ଶଶକ୍ତି ଓ ଇନ୍ଦ୍ରିୟାନୁଭୂତିର ସୂଚନା ଦିଆଯାଇପାରେ ।

ଭାଗବତର ଜଟିଳ ଦାର୍ଶନିକ ଆତ୍ମାକୁ ସାବଲୀଳ ଭଙ୍ଗୀରେ ପରିବେଷଣ କରିବାର ଆବଶ୍ୟକତା ସମ୍ୟକ୍‌ଭାବେ ଜଗନ୍ନାଥ ଦାସ ଅନୁଭବ କଲେ ଓ ଉତ୍ତର ସାଧକଙ୍କ ପାଇଁ ଏକ ଦୃଢ଼ ଆତ୍ମବିଶ୍ୱାସ ଦେଇଗଲେ ଯେ ଦର୍ଶନ ହେଉ, ବା ବୌଦ୍ଧିକତା ହେଉ, ଭାବ ଅବ୍ୟକ୍ତ ରହି ମଧ୍ୟ ତାର ପ୍ରାଞ୍ଜଳ ପରିବେଷଣ କରାଯାଇପାରେ । କିନ୍ତୁ ଆଜିର ଅଧିକାଂଶ କାବ୍ୟ-

ସାଧକ ସେ ଆତ୍ମବିଶ୍ୱାସକୁ ଗ୍ରହଣ କରିବାକୁ ଅସମର୍ଥ— ତେଣୁ ପାଠକ ନିକଟରେ ଅନେକ ସମୟରେ ଅସହାୟ । 'ସ୍ମରଣ ବିସ୍ମରଣ'ର ଅଧିକାଂଶ କବିତା କିନ୍ତୁ ଏ ଅଭିଯୋଗରୁ ମୁକ୍ତ ।

ପ୍ରକାଶ ଭଙ୍ଗୀର ନିର୍ଭୀକତା କବିତା ଗୁଡ଼ିକର ଅନ୍ୟ ଏକ ଦିଗ । 'ମାନଚିତ୍ର-୨'ର ଶେଷ ଦଶ ଧାଡ଼ି, 'ପଟଗୃହର ଟୀଚ'ର ଶେଷ ଧାଡ଼ି, 'ସ୍ତନ' ଓ 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା' ରଚନା କଲାବେଳେ କବି ନିର୍ଭୀକତା ଓ ସ୍ପଷ୍ଟବାଦିତାର ଚରମ ବିନ୍ଦୁରେ ଉପନୀତ ।

'ସ୍ମରଣ ବିସ୍ମରଣ'ର କେତେକ କବିତାରେ ପ୍ରେମର ସୂକ୍ଷ୍ମ ଓ ଉଚ୍ଚର କ୍ଷରିତ ରୂପ ଆତ୍ମପ୍ରକାଶ କରିଛି 'ଜଣେ ଅବିବାହିତା ଯୁବତୀଙ୍କ ଡାଏରୀରୁ କିଞ୍ଚିତ୍' କବିତାରେ ପ୍ରେମ ଓ ବିବାହ ପୁରାତନ ତ୍ୟାଗ ତିତିକ୍ଷାର ସାଧନା ନୁହେଁ— ଏହା କେବଳ ମଫସ୍ୱଳି ଜୀବନର ସାମୟିକ ସାନ୍ତ୍ୱନା । ତେଣୁ—

"ଆଗୋ ବାଇ, ମନ ପଡ଼ି ହେଲା ବାଇ
ବାହାହେଲେ କ୍ଷତି କ'ଣ ? ଭଳି ପ୍ରଶ୍ନର ଉତ୍ତର ସଙ୍ଗେ ସଙ୍ଗେ ମିଳି ଯାଇଛି—

"ଘର ଦ୍ୱାର, ପୁଅ ଝିଅ, ଶୃଦ୍ଧ ମୁତ
ରୋଗ, ଶୋକ, ଡ଼ିସେଣ୍ଟ୍ରି ଓ ଡ଼ାଇରିଆ ଛଡ଼ା
ହାଣ୍ଡିଗୋଳ, ମନଫଟା, ନେସା ନେସି, ଝମେଲା ଅନେକ" ।

ଏ ଗ୍ରନ୍ଥର ସନ୍ନିବିଷ୍ଟ କବିତା ଗୁଡ଼ିକର ଏକ ବିଶିଷ୍ଟ ଦିଗ— ବେଶି ଭାଗର କବିତା ଯନ୍ତ୍ରଣାଜର୍ଜର ଓ କାରୁଣ୍ୟ କାକୁସ୍ଥ । ପ୍ରାଥମିକ ଅବସ୍ଥାରେ ଭାରତୀୟ ଦର୍ଶନ ପରି ନାସ୍ତିକତା ଓ ନୈରାଶ୍ୟବାଦର ସୂଚନା ଥିଲେହେଁ, ଚୂଡ଼ାନ୍ତ ପର୍ଯ୍ୟାୟରେ ସେମାନେ ଆସ୍ତିକତା ଓ ଆଶାବାଦର ସ୍ୱରହିଁ ଶୁଣାନ୍ତି ।

'ଶିଠି ତୁମକୁ' କବିତାର—

"ମୁଁ ବଞ୍ଚିଛି ତୁମରି ସ୍ମୃତିରେ
ମୋ ସତ୍ତାର କେନ୍ଦ୍ରୀଭୂତ ଦୁଃଖ

॥ କବି କମଳାକାନ୍ତ

ଏବଂ ଦୁଃଖଂକର ସ୍ନେହସିକ୍ତ କରତାଳ
ଧ୍ୱନି ସହ ତୁମେ ହବ ମନ୍ତ୍ର ଖାଇବାରେ" ।

'ଶଠି ସଂପର୍କର' କବିତାରେ—

"ଦୂରତ୍ୱର ସଂପର୍କରେ
ଇଚ୍ଛା ଏବଂ ସଂହଣାର, ଦୁଃଖ ଏବଂ
ଆନଂଦର ବଂଦୁଟରେଇଁ ବନ୍ଦଭୂତ ହୁଏ" । ପଦ୍ଦୁଗ

ପଂକ୍ତି ଭିତରେ ଆଶାବାଦର ସ୍ୱର ସ୍ପଷ୍ଟ ।

କବିତା ଗୁଡ଼ିକର ଶୈଳୀ ନାଟକୀୟ; ତେଣୁ ଗତିଶୀଳ । ଶବ୍ଦ ଚୟନ କବିଙ୍କ ସମୃଦ୍ଧ ଶବ୍ଦ ଭଣ୍ଡାରର ସୂଚନା ଦିଏ । ମାତ୍ର କେତେକ ନିର୍ଦ୍ଦିଷ୍ଟ ଶବ୍ଦ ପ୍ରତି କବିଙ୍କର ଅତ୍ୟଧିକ ଦୁର୍ବଳତା ପ୍ରକାଶ ପାଇଛି । ବ୍ୟବହୃତ ଅନେକ ଗ୍ରାମୀଣ ଶବ୍ଦଗୁଡିକ ଶବ୍ଦ-ସଂଯୋଜନାର ପାରଦର୍ଶିତା-ପ୍ରମାଣକ । ବ୍ୟବହୃତ ପ୍ରତୀକମାନଙ୍କ ମଧ୍ୟରୁ ଅଧିକାଂଶରେ ନୂତନତ୍ୱ ନାହିଁ, କିନ୍ତୁ ଯଥା ଯଥ ଉପସ୍ଥାପନା ହୋଇଛି । 'ଶାମୁକା', 'ମାଛ', ଭଳି ପ୍ରତୀକ ଗୁଡ଼ିକ ବହୁ ପରିଚିତ । 'ପୋଖରୀ' 'ଜଙ୍ଗଲ' ଭଳି କେତେକ ପ୍ରତୀକର ନୂତନ ପ୍ରୟୋଗ ହୋଇଛି ।

ରୂପକଳ୍ପ ପ୍ରୟୋଗ ଅତି ବିସ୍ତୃତ । ରୂପକଳ୍ପ ଗୁଡ଼ିକ ସ୍ୱୟଂ ସଂପୂର୍ଣ୍ଣ, ପରସ୍ପର ନିର୍ଭରଶୀଳ ନୁହେଁ । ତେଣୁ କବିତାର ଅର୍ଥକୁ ଆବଦ୍ଧ କରିନି । ବହୁ ଗ୍ରାମୀଣ ଶବ୍ଦ ପରି ବହୁ ଗ୍ରାମ୍ୟ ରୂପକଳ୍ପର ବ୍ୟବହାର ହୋଇଛି ।

'ମାଛ' କବିତାରେ—

'ତୁ ତ ଜାଣୁ ମୁଁ ସଞ୍ଜ ଓ ସତ ଜଗିଥାଏ,
ମୋ ଦେହର ପନଖି କରେ

ତୋ ଦେହର ରୁମାଲାକ କେମିତି ଟେବେରେ' । ଭଳି ବ୍ୟାବହାରିକ ରୂପକଳ୍ପ ପର୍ଯ୍ୟନ୍ତ ପ୍ରୟୋଗ ହୋଇଛି । ଏହା ବ୍ୟତୀତ— ତୁମ ରକ୍ତର

ନକ୍ଷତ୍ରର ଆତସ ଉଡ଼ ଉଡ଼ ଖଗଦ୍ୱୀନ ଓଠର ଭଙ୍ଗୀରେ/ଶବନର ଆଲୁଅ ଗୁମ୍ଫି ସଂଜର ଜଭଟରେ ଗଣ୍ଡ ଉପସ୍ଥିତ/ଦ୍ୱିପହରର ଝରା, ରତ ରତ ସଂଜର ସିଡ଼ିକୁ ଫକ୍‌କର ଓଢ଼ଣିପଟଓ/ପବନର ପ ନାଥରେ ସବୁଜମା ସଜ ଉଚ୍ଚ ବେଣୀ/ଦ୍ରୁଷ୍ଟିତ ରୂପକଳ୍ପ ଗୁଡ଼ିକ କବିଙ୍କର ପ୍ରୟୋଗ ଦକ୍ଷତା ପ୍ରକାଶ କରେ । ଅବଶ୍ୟ କେତେକ କ୍ଷେତ୍ରରେ ରୂପକଳ୍ପର ଅତିରିକ୍ତ ଓଜନିଆ ହେଲା କବିତାର ପ୍ରକୃତ ସୌନ୍ଦର୍ଯ୍ୟକୁ ଲୁପ୍ତାଚ୍ଛନ୍ନ କରିଛି ।

'ହେ ମୋର ବାଂଛିତାମାନେ', 'ବନାମାକୁ', 'କେଶ', 'ସ୍ତନ' କବିତା ଗୁଡ଼ିକ ବର୍ଣ୍ଣନା ପ୍ରଧାନ । ସୂରେଲିଚ ଦୃଷ୍ଟିରୁ ଏଗୁଡ଼ିକ କିଛିଟା ସୂଚନାତ୍ମକ ହେବା ଉଚିତ୍ ଥିଲା । କିନ୍ତୁ ଏସବୁ ସତ୍ତ୍ୱେ କବିତା ଗୁଡ଼ିକର ଗୀତିଧର୍ମିତା ପାଠକର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରେ ।

କମଳାକାନ୍ତ ବାବୁ ଓଡ଼ିଆ କବିତା କ୍ଷେତ୍ରରେ ସୁପରିଚିତ ଓ ପ୍ରତିଷ୍ଠିତ । ତାଙ୍କ 'ସ୍ମରଣ ବିସ୍ମରଣ'କୁ ମୋ ଆଖିରେ ଯେମିତି ଦେଖିଲି, ଲେଖିଲି । ଦେଖିବାର ଭଙ୍ଗୀ ନିଜସ୍ୱ ରୁଚି ଅନୁକୂଳ । ମୋର ମନ୍ତବ୍ୟ ଉପରେ ଅନ୍ୟ ପାଠକ ନିର୍ଭରଶୀଳ ହେବା ନ ହେବା ଭିନ୍ନ କଥା ।

୨୮ । ୨ । ୭୩ — ଧୀରେନ୍ ଆଗ୍ରର୍ଯ୍ୟ

# ଶୂନ୍ୟ ସଂଚାରୀ ଦୃଷ୍ଟି

## ( ନିଜ ସହ ଗୋଟେ ସାକ୍ଷାତକାର – ୧୯୭୮ )

ସେଦିନ ପୋ (Poe) କହୁଥିଲେ, 'A long poem does not exist' । କବିଏ ପ୍ରତିବାଦ କରିଛନ୍ତି । ଏଲିଅଟ୍ ରଚନା କରିଛନ୍ତି The Waste Land ଓ Four Quartets । ତେବେ ଦୀର୍ଘ ଭଲ କବିତା

ରଚନା ଅସାଧ୍ୟ ନହେଲେହେଁ ଦୁଃସାଧ୍ୟ ନିଶ୍ଚୟ । ସମାଲୋଚକମାନେ କହନ୍ତି Four Quartets ପରେ ଇଂରାଜୀ ସାହିତ୍ୟରେ ଭଲ ଦୀର୍ଘ କବିତା ଗୋଟିଏ ମାତ୍ର ଲେଖାଯାଇଛି । ତାହା ହେଲା ଫ୍ରାଙ୍କ ପ୍ରିନ୍ସ (Frank Templeton Prince) ଙ୍କ The Old Age of Michel Angelo । ଓଡ଼ିଶାରେ ଅଳ୍ପଦିନ ତଳେ ଦୀର୍ଘ କବିତା ରଚନାର ଉତ୍ସାହ ଦେଖା ଦେଇଥିଲା । କେତୋଟି ଭଲ କବିତା ଲେଖା ଯେ ନ ହୋଇଛି, ନୁହେଁ । ହୋଇଛି । କବି ଶ୍ରୀ ଗୁରୁ ପ୍ରସାଦ ମହାନ୍ତି ଲେଖିଛନ୍ତି 'କାଳ ପୁରୁଷ', କବି ଶ୍ରୀ ରମାକାନ୍ତ ରଥ ରଚନା କରିଛନ୍ତି 'ବାଘ ଶିକାର' ଓ 'ଅନନ୍ତ ଶୟନ', କବି ଶ୍ରୀ ସୀତା-କାନ୍ତ ମହାପାତ୍ର ଲେଖିଛନ୍ତି 'ମାଟି ଓ ମଣିଷ' ଓ 'ମୃତ୍ୟୁ ନାଚ' ଇତ୍ୟାଦି । ସେଦିନର ସେହି ଉତ୍ସାହଟିକୁ କବି ଶ୍ରୀ କମଳାକାନ୍ତ ଲେଙ୍କା ଏବେବି ବଞ୍ଚେଇ ରଖିଛନ୍ତି । ସେ ରଚନା କରିଥିଲେ 'ଉତ୍ତରଣ' (୧୯୬୭) । ଏବେ ଲେଖି-ଛନ୍ତି 'ନିଜ ସହ ଗୋଟେ ସାକ୍ଷାତକାର' । କବିଙ୍କ ଆତ୍ମ ଜିଜ୍ଞାସାର ବ୍ୟାକୁଳତା କବିତାଟିରେ ପ୍ରକାଶ ପାଇଛି ଏବଂ ସେହି ସୂତ୍ରରେ କବିଙ୍କ କବିସତ୍ତା ଓ ସମାଜସତ୍ତା ମଧ୍ୟରେ ଉପୁଜିଥିବା ସଂଘର୍ଷଟି ଆଲୋକିତ ହୋଇଛି ।

ନଷ୍ଟ ମୂଲ୍ୟବୋଧ, ଭୌତିକ ସାଫଲ୍ୟକାମୀ ଆଧୁନିକ ମଣିଷର ଲୋକ ଦେଖାଣିଆ ଭଦ୍ରତା ପ୍ରତି ସମୁଦ୍ୟତ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀରୁ କବିତାଟିର ଆରମ୍ଭ । ମନେହେବ ଯେପରି କାବ୍ୟ ନାୟକ ଅଧୁନିକ ମଣିଷର ଅାଜ ନିଜ ସହିତ ସାକ୍ଷାତକାର ଘଟିଛି । ଅମ୍ପ ସଚେତନ ସେ ନିଜର ସମାଜକୁ ସତ୍ତା ସହିତ ବ୍ୟକ୍ତିସତ୍ତାର ମୁକାବିଲା କରୁଛି । କିନ୍ତୁ ଅଇଉଆ ସ୍ଥିର ରହିନାହିଁ ବେଶୀ କ୍ଷଣ । 'ବାକ୍ୟର ରସସିକ୍ତ ଉଚ୍ଚାରଣ ହେଲା କାବ୍ୟ' ପଙ୍କ୍ତି ଠାରୁ ଆଧୁନିକ ମଣିଷ ସ୍ଥାନରେ ଦେଖାଦେଲେ ସ୍ପଷ୍ଟତଃ ଅଧୁନିକ କବି । କବି ଯଥା ସମ୍ଭବ ଆଧୁନିକ କବିଙ୍କ କଥା କହିବାକୁ ଚେଷ୍ଟା କରିଛନ୍ତି । କବିତାଟିକୁ ଲେଖକ ଆମୂଳାନ୍ତ ବୁଝିଛି ବୋଲି କହିପାରୁନାହିଁ । ତେବେ ଶେଷ ପର୍ଯ୍ୟନ୍ତ କବିତାର ଥିମ୍ ହେଉଛି କବିଙ୍କ କବିସତ୍ତା ଓ ସମାଜସତ୍ତା ମଧ୍ୟରେ ବର୍ତ୍ତମାନ ଚିରନ୍ତନ ସଂଘର୍ଷ । ଏକ ପକ୍ଷରେ କବି ଜଣେ ସାମାଜିକ ମଣିଷ, ତାଙ୍କର

ବ୍ୟକ୍ତିଗତ ଜୀବନ ଅଛି । ଅନ୍ୟ ପକ୍ଷରେ ସେ ମଧ୍ୟ ମଣିଷର ଏକ ନୈର୍ବ୍ୟକ୍ତିକ ସୃଷ୍ଟି ପ୍ରକ୍ରିୟା । ୟୁଙ୍ଗ୍‌ଙ୍କ ଭାଷାରେ କବିଙ୍କୁ Man ନକହି Collective man କହିବା ସମୀଚୀନ । ସେ ସାଧାରଣ ମଣିଷଟିଏ ମାତ୍ର ନୁହନ୍ତି ବୋଲି ତାଙ୍କୁ ସମାଜ ତଥା ନିଜର ବ୍ୟକ୍ତିଗତ ଆଶାଭିଳାଷ ସହିତ ଉଭୟଙ୍କ ସଂଘର୍ଷ କରିବାକୁ ହୁଏ । କବିଙ୍କ ଭିତରର ସାଧାରଣ ମଣିଷଟି ସମାଜ ଜୀବନର ସୁଖ ଶାନ୍ତି ଓ ନିରାପତ୍ତା ଅନ୍ୱେଷଣ କରୁଥିଲା ବେଳେ ଦୁର୍ଜ୍ଜୟ ସୃଷ୍ଟି ପ୍ରବଣତା ତାଙ୍କୁ ସତ୍ୟ-ଶିବ-ସୁନ୍ଦରର ଆରାଧନା କରିବାକୁ ପ୍ରବର୍ତ୍ତାଏ । କବି ଶ୍ରୀ ଲେଙ୍କାଙ୍କ ଭାଷାରେ ସମାଜ ତାଙ୍କୁ ସତର୍କ କରୁଛି— ସହଜ ହୁଅନାହିଁ······ ଆବଶ୍ୟକସ୍ଥଳେ ପିଠା ଖଜା ଗୁଣ୍ଠି ବାଣ୍ଟିଚାଲ କ୍ଲାନ୍ତି ଭୁଲିଯାଅ ।'' ପିଠା ଖଜା ଗୁଣ୍ଠିବାର ଆଶାଳୀନ ଆଚରଣରୁ ବର୍ତ୍ତମାନ ଜୀବନର ରୁଚି ଓ ସୌନ୍ଦର୍ଯ୍ୟବୋଧ ପ୍ରତି କଠିନ ବ୍ୟଙ୍ଗ ସମୁଦ୍ୟତ ନାହିଁକି ? କବି ଚୈତନ୍ୟ ପ୍ରଚଳିତ ସାମାଜିକ ଜୀବନକୁ କେବେ ଶ୍ରଦ୍ଧାଦୃଷ୍ଟିରେ ଦେଖେନାହିଁ । କବି ଜାଣିଛନ୍ତି ତୃତୀୟ ଚକ୍ଷୁରେ ଚାହିଁଲେ ଚହ୍ଲାଜଗତ ବଡ଼ ଆବସର୍ଡ ମନେ-ହୁଏ । ତେଣୁ ସେ କହନ୍ତି— "ଈଶ୍ୱରଙ୍କ ତୃତୀୟ ଚକ୍ଷୁର ଭୁବନରେ ଯେ ପଡ଼ିଛି ସେ ଜାଣେ : ଈଶ୍ୱରଙ୍କ ଅନ୍ତଃସତ୍ତ୍ୱ ।'' ଈଶ୍ୱର ଏଠି କବି, କବିତା ଈଶ୍ୱରୀ । ଏହି ତୃତୀୟ ଚକ୍ଷୁରେ ଚାହିଁବା ସବୁ କବିଙ୍କର ପ୍ରାପ୍ୟ ମୁଦ୍ରାଦୋଷ । (ସ୍ୱର୍ଗୀୟ କବି ଶ୍ରୀ ଚିନ୍ତାମଣି ବେହେରାଙ୍କ 'ତୃତୀୟ ଚକ୍ଷୁ' କାବ୍ୟ ସଂକଳନ ନାମ) ସେଇଲାଗି ସେ ବଡ଼ ନିଃସଙ୍ଗ, ବଡ ବିଚ୍ଛିନ୍ନ ଓ ଅସାମାଜିକ । ଅନନ୍ୟ ସୃଷ୍ଟି କ୍ଷମତାଲାଗି ତାଙ୍କୁ କିଛି କମ କ୍ଷତି ପୂରଣ ଦେବାକୁ ହୁଏ-ନାହିଁ । 'କବିର ଫୁଲ ବଗିଚାରେ କାହାର କଣ୍ଟାମୁଣ୍ଡି ?' ସେ କଣ୍ଟା ମୁଣ୍ଡିକି ସବୁଦିନେ କବିଙ୍କର । ସୃଷ୍ଟିକ୍ଷମତା ବଳବତ୍ତର ହେଲେ କବିଙ୍କ ବ୍ୟକ୍ତିସତ୍ତା ଓ ସମାଜ ସତ୍ତା ଚିରଦିନ ବିପନ୍ନ ହୋଇଉଠନ୍ତି ନାହିଁ କି ? ତେଣୁ ନିଜକୁ ସଂପିବା, ନିଜକୁ ଗଂପିବା, ଓ ନିଜକୁ ଛେଚିବା ଛଡ଼ା ତାଙ୍କର ଗତ୍ୟନ୍ତର ନଥାଏ । କାବ୍ୟର ଉପସଂହାରରେ କବି ଶ୍ରୀ ଲେଙ୍କା ହୁଏତ ତାହିଁରୁ କବିତାର ସୃଷ୍ଟି ବୋଲି ସୂଚାଇଛନ୍ତି । "ନିଜକୁ ସଂପିବା ଛଡ଼ା, ନିଜକୁ ଗଂପିବା ଛଡ଼ା, ନିଜକୁ ଛେଚିବା ଛଡା ଯଦି କିଛି ଥାଏ ଅନ୍ୟ ବାଟ,

ଅନ୍ୟ ସତ୍ତା ··ତାହାହିଁ କବିତା ।'

ଆଧୁନିକ କବି ମାନେ ମୃତ୍ୟୁର କବି । ଶ୍ମଶାନରେ ଥାଇ ମୃତ୍ୟୁ ଚୈତନ୍ୟକୁ ଭୁଲିବ ବା କିଏ ? ତେବେ ଶ୍ରୀ କେଙ୍କା ମୃତ୍ୟୁର ଶୁଭଙ୍କର ରୂପ ଦେଖିଛନ୍ତି । ତାଙ୍କ ପାଇଁ 'ମୃତ୍ୟୁ ବୋଲି କିଛି ନାହିଁ, ଯାହା ଖାଲି ପ୍ରଚଳିତ ବିଶ୍ବାସର ଗ୍ରଂଥିର ମଳିଛି ।' ପ୍ରକୃତରେ ମୃତ୍ୟୁ ଜୀବନର ଶୁଚିସ୍ନାନ । ମୃତ୍ୟୁ ମଧ୍ୟରେ ଜୀବନ କ୍ରମାଗତ ରୂପାନ୍ତରିତ ହୁଏ । ତେଣୁ 'ଅପରେ ତାକୁ ରଙ୍ଗ-ଦେଲେ, ଯାକି ନେଲେ, ଆଶ୍ଳେଷିଲେ ମନେହୁଏ/ବସନ୍ତ କି ଲେଉଟାଣି ଫେରୁଛି ପୁନଶ୍ଚ/କବିର ରାଜ୍ୟକୁ, କବିତାର ସୁନିର କ୍ଷେତକୁ ।'

ଯୁଗେ ଯୁଗେ କବିଙ୍କୁ ନିଜର ବ୍ୟକ୍ତିସତ୍ତା ଓ ସମାଜସତ୍ତା ସହିତ ଲଢି କବିତାକୁ ବଞ୍ଚାଇବାକୁ ହୋଇଥାଏ । ଆଜି ତାଙ୍କ ସଂଘର୍ଷର କ୍ଷେତ୍ର ପ୍ରଶସ୍ତତର ହୋଇ ଉଠିବାରୁ ଦାୟିତ୍ୱ ମଧ୍ୟ ବଢିଯାଇଛି । କାରଣ ଆଧୁନିକ ଜୀବନ ଓ ସମାଜ କବିତାର କୌଣସି ପ୍ରୟୋଜନ ଦେଖେନାହିଁ । କିନ୍ତୁ ଜୀବନରେ କବିତାର ସ୍ଥାନ ଅଛି । ଜେମ୍ସ ରିଭସ୍ (James Reeves) କହିଛନ୍ତି— There has probably never yet been a civilisation without poetry of some sort. Can twentieth century man be the first to attempt to men of all previous ages, how can the twentieth century do without it ? (The Modern Poets' World— Introduction) ବିଂଶ ଶତାବ୍ଦୀ କବିତା ବିନା ବଞ୍ଚିବାକୁ ଚାହୁଁଛି । ତାକୁ ସେହି ନିଦାରୁଣ ଇଚ୍ଛାରୁ କବି ଯେ କେମିତି ରକ୍ଷା କରୁଛନ୍ତି, ତାହାର ଏକ କାବ୍ୟିକ ବିବରଣୀ କବିତାରୁ ଯେ କେହି ଲକ୍ଷ୍ୟକରି ପାରନ୍ତି । ଆଧୁନିକ ମଣିଷ ପ୍ରତି କବିଙ୍କ ଦୃଷ୍ଟିଭଙ୍ଗୀ ବ୍ୟଙ୍ଗାତ୍ମକ ନିଷ୍ଠୁର । କିନ୍ତୁ ଅନୁଦାର ନୁହେଁ । ତାହାର ନାସ୍ତିକ୍ୟ-ଚେତନାକୁ ସେ ଆଘାତ କରିଥିଲେ ମଧ୍ୟ ଆତ୍ମ ସଂଘର୍ଷ ଓ ଅସହାୟତାରେ ସମ୍ବେଦନଶୀଳ

ଭାବ ଦିଗରୁ କବିତାଟି ଦରିଦ୍ର ନୁହେଁ । କବି ମାନେ ଗୃହାଁନ୍ତି ହେବେ ବଶ୍ୟବାକ୍ । କିନ୍ତୁ କବି ଶ୍ରୀ ଲେଙ୍କା ଏ ଗ୍ରନ୍ଥରେ ବାକ୍‌ବଶ । ଭାଷା ତାଙ୍କୁ ଆଜ୍ଞାଧୀନ କରାଇଛି । ନିରର୍ଥକ ଶବ୍ଦ ପ୍ରୟୋଗରେ ଶ୍ରୁତିସୁଭଗ ଅବାନ୍ତର ଅନୁପ୍ରାସିକ ଛଟା ସୃଷ୍ଟି କବିଙ୍କ କାବ୍ୟ ଭାଷାର ଅନ୍ୟତମ ଦୁର୍ବଳତା । ଯେ କୌଣସି କବିଙ୍କ ପାଇଁ ଶବ୍ଦର ସାର୍ଥକ, ସୁମିତ ଓ ସୁନ୍ଦର ପ୍ରୟୋଗହିଁ ବଡ଼ କଥା । 'ଯେ କୁରଡିଆ ହାଇର ହାଇକୁ/ମୁଁ ରଣକ୍ଷେତ୍ରର କ୍ଳୁନାଳ ଦେଖିଲି ମୋ କୁଂଡଳମାର କୁଣ୍ଡଳ ଚକ୍ରରେ/ରାତିର ଅନ୍ଧାର ହଜେ ଗୁଣ୍ଡୁଗୁଣ୍ଡୁ ରୁଣ୍ଡୁଝୁଣ୍ଡୁ ଚଂପୂର ଚଂପାରେ/କନ୍ଦୁକ ଦୋଳୁଥିଲି ବେଳେ କବି ମଳୁଆଳ/ସିନ୍ଦୁକ ଖୋଲୁଥିଲି ବେଳେ ଘଣ୍ଟି ଆଳ/ଚନ୍ଦ୍ରମା ଚାଟିବା ନ୍ୟାୟରେ ଚିଁ ଚିଁ କରେ ଚେମେଣିଆ,' ଇତ୍ୟାଦି ପ୍ରୟୋଗ ଆଲୋଚ୍ୟ କବିତାରେ ଶବ୍ଦର ଅପଚୟ ଭିନ୍ନ ଅନ୍ୟ କିଛି ନୁହେଁ । ଶବ୍ଦ ମୋହରେ କବି ନିଜକୁ ଠାଏ ଭଣ୍ଡ କବି ବୋଲି ମଧ୍ୟ କହି ପକାଇଛନ୍ତି । କାବ୍ୟ ନାୟକ କବି ଭଣ୍ଡ କାହିଁକି ହେବେ ? 'ଈଶ୍ୱର' ଶବ୍ଦଟିର ପ୍ରୟୋଗ ଏଥିରେ ବୋଧହୁଏ ବିଭିନ୍ନ ଅର୍ଥରେ କରାଯାଇଛି । 'ଈଶ୍ୱରଙ୍କ ତୃଷ୍ଣାପୂ ଚକ୍ଷୁର ଭୁବନରେ ଯେ ପଡ଼ିଛି ସେ ଜାଣେ ଈଶ୍ୱରୀ ଅନ୍ତଃସତ୍ତ୍ୱା ।' ପଙ୍‌କ୍ତିର ଈଶ୍ୱର ଯେବେ କବି ହୁଅନ୍ତି ତେବେ 'କହିଙ୍କୁ ଚୋଟେ ପାହାରରେ ମୂର୍ଚ୍ଛା କରିଦେଲି ଈଶ୍ୱର' ପଙ୍‌କ୍ତିର ଈଶ୍ୱର କିଏ ? ଏହି ଈଶ୍ୱର କିଏ ? ଏହି ଈଶ୍ୱର ହୋଇପାରନ୍ତି ଆଧୁନିକ ସମାଜର ପ୍ରତିଭୂ । ଗୋଟିଏ ଶବ୍ଦ-ପ୍ରତୀକ ଗୋଟିଏ କବିତାରେ ଯେବେ ଏପରି ବିଭିନ୍ନ ଭାବାନୁଭୂତିର ବାହକ ରୂପେ ପ୍ରଯୁକ୍ତ ହୁଏ, ତେବେ ପାଠକ ଅସହାୟତା ଅନୁଭବ କରିବା ସ୍ୱାଭାବିକ । ଗାଁ ଲୋକଙ୍କ ମୁହଁରୁ ଭାଷା ଛଡ଼ାଇ ଆଣି ସେଥିରେ କବିତା ଲେଖିବାର ବେପରୁଆ ଭଙ୍ଗୀଟି କବିଙ୍କର କିଛି କମ୍ ପ୍ରଶଂସାଯୋଗ୍ୟ କଥା ନୁହେଁ । ମାତ୍ର ସେ ତା'ହାର ଅପପ୍ରୟୋଗକୁ ପ୍ରଶ୍ରୟ ଦେଇ କବିତାର ଭାବ ସଂହତିକୁ ନଷ୍ଟ କରି ଦିଅନ୍ତି । ଏହା ତାଙ୍କ କବିତାର ଜ୍ଞାତ ଶତ୍ରୁ । ଅଯଥା ପରିପାଟୀ ପାଇଁ କାବ୍ୟ ଭାଷାର ଦୀପ୍ତି ଓ ଶକ୍ତି ଉଭୟ ନଷ୍ଟହୁଏ । ସେଦିନ ଡ଼ିଲନ୍ ଟମାସ୍‌ଙ୍କ କବିତା ପ୍ରତି ଷ୍ଟିଫେନ୍ ସ୍ପେଣ୍ଡର ଯେଉଁ ମନ୍ତବ୍ୟ ଦେଇଥିଲେ

ଅନେକ ବିଶୃଙ୍ଖଳ କାବ୍ୟ ଭାଷା ଯୋଗୁଁ ଏହି କବିତା ପାଇଁ ଉଦ୍ଧାର କରି କହିପାରିବା!— "Just poetic stuff with no beginning or end or intelligent and intelligible control.' କବିଙ୍କର ସତର୍କତା ଆମେ ଆଶା କରିପାରିବା ।

କବି ବନ୍ଧୁ ଶ୍ରୀ କମଳାକାନ୍ତ ଲେଙ୍କା ଲେଖକଙ୍କୁ 'ନିଜ ସହ ଟୋଟେ ସାକ୍ଷାତକାର' ବୁଝି ବୁଝାଇବାର ଯେଉଁ ଦାୟିତ୍ୱ ଦେଇଛନ୍ତି, ତାହା ସୁରୁଚି ରୂପ ସଂପନ୍ନ କରିଥିବାର ଆଶା ସେ ଆଦୌ ରଖିନାହାଁନ୍ତି । ଆଲୋଚ୍ୟ ଗ୍ରନ୍ଥରେ କବିଙ୍କର ଭାଷା ଦୁର୍ବଳତା ଦର୍ଶାଇଥିବାର ଅନୁଦାରତାକୁ ସେ ଭୁଲ ବୁଝନ୍ତୁ ନାହିଁ । ଲେଖକ ତାଙ୍କ ଉଜ୍ଜ୍ୱଳ କବି କୀର୍ତ୍ତି କାମନା କରୁଛି ।

**ଦାଶରଥି ଦାସ**

ଭୁବନେଶ୍ୱର, ୨୫ । ୧୧ । ୭୭

# ମୋ ଦୃଷ୍ଟିରେ ସ୍ରୋତର ନାମ

## ( ସ୍ରୋତର ନାମ ରକ୍ତ – ୧୯୬୮ )

ସଂସ୍କୃତିର ବିବର୍ତ୍ତନ ଅନୁସାରେ ମନୁଷ୍ୟ ଏକ ଚତୁଷ୍ପଦ ଯେ କି ନିଜକୁ ଏକ ମହାଚତୁଷ୍ପଦରେ ରୂପାନ୍ତରିତ କରିଛି । ଚତୁଷ୍ପଦ ସଦୃଶ ତାହାର ଗତି ଆନୁଭୂମିକ, ସ୍ଥିତି ସଂଘର୍ଷ ଭିତ୍ତିକ ଓ ଦୃଷ୍ଟି ଅଭିଜ୍ଞତାଶ୍ରୟୀ । ପରିବେଶ ଓ ବାସ୍ତବତା ସହିତ ନିତ୍ୟ ନିୟମିତ ସଂଘାତ ଓ ପ୍ରତିଘାତ ଫଳରେ ମାନବର

ମତ ଅଭିମତ ଭିନ୍ନମତ ॥

ସତ୍ୟକାମ ଅଭିଜ୍ଞତା ଓ ଅନୁଭୂତିଗୁଡ଼ିକ ଯୁଗାନୁକ୍ରମିକ ଧାରାରେ ବିକାଶ ଲାଭକରେ । ଯୁଗ ଚେତନା ତଥା ବ୍ୟକ୍ତି ମାନସର ଅନ୍ୱେଷା ଏବଂ ସୃଜନ-ଶୀଳତା ଯୋଗୁ ବିଜ୍ଞାନ ଓ କଳାର ଉଦ୍‌ଭବ ହୁଏ, ଯାହାର ସମନ୍ୱୟରେ ଗଢ଼ି ଉଠେ ସଂସ୍କୃତି । ସଂସ୍କୃତି ସଚେତନ ପ୍ରତିଟି ମନୁଷ୍ୟ ଏକ ଏକ ତରୁ—ତରୁ ସଦୃଶ ତାହାର ଗତି ଊର୍ଦ୍ଧ୍ୱମୁଖୀ, ଉତ୍ତରଣଶୀଳ, ସ୍ଥିତି ପରଂପରାର ମୂଳଧାରା ଉପରେ ପ୍ରତିଷ୍ଠିତ ଏବଂ ଦୃଷ୍ଟି ପରିଦୃଶ୍ୟତାର ସଂଭାବନାରେ ପ୍ରସାରିତ ।

କଳା ମାନବର ଅନ୍ତର୍ନିହିତ ସୃଜନଶୀଳ ସମ୍ଭାବନାର ଏକ ରୂପମୟ ପ୍ରକାଶ; କବିତା ତା'ର ଏକ ବାଙ୍‌ମୟ ରୂପ । ଅବଶ୍ୟ ପ୍ରତି ଯୁଗରେ କବିତାର ମୂଳ ଅନୁଭୂତି ଓ ଆଶ୍ରିତ ବାଗ୍‌ରୀତି ସ୍ୱାତନ୍ତ୍ର୍ୟମୟ, ପୁଣି ବ୍ୟକ୍ତି ମାନସର ବୈଶିଷ୍ଟ୍ୟ ଅନୁଯାୟୀ ସେହି ସ୍ୱାତନ୍ତ୍ର୍ୟ ବୈଶିଷ୍ଟ୍ୟ ମଣ୍ଡିତ ଠିକ ଯେପରି ପ୍ରବାହମାନ ସ୍ରୋତର ପ୍ରତି ମୋଡ଼ରେ ତା'ର ଗତି ଓ ରୂପ ଏବଂ ଅନ୍ତର୍ଗତ ଧାରା ଓ ଆବର୍ତ୍ତଗୁଡ଼ିକ ବୈଶିଷ୍ଟ୍ୟମୟ । ଅଥଚ ସମଗ୍ର ଭାବରେ ଯେ କୌଣସି ଦେଶର କବିତାର ଏକ ନିର୍ଦ୍ଦିଷ୍ଟ ପରଂପରା ଅଛି, ଯାହା ଯୁଗାନୁକ୍ରମିକ ପରିବର୍ତ୍ତନଶୀଳତା ମଧ୍ୟରେ କବିତାର ସତ୍ତାକୁ ଯୁଗୋପଯୋଗୀ କରି କବିତା ପ୍ରବାହକୁ ଚିରସ୍ରୋତା ଓ ଅନାବିଳ ରଖିଥାଏ । ଯୁଗ ଚେତନାର କ୍ରମିକ ଅବକ୍ଷୟ ଯୋଗୁ କବିତାର ଧାରା ଯେତେବେଳେ ନିଜର ଜୀବନୀ ଶକ୍ତିକୁ ହରାଇ ମୁମୂର୍ଷୁ ଓ ଶୁଷ୍କପ୍ରାୟ ହୋଇପଡ଼େ, ନୂତନ ଯୁଗର କବି ନବାଗତ ସମୟର ପରିପ୍ରେକ୍ଷିତରେ ଅତୀତର ପରଂପରାକୁ ନୂତନ ଜୀବନ୍ୟାସ ଦେଇ ଭଗୀରଥ ଧରି ସେହି ଧାରାକୁ ନୂତନ ରୂପରେ ଆବାହନ କରନ୍ତି । ଫଳତଃ କବିତା ପୁନଶ୍ଚ ଯୁଗ ଚେତନାର ଜୁଆରରେ ଭରପୂର ହୋଇଉଠେ ।

କବିତା ନୂତନ ନୁହେଁ, ଯଦିଚ ନୂତନ ଯୁଗର କବି ନିଜର ନୂତନ ଚେତନାକୁ ନୂତନ ବାକ୍‌ ଭଙ୍ଗୀରେ ପ୍ରକାଶ କରିଥାନ୍ତି । ଯୁଗ ଚେତନା ସହିତ

କ୍ରମାଗତ ସମୀକୃତ ହୋଇଥିବାରୁ କବିତାର ଅନ୍ତର୍ନିହିତ ସତ୍ୟଟି କାଳକ୍ରମେ ବ୍ୟାପକ ଓ ଗଭୀରତର ହୋଇଥାଏ । ମନେରଖିବା ଉଚିତ ଯେ କବିତା ପ୍ରମୋଦ ଉଦ୍ୟାନର ନର୍ମାଳୀ ପୁଷ୍ପ ନୁହେଁ । କିମ୍ବା ନନ୍ଦନକାନନର ପାରିଜାତ ନୁହେଁ । ଏହା ପରମ୍ପରା ପୁଷ୍ଟ କୌଣସି ସଚେତନ ସ୍ରଷ୍ଟାର କାବ୍ୟାନୁଭୂତିରୁ ବିକଶିତ ଜୀବନବୋଧର ଏକ ନାନ୍ଦନିକ ଫଳ । ଜୀବନର ଜଟିଳତା, ସୁଖ-ଦୁଃଖ, ରକ୍ତ ମାଂସ ଏବଂ ମନ ଗହନର କୁସୁମ ଓ କୀଟ - ଏ ସବୁକୁ ନଚାଡ଼ି ନଗାଡ଼ି କବି ବଞ୍ଚିବାର ଯେଉଁ ନର୍ଯ୍ୟାସ ଟିକକର ସନ୍ଧାନ ପାଆନ୍ତି, ତାହାକୁ ହିଁ ଭିତ୍ତିକରି ରୂପାୟିତ କରନ୍ତି କବିତା । ତେଣୁ କବିତା ଅନୁଭୂତ ସତ୍ୟର ସ୍ପନ୍ଦନ ବହନ କରେ ।

ସତ୍ୟର ନିର୍ଦ୍ଦିଷ୍ଟ ରୂପ ନାହିଁ । ବୈଜ୍ଞାନିକ ସତ୍ୟ ଯୁକ୍ତିଯୁକ୍ତ ଉକ୍ତି ଦ୍ୱାରା ପ୍ରତିପାଦିତ ଓ ପ୍ରମାଣସିଦ୍ଧ । କବିତାର ସତ୍ୟ ପ୍ରତ୍ୟୟାତ୍ମକ ଉକ୍ତି ଦ୍ୱାରା ଉପସ୍ଥାପିତ ଏବଂ ଅନୁଭବବେଦ୍ୟ । ଅନୁଭୂତ ସତ୍ୟର ଧର୍ମ ଏକ ଦିଗରୁ ନୂତନ ଦିଗନ୍ତକୁ ପ୍ରସାରିତ ହେବ । ଏହି ପ୍ରକାର ସତ୍ୟର ଉତ୍ତରଣ ଓ ବ୍ୟାପ୍ତି, ଗତି ଓ ଭୂତି ନିରବଚ୍ଛିନ୍ନ । କୌଣସି କବିଙ୍କର କ୍ରମାଗତ ସାଧନାର ପରିସରରେ ତାଙ୍କର ଜୀବନବୋଧର ଯେଉଁ ବିକାଶ ଘଟିଥାଏ ତାହା ମଧ୍ୟ ଏକ ଅବିଚ୍ଛିନ୍ନ ଧାରା । ବାସ୍ତବିକ ଜଣେ କବିଙ୍କର କାବ୍ୟାନୁଭୂତ ସତ୍ୟ ମଧ୍ୟ କାବ୍ୟ ପରମ୍ପରାର ଏକ ପ୍ରସ୍ତରଣ ବା ( Cross section ) । ପରଂପରା ସତ୍ତ୍ୱଶ ଏହାର ପ୍ରତୀକ ପ୍ରବାହ— ତରୁ, ସ୍ରୋତ, ଆଲୋକ କିମ୍ବା ଅନ୍ୟ କିଛି । ପ୍ରତୀକ ଦୃଷ୍ଟିରୁ ତରୁ ଓ ସ୍ରୋତ ଏକ, ଯେପରି ବହ୍ନି ଓ ଗୋଲାପ ଏକ । ସ୍ରୋତ, ସତ୍ୟ ବି ଋତର ଏକ ସାଙ୍କେତିକ ରୂପ । କାରଣ ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ଯାହା ସତତ ଅଗ୍ରଗାମୀ ଓ ଅସ୍ଥିର, ତାହା ପୁଣି ଉତ୍ପତ୍ତି ଓ ସଙ୍ଗମର କଳ୍ପିତ ସୀମା ମଧ୍ୟରେ ଏକ ଆପାତତଃ ସ୍ଥିର ଓ ଶାଶ୍ୱତ ସତ୍ତା । ଏହି ଦୃଷ୍ଟିରୁ 'ସ୍ରୋତର ନାମ ଋତ' (The stream called Truth) ଶୀର୍ଷକଟି ସମ୍ପୃକ୍ତ ସଚେତନ କବିଙ୍କର ଅନୁଭୂତିର ବିକାଶଶୀଳ ସତ୍ୟତା ସମ୍ପର୍କରେ ନିର୍ଦ୍ଦିଷ୍ଟ ସୂଚନା ବହନକରେ ।

ମତ ଅଭିମତ ଭିନ୍ନମତ ॥

।।•୩୮ ।।



ଉତ୍ତର ଚାଳିଶରୁ ଆରମ୍ଭ ହୋଇଥିବା ଓଡ଼ିଆ ଆଧୁନିକ କବିତାର ବିକାଶ ବିଭିନ୍ନ ପରୀକ୍ଷଣ ସତ୍ତ୍ୱେ ମୋଟାମୋଟି ଆଶାପ୍ରଦ ଭାବରେ ଗତିଶୀଳ । ବିଗତ ତିନି ଦଶନ୍ଧି ଏହାର ତିନୋଟି କ୍ରମିକ ପର୍ଯ୍ୟାୟର ସୂଚନା ଦିଏ । ପଞ୍ଚମ ଦଶକର କବିତା ମୁଖ୍ୟତଃ ସଂଗ୍ରହାତ୍ମକ । ଏ ସମୟର ସ୍ରଷ୍ଟାମାନେ ଗତାନୁଗତିକତାରେ ଆବଦ୍ଧ କବିତାର ଗତିଧାରାକୁ ମୁକ୍ତ କରିବାକୁ ଯାଇ ନୂତନ ଅନୁଭୂତି ଓ ନୂତନ ବାଗ୍‌ବିଧିର ଅନୁକରଣ କରିଛନ୍ତି । ଏହାର ଆଧୁନିକୀକରଣ ନିମନ୍ତେ ଗଙ୍ଗା ଓ ଗୋଦାବରୀ ପରିବର୍ତ୍ତେ ଟେମସ୍ ଓ ରାଇନ୍ ନଦୀର ସନ୍ନିଧି ଦେଖାଇଛନ୍ତି କବିତାର ପ୍ରବାହ ମଧ୍ୟରେ ଏବଂ କୁରୁକ୍ଷେତ୍ର ଓ ପ୍ରଭାସର ବାଲୁକା ପରିବର୍ତ୍ତେ ଦେଖିଛନ୍ତି ଲଣ୍ଡନ ଓ ପ୍ୟାରିସ ସହରର ଉପାବଦ୍ଧ ଦୃଶ୍ୟ । ଫଳତଃ କବିତାର ନିଜସ୍ୱ ପ୍ରାଣ ଧାରାଟି ବୈଦେଶିକ ଉପାଦାନ ଓ ରୀତିର ପ୍ରାଥମିକ ସଂଘର୍ଷରେ ଯେତିକି ବ୍ୟସ୍ତ ଓ ବିକ୍ଷୁବ୍ଧ ହୋଇ ଉଠିଛି ସେହି ଆଲୋଡ଼ନ ମଧ୍ୟରେ କବିତାର ଆବେଦନଟି ସେତିକି ଅସ୍ପଷ୍ଟତର ହୋଇଯାଇଛି । ତେଣୁ ପରବର୍ତ୍ତୀ ଦଶକର ସ୍ରଷ୍ଟାମାନେ ବହିରାବରଣରୁ ଦୃଷ୍ଟି ପ୍ରତ୍ୟାହାର କରିଆଣି ନାନାବିଧ ପରୀକ୍ଷା ନିରୀକ୍ଷାରେ ପ୍ରବୃତ୍ତ ହୋଇଛନ୍ତି । ଏହି ଦଶନ୍ଧିର କବିତା ମୁଖ୍ୟତଃ ପ୍ରୟୋଗାତ୍ମକ । ବୁଦ୍ଧିବାଦୀ ବିଶ୍ଳେଷଣ, ଚିତ୍ରକଳ୍ପର ଅତିବାଦୀ ବହୁଳତା, ସୂଚନାତ୍ମକତା, ଗ୍ରନ୍ଥିବାଦୀ ଅସ୍ପଷ୍ଟତା, ଦୃଶ୍ୟବସ୍ତୁର ଅନ୍ତରାଳରେ ଥିବା ଅବିଶେଷ ଭାବ (abstract) ର ରୂପାୟନ, ମିଥ୍ ଓ ତାତ୍ପର୍ଯ୍ୟିକ ଆପେକ୍ଷିକତାର (Objective correlative) ବ୍ୟବହାର, ଚିତ୍ର ଏବଂ ସଙ୍ଗୀତର ସମଧର୍ମୀ ଗଠନ ଭଙ୍ଗିମା, ବିଭିନ୍ନ ବାଗ୍‌ବିଧିର ସମନ୍ୱୟ ପ୍ରଭୃତି ପରୀକ୍ଷଣ ଫଳରେ ଦୁର୍ବୋଧ୍ୟତାର ଚାପ ଯେତେ ବଢ଼ିଯାଇଛି, ପାଠକର ସେତେ ପ୍ରତ୍ୟୁହାନ ଘଟିଛି । ଯେଉଁଠାରେ କବିତା ଅନୁଭୂତିର ନିବିଡ଼ତାକୁ ଉପସ୍ଥାପନ କରିବାରେ ଅସମର୍ଥ, ସେଠାରେ କବିତାର ଆବେଦନ ଅବ୍ୟକ୍ତ । ଆଜିର କବି ଏ ବିଷୟରେ ଢେର ଅଧିକ ସଚେତନ ।

।। କବି କମଳାକାନ୍ତ ।।

ବିଭିନ୍ନ ଧାତୁଗତ କଟୋର ଚେତନ ଗଭୀର କବିତା। ସୁନ୍ଦର ନିଷ୍ଠୁର ପେଲବ ଅନୁଭୂତି, ସମାହିତ ଚେତନା ଅନେକ ବେଗବାନ୍ ଚିନ୍ତନ, ସାବଲୀଳ ପ୍ରୟୋଗ ଏବଂ ମାର୍ମିକ ଅବେଦନ ପ୍ରାୟ ଅଧିକାଂଶ କ୍ଷେତ୍ରରେ ବାଂଛିତ ସଫଳତା ସହ ଏବେ ଆୟୁଷ୍ଟର ପରିଧି ମଧ୍ୟକୁ ଅସିଚାରିଛି।

ଉପରୋକ୍ତ ଦୃଷ୍ଟିକୋଣରୁ ବିଚାର କଲେ କବି କମଳାକାନ୍ତଙ୍କ କବିତା ସୃଷ୍ଟି ଗଭୀରରେ ବିକାଶଶୀଳ। ପଞ୍ଚମ ଦଶକର ଉତ୍ତର ଭାଗରେ ତାଙ୍କ ସାଧନାର ଅଗ୍ରଗତି ହୋଇଥିଲେ ହେଁ ଏହାର ପ୍ରକୃତ ବିକାଶ ସୂଚିତ ହୁଏ ଷଷ୍ଠ ଦଶକରେ। ଅଧୁନା ଏକ ସଫଳ ପ୍ରୟୋଗବାଦୀ ହିସାବରେ ସ୍ୱୀକୃତ ଏହି କବିଙ୍କର 'ଉତ୍ତରଣ' ( ୧୯୬୭ ) ଉତ୍ତରଣ ବୋଧର ପରିଚାୟକ ହେଉଛି ପ୍ରୟୋଗବାଦର ସ୍ୱାକ୍ଷର ବହନ କରେ ତା'ଠାରୁ ଅଧିକ । ଶବ୍ଦ ଚୟନ, ବାକ୍ୟପ୍ରୟୋଗମାନଙ୍କର ଅଳଙ୍କାର ପ୍ରୀତି ଦୃଶ୍ୟ ଚିତ୍ରକଳ୍ପ ପ୍ରତି ମୋହ, ବହୁ ଚିତ୍ରକଳ୍ପର ଏକତ୍ର ସମାବେଶ, ଚିତ୍ରକଳ୍ପ ମଧ୍ୟରେ ଏକ ଶ୍ରେଣୀର ପ୍ରତିଂହିଙ୍କୁ ଅନ୍ୟ ଶ୍ରେଣୀରେ ରୂପାୟିତ କରିବା (Synaesthesia), ବିସ୍ତାରଣ ଶୈଳୀ ପ୍ରଭୃତି କେତେକ ସାଧାରଣ ତ୍ରୁଟି ଏହି ଗ୍ରନ୍ଥରେ ପରିଲକ୍ଷିତ ହୁଏ।

(୩)

'ସ୍ୱାତୀର ନାମ ରୀତ' କମଳାକାନ୍ତଙ୍କର ପ୍ରଥମ କବିତା ଗ୍ରନ୍ଥ। ଏହାର ଅବ୍ୟବହିତ ପୂର୍ବବର୍ତ୍ତୀ ପ୍ରକାଶନ 'ଅନ୍ତତଃ ନିସ୍ତବ୍ଧ'ରେ କବି ଏକ ନିଷ୍ଠୁର କ୍ଷୋଭରେ ନିରୁପାୟ ହୋଇ କିଛିକ୍ଷଣ ପାଇଁ 'ଅନ୍ତତ ନିସ୍ତବ୍ଧ' ଠାରେ ଆତ୍ମ ସମର୍ପଣ କରିଥିଲେ— ଯେଉଁ ନିସ୍ତବ୍ଧତାର ଅଷ୍ଟୋତ୍ତର ଶତନାମ ମଧ୍ୟରୁ ଶେଷ ନାମଟି ହେଉଛି ମୃତ୍ୟୁ। କବି ସ୍ୱୀକାର କରନ୍ତି ଯେ ଏ ନିସ୍ତବ୍ଧତା ଅସହ୍ୟ—'ଗୋଟିଏ ଲୋମଶ କାଳର ବଜ୍ର କଠିନ ଚାବ।' ଏଥିରୁ ବର୍ତ୍ତିବାର ଏକମାତ୍ର ଉପାୟ ସୃଷ୍ଟିର ସଙ୍ଗୀତ। ତେଣୁ ନିସ୍ତବ୍ଧତାର ଉଜାଣି ଭାଙ୍ଗି ପୁଣି ସୃଷ୍ଟି ଜୁଆର ଆସିଛି, ନୂତନ ସ୍ରୋତ ବହିଛି— ଯାହାର ଇଙ୍ଗିତ ହେଉଛି

ମତ ଅଭିମତ ଭିନ୍ନମତ ।।

ସତ୍ୟ । ଯାହା ସମସ୍ତେ ଅନୁଭବ କରନ୍ତି କିନ୍ତୁ କହିପାରନ୍ତି ନାହିଁ । ସେହି ସତ୍ୟଟିକୁ ପ୍ରକାଶ କରିବା କବିତାର ଉଦ୍ଦେଶ୍ୟ ।

ଗ୍ରନ୍ଥଟିର କବିତାଗୁଡ଼ିକ ଜୀବନର ବହୁମୁଖୀ ଖଣ୍ଡ ଅନୁଭୂତି ଉପରେ ଆଧାରିତ । ତାହାର ଅନ୍ତରାଳରୁ କବିଙ୍କର ଜୀବନ ଦର୍ଶନ ସମ୍ବନ୍ଧରେ ଏକ ଏକ ଝଲକର ସ୍ପଷ୍ଟ ସୂଚନା ମିଳେ । ପ୍ରଥମ କବିତା 'ଗୋଲକ ଧନ୍ଦା' ଜୀବନ ରହସ୍ୟର ଏକ ସାମାନ୍ୟ କଥନ । ଦୃଶ୍ୟ ଓ ଅଦୃଶ୍ୟର ଗୋଲକ ଧନ୍ଦାରେ ମନୁଷ୍ୟ ନିଜର ଅତି ଜଣାଶୁଣା ଅଭିଜ୍ଞତା ଭିତରେ କିଛି ଅଜଣାର ଅମୃତ ସ୍ପର୍ଶ ପାଇବା ଆଶାରେ ଧନ୍ଦିହୁଏ, ନୂତନ ସ୍ୱାଦର ମାଧୁର୍ଯ୍ୟ ଆହରଣ କରିବା ପାଇଁ ତିକ୍ତ ଅନୁଭୂତିର ପୁନରାବୃତ୍ତି କରେ, ପୁଣି ମିତବୋଧର ମନ୍ତ୍ର ଉଚ୍ଚାରଣ କରୁକରୁ ଭୌତିକ ଓ ଦୈହିକ ଆକର୍ଷଣରେ ପ୍ରଲୋଭନରେ ମତ୍ତ ହୁଏ । ଏହିପରି ଭାବରେ ବାରମ୍ବାର କ୍ଷତବିକ୍ଷତ ହୋଇ ମଧ୍ୟ ସେହି ଯନ୍ତ୍ରଣାକୁ ବାରମ୍ବାର ବରଣ କରିବା ମନୁଷ୍ୟର ପ୍ରକୃତି । ଏହା ହିଁ ଜୀବନର ଅପରୂପ ଆକର୍ଷଣ ।

'ଯାହା ଖାଲି ଥଳ-କୂଳ ହୀନ ହ୍ରଦ
ମଝି ତଉଁରରେ ଠିଆ ହୋଇ
ପଦ୍ମତୋଳା ବୋଲିବା ଓ କ୍ଷତର ଚିହ୍ନକୁ
ପୁନର୍ବାର ନାଗୁଣୀର ମୂର୍ଦ୍ଧେ ଯୋଖି ଦବା ।

(ଗୋଲକ ଧନ୍ଦା)

ଦୁଃଖବାଦର ଏହିପରି ଏକ ବାସ୍ତବ ପରିସୀମା ମଧ୍ୟରେ ଆଧୁନିକ ଜୀବନର ଆଉ ଏକ ନିଖୁଣ ସାଙ୍କେତିକ ଚିତ୍ର ମିଳେ 'କଳାକାହ୍ନୁ' କବିତାଟିରେ । 'କଳାକାହ୍ନୁ' ମିଥ୍ ଓ ପ୍ରତୀକ ଚୟନର ଏକ ସଫଳ ପ୍ରୟୋଗ । ମୁରଲୀ ଫୁଙ୍କା ରସିକ କାଳିଆ କାହ୍ନୁଙ୍କର ପୁରା ବୃତ୍ତିଟିକୁ (Myth) କେବଳ ଭାବ ପ୍ରକାଶର ଏକ ମାଧ୍ୟମ ରୂପେ ବ୍ୟବହାର ନକରି କବି ଏହାର ଏକ ଆଧୁନିକ ପୁନର୍ବ୍ୟାଖ୍ୟା ଦେଇଛନ୍ତି ଏବଂ କାହ୍ନୁ ରୂପରେ ଆଧୁନିକ ମନୁଷ୍ୟର

ଏଣେ ଶ୍ଳେଷୋକ୍ତି ବ୍ୟଞ୍ଜିତ ଚିତ୍ର ଆଙ୍କି ଅନୁଭୂତିର ଗମ୍ଭୀରତାକୁ ତୀବ୍ରତର କରିଛନ୍ତି । କଳା, ପ୍ରେମ ଓ ଆଧ୍ୟାତ୍ମିକତାର ମିଳନ ବିନ୍ଦୁ ଏବଂ କଳାକାର ପ୍ରେମିକ ଓ ଦ୍ରଷ୍ଟା । କାହ୍ନୁ ବା କୃଷ୍ଣ କର୍ଷଣର ଓ କର୍ଷଣର ପ୍ରତୀକ । ଏହି ଦୃଷ୍ଟିରୁ ନାଗ ଦଳନ, ଖୁଦ ପ୍ରୀତି, ଜଉ ଘର ପୋଡ଼ି, ଶିଆଳ ଲଠାରେ ଛଟପଟ ଯନ୍ତ୍ରଣା ସବୁ ବୃତ୍ତାନ୍ତର ଆକ୍ଷେପ୍ତ ବ୍ୟାଖ୍ୟା କରି କଳ କାରକୁ ଅଧୁନିକ ମନୁଷ୍ୟକୁ ଏଜରି ଏକ ମନୁଆ, କାତୁଆ ଛଟପଟ ନାଗର ରୂପରେ ଚିତ୍ରଣ କରିପାରିଛନ୍ତି ଯେ କି ଜୀବନର ସବୁ ବିଡ଼ମ୍ବନା ମଧ୍ୟରେ ନିଜର ମଙ୍କାଟେଡ ଖେଅଲ ବଶରେହିଁ ଦିନରାତି ଜୀବନ ଓ ସମୟର ଯମୁନା କୂଳରେ ନିଜର ବଂଶୀ ଫୁଙ୍କିବାରେ ମତୁଆଲ୍ ।

‘ରେ କହ୍ନାଇ, ତୋ କମିଆ, ତୋ ତା ଧିନ୍ ଧିନା
ତୋ ଦୋ ଦୋ ଚହ୍ଲା ହସର ଫୁଲଝରି
ଏମିତି ଝରୁଥାଉ କି ଦିନ, କି ରାତି, କିସ ବା ସମୟ
ସମୟର ଅନ୍ୟ ନାମ କଳାକାହ୍ନୁ, କହ୍ନାଇର
ଜହ୍ନ ରାତି, ଯମୁନା ଓ ଛଳଛଳ ବସନ୍ତର ଲୟ ।’’

(କଳାକାହ୍ନୁ)

କମଳାକାନ୍ତଙ୍କ ଜୀବନ ଦର୍ଶନର ତିନୋଟି ସୂତ୍ର— ଜୀବନ ଜିଜ୍ଞାସା, ଜୀବନବୋଧ ଓ ଜୀବନାଙ୍ଗୀକାର । ଶେଷୋକ୍ତ ବିଷୟ ‘ନିଜ ସପକ୍ଷରେ’ ଶୀର୍ଷକ କବିତାଟିରେ ସ୍ପଷ୍ଟ । ଏହି କବିତାରେ କବି ଏକ ସ୍ଥିତିବାଦୀ ହିସାବରେ ନିଜର ସମ୍ପର୍କ ଶୂନ୍ୟ ଏକାକୀତ୍ୱ ସମ୍ବନ୍ଧରେ ସଂପୂର୍ଣ୍ଣ ସଚେତନ । ସେ ଦୁଃଖବାଦୀ କିନ୍ତୁ ତାଙ୍କର ଦୁଃଖ ବ୍ୟକ୍ତିଗତ କ୍ଲେଦ ନୁହେଁ । ଏହା ସମଗ୍ର ମାନବ ଜାତିର ଜନ୍ମଗତ ବୋଝ । ‘ଜନନୀ ନାଆଁର ଦୁଃଖ, ଭାଗ୍ୟଟିର ଦିନର ପାହାନ୍ତି ।’ ତାଙ୍କ ମନରେ ସଂଗ୍ରାମରତ ସ୍ଥିତିବାଦୀର ଧୈର୍ଯ୍ୟ ଓ ସାହସ— ‘ଲଢିବାର ପଣ ଜିଇବାର ଦଂଶନରେ ହୁଏ ଉଚ୍ଛ ।’

ସମୟର ବଶବର୍ତ୍ତୀ ହୋଇ ମଧ୍ୟ ସେ ତାହାର ତାହଲ୍ଭ ମାନି ନେବାକୁ ଅସମ୍ମତ, ଯେଂହେତୁ କାଳକୁ ଜୟ କରିବାର ମୃତ୍ୟୁଞ୍ଜୟ ଶକ୍ତି ତାଙ୍କଠାରେ ନାହିଁ, 'ମୋ କବିତା ଦୁଃଖ ସୁଖ ପ୍ରୀତିମୟ ମୂହୂର୍ତ୍ତର କଲ୍ୟାଣୀର କ୍ଷୀର ।' ଏହି ବସ୍ତୁରରୁ ନୈରାଶ୍ୟ ଓ ବିମୁଖତା ପରିବର୍ତ୍ତେ ଜୀବନ ପ୍ରତି ମମତ୍ୱବୋଧ ଓ ଅଙ୍ଗୀକାରର, ଜୀବନକୁ ଗ୍ରହଣ କରିନେଇ ଏହାର ତିକ୍ତ କଷାୟକୁ ଉପଲବ୍ଧି କରିବାର ଏକ ପୌନଃପୁନିକ ଆଶାପ୍ରଦ ଦୃଷ୍ଟିଭଙ୍ଗୀ ପାଠକକୁ ଅଭିଭୂତ କରେ ।

ମୁଁ ଏକାଂଥ ଭଲପାଏ ଆପଣାର
ନୂତନ ପୃଥ୍ୱୀକୁ । ଆପଣାର
ପ୍ରବୃତ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ,
ଭଲପାଏ ଭଙ୍ଗା ଖେଳନାକୁ,
ଭଲପାଏ ଦୁଃସ୍ଥ ମଣିଷକୁ, ଭଲପାଏ
ବଂଚିବାର ନୂଆ ନୂଆ ଭାସ୍କର୍ଯ୍ୟର ସ୍ପନ୍ଦିତ ଇଚ୍ଛାକୁ ।''

(ନିଜ ସପକ୍ଷରେ)

ଉପରୋକ୍ତ ଦୃଷ୍ଟିରୁ ଆଜି କେତୋଟି ଝଲକ ମିଳେ 'ମରଣ ଜାତକ' କବିତାଟିରେ । ଏ କବିତାଟିର ବିଶେଷତ୍ୱ ତାହାର ଶ୍ଳେଷୋକ୍ତି (Irony) ଯାହା ଉକ୍ତିକୁ ଶାଣିତ, ଭାବକୁ ପ୍ରସାରିତ ଓ ଅନୁଭୂତିକୁ ବୈଚିତ୍ର୍ୟମୟ କରେ । କବିତାଟି ଆଧୁନିକ ଜୀବନକୁ ସଫଳ ଭାବରେ ମୂହୂର୍ତ୍ତିଏ ବଞ୍ଚିବା ପାଇଁ ଏକ ବଳିଷ୍ଠ ଆହ୍ୱାନ ।

ଦମ୍ଭମୟ ଜୀବନ ଚଳାଚରେ
ବଞ୍ଚିବାର ବ୍ଲେଡ୍ ଦାଢ଼ ଆଜି ଚରିତ୍ରିବା ।

× × ×

॥ କବି କମଲାକାନ୍ତ ॥

ବଞ୍ଚିବାର ଫଳକରେ ଆମେ ସବୁ ଯିବା ଆସ
ଶାଅନ୍ତା ଶବର ଲୁହେ ମରମର କବିତା ଲେଖିବା,
ଏବଂ କଷ୍ଟ ପ୍ରତିଶ୍ରୁତି ପ୍ରତିବାଦ ଡାଗିଦା ଆଣିବା,
ଅନ୍ଧାରର କଳାବୋଳ ଦେହୁ ଆମ ସଂସ୍କୃତିର ଲୁଗାପାଲଟିବା ।'

(ମରଣ ଜାତକ)

ଡକ୍ଟର ପ୍ରସନ୍ନ କୁମାର ମିଶ୍ରଙ୍କ ଭାଷାରେ 'କମଳାକାନ୍ତଙ୍କ କବିତାର ସ୍ୱରରେ ଓ ସ୍ଫୁରଣରେ କୌଣସି ଏକ ନିର୍ଦ୍ଦିଷ୍ଟ କାବ୍ୟ ଦର୍ଶନର ବା ସମାଜ ଦର୍ଶନର ସୁର ଖୋଜିଲେ ମିଳେ ନା, କିନ୍ତୁ ଜୀବନ ପାଇଁ ଗୋଟିଏ ଦର୍ଶନର ଅନୁସନ୍ଧାନରେ ସେ ଯେ ବ୍ୟସ୍ତ— ଏହା ସ୍ପଷ୍ଟ ବାରିହୁଏ ।' ବର୍ତ୍ତମାନର କବିତା ଗ୍ରନ୍ଥରେ ଏହି ଦର୍ଶନଟି କେବଳ ବାରିହୁଏ ତାହା ନୁହେଁ, ବରଂ ସ୍ପଷ୍ଟତର ଭାବରେ ଉଚ୍ଚାରିତ ବୋଲି ମନେହୁଏ ।

( ୪ )

ଆଧୁନିକ ଯୁଗର କବି ବ୍ୟକ୍ତି କୈନ୍ଦ୍ରିକ । ବ୍ୟକ୍ତି କୈନ୍ଦ୍ରିକତା ନୂତନ ସ୍ୱର ନୁହେଁ ଯଦି, ମାତ୍ର ରୋମାଣ୍ଟିକ ଯୁଗର ବ୍ୟକ୍ତି-କୈନ୍ଦ୍ରିକତା ସହିତ ଆଜିର ପାର୍ଥକ୍ୟ ଏ ଯୁଗରେ ଆଦେହିକ ଦୃଷ୍ଟିଭଙ୍ଗୀ । ଅତୀତର କବି ନିଜ ହୃଦୟର ନିରୁତା ଆବେଗକୁ ସ୍ୱାଧୀନ ଭାବରେ ବ୍ୟକ୍ତ କରୁଥିବା ସ୍ଥଳେ ଆଜିର କବି ମନୁଷ୍ୟ, ସମାଜ, ଈଶ୍ୱର, ବିଜ୍ଞାନ ବସ୍ତୁବାଦ ଓ ମନସ୍ତତ୍ତ୍ୱ ସମ୍ବନ୍ଧରେ ନିଜର ମାନସିକ ଘାତ ପ୍ରତିଘାତର ବିଶ୍ଳେଷଣାତ୍ମକ ଚିତ୍ର ଆଙ୍କିବାରେ ଅଭ୍ୟସ୍ତ । ଏ ଦୃଷ୍ଟିରୁ କମଳାକାନ୍ତଙ୍କର ବିଷୟବସ୍ତୁ ଗୁଡ଼ିକର ବିସ୍ତୀର୍ଣ୍ଣ ପରିସର ଓ ଭାବ ବୈଚିତ୍ର୍ୟ ଆକର୍ଷଣୀୟ । ସାଂପ୍ରତିକ ଜୀବନ ପ୍ରତି କଟାକ୍ଷ, ବିଦ୍ରୂପ ଓ ଖେଦର କେତେକ ବିଶିଷ୍ଟ ଭଙ୍ଗୀ ଲକ୍ଷ୍ୟ କରି-ଯାଇପାରେ । 'ବିପ୍ଳବ' କବିତାରେ ସଂକେତ ସାହାଯ୍ୟରେ ଜୀବନ ପ୍ରତି

ମତ ଅଭିମତ ଭିନ୍ନମତ ॥

କଟାକ୍ଷ, 'ପଶ୍ଚାତ୍ତାପରେ' ପ୍ରଶ୍ନବାଚୀର କ୍ରମାନୁଯାୟୀ ପ୍ରୟୋଗ ଫଳରେ ସାମାଜିକ ଚଳଣି ସମ୍ବନ୍ଧରେ ତୀକ୍ଷ୍ଣ ବିଦ୍ରୂପ ଉପଭୋଗ୍ୟ । ପ୍ରଗଳ୍ଭବାକ୍ ଆଧୁନିକ ମନୁଷ୍ୟ ବହିର୍ମୁଖୀନହୋଇ ବାକ୍ ସଂଯତ ଓ ଅନ୍ତର୍ମୁଖୀ ହେଲେ ଯେ ବ୍ୟକ୍ତି ଚେତନାର ଊର୍ଦ୍ଧ୍ୱାୟନ ସମ୍ଭବ ଏହି ସତ୍ୟର ଏକ ଆଧୁନିକ ବ୍ୟଙ୍ଗାତ୍ମକ ପ୍ରକାଶ 'କାନ୍ଥ' । 'କଥାର ମଞ୍ଜି' କବିତାଟି ଆଧୁନିକ ସମାଜର ଏକ ସାଙ୍କେତିକ ମନ୍ତବ୍ୟ । ସମାଜର ସ୍ୱର ଶବ୍ଦ ନଥିବା ନିର୍ଦ୍ଦିଷ୍ଟୀୟ କାର୍ଯ୍ୟାବଳୀର ଏକମାତ୍ର ପ୍ରୋତ୍ସାହନ କେନ୍ଦ୍ର ହେଉଛି ଅର୍ଥ । ସବୁ ଶବ୍ଦ ଓ ସବୁ ଉତ୍ତାପର ସୃଷ୍ଟି ହେଇଠୁ— ଯାହା ବିନା ଜୀବନ, ଯୌବନ ଓ ପ୍ରକୃତିର ସବୁ ରମଣୀୟତା ଓ ମାଦକତା ନିରର୍ଥକ । 'ଫେରିବାଲା' 'ଦୁଆର', 'ଲଟେରି' ପ୍ରଭୃତି କବିତା ଗୁଡ଼ିକ ଜୀବନ ସମ୍ପର୍କରେ ଏକ ଏକ ଦ୍ୟୋତକ ସତ୍ୟର ବ୍ୟଞ୍ଜନା ଦିଏ । ଶୈଳୀ ଓ ବିଷୟବସ୍ତୁ ଦୃଷ୍ଟିରୁ 'ଭିନ୍ନ ସ୍ୱାଦର କବିତା' ଏକ ନୂତନ ସ୍ୱାଦ ପରିବେଷଣ କରେ ।

କମଳାକାନ୍ତଙ୍କର ପୂର୍ବବର୍ତ୍ତୀ କବିତା ସଂକଳନରେ ବିଷୟବସ୍ତୁ ହିସାବରେ ପ୍ରେମ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲା । ବର୍ତ୍ତମାନର କବିତା ସଂକଳନରେ ଏହି ଧରଣର କବିତା ସୀମିତ ଏବଂ ସେ ସମ୍ବନ୍ଧରେ କବିଙ୍କର ଅଭିବ୍ୟକ୍ତି କେତେକ ମର୍ମସ୍ପର୍ଶୀ ଚିତ୍ରକଳ୍ପ, ସୂଚନା ଓ ସଙ୍କେତ ମଧ୍ୟରେ ପର୍ଯ୍ୟବସିତ । ଅପର ପକ୍ଷରେ ଅଧିଭୌତିକ (Metaphysical) ବିଷୟ ବସ୍ତୁର ହାର କ୍ରମଶଃ ବୃଦ୍ଧି ପାଇଛି । 'ଅପେକ୍ଷା କେବଳ' କବିତାଟି ଜୀବନର ତ୍ରାଣକର୍ତ୍ତାଙ୍କ ପାଇଁ ଦୀର୍ଘ ପ୍ରତୀକ୍ଷା । ବେଦନା ଜର୍ଜର ମନୁଷ୍ୟ ଜୀବନ ସଂଗ୍ରାମରେ ବ୍ୟର୍ଥ, କ୍ଲାନ୍ତ ଓ ଅବସନ୍ନ ହୋଇ ସମସ୍ତ ଶଠତା ସତ୍ତ୍ୱେ ଆଶାକରି ରହିଁବସିଥାଏ ମୁକ୍ତିର ଶେଷ ମୁହୂର୍ତ୍ତଟି ପାଇଁ, ଆସନ୍ନ ପ୍ରସବା ଦେବକୀ ଯେପରି ଅପେକ୍ଷା କରି ବସିଥିଲେ ମୁକ୍ତିଦାତା କୃଷ୍ଣଙ୍କ ପାଇଁ । ଅନ୍ଧାରିଆ ଅରଣ୍ୟ ଘେରି ତମସାଚ୍ଛନ୍ନ ପଥ ଶେଷରେ ଜ୍ୟୋତିର୍ମୟ ରୂପରେ ସେ ଆସିବେହିଁ ଆସିବେ ।

॥ କବି କମଳାକାନ୍ତ

'ସେ ଆସିବଠିଁ ଆସିବ । ସେ ଆସିବ
କେଉଁ ବେଳାରେ, କେଉଁ ମୁହୂର୍ତ୍ତରେ, କେଉଁ
ନିଷ୍ଠକର ପାଲିଙ୍କିରେ, ଗଙ୍ଗ ଶୀତଳର ଚଉଡ଼ଳରେ
ସେ : ବାଜିବ ଶଂଖ ମନ୍ଦ୍ରସ୍ୱର ନହବତ ।
କେବଳ ଯାହା ଧୈର୍ଯ୍ୟ ହରାଇ ଦିଏ
ମୋ ମନସ୍କ ଶୋକର ମୁଦ୍ରା, ଧ୍ୟାନସ୍ଥ
ଶିଖାର ତପସ୍ୟା ।'

(ଅପେକ୍ଷା କେବଳ)

'କ୍ରୀତ ଦାସ' ଓଡ଼ିଆ କବିତାର ଏକ ଅଧୁନିକ ରୂପ । କବିତା ବର୍ଣ୍ଣିତ ଈଶ୍ୱର ଏକ ସ୍ଥିର, ନିର୍ବିକାର, ସ୍ମୃତିଭ୍ରଷ୍ଟ ବୃଦ୍ଧ ଅଥଚ ପୁଞ୍ଜିବାଦୀ ମାଲିକ ଯେ କି ହୃଦୟହୀନ ଏବଂ କେବେ କେବେ ଛଳନାମୟ । ପୁରୁଷାନୁକ୍ରମିକ ଭାବେ ତାଙ୍କର ଆଜ୍ଞାବହ କ୍ରୀତଦାସ, ମନୁଷ୍ୟର ଦୁଃଖ, ଯନ୍ତ୍ରଣା ଓ ପରିଶ୍ରମ ଜନିତ କ୍ଳାନ୍ତି ଓ ଅବସାଦ ପ୍ରତି ସେ ଉଦାସୀନ ଏବଂ ଅଥର୍ବ : 'ବୁଢ଼ାପର ଢୋଳାଉଚି/ବଟବୃକ୍ଷ ଗୁଣ୍ଡିର ପାହାଚେ ।' କବି ସାମନ୍ତତାନ୍ତ୍ରିକ ଦାସତ୍ୱ ପ୍ରଥାର ଶରବ୍ୟ ହୋଇ ମୁକ୍ତି ପାଇଁ କାକୁତି ମିନତି କରିଛନ୍ତି— ଏକ ଅବୁଝା ମାଲିକ ପାଖରେ ।

ମନସ୍ଥିତିର ଏକ ସୁନ୍ଦର ବିଶ୍ଳେଷଣ 'କ୍ରମଶଃ ବର୍ଷା : ବିବିକ୍ତ ମନ ଓ ଈଶ୍ୱର ।' ବର୍ଷଣ ମୁଖର ଦିନର ଉଦାସିଆ ପାଗରେ ଶୂନ୍ୟ ମନ ନେଇ ଚିନ୍ତାର ଜାଲ ବୁଣି ଚାଲିବା ଏବଂ ତହିଁରେ ନାନା ଶ୍ଳେଷୋକ୍ତି ସାହାଯ୍ୟରେ ଈଶ୍ୱରଙ୍କୁ ଅତି ନିବିଡ଼ ଭାବରେ ଜଡ଼ିତ କରି ଏକ ବାସ୍ତବ ହାସ୍ୟଭଙ୍ଗୀର ପରିବେଶ ସୃଷ୍ଟି କରିବା କବିତାର ବିଶେଷତ୍ୱ । ଏହାର ଅନ୍ତରାଳରେ ଫୁଟି ଉଠିଛି ମଣିଷର ଦାରିଦ୍ର୍ୟ, ନିଃସଙ୍ଗତା, ସ୍ୱାର୍ଥପରତା, କ୍ଷୁଧା ଓ ଦେହଜ କାମନା; ପୁଣି ପ୍ରକାଶ ପାଇଛି ଦୁଃଖୀମାନଙ୍କ ପାଇଁ ଗଭୀର ସମବେଦନା ।

ମତ ଅଭିମତ ଭିନ୍ନମତ ॥

"ରକ୍ତର ମଣିଷ ହୋଇ ଅନ୍ୟର ଦୁଃଖକୁ
ଆପଣା ରକ୍ତରେ ଫେଣ୍ଟି ଆପଣାକୁ ହସାଇବା··· ।"

ଈଶ୍ୱରଙ୍କୁ ନିକଟତମ ସାଙ୍ଗ ବା କର୍ତ୍ତୃତୀଦୋସ୍ତ ହିସାବରେ ଚିନ୍ତା କରିବାର ଗତାନୁଗତିକତା ପରିପନ୍ଥୀ ଅଧିଭୌତିକ (Metaphysical) କଳ୍ପନାଟି ଆମୋଦ ଓ ଆନନ୍ଦ ଦାୟକ ।

'ହେ ପ୍ରଭୁ, ତୁମେ ଅଳ ଗୋଟା ଗୋଟା ଉପାସରେ ଚୁଲି ଫୁଙ୍କୁଥିବ,
ତୁମେ ବୋଧେ ଘଣ୍ଟାରେ ହାଣ୍ଡି କୁଣ୍ଡି ସବୁ ଛେଚୁଥିବ ।'

ପୁଣି ଅନ୍ତର୍ନିହିତ ଶ୍ଳେଷ ଯୋଗୁଁ ଭବକଟି ଅତ୍ୟନ୍ତ ଗଭୀରତା ବ୍ୟଞ୍ଜକ ଓ ମର୍ମସ୍ପର୍ଶୀ :

'ଅନ୍ତତଃ ତୁମକୁ ମୁଁ କହିରଖେ ଭଗବାନ୍, ତୁମେ ଯଦି ମର—
ମୁଁ ମରିବ ଧରି ତୁମ ଅଣ୍ଟା ଆଉ ବେକ ଓ ଗୋଡ଼କୁ ।'

ଆବେଦନ ସଂକ୍ରମଣ ରୀତି ଅନୁସାରେ କେତେଗୁଡ଼ିଏ କବିତା ବ୍ୟଞ୍ଜନାତ୍ମକ । 'ସମୁଦ୍ର' କବିତାରେ ଚିତ୍ରକଳ୍ପ ସାହାଯ୍ୟରେ ସମୁଦ୍ର ଉପକୂଳସ୍ଥ ପବନ, ସମୁଦ୍ରର ଗର୍ଜନ, ମୌନତା, ବ୍ୟାପକତା, ତଥା ମନୁଷ୍ୟର ତୁଳନାତ୍ମକ ସ୍ୱାଧୀନତା ଓ ନିର୍ଭରଶୀଳତା ବିଷୟରେ ମୋଟାମୋଟି ବ୍ୟଞ୍ଜନା ସୃଷ୍ଟି କରାଯାଇଛି । ବର୍ଷାର ଗୋଲକ ପ୍ରଭୃତି ଚିତ୍ରକଳ୍ପରେ ଆଧୁନିକ ଜୀବନରେ ଯୌନ ଆକର୍ଷଣର ବ୍ୟଞ୍ଜନା ଦିଆଯାଇଛି । 'ସୂର୍ଯ୍ୟମୁଖୀ' ଆଉ ଏକ ବ୍ୟଞ୍ଜନାମୁଖର କବିତା ଯହିଁରେ ଚିତ୍ରକଳ୍ପର ବିସ୍ତାରଣ ସତ୍ତ୍ୱେ ବ୍ୟଞ୍ଜନାମାନଙ୍କର ଏକ ସମୀକରଣ କରାଯାଇଛି ।

( ୫ )

ଏହି କବିତା ଗ୍ରନ୍ଥରେ କ୍ଷୁଦ୍ର କବିତା ଅପେକ୍ଷାକୃତ ଅଧିକ ସ୍ଥାନ

ଯାଇଛି । ଗଠନ ଓ ପ୍ରକାଶ ଭଙ୍ଗୀରେ କ୍ଷୁଦ୍ର କବିତା ଗୁଡ଼ିକ କବିଙ୍କର ସଫଳତାର ସ୍ୱାକ୍ଷର ।

ମୃତ୍ୟୁ ଓ ଜୀବନ, ଏ ଦୁଇଟି ବିସମ୍ବାଦୀୟ ବିଷୟ- କିନ୍ତୁ ଉପସ୍ଥାପନା ପ୍ରଣାଳୀ ସମାନ, ଚିତ୍ରବତ୍ । 'ମୃତ୍ୟୁ' କବିତାଟିରେ ଗୋଟିଏ ମାତ୍ର ମୌଳିକ ଚିତ୍ରକଳ୍ପ 'କାଣୀ ବିଲେଇ'ର ଆଖିକୁ ( କାଣୀ ହୋଇଥିବାରୁ ସମ୍ଭବତଃ ବିଭତ୍ସତା ଓ ଆକ୍ରମଣର ଏକାଗ୍ରତା ଅଧିକ)

ଠିକ ଅନୁରୂପ ଭାବେ ଜୀବନକୁ ଲୁହ ଓ ଲହୁର ମୁଣ୍ଡୁଳାଟିଏ ଏକ ବୃତ୍ତ ରୂପେ ଗ୍ରହଣ କରି ଅନ୍ୟାନ୍ୟ ଚିତ୍ରକଳ୍ପ ଗୁଡ଼ିକୁ ବୃତ୍ତଟିର ପରିଧିସ୍ଥ ଓ ଗୌଣ କରାଯାଇଛି ।

ଯୀଶୁ, କବି ଓ ମଣିଷ କବିତା ତିନୋଟି ଆଉ ଏକ ପର୍ଯ୍ୟାୟର । ସତ ପାଇଁ ମୁଣ୍ଡ କୋଡ଼ ହେଉଥିବା ସତ୍ୟସନ୍ଧିଆ, ମୁକ୍ତ ହୋଇଥିବା ପଦ୍ମ ଭିତରେ ବନ୍ଦୀ ଭଅଁର ଓ ଉଇଁ ଆସୁଥିବା ସୂର୍ଯ୍ୟ— ଏ ତିନୋଟି ଚିତ୍ରକଳ୍ପ ବିଭିନ୍ନ । ମାତ୍ର ଏ ତିନୋଟିକୁ ରୈଖିକ ଗତିରେ ପରସ୍ପରର ସହାୟକ ଓ ପରିପୂରକ ହିସାବରେ ବ୍ୟବହାର କରି କବିତାଟିକୁ ଅନ୍ୟ ଏକ ପ୍ରକାର ଚିତ୍ର ହିସାବରେ ସଂଗଠିତ କରାଯାଇଛି । ହୃଦୟର ସ୍ପନ୍ଦନ ସଦୃଶ ବିଷୟ ବସ୍ତୁଟି ପ୍ରତି ଚିତ୍ରରେ ସ୍ପନ୍ଦିତ ହେଉଥିବାରୁ ବିସ୍ତାରଣ ଶୈଳୀ ନୁହଁଟି ପରିବର୍ତ୍ତେ ଜୀବନର ବୈଚିତ୍ର୍ୟକୁ ପ୍ରତିପାଦିତ କରୁଛି । 'ମଣିଷ' କବିତାଟି ମଣିଷର ଅନ୍ତର୍ନିହିତ ଗୁଣାବଳୀର ଏକ ସାଙ୍କେତିକ ବିବରଧାଭାସ ।

'ନିଆଁ' ଅଗ୍ନିର ଉତ୍ପତ୍ତି ସମ୍ବନ୍ଧରେ ଏକ ବୈଜ୍ଞାନିକ କଳ୍ପନା, ଯାହାକି କବିତାରେ ରୂପାନ୍ତରିତ ।

'ସତ୍ୟ' କବିତାଟି ସତେ ଯେପରି ଗୋଟିଏ ମାର୍ବଲ ସତ୍ୟପରି ନିଦା, ସଂକ୍ଷିପ୍ତ ଓ ସୂଚନାତ୍ମକ ।

ମତ ଅଭିମତ ଭିନ୍ନମତ ॥

( ୬ )

ଗତ ତିନି ଦଶକ ଧରି ଆଧୁନିକ କବିତାର ସାଧନା କ୍ଷେତ୍ରରେ ଯେଉଁ ପରୀକ୍ଷଣ ହୋଇଯାଇଛି ତାହାର ଉଦ୍ଦେଶ୍ୟ ହେଲା କବିତାକୁ ଆଧୁନିକ ଜୀବନ ସହିତ ଅଙ୍ଗୀଭୂତ କରିବା, ଆଧୁନିକ ବାକ୍‌ଧାରାରେ ପ୍ରକାଶ କରିବା ଏବଂ ସର୍ବୋପରି ଏହାକୁ ଆଧୁନିକ ଚେତନାର ବାହକ ରୂପେ ପ୍ରୟୋଗ କରିବା । ଏହି ଲକ୍ଷ୍ୟକୁ ଅବ୍ୟାହତ ରଖି କବିତା ନିଜର ସତ୍ତାକୁ ଆବିଷ୍କାର କରିଚାଲିଛି । ବିକାଶର ଏହି ଘଡ଼ିସନ୍ଧି ବେଳରେ କବିତାର ସବୁଠାରୁ ବଡ଼ ପରଖ ହେଉଛି ତାହାର ଆବେଦନର ଗଭୀରତା ଓ ସଂକ୍ରମଣଶୀଳତା । ଯେଉଁଠି କବିତାର ଉଦ୍ଦେଶ୍ୟ ଆବେଦନରେ ସଙ୍ଗୀତର ଧର୍ମକୁ ଅବଲମ୍ବନ କରିବା, ଦୃଶ୍ୟମାନ ବାସ୍ତବର ଅଭ୍ୟନ୍ତରରେ ଲୁଚି ରହିଥିବା ଅବଶେଷକୁ (Abstract) ବ୍ୟଞ୍ଜନାରେ ରୂପାୟିତ କରିବା, ସେଠାରେ ଗୁପ୍ତାଚ୍ଛନ୍ନତା, ପ୍ରାଞ୍ଜଳତାର ଅଭାବ ଏପରିକି ଅସ୍ପଷ୍ଟତା ବି ଗ୍ରହଣୀୟ ହୋଇପାରେ । କାରଣ ଏକ ସ୍ୱକୀୟ କାବ୍ୟିକ ଅନୁଭୂତି ଏପରି ନିବିଡ଼ ଓ ଅବମୂର୍ତ୍ତ ଯେ ବ୍ୟଞ୍ଜନା ଓ ସୂଚନା ବ୍ୟତିରେକେ ଭାବ ସଂକ୍ରମଣର ଅନ୍ୟ ଉପାୟ ସମ୍ଭବ ନୁହେଁ । କିନ୍ତୁ କେଉଁଠି, କେବେ ହେଲେ ଆବେଦନର କ୍ଷୀଣତା, ସନ୍ଦିଗ୍ଧତା କିମ୍ବା ଅବୋଧତା ଗ୍ରହଣଯୋଗ୍ୟ ନୁହେଁ ।

ପ୍ରୟୋଗବାଦୀ କମଳାକାନ୍ତଙ୍କ କବିତାରେ ଏପରି ଅସ୍ପଷ୍ଟତା ଓ ସନ୍ଦିଗ୍ଧତା ଏବେ ବି ବିରଳ ନୁହେଁ । 'ଅଜ୍ଞାତବାସ'ରେ ସମୟ ଓ ମନର ଅନ୍ଧାରୁଆ ଅରଣ୍ୟ ଭେଦକାରି କାବ୍ୟାନୁଭୂତିଟିକୁ ହୃଦୟଙ୍ଗମ କରିବା ସହଜ ନୁହେଁ । 'ଅଧୀଶ୍ୱର' କବିତାର ବୌଦ୍ଧିକତା ଅନାୟାସରେ ଅନୁଭୂତ ହୁଏ-ନାହିଁ ଏବଂ କେତେକ କବିତାରେ ଚିତ୍ରକଳ୍ପର ବିସ୍ତାରଣ ଫଳରେ ଅନୁଭୂତିର ସମୀକରଣ କରିହୁଏ ନାହିଁ । ଏପରି କେତେକ ସାମାନ୍ୟ ବ୍ୟତିକ୍ରମକୁ ବାଦ୍‌-ଦେଲେ ପ୍ରାୟ ସମସ୍ତ କବିତା ଆବେଗ ମୁଖର ଓ ଆବେଗ-ସଂଯୁକ୍ତ । ଗଠନ-ଭଙ୍ଗୀ ଓ ପ୍ରକାଶ ଭଙ୍ଗୀମାନ ସୀମା ପୂର୍ବଠାରୁ ଅପେକ୍ଷାକୃତ ବ୍ୟାପ୍ତ । ଏକ

ପ୍ରାନ୍ତରର ପଲ୍ଲୀ ଡାଙ୍ଗାରେ ଲିଖିତ 'ଭିନ୍ନ ସ୍ୱାଦର ଗୋଟିଏ କବିତା' ଓ ଅନ୍ୟ ପ୍ରାନ୍ତରର 'କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର' କବିତାରେ ଏଲିଅଟୀୟ ପ୍ରତିଧ୍ୱନି । ବାଗ୍‌ଧାରା ପ୍ରୟୋଗରେ କେଉଁଠି ନାଟକୀୟ ଭଙ୍ଗୀ [କି ହବାକ ହବ ଶାମଲା ?] ତ କେଉଁଠି କଥ୍ୟ ଶୈଳୀ [ମୁଁ ନାଚୁଛି ତୋ/ଶାଢୀର ଲାସମାନ ଚଟାଣରେ/ପେ : ଇତ୍ୟାଦି], ପୁଣି କେଉଁଠି ନାଟକୀୟ ଓ କଥ୍ୟ ପ୍ରଣାଳୀର ସମ୍ମିଶ୍ରଣ [ରେ ବାପୁ, ରେ ମନୁଆ, ଇତ୍ୟାଦି] ଭାଷା ପ୍ରୟୋଗରେ ଦେଶଜ ଶବ୍ଦର ଅକୃତ୍ରିମତା ଓ ସମ୍ଭ୍ରାନ୍ତ ଶୈଳୀର ଗାମ୍ଭୀର୍ଯ୍ୟ, ଉଭୟର ସମାବେଶରେ ଏକ ସାବଲୀଳ ଓ ବଳିଷ୍ଠ ମାଧ୍ୟମ ସଂଗଠିତ ହୋଇଛି ।

ଚିତ୍ରକଳ୍ପ ପ୍ରୟୋଗରେ କମଳାକାନ୍ତଙ୍କର ସିଦ୍ଧି ସ୍ୱୀକୃତିଯୋଗ୍ୟ । ପ୍ରାୟ ପ୍ରତ୍ୟେକ କବିତାରେ ଚିତ୍ରକଳ୍ପର ବର୍ଣ୍ଣିକା ପାଠକର ଅନୁଭୂତିକୁ ଏକ ଅପୂର୍ବ ରଂଗରେ ରଂଗୀନ କରିଦିଏ । ତାହାର ଉଦାହରଣ ଦେବା ପରିବର୍ତ୍ତେ ଯେକୌଣସି ଗୋଟିଏ କବିତାକୁ ନିମନ୍ତ୍ରଣ କରିବାହିଁ ଶ୍ରେୟ । ଚିତ୍ରକଳ୍ପ ତାତ୍ପର୍ଯ୍ୟ ସଂପର୍କରେ ଗୋଟିଏ ଦୃଷ୍ଟାନ୍ତ—

'ମୁଁ ଅବିକା ଝୁଲିମୁଣି ଝୁଲଉଛି
ମୋ ଶୈଶବ ଚେତନାର
ନିଷ୍ଠୁର ଖୁଣ୍ଟିରେ ।'

(ଅଧୀଶ୍ୱର)

ଶୈଶବ ଚେତନା ଦ୍ୱାରା ବୈଦିକତାର ସୂଚନା କେତେଦୂର ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଛି ତାହା ସଚେତନ ପାଠକମାନେ ବିଚାର କରିବେ । ଅପରନ୍ତୁ ଚିତ୍ରକଳ୍ପ ଯୋଗୁଁ କେତେକ କବିତାର ବ୍ୟଞ୍ଜନା ପାଠକ ଚିତ୍ତକୁ ସ୍ପର୍ଶ କରେ । ଚିତ୍ରକଳ୍ପ ଗୁଡିକ ବିଭିନ୍ନ ଇନ୍ଦ୍ରିୟ ପ୍ରତ୍ୟୟର ଅନୁଭବ ସୃଷ୍ଟି କରେ । ପୁଣି ପ୍ରୟୋଗ ପ୍ରଣାଳୀରେ ଦ୍ୟୋତକତା, ବ୍ୟାପକତା ଏବଂ ମୌଳିକତାର ସୂଚନା ମଧ୍ୟ ଦିଏ । କିନ୍ତୁ ଠାଏ ଠାଏ ଚିତ୍ରକଳ୍ପର ବିସ୍ତାରଣ ଯେଉଁଠି ତାତ୍ପର୍ଯ୍ୟ ହରାଏ, ସେଠାରେ ଅସ୍ପଷ୍ଟତାର କାକ ଜ୍ୟୋତ୍ସ୍ନା ସନ୍ଦିଗ୍ଧତାର ବାତାବରଣ ମଧ୍ୟ ସୃଷ୍ଟି କରେ ।

**ମତ ଅଭିମତ ଭିନ୍ନମତ ॥**

ଆଧୁନିକ କବି ହିସାବରେ କମଳାକାନ୍ତଙ୍କର ଅନ୍ୟତମ ବୈଶିଷ୍ଟ୍ୟ ତାଙ୍କର ଶବ୍ଦ ଭଣ୍ଡାର ଏବଂ ସେଗୁଡ଼ିକର ଆଳଙ୍କାରିକ ଗ୍ରନ୍ଥନ ପ୍ରକ୍ରିୟା । ତାଙ୍କର କବିତା ପ୍ରାଚ୍ୟ ଓ ପାଶ୍ଚାତ୍ୟ ଅଳଙ୍କାର ଶାସ୍ତ୍ର ଅନୁମୋଦିତ ବିଭିନ୍ନ ଅଳଂକରଣ ପ୍ରକ୍ରିୟାର ଏକ ଆଧୁନିକତମ ପ୍ରୟୋଗଶାଳା । ଚିତ୍ରକଳ୍ପ ପ୍ରୟୋଗରେ ସେ ଆଧୁନିକତା ଦାବି କରନ୍ତି । ଯୁବତୀର ବକ୍ଷୋଜ ଲାବଣ୍ୟକୁ ଚକାଡୋଳା ସହିତ ତୁଳନା କରିବା ଦ୍ୱାରା (ସମୁଦ୍ର) ଆଧୁନିକତାର ସୂଚନା ଦେବା ସଙ୍ଗେ ସଙ୍ଗେ ସେ ନିର୍ଭୀକତାର ମଧ୍ୟ ସୂଚନା ଦିଅନ୍ତି । ପୁଣି ଅତି ନିଃସଂକୋଚ ଭାବରେ ବିଭତ୍ସତାର ବି ସୂଚନା ଦେଇ (ଜିଭ) ସ୍ୱୀକୃତ ରୁଚିବୋଧ ଓ ଗତାନୁଗତିକ ଭବ୍ୟତା ବିରୁଦ୍ଧରେ କଠୋର ବିଦ୍ରୋହ କରିବାକୁ ପଶ୍ଚାଦପଦ ହୁଅନ୍ତି ନାହିଁ ।

କମଳାକାନ୍ତ ଜଣେ ଏକ ନିଷ୍ଠ କୃତିପ୍ରବଣ ସାଧକ ଓ କବି ପ୍ରତିଷ୍ଠାର ଅଧିକାରୀ । ଏହି ନିରବଚ୍ଛିନ୍ନ ସାଧକଙ୍କ କବି ପ୍ରତିଭାର ଶ୍ରୀ ଓ ସମୃଦ୍ଧି କାମନା କରେ ।

ତ୍ରିଲୋଚନ ମିଶ୍ର
ଅଧ୍ୟକ୍ଷ, ଭଦ୍ରକ କଲେଜ

## ସବିଶେଷ ସମ୍ବୋଧନ : କବିତା, ତୁମେ ନାରୀ

( ଚିତା ଅଙ୍କା କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ)

୧୯୮୭

ଚିତା ଅଙ୍କା କାନ୍ଥର ଛବି ; ପରିଧି ବାହାରେ ଅପେକ୍ଷାରତ ପୃଥିବୀ— ଅନୁଭୂତିର ଦୁଇଟି ସ୍ତର ମଧ୍ୟରେ କବି ଶ୍ରୀ ଲେଙ୍କାଙ୍କ କାବ୍ୟିକ ସଂଘାତର ପ୍ରତିଫଳନ ବୋଲି ମୋର ମନେହୁଏ । ବହିଟିର ନାମକରଣ ମଧ୍ୟ ମୋତେ ଏଭଳି ଚିନ୍ତାଧାରା ପାଇଁ ଅନୁପ୍ରେରିତ କରିଛି । କବିତା ହୋଇଛି କବିଙ୍କର

'ଆତ୍ମ ପ୍ରକାଶର ନିଷ୍କପଟ ଗୋପନୀୟତା,' 'ସବିଶେଷ ସମ୍ବୋଧନ'— କବିତା, ତୁମେ ନାରୀ ।'

ପ୍ରଚଳିତ ମୂଲ୍ୟବୋଧ ଏବଂ କବିର ସ୍ୱାଭାବିକ କାବ୍ୟିକ ପ୍ରତିକ୍ରିୟା ସାମଗ୍ରିକ ଭାବରେ ସଂକଳନଟିରେ ସମାନ୍ତରାଳ ଭାବରେ ଗତିକରିଛନ୍ତି ଏବଂ ସ୍ଥାନେ ସ୍ଥାନେ ପରସ୍ପରକୁ ଛୁଇଁ ଯିବାର ଭ୍ରମ ମଧ୍ୟ ସୃଷ୍ଟି ହୋଇଛି । ସଂକଳନଟିର କବିତା ଗୁଡ଼ିକରେ ନାରୀ ପୁରୁଷ ସମ୍ପର୍କହିଁ ମୁଖ୍ୟ ଚେତନା । ଠିକ୍ ପ୍ରେମ ନୁହେଁ— କାରଣ ସାମଗ୍ରୀକ ଭାବରେ କୌଣସି ଆଧୁନିକ କବିଙ୍କର, ବିଶେଷତଃ ଏଇ ସଂକଳନ, ପ୍ରେମ କବିତା ସଂକଳନ ବୋଲି ସଠିକ ଭାବେ କୁହାହେବ ନାହିଁ । କବିର ସୁବିସ୍ତୃତ ଚେତନା ପଟଳରେ ବିଭିନ୍ନ ମୁହୂର୍ତ୍ତର, ବିଭିନ୍ନ ଦୃଶ୍ୟର ତଥା ବିଭିନ୍ନ ଅନୁଭୂତି ଓ ସେଗୁଡ଼ିକର ପ୍ରତିକ୍ରିୟାର ମାନସିକ ଅବସ୍ଥାର ପ୍ରତିଫଳନ ଯେତେ ବେଶୀ ସୂକ୍ଷ୍ମ ଓ ସଠିକ-କବିତାର ଆବେଦନ ସେତିକି ମାତ୍ରାରେ ଗ୍ରାହ୍ୟ । ତେଣୁ କମଳାକାନ୍ତ ଲେଙ୍କାଙ୍କ ଏଇ କବିତା ସଂକଳନଟି ନାରୀ-ପୁରୁଷ ସଂପର୍କ ଭିତ୍ତିରେ ପ୍ରେମ, ଯନ୍ତ୍ରଣା, ଅନ୍ତର୍ଦ୍ଦାହ, ଆସକ୍ତି, ରତି, ଭୁଲଭଟ କାରଣ ଜନିତ ମାନସିକତା ଓ ସାଂସାରିକତାର ସମ୍ମୋହନ ମିଶ୍ରିତ ଏକ ସ୍ୱର । କେଉଁଠି ସେ ସ୍ୱର କରୁଣ ତ କେଉଁଠି ବେଶ୍ ଉଜ୍ଜ୍ୱଳ, ଶାଶ୍ୱତ ଓ ଅନୁଭବ୍ୟ, କେଉଁଠି ସେ ସ୍ୱର ନିଷ୍ଠୁର ବାସ୍ତବତାର ପୃଷ୍ଠରେ ଜୀବନ୍ତ, ବେଗମାନୀ ତ କେଉଁଠି ସଂପୂର୍ଣ୍ଣ ଗାର୍ହସ୍ଥ୍ୟ-ଅଙ୍ଗୀକାର ବୋଧର ଅକପଟ ଅଭିବ୍ୟକ୍ତି । ଠାଏ ଠାଏ ଠିକ ନୁହଁ, ବହିଟିର ଅନେକତ୍ର କଥା କମ୍, ଭାବ ଅନେକ । ପ୍ରତିଟି ଶବ୍ଦ ସତେ ଯେମିତି ଭାବ-ବୋମା । ବିସ୍ଫୋରିତ ହେଲେ ଅବସ୍ଥା ସାଂଘାତିକ । ଯେମିତି : ସଭରେ/ କେତେ/ସଅଳ/ତମେ ବୁଢ଼ୀ ହୋଇଗଲ ?/ ଏ ପାଜି ସମୟ ଠାରୁ/କି ଭୟଙ୍କର/ଦୁଷ୍ମନ ମୁଁ ?/ ଦେଖିଲ ।' (ଦୁଷ୍ମନ୍)

ନାରୀ ପ୍ରାୟ ସବୁ ଯୁଗରେ, ସବୁ ଦେଶରେ କବିତାର ପ୍ରାଣ-ହୋଇ ଆସିଛି । କିନ୍ତୁ ପରିବର୍ତ୍ତିତ ସାମାଜିକ ଏବଂ ପାରିପାର୍ଶ୍ୱିକ ପରିସ୍ଥିତି ଅନୁସାରେ ଏଇ ନାରୀ ପୁରୁଷ ସଂପର୍କର ନୂତନ ପରିଭାଷା ସୃଷ୍ଟି ହେବାକୁ ବାଧ୍ୟ । ଆଧୁନିକ କବି ଯେଉଁଭଳି ଭାବେ ନାରୀ ବା ପ୍ରେମର ଚିତ୍ରଣ କରିବ,

ତା' ଅନ୍ୟ ଦୃଶ୍ୟସ୍ପର୍ଶମାନଙ୍କ ଶରଣ ଠାରୁ ଭିନ୍ନ ସ୍ୱାଦର ହେବା ଦେଖେ । ସଂକଳନଟିରେ ନାରୀର ବିଭିନ୍ନ ରୂପ, ରଂଗ, ରସ ଓ ମଧୁକର ପ୍ରତିଫଳନ ଅଧିକାଂଶ କବିତାରେ କବିଙ୍କ ସ୍ୱକୀୟତାର ତୂଳୀରେ ଚିତ୍ରିତ । ଏକରସତା ନାହିଁ ଏ କବିତା ଗୁଡ଼ିକରେ । ଅଛି ନିତ୍ୟ ନୂତନ ବହୁରୂପର ପ୍ରତିଚ୍ଛବି । ନାରୀ ଏଠି କେବଳ ଶରୀର ସର୍ବସ୍ୱ ତତ୍ତ୍ୱ ନୁହେଁ ବା ସ୍ୱପ୍ନ ବିଳାସର ଇନ୍ଦ୍ରଧନୁ ନୁହେଁ । ଏଠି ଅଛି ନାରୀର ବହୁମୁଖୀ ସତ୍ତାକୁ ବୁଝି ହେବାକୁ ଧରିବାର ପ୍ରୟାସ । ତା' ସ୍ୱପ୍ନ ହେଉ ବା ଦେହ, ଆତ୍ମା ହେଉ ବା ପରକୀୟା, ପାପ ହେଉ ବା ପୁଣ୍ୟ; ସ୍ୱକୀୟାର ମଧୁଗନ୍ଧ ହେଉ ବା ଦୁର୍ଲଭ୍ୟାର ନିଆଁ ଓ ହତାଶ । ଏଠି ଅଛି ଠିକ୍ ଭାବରେ ଆଘ୍ରାଣ କରିବାର ଦେହ, ମନ ଓ ହୃଦୟରେ ସଞ୍ଚାର କରିବାର ଦୁର୍ବାର ଅଭୀପ୍ସା— ସେ ହେଉ 'କାମିନୀର ବାସ୍ନା, ଯାହା ଆସେ ଦକ୍ଷିଣ ବାତାୟନରେ' ବା 'ମହୁଲ ଗନ୍ଧରେ ଫାଟି ପଡ଼ୁଥିବା ଜଙ୍ଗଲ'ର ଧୂପ ଦୀପ ଚନ୍ଦନର ବାସ୍ନା ବା ହେଉ ପାଚିଲା ଧାନକେଣ୍ଡାର, ପାଚିଲା ଫଳର ।

ଅନୁଭୂତିର ବୈଚିତ୍ର୍ୟ ଏବଂ ତା'ର ଯଥାର୍ଥ ରୂପ ପ୍ରଦାନ ହିଁ ମୋ ମତରେ ଏଇ ସଂକଳନରେ ଥିବା ଅଧିକାଂଶ କବିତାର ବୈଶିଷ୍ଟ୍ୟ । ଏହି ବୈଚିତ୍ର୍ୟ ମଧ୍ୟରେ ଏକକ ସ୍ୱରଟିଏ ଖୁବ୍ ମନ୍ଦ୍ର ଭାବରେ ଶୁଣିହୁଏ ପ୍ରତିଟି ସରଗମ୍‌ରେ । ସିଂଫୋନି ମଧ୍ୟରେ ଏହା କେତେବେଳେ ଖୁବ୍ ସ୍ପଷ୍ଟ ତ କେତେବେଳେ ଅସ୍ପଷ୍ଟ ମଧୁର । ପୁଣି କେତେବେଳେ ନଶୁଣି ଶୁଣିବାର ଭ୍ରମ ବି ସୃଷ୍ଟି କରିପାରେ ସେଇ ଅଶ୍ରୁତ ସ୍ୱର ।

ଏଇ ଏକକ ସ୍ୱରଟି କାବ୍ୟ ପୁରୁଷର । ବେଶ୍ ଆତ୍ମୀୟ ଓ ସୁସ୍ଥ । ବେଶ୍ ହୃଦ୍ୟ ଓ ସଂବେଦନଶୀଳତାରେ ସିକ୍ତ । ସ୍ପଷ୍ଟ ଓ ନିଷ୍କପଟ । କେଉଁଠି ସେ ସ୍ୱର କହୁଚି— 'ଶପଥ କରୁଚି ତୁମ୍ଭ ମନୀଷାର/ଏଣିକି/କୁଆଡେ ଯିବିନାହିଁ' କେଉଁଠି ପୁଣି ତା' କେବଳ 'ସଫେଦ/ଗଙ୍ଗଶିଉଳିର ପ୍ରାର୍ଥନାର' ସ୍ୱର, କେଉଁଠି ପୁଣି ନାସ୍ତିକ ବୁଦ୍ଧିମତୀର 'ଆ,କଥା ଦଉଚ/ନାଲି ଆଖିରେ ଗୃହିଣୀ ବନାଇଁ × × × ମୋ ସାଂସାରିକତାର/ଦୁର୍ଲଭ ଖେଳକୁ ।' ଅଥବା ଅନ୍ୟନ୍ତ ଆକୁଳତାରେ ମ୍ରିୟମାଣ । 'ମୋତେ ମୁକ୍ତ କର/ମୁକ୍ତ କର/ଛିନ୍ନ କର ।' ଅଭିଶାପର, ଅଭିସଂପାତର, ଘୃଣା ବା କପଟତାର ସ୍ୱର ନାହିଁ ଏଇ

କବିତାମାନଙ୍କରେ । ବରଂ କ୍ଷମାର ଊର୍ଦ୍ଧ୍ୱଗାମୀ ଆଲାପ୍‌ରେ କବି ସ୍ୱର ମହାମୋଦ୍‌ଭାସିତ— 'ଯେବେ ଜାଣିଲି/ଶୁଖିଲା ପତ୍ରଟେ ପରି/ପ୍ରତିଶୋଧର ନାଆଁରେ/ଜଳି ଯାଉଛି/ପ୍ରେମର ଜହ୍ନଇରେ/ଅପବାଦର ପବନରେ/ବୁଝିଲି : ପ୍ରକୃତରେ ଭଲ ପାଇବା ମନେ ଖାସ୍ ଈର୍ଷା ହୋଇଯିବା/ଭୁଲ ଠିକ୍‌ର ସୁଆଡ଼ଟାରେ/ପୁଣି ପାଖକୁ/ଲେଉଟି ଆସିବା, ଜଡ଼େଇ ଧରିବା ।'

ଅସହାୟତା ଯେ ମଣିଷର ଅଲଂଘ୍ୟ ନିୟତି, ତା' କବି ବୁଝିଛନ୍ତି । ପରିସ୍ଥିତି ଏବଂ ପ୍ରଚଳିତ ସମାଜ ବ୍ୟବସ୍ଥାକୁ ଆଦରି ନେଇଛନ୍ତି କବିର ସତ୍ତା । କିନ୍ତୁ ସ୍ୱୀକାର କରିନାହିଁ । ତେଣୁ ଏଇ କବିତାମାନଙ୍କରେ ନୀରବ ବିଦ୍ରୋହର ଆହ୍ୱାନ ଖୁବ୍ ସ୍ପଷ୍ଟ ।

ବାରଂବାର ଯିବା ମନା । ବାରଂବାର
ବାରଂବାର ଯିବାକୁହିଁ ମନା ।
ଅଥଚ ମୁଁ ବାରଂବାର ଯାଏ, ଆସେ
ଆସେ ଏବଂ ଯାଏ । ଯେମିତି କି
ମୋ ରକତକୁ ବାଟ କାଢି ନେଇଯାଏ
କିଏ ଜଣେ . ସ୍ପଷ୍ଟ ଆଲୋକରେ ।
ମୁଁ ଅଥଚ ଜାଣେ ନାହିଁ
କେଉଁପରି ଯାଏ ଏବଂ ଫେରେ ଅନ୍ଧାରରେ— (ପୁନର୍ଗମନ)

ମୁକ୍ତି ବା ନିର୍ବାଣର କାମନା କବିଙ୍କର ନାହିଁ । ଏଭଳି କାମନା କବିର ନୁହେଁ । ତା' ହୁଏ ତ ହୋଇପାରେ ତପସ୍ୱୀର । କବି ନା ଧର୍ମଯାଜକ ନା ଶାସକ ନା ନ୍ୟାୟାଧୀଶ— କୌଣସି ଭୂମିକାରେ ଅଭିନୟ କରିପାରେନା । କବିର କାମନା କେବଳ ଜୀଇବା : ଜୀବନର ସୁଖ ଓ ଜୀଇବାର ଦୁଃଖ । 'ମୁହୂର୍ତ୍ତର ଟିପ ଶବ୍ଦରେ ଆକାଶଟିଏ ବି ପ୍ରତିଫଳିତ ହୋଇପାରେ— ଅପବାଦର ନାଇଁ ତ ଯଶର ।

ଜୀବନ ଯେହେତୁ ସୀମିତ, କ୍ଷଣସ୍ଥାୟୀ ଓ କ୍ଷୁଦ୍ର କେବଳ ଶ୍ରେଷ୍ଠ ସ୍ୱପ୍ନଟିଏ ଏଠି ହୁଏତ ଦେଖିବା ଯଥାର୍ଥ ହବ—

ମତ ଅଭିମତ ଭିନ୍ନମତ ॥

"ଓଡ଼ିଶାକୁ ପଡ଼ିଥିବା
ଫୁଲ ଭର୍ତ୍ତି ଡାଳ
ଯେଉଁଠି ପାଣିକୁ ଛୁଇଁଛ—
ଆସ, ବସାଟିଏ ବାନ୍ଧିବା,
ଗୀତଟିଏ ବୋଲିବା
ସେଇଠି ।

ସେଥିପାଇଁ ବୋଧହୁଏ ଏହି ବହିଟିର ଅନେକ କବିତା ମୁହୂର୍ତ୍ତ-ହର୍ଷମୁଗ୍ଧ ଜୀବନର ଜୟଗାନରେ ମୁଖର ଓ ଗୀତି ଧର୍ମୀ । କରୁଣା ଭାବୋଚ୍ଛ୍ୱାସର ମାଳତ୍ୟରେ ରସସିକ୍ତ କବିତା ଗୁଡ଼ିକ— କବିତା, ଆତ୍ମଗୋପନ, ନଅାଁ-ଗୀତ, ବଜ୍ରମନ୍ତ୍ର, ବର୍ଣ୍ଣନ ପ୍ରଭୃତି । 'କବିତା' ଶୀର୍ଷକ କ୍ଷୁଦ୍ର କବିତାଟି ବୋଧହୁଏ ସଂକଳନର ଅତି ଚମତ୍କାର କବିତା ଗୁଡ଼ିକ ମଧ୍ୟରେ ଅନ୍ୟତମ ।

ଜହ୍ନି ଫୁଲଟିଏ
ପଶ୍ଚିମେ
ଦିଶୁଚ ଦୂରରୁ ।
ଅସରାଏ ବର୍ଷା
ପରେ ଯେମିତି
ଆକାଶରେ ଜହ୍ନ,
କବିତାର ପୃଥିବୀ ।
ଝାଟିମାଟି ଘର ଉପରେ
ଭୂସ୍ୱର୍ଗ ।'

ଏ ସଂକଳନର କବିତା ଗୁଡ଼ିକରେ ଅଛି ବକ୍ତବ୍ୟର ଚେତନା, ନୂତନ ଭଙ୍ଗିମା ଓ ସହଜ ଜଟିଳ ଅନୁଭବ ଓ ଅନୁଭୂତିର କାବ୍ୟିକ ସମୀକରଣ । କବି କମଳାକାନ୍ତଙ୍କ କାବ୍ୟିକ ଭାଷାର ଥିବା ଲୋକ ଚୋଙ୍କ ପଣ କବିତା ଗୁଡ଼ିକୁ ସୌନ୍ଦର୍ଯ୍ୟ ଓ ଅବବୋଧର ସୂକ୍ଷ୍ମତା ଦେବାରେ ସାହାଯ୍ୟ କରିଛି । ଗୋଟିଏ ଉଦାହରଣ—

ତମେ ଆସ : ଯେମିତି
କାମିଗାଛି ଫୁଟେ । ତପ
ଚଢ଼ଟେ ।'　　　(ଡ଼ିମିରି ଫୁଲ)

ଅନୁଭୂତିର ସିଧାସଳଖ କାବ୍ୟକ ପରିପ୍ରକାଶର ଏମିତି ଅନେକ ଉଦାହରଣ ଏଇ ସଂକଳନଟିରୁ ନିଆଯାଇପାରେ । ଅନେକନ ଚିତ୍ରକଳ୍ପ ବ୍ୟବହାରରେ ମଧ୍ୟ ମୌଳିକତା କବିତାର ଆବେଦନକୁ ଉପାଣିତ କରିଛି । ଯଥା—

ସବୁ କଥାରେ
ହସି ଦବାଟା
ତୋର ଅଭ୍ୟାସ,
ଯେମିତି
ଠକମକ ଫୁଟୁଥିବା
ଭାତ ହାଣ୍ଡି :
ଚେଜ ଗାଳି ଦେଲେ
ହସ ବନ୍ଦ ।'　　(କାକେସୀ)

ଏହି ସଂକଳନର କବିତାମାନଙ୍କ ମଧ୍ୟରୁ ମୋତେ 'ଅପ୍ରାସଙ୍ଗିକ,' 'ନାରୀ', 'ପ୍ରତିଲେଖ', 'କବିତା', 'ବିଜ୍ଞାପନ', 'ଉଚିତ ଅନୁଚିତ', 'ଏଣିକି', 'ଅଭିଯୋଗ', 'କ୍ଷମାମସ୍ତୁ' ପ୍ରଭୃତି କେତୋଟି କବିତା ଖୁବ୍ ଭଲ ଲାଗିଛି । ବକ୍ତବ୍ୟର ନିର୍ଭୀକ ପ୍ରକାଶଭଙ୍ଗୀ କବି ଶ୍ରୀ ଲେଙ୍କାଙ୍କ କବିତାର ଅନ୍ୟତମ ବିଶେଷତ୍ୱ । ସିଧାସିଧି ଭାବରେ ଓ ନିଃସଂକୋଚରେ ବକ୍ତବ୍ୟର ଉପସ୍ଥାପନା କବିତା ଗୁଡ଼ିକର ବଳିଷ୍ଠତା ଓ ପ୍ରଭାବଶାଳିତା ସପକ୍ଷରେ ପ୍ରମାଣ ଦିଅନ୍ତି ଓ ରସୋତ୍ତୀର୍ଣ୍ଣତା ଦାବି କରନ୍ତି ।

ଏଥିରେ ପରସ୍ପ ହୋଇଥିବା କେତେ ଗୁଡ଼ିଏ କବିତା— 'ପ୍ରୀତି ଓ ପ୍ରସ୍ତୁତି' 'ସ୍ମରଣ ବିସ୍ମରଣ ( ପ୍ରକାଶ କାଳ ୧୯୬୩ ଓ ୧୯୭୩ ) ରୁ ଗ୍ରହଣ କରାଯାଇଛି । ତେଣୁ ସମସ୍ତ ଓ ଅନୁଭୂତି ଦୃଷ୍ଟିରେ ଏସବୁଥିରେ କିଛିଟା

ମତ ଅଭିମତ ଭିନ୍ନମତ ||

ଭାବ ଘନତାର ଅଭାବ ଲକ୍ଷ୍ୟ କରିବା ବଡ଼କଥା ନୁହେଁ । କିନ୍ତୁ କମଳାକାନ୍ତୀୟ କବି ଦୃଷ୍ଟି ସବୁଥିରେ ସ୍ପଷ୍ଟ ଓ ଅଦ୍ଭୁତ ଯେମିତି 'ମାନଚିତ୍ର', 'ଶାମୁକା', 'ତମେ ଯଦି ଦେଖା ହୁଅ' ବା 'ମାନ୍ଥ' ଇତ୍ୟାଦି ।

କୌଣସି କବିତା ଗ୍ରନ୍ଥର ଝଡ଼ା ପାଠକ ଗ୍ରନ୍ଥରେ ହାତ ଦେଇ କହି-ପାରିବ ନାହିଁ ଯେ ସବୁ କବିତା ଗୋଟିଏପଣେ ଭଳି । ରୂପ ଭେଦରେ, ଦୃଷ୍ଟି ଭେଦରେ କବିତାର ଗ୍ରାହକତା ଭିନ୍ନ ଓ ସ୍ୱତନ୍ତ୍ର । ସେହି ସ୍ୱତନ୍ତ୍ରତା ଯେଉଁଠି ଯେମିତି ମୋତେ ଛୁଇଁଛି, ପ୍ରକାଶ କଲି ।

ଏହି ବିନୀତ ରଚନାଟି କମଳାକାନ୍ତଙ୍କ 'ଶତ ଅଙ୍କ କାନ୍ଥର ଛବି : ପରିଧି ବାହାରେ ଅନେକ୍ଷାରନ୍ତ ପୃଥିବୀ'ର ମୂଟବଂଧ, ଅଭିମତ ବା ମତାମତ ନୁହେଁ । ଏଭଳି କାର୍ଯ୍ୟ ପାଇଁ ମୁଁ ବୋଧହୁଏ ଅଭାଜନ ।

କମଳକାନ୍ତ ଲେଙ୍କା ଆଧୁନିକ ଓଡ଼ିଆ କାବ୍ୟ ଜଗତରେ ଏକ ବିଶିଷ୍ଟ କବି ଭାବରେ ସ୍ୱୀକୃତ ଓ ସମ୍ମାନିତ । କବିଙ୍କର ଅନେକ କବିତା ସଂକଳନ ଏଇ ପଚିଶ ବର୍ଷ ମଧ୍ୟରେ ପ୍ରକାଶିତ ହୋଇ ପାଠକ ଓ ସମାଲୋଚକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଛି । କବିଙ୍କର ଏଇ ସଂକଳନଟି ପ୍ରକାଶିତ ହବା ପୂର୍ବରୁ କବିତାଗୁଡ଼ିକ ପାଠ କରିବା ପାଇଁ ଏବଂ ଜଣେ ସାଧାରଣ ପାଠକ ଭାବେ ମୋର ପ୍ରତିକ୍ରିୟା ପ୍ରକାଶ କରିବା ପାଇଁ ସୁଯୋଗ ପାଇବା ମୋ ପକ୍ଷେ ଏକ ସୌଭାଗ୍ୟର ବିଷୟ ।

**ଶୁଭେନ୍ଦୁ ମୁଣ୍ଡ**
ଅଧ୍ୟାପକ, ଇଂରାଜୀ ବିଭାଗ
ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟ, ପୁରୀ

# ନୂତନତ୍ୱର ଅଭିଷେକ

(ଶିତା ଅଙ୍କା କାନ୍ଥର ଛବି ଓ ପଣିଧି ବାହାରେ ଅପେକ୍ଷାରତ ପୃଥିବୀ)

୧୯୮୭

କବି ଶ୍ରୀ କମଳାକାନ୍ତ ଲେଙ୍କା ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଏକ ସ୍ମରଣୀୟ ନାମ । ତିନି ଦଶକର ନିରବଚ୍ଛିନ୍ନ ସାଧନା ତାଙ୍କ କାବ୍ୟ ଆଭିମୁଖ୍ୟର ନିର୍ଦ୍ଦିଷ୍ଟ ଧାରା ନିର୍ଣ୍ଣୟ କରିଦେଇଛି । ମାତ୍ର ସଦ୍ୟ ପ୍ରକାଶିତ 'ଶିତା ଅଙ୍କା କାନ୍ଥର ଛବି ଓ ପଣିଧି ବାହାରେ ଅପେକ୍ଷାରତ ପୃଥିବୀ' ସେଇ ନିର୍ଦ୍ଦିଷ୍ଟ ଧାରା ଓ ଧାରଣା ବିରୁଦ୍ଧରେ ନୀରବ ବିଦ୍ରୋହଟିଏ । ପ୍ରେମାନୁଭବର ବିଚିତ୍ର ବିଭୂତିରେ ଭରା ପୁ'ର ଅଧିକାଂଶ କବିତା । ଶ୍ରୀ ଲେଙ୍କା ଇତି ପୂର୍ବରୁ ପ୍ରଚୁର ପ୍ରେମ କବିତା ରଚନା କରିଛନ୍ତି । ହୃଦୟର ମାର୍ମିକ ଆବେଦନରେ ଏସବୁ କବିତା ପୁଷ୍ଟ । ସ୍ଥୂଳତଃ ଜଣାପଡ଼େ 'ଶିତା ଅଙ୍କା କାନ୍ଥର ଛବି.....' ଗ୍ରନ୍ଥଟି 'ସ୍ମରଣ ବିସ୍ମରଣ' (୧୯୭୩) କବିତା ଗ୍ରନ୍ଥର ସଂପ୍ରସାରିତ ରୂପଭଳି । କାରଣ 'ସ୍ମରଣ ବିସ୍ମରଣ'ର କେତୋଟି କବିତା (ଶାମୁକା, ମାନଚିତ୍ର, ମାଛି, ତମେ ଫେର ଦେଖାହୁଅ) ଏଥିରେ ସନ୍ନିବିଷ୍ଟ । କିନ୍ତୁ ପ୍ରକୃତରେ ପୂର୍ବରୁ ଶୁଣା ଯାଇଥିବା ସ୍ୱରରେ ନୂତନତ୍ୱର ଆରୋପ ଘଟିଛି । ଗୋଟିଏ କଥାରେ କହିଲେ- 'ସ୍ମରଣ ବିସ୍ମରଣ'ରେ ସନ୍ନିବିଷ୍ଟ ଭାବାବେଗର ସମ୍ବୋଧନ ଶିତା ଅଙ୍କା...' ଗ୍ରନ୍ଥରେ ବୌଦ୍ଧିକତାର ବୈଚିତ୍ର୍ୟମୟ ଇଜଲାସରେ ଠିଆ ହୋଇଛି ।

'ଶିତା ଅଙ୍କା'ର କ୍ଷୁଦ୍ର କଳେବର ଯେପରି କବିଙ୍କ ଆତ୍ମ ପ୍ରକାଶର ନିଷ୍କପଟ ଗୋପନୀୟତା । ଫୁଲଫୁଟା ମୁହୂର୍ତ୍ତର ମଧୁରତା ସହ ଜୀବନର ବିଭିନ୍ନ

ସୋପାନ ଆରୋହଣ କରିବାର ଉକ୍ତ ମଧୁର ଅନୁଭୂତି ଏଥିରେ ସୁଷ୍ପଷ୍ଟ । ଜୀବନର ଏହି ଦ୍ୱୈତ ଅନୁଭବ କେତେ ସତ୍ୟ ଓ ବାସ୍ତବ ! 'ହାତପା ଲଗାଇ/ ତୁ ଆସିବୁ ନାହିଁ,/ଚଂପା ଫୁଲଟି/ପକେଟକୁ ଡେଇଁ ପଡ଼ିବାର/ସଂଭାବନା ଅଛି ।' (ଇସ୍ତଟିଏ) କହିଲା ବେଳେ କାବ୍ୟ ନାୟକର ରୋମାଣ୍ଟିକ ଭାବାକୁ-ଳତାର ଉଚ୍ଛଳତା ସହଜ ଲକ୍ଷ୍ୟ । କିନ୍ତୁ ଏ ଅନୁଭବ ଅତ୍ୟନ୍ତ ଗମ୍ଭୀର । 'ପ୍ରେମ' କବିତାରେ—

'ଯେଉଁଦିନ/ଶ୍ମଶାନରୁ ଫେରିବି/ତମ ଶବ ସତ୍କାର କରି/ହୁଏତ/ ମୋର ଶବ ସହ କଥାବାର୍ତ୍ତାରେ/ସାରା ରାତି ବିତିଯିବ;/ହୁଏତ ସାରା ରାତିର ଅଂଧାର/ଜଣାଯିବ/କବିତାର ପ୍ରତିମା ପରି/ପ୍ରେମର ଜୁଇଫୁଲ ।' ପ୍ରେମରେ ମୃତ୍ୟୁ ଓ ମୃତ୍ୟୁରେ ପ୍ରେମର ଅନୁଭବ ଅନ୍ତର୍ଦୃଷ୍ଟିର କାବ୍ୟିକ ପ୍ରକାଶ । ନିଜ ଶବ ସହ କଥାବାର୍ତ୍ତା ବେଳେ ମୃତ୍ୟୁକୁ ପ୍ରେମମୟ କରି ଦେଇଛନ୍ତି କବି । ପ୍ରେମ ଓ ମୃତ୍ୟୁର ଦୈତ ଲୀଳା ଭିତରେ ସଂଚରିତ ହୋଇଛି ଜୀବନକୁ କବିତାମୟ କରିବାର ଇଚ୍ଛା । ରାତିର ଅଂଧାରିତ ରୂପ ପ୍ରେମର ମୂର୍ତ୍ତିମନ୍ତ ପ୍ରତୀକ ହୋଇ, ଜୁଇ ଫୁଲର ମହକ ହୋଇ କବିତା ରୂପ ନେଉଛି । ପାରଂପରିକ ଦୃଷ୍ଟିଭଙ୍ଗୀ ଠାରୁ ଏହା ସଂପୂର୍ଣ୍ଣ ପୃଥକ ଅନୁଭବ ।

ଆଲୋଚ୍ୟ ଗ୍ରନ୍ଥରେ କବି ମିତବାକ୍ । ପ୍ରେମର ପୂର୍ଣ୍ଣତାରେ ହିଁ ଜୀବନ ପରିମିତ ଭାଷଣ ସମ୍ଭବ । ତାହାରିଆ ଅନୁଭୂତିର ଭାଷା ଆତ୍ମୀୟତାର ସ୍ନିଗ୍ଧତାରେ ବେଶ୍ ଉଜ୍ଜ୍ୱଳ । ଛଅଠିଚି କବିତା ଭିତରୁ ଅନ୍ତତଃ କୋଡ଼ିଏଟି କବିତାରେ ଏହି ଲକ୍ଷଣ ପରିଦୃଷ୍ଟ । ପ୍ରେମର ଅସଲ ଅର୍ଥ ସନ୍ଧାନରେ ଜୀବନକୁ ବାଜି ଲଗାଇଛନ୍ତି କବି । ସେଥିରୁ କେତେବେଳେ ଯନ୍ତ୍ରଣାର ହଳାହଳ ମିଳୁଛି ତ କେତେବେଳେ ବାହାରୁଛି ଆନନ୍ଦର ଅମୃତ । ଜୀବନର ରହସ୍ୟମୟ ବୈଚିତ୍ର୍ୟ ପାଇଁ ଏହି ଦ୍ୱନ୍ଦ୍ୱାତ୍ମକ ସ୍ଥିତି ଏକାନ୍ତ ଅପରିହାର୍ଯ୍ୟ ।

ଯୌବନରେ ଜୈବିକ ପ୍ରେମର ଉଚ୍ଛ୍ୱାସ ପରିଣତ ବୟସରେ ହୋଇଛି ଯୁକ୍ତିନିଷ୍ଠ । ଝଲଝଲ ସ୍ୱପ୍ନିଳ ସ୍ମୃତିରେ ଯେପରି ଛମ୍ ଛମ୍ ଭାବ— ଉତ୍ତୀର୍ଣ୍ଣ ଯୌବନର ସୂଚକ । ସୁକୁମାର ପ୍ରେମାନୁଭୂତି ସମ୍ପନ୍ନ ମଣିଷର ଦେହ ଓ ମନରେ

ଯେପରି ରୁକ୍ଷତାର କଳା ସ୍ୱାଦ ! ସବୁ ଜାଣି ନ ଜାଣିଲା ପରି, ସବୁ ଶୁଣି ନ ଶୁଣିଲା ପରି ଭୁଲିଯିବାର ଅଭିନୟ ତ କବି ପକ୍ଷରେ ସଂଭବ ନୁହଁ । ଯେପରି ଧରନ୍ତୁ 'ସତରେ/କେତେ/ସଅଳ/ତମେ ବୁଢ଼ୀ ହୋଇଗଲ ?/ଏ ପ୍ରାଜ୍ଞ ସମୟ ଠାରୁ/କି ଭଦ୍ରଙ୍କର ଦୁଷ୍‌ମନ୍‌ ମୁଁ/ଦେଖିଲି ।' (ଦୁଷ୍‌ମନ୍‌) । ପ୍ରେମିକାର 'ଖାସ୍‌ ଚୁଡ଼ି ଶବ୍‌ଦରେ ଅଶବ୍‌ଦ୍‌ଟିଏ ହୋଇ ଝୁଲୁଥିବା କବି-ପୁରୁଷର ଏକ ବୈଶିଷ୍ଟ୍ୟ ! ବୋଧହୁଏ ବର୍ବରତାର ସମୁଦ୍ରରେ ଏହା ଏକ ଉଷାକାଳୀନ ଅନୁଭୂତି :!

କବି ଚାହାଁନ୍ତି ଜୀବନର ପ୍ରତିଟି ମୁହୂର୍ତ୍ତରେ ହେଉ ନୂତନତ୍ୱର ଅଭିଷେକ । କୌଣସି ବସ୍ତୁର ପ୍ରାଚୀନତା ବା ତା'ର ସମ୍ଭାବ୍ୟ ପରିଣତି ପ୍ରତି ସଚେତନତା ପ୍ରକାଶ ନକରି ତା'ର ବର୍ତ୍ତମାନକୁ ଅର୍ଥମୟ କରିବାକୁ କବି ଇଚ୍ଛା କରନ୍ତି । 'ନାରୀ', 'ବିଜ୍ଞାପନ', 'ପ୍ରେମ' ପ୍ରଭୃତି କବିତାରେ ଏହି ସତ୍ୟ ପରିବର୍ତ୍ତନଶୀଳତାର କଷଟିରେ ପରିଶୀଳିତ । ନାରୀର ସ୍ୱାଧୀନତାକୁ ମାନବୀୟ ସମ୍ମାନବୋଧରେ ଭୂଷିତ କରିବା ଅର୍ଥ ଜୀବନର ପାପ ପୁଣ୍ୟକୁ ସମୁନ୍ନତ ମର୍ଯ୍ୟାଦା ପ୍ରଦର୍ଶନ କରିବା । କାରଣ କବି ବୁଝନ୍ତି 'ନାରୀ ତାଙ୍କ ପାପ ପୁଣ୍ୟର ନିର୍ଦ୍ଧାରିତ ଅଧିବାସ ।' (ନାରୀ) 'ନାରୀ ପ୍ରତି ଗଭୀର ସମ୍ମାନବୋଧ କବିତାଟିରେ ଉତ୍‌କୀର୍ଣ୍ଣ । ନାରୀ ହିଁ ତାଙ୍କ କବିତାର ପ୍ରତିରୂପ । ଶ୍ରୀ ଲେଙ୍କାଙ୍କ ଭାଷାରେ 'ଅଳକା/ମୋ ହାତ ପାଆନ୍ତାରେ/ଯେଉଁ କବିତାଟି/ଅଛି ; ସେ ତମେ । ତମକୁ କବିତାଟିଏ ଉପଢୌକନ ଦେବା ଅର୍ଥ— ତମ ସହ ଏକାନ୍ତରେ କିଛି କଥା ହେବା!' (ପ୍ରତିଲେଖ) । ନାରୀ ଯେ କବିଙ୍କ ଅସ୍ଥିର ପ୍ରତ୍ୟୟର ପ୍ରଥମ ଓ ସର୍ବଶେଷ ସଂବୋଧନ ! ନାରୀ ଯେ ଅନିତ୍ୟ ପ୍ରତି ଅସନ୍ତୁଷ୍ଟ ନିତ୍ୟତା ! ନାରୀ କବି ଜୀବନର ଭଲମନ୍ଦ ଓ ସ୍ୱଚ୍ଛନ୍ଦତାର ଋତୁ ଚକ୍ର ! କବିର ମନ୍ଦିରେ ଏହିପରି ପ୍ରେମରୂପା ମହୀୟସୀମାନଙ୍କର ଅପେକ୍ଷା ରହେ । ନାରୀକୁ ବ୍ରାହ୍ମୀ ମର୍ଯ୍ୟାଦା ଦେଉଥିବା କବିର ଦୃଷ୍ଟିରେ ନାରୀ ଯେ ଅନନ୍ୟା ଓ 'ମନ୍ଦାକିନୀ' ରୂପେ କାବ୍ୟ ନାୟକର ସ୍ଥିତି ବଳୟର କାରଣ ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ଶ୍ରୀ ଲେଙ୍କାଙ୍କ କବିତାରେ ବହୁ ନାରୀଙ୍କର ଶୋଭାଯାତ୍ରା । ମାତ୍ର

ମତ ଅଭିମତ ଭିନ୍ନମତ ।।

ସେମାନଙ୍କ ସୁସ୍ପଷ୍ଟ ପରିଚୟ ଅପରିଜ୍ଞାତ । ଆଧୁନିକ କବିର ପ୍ରେମ ଭାବନାରେ ଏଇ ଶୃଙ୍ଖଳାବୋଧ ଅଭିନବ ନିଶ୍ଚୟ । କାରଣ କବି ଜାଣନ୍ତି, ଭାବ ସଂଗୋପନ ଭାବ ମାଧୁର୍ଯ୍ୟର ଦ୍ୟୋତକ । ପୁଣି ନୈତିକତାର ମର୍ଯ୍ୟାଦା ଲଂଘନ ସବୁବେଳେ ବିପ୍ଳବ ନୁହେଁ ବୋଲି ବିଶ୍ୱାସ କରନ୍ତି । ତେଣୁ ପ୍ରକୃତିକୁ ବିକୃତିର ମାର୍ଗ ପ୍ରଦର୍ଶକ ଭାବେ ଚିତ୍ରଣ କରିବା ତାଙ୍କ ପକ୍ଷେ ସମ୍ଭବ ହୋଇ-ନାହିଁ । ଯେମିତି ଦେଖନ୍ତୁ :

'ଜହ୍ନି ଫୁଲଟି ଏ/ପରିା/ତମୋ/ବିଶ୍ୱତ ଦୂରରୁ/ଅସରିଏ ବର୍ଷ ॥/ପରେ ଯେମିତି/ଆକାଶରେ ଜହ୍ନ, କବିତାର ପୃଥିବୀ ॥/ଝାଟି ମାଟି ଘରର ଉପରେ/ ଭୂସ୍ୱର୍ଗ ।' (କବିତା) । ପ୍ରେମରେ ଏହି ସଂଯମବୋଧ ଚିନ୍ତା ସ୍ଥଳରେ ସ୍ୱାର୍ଥହୀନ ଅନ୍ୱେଷଣ ଉପରେ ଆଧାରିତ । 'କାଠ କ୍ୟାବିନ୍‌ରେ ପାନ ଭାଙ୍ଗୁଥିବା ଝିଲୋଟି' ଏହି ଧରଣର ଏକ ଚମତ୍କାର କବିତା । କାଠ କ୍ୟାବିନରେ ପାନ ଭଙ୍ଗାଳି ସ୍ତ୍ରୀ ଲୋକଟି ଦ୍ୱିପ୍ରହରରେ ଗରାଖ ନଥିଲା ବେଳେ କ'ଣ କରେ ? ସ୍ମୃତିର ପରିତ୍ୟକ୍ତ ଦୁର୍ଗ ଭିତରେ ପଶିଯାଇ ବୋଧହୁଏ ଆପଣାକୁ ଖୋଜେ । ତା' ସାମ୍ନାରେ ଥିବା ଚୂନ ଠେକଟିର ଗୁରିପାଖରେ ଶୀତଳତା ପାଇବା ପାଇଁ ମଦା ମଦା ଜଦା ବେଢ଼ିଯାଆନ୍ତି ! ନଖ କୋଣରେ ଜମିଥିବା ଶୁଖିଲା ଚୂନକୁ ଛଡାଇବା ବେଳେ, ଅଳିଆ ବାଳକୁ ହାତରେ ସାଉଁଳି ନେବାବେଳେ ସେ ସ୍ମୃତିର ରୋମନ୍ଥନ କରେ । ଅନ୍ୟମନସ୍କା ସ୍ତ୍ରୀ ଲୋକଟି ଗୁଆକାତିରେ ଗୁଆ ଦାବିଲାବେଳେ ଯେମିତି ଦାବି ଗୁଲେ ସ୍ମୃତିକୁ/ସମୟକୁ । ଶୂନ୍ୟତା ହିଁ ଝିଲୋଟିର ନିର୍ଜନ ଆହ୍ଲାଦ ହୋଇଯାଏ । ସାମ୍ନାରେ ଝୁଲୁଥିବା ନଡ଼ିଆକତାର ନିଆଁଝୁଲ ତା' ଯୌବନର ତାତି ଓ ଦହନକୁ ମନେ ପକାଇଦିଏ । ପାନ ଭାଙ୍ଗୁଥିବା ସ୍ତ୍ରୀ ଲୋକଟିର ବସ୍ତୁପୂର୍ଣ୍ଣ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ସ୍ୱାତନ୍ତ୍ର୍ୟ ଦାବି କରେ । ପ୍ରାସଙ୍ଗିକ ଭାବରେ 'ବଳ୍ମ ମଙ୍ଗଳ', ଉଚିତ-ଅନୁଚିତ,' 'ଚିଠି', 'ବିଜନମୟୂ' ପ୍ରଭୃତି କବିତା ଉଲ୍ଲେଖ ଯୋଗ୍ୟ ।

ରସ ବିଗ୍ଧରରେ ଏ ଗ୍ରନ୍ଥର ବହୁ କବିତା ସଫଳତାର ସିଦ୍ଧି ଆବେଦନ କରିପାରିବେ । ଓଡ଼ିଆ ସାହିତ୍ୟର ଅଭିଜାତ ପ୍ରେମ କବିତା ବିବୃତିରେ ଶ୍ରୀ ଲେଙ୍କାଙ୍କ ଏହି ସଙ୍କଳନର କବିତା ଗୁଚ୍ଛକ ପରିଷ୍କାର ସ୍ୱର

॥ କବି କମଳାକାନ୍ତ

ଜୀବନ୍ତ ଚରିତ୍ର ଅଙ୍କନ କରିପାରନ୍ତି। ଦୈହିକ ପ୍ରେମଠାରୁ ଉର୍ଦ୍ଧ୍ୱରେ ପ୍ରେମର ସନ୍ଧାନ ତାଙ୍କର ସର୍ବଶେଷ ନିଷ୍ପତ୍ତି । ଆଧୁନିକ ମଣିଷ ପାଇଁ ଏହାଠାରୁ ଅଧିକ ଆଶ୍ୱାସନାର ବିଷୟ କିଛି ନାହିଁ ।

**ଡକ୍ଟର ମଥୁରାନାଥ ହୋତା**

ଅଧ୍ୟାପକ, ସରକାରୀ ମହାବିଦ୍ୟାଳୟ, ଫୁଲବାଣୀ

## ଏକ ଭିନ୍ନ ସ୍ୱାଦର କବିତା ଗ୍ରନ୍ଥ

'ଶିତା ଅଙ୍କା କାନ୍ଥର ଛବି··· ।'

( ଶ୍ରୀପର୍ଣ୍ଣୀ— ଦ୍ୱିତୀୟ ସଂଖ୍ୟା- ୧୯୮୭ )

'ଶିତା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ' କବିତା ସଂକଳନ କମଳାକାନ୍ତ ଲେଙ୍କାଙ୍କର ସଦ୍ୟତମ କାବ୍ୟିକ ଆତ୍ମ ପ୍ରକାଶ । ଏଥିରେ ସ୍ଥାନ ପାଇଥିବା କବିତା ଗୁଡ଼ିକ ଯେ ମୁଖ୍ୟତଃ ପ୍ରେମ କବିତା ଏହା କବିଙ୍କର ଆତ୍ମକଥନରେ ସ୍ପଷ୍ଟ । ନାରୀ ପୁରୁଷର ସଂପର୍କ ବିଭିନ୍ନ ସମୟରେ କବିତାର କଥାବସ୍ତୁ ହୋଇ ଆସିଛି । କିନ୍ତୁ କମଳାକାନ୍ତଙ୍କର ପ୍ରେମ ଓ ନାରୀ ପ୍ରତି ଥିବା ଦୃଷ୍ଟିଭଙ୍ଗୀର ସ୍ୱାତନ୍ତ୍ର୍ୟ ଆମର ପରମ୍ପରାକୁ ଯଥାଯଥ ମାନ୍ୟତା ଦେଇଥିଲି ଭଳି ମନେହୁଏ ନାହିଁ । ପ୍ଲାଟୋନିକ ପରଂପରାର ଭାବଗତ ଆଦର୍ଶକୁ ଖୋଲ୍‌ଖୋଲ୍ ଭାବେ ଶ୍ରୀ ଲେଙ୍କା ପ୍ରତ୍ୟାଖ୍ୟାନ କରି କହନ୍ତି—

'ସବୁ କଥାରେ ହସି ଦବାଟା
ତୋର ଅଭ୍ୟାସ,

ମତ ଅଭିମତ ଭିନ୍ନମତ ।

ଯେମିତି ଚକମକ ଫୁଟୁଥିବା
ଭଙ୍ଗା ହାଣ୍ଡି,
ଯେଜ ଗାଳି ଦେଲେ
ହସ ବନ୍ଧ ।''

ଦେହ ଓ ସ୍ଥୂଳ ଶରୀରର ଆକର୍ଷଣ ଏଠି ଏକାନ୍ତ ପ୍ରତ୍ୟକ୍ଷ ଓ ସ୍ପଷ୍ଟ । ଏହା ବୋଧହୁଏ ତାଙ୍କର ଅନ୍ୟତମ କାବ୍ୟିକ ବିଶେଷତ୍ୱ ।

କବିତା ଗୁଡ଼ିକର ଆତ୍ମିକ ସ୍ୱର ଦେହଜ ବା ଦେହ ଭିତ୍ତିକ ହୋଇଥିଲେ ହେଁ, ଦେହ ସର୍ବସ୍ୱ ନୁହେଁ । କ୍ଷଣିକତାର ଉନ୍ମାଦନା ଓ ବର୍ତ୍ତମାନ ଉଷ୍ଣତାର ସାନ୍ଦ୍ର ଅନୁଭୂତି ଏଇ କବିତା ଗୁଡ଼ିକରେ ଥିଲେ ହେଁ ଧର୍ମାସକ୍ତ ମୁହୂର୍ତ୍ତମାନଙ୍କୁ ଉତ୍ତରଣ କରିବାର ପ୍ରବଳ ଅଭିପ୍ସା କବିଙ୍କର ରହିଛି । ସ୍ଥୂଳ ଭିତରେ ସୂକ୍ଷ୍ମର, କ୍ଷଣିକ ଭିତରେ ଚିରନ୍ତନର, ମୁହୂର୍ତ୍ତ ଭିତରେ ଶାଶ୍ୱତର ବର୍ତ୍ତିତ୍ୟ ଦ୍ୟୁତି କବି ସ୍ପଷ୍ଟ ଦେଖିପାରିଛନ୍ତି । ଯଥା 'ଅପବାଦ' କବିତାରେ—

'ଘ୍ରାଣ ଭିତ୍ତି ପରି
ମୁଁ ଉଠିଯାଏ ଊର୍ଦ୍ଧ୍ୱକୁ
ସଂପର୍କର ବାହୁ ବଂଧରୁ
ଅନଂତ ଗହ୍ୱରକୁ ।''

ମାନଚିହ୍ନ କବିତାରେ କବିଙ୍କର ଏହି ସ୍ୱର ସ୍ପଷ୍ଟତର । ପ୍ରେମର ସଂଜ୍ଞା ଦବାକୁ ଯାଇ କବି କହନ୍ତି—

'ଓଠ, ସ୍ତନ ଓ ଜଂଘର ଦ୍ୱନ୍ଦ୍ୱରୁ
ଆପଣାକୁ ନିବର୍ତ୍ତାଇ
ଶୂନ୍ୟରେଇଁ ଶୂନ୍ୟକୁ ଯୋଖିବା ।'

କବିତା ଗୁଡ଼ିକରେ ପାର୍ଥିବ ଶରୀରର ପ୍ରାଧାନ୍ୟ ଥିବାରୁ କବିଙ୍କର ନିଷ୍କପଟ ଭାବାନୁବେଗ ଅନୁଭୂତିମାନଙ୍କୁ ଛୁଇଁଯାଏ ଓ ସେମାନଙ୍କ ସହିତ ଆତ୍ମୀୟତାର ନିବିଡ଼ ସମ୍ପର୍କ ସହଜରେ ସ୍ଥାପନ କରିହୁଏ ।

।। କବି କମଳାକାନ୍ତ ।।

ଏହି କବିତା ଗୁଡ଼ିକ, ନାରୀ ଓ ପ୍ରେମ ସଂପର୍କରେ କମଳାକାନ୍ତଙ୍କର ଅନ୍ତରଙ୍ଗ ଅନୁଭୂତିର ସ୍ୱାକ୍ଷର ବହନ କରିଛନ୍ତି । କେଉଁ କବିତାରେ ନାରୀ ଲାସ୍ୟମୟୀ ପ୍ରେମିକା ତ କେଉଁଠି କ୍ଷମାମୟୀ, କେଉଁଠି ରହିଛି ଲଘୁ ପରିହାସ ତ କେଉଁଠି ରହିଛି ଆଦ୍ୟାଶକ୍ତି ପ୍ରତି ସଶ୍ରଦ୍ଧ ସମ୍ମାନ । ତାଙ୍କର ପ୍ରେମାନୁଭୂତିର ବ୍ୟାପକତା ଏହି କବିତା ଗୁଡ଼ିକର ସଫଳତା ପାଇଁ ଅନେକାଂଶରେ ଦାୟୀ । ନାରୀ ସବୁ ସୃଷ୍ଟିର ଉତ୍ସ, ସୃଷ୍ଟିକାରିଣୀ— ଏହି ତଥ୍ୟକୁ କବି ସମ୍ମାନର ସହିତ ଗ୍ରହଣ କରିଛନ୍ତି ଓ ପ୍ରଥମ କବିତା 'ନାରୀ'ରେ ଲେଖିଛନ୍ତି—

'ସୃଷ୍ଟିର ସଚେନ୍ନୀ ।
ରହସ୍ୟର ନିକଟତମ,
ସଂକ୍ଷିପ୍ତ ଉତ୍ତର ତନ୍ମୟୀ ।
କବିର ଅଷ୍ଟୋତ୍ତର ଶତ ନାମ
ବ୍ରାହ୍ମୀ, ସରସ୍ୱତୀ ।

ପ୍ରେମିକା/ନାରୀ ପାଖରେ 'ଅସ୍ମିତା', 'ଅହଂକାର' ବିଲୋପନ କରି ଆନନ୍ଦର (Ecstacy) ସନ୍ଧାନରେ ଏକାକାର ହୋଇଯିବା ପ୍ରେମର ସର୍ବଶ୍ରେଷ୍ଠ ପରିପ୍ରକାଶ । ଏଇଠି ଜାନ୍ତବ କ୍ଷୁଧା, ପ୍ରେମର ନୈସର୍ଗିକ ସୌନ୍ଦର୍ଯ୍ୟରେ (Sublimation) ଉଦ୍‌ଭାସିତ ହୁଏ । 'ଆତ୍ମଗୋପନ କବିତାରେ ଅଛି—

"ତମ
ଜୁଡ଼ା ଖୋଲିଦିଅ ।
ଓ ସଂଭ୍ରମରେ
ଘଂଚ ଆସ
ଖୁବ୍ ପାଖକୁ,
ଚମ୍ପା ଫୁଲଟିଏ ପରି
ମୋ ଅସ୍ତିତ୍ୱ
ଲୁଚିଇ ରଖେ
ତା' ଭିତରେ
ପୁନଃ ବନ୍ୟାସକୁ ।'

'ବିଲ୍ଲୀନ' କବିତାରେ ସେଇ ଆତ୍ମ ପ୍ରତ୍ୟୟ ଓ ଆନ୍ତରିକତାର ସ୍ୱର, ଅଣ୍ଟେଣଟି ବର୍ଣ୍ଣମାଳାର କୋଳେଇରେ ନିଶ୍ଚିହ୍ନ ହୋଇଯିବାକୁ ମିଳିଛି ନିମନ୍ତ୍ରଣ ।

ପ୍ରେମିକ ମାନେଇ ସ୍ୱପ୍ନ ବିଳାସୀ । ସ୍ୱପ୍ନବିନା ସୃଷ୍ଟି ସଂଭବ ନୁହେଁ । 'ଗୋଟେ ଶ୍ରେଷ୍ଠ ସ୍ୱପ୍ନ' କବିତାରେ ଏଇଭଳି ଗୋଟେ ଶ୍ରେଷ୍ଠ ସ୍ୱପ୍ନ ଅଛି—

ଆସ ବସାଟିଏ
ବାନ୍ଧିବା, ଗୀତଟିଏ
ବୋଲିବା ସେଇଠି ।"

'ଅପ୍ରସଂଗିକ' ପ୍ରେମାନୁଭୂତିର ଅନ୍ୟ ଏକ ପର୍ଯ୍ୟାୟ । ପ୍ରେମିକର ସବୁ କ୍ରୋଧ, ପ୍ରେୟସୀ ଆଖିର ନୀରବ ପ୍ରେମ ଓ ପ୍ରତିଶ୍ରୁତି ପାଖରେ ହାର୍ ମାନେ ଓ ଆପଣାଛାଏଁ ପ୍ରଶମିତ ହୋଇଯାଏ । ଯେମିତି—

'ମାନ ଯାଇ ସାମ୍ନା ହେଲେ
ସବୁ ଶେଷ ଲୁହ ବିନ୍ଦୁମାନ ହୋଇ
ଝଲସେ ତମ ଦୁଇ ଆଖିର ଭିତରେ ।'

ପ୍ରେୟସୀ ନାରୀ ସର୍ବଂସହା ଓ କ୍ଷମାମୟୀ— ଏମିତି ଜନ୍ମ ଜନ୍ମ ଯାଇ ଜନ୍ମ ଧରି/ତମେ ମୋତେ କ୍ଷମାକର/ମୋ ଅପୂର୍ଣ୍ଣ ସବୁତକ ନେଇ ।

'ମହାକାଳୀ' ସଂକଳନଟିର ସର୍ବଶେଷ କବିତା । ନାରୀ ସତ୍ତାରେ ଥିବା ପ୍ରଚ୍ଛନ୍ନ ମହାକାଳର ବିଶ୍ୱରୂପକୁ କବି ଦର୍ଶନ କରିଛନ୍ତି - ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଯେଇଠି ଗୋଟିଏ ବିନ୍ଦୁରେ ସ୍ଥିର ଓ ଚଞ୍ଚଳ । କବି ଆତ୍ମବିସ୍ମୃତ ହୋଇ ସ୍ତୁତି କରିଛନ୍ତି—

'ଗୋଟିଏ ବିନ୍ଦୁରେ ସ୍ଥିର
ମହାକାଳ ପରି,
ତମେ ମତେ ନିଷ୍ପେଷିତ କରୁଥାଅ
ମହାପୁଷୀ, ମହାକାଳୀ
ରୂପ ଅବତରି ।'

॥ କବି କମଳାକାନ୍ତ

'କାଠ କ୍ୟାବିନ୍‌ରେ ପାନ ଭାଙ୍ଗୁଥିବା ଝିଅଟି' ଓ 'ବିଜ୍ଞାପନ' ଭିନ୍ନ ସ୍ୱାଦର କବିତା । ପ୍ରକାଶ ଭଙ୍ଗୀର ସଚେତନତା, ଅପାରଂପରିକ ଦୃଷ୍ଟି-ଭଙ୍ଗୀ ଉଭୟରେ ପରିଲକ୍ଷିତ ଯଥା—

ଗୀତଟିଏ ଗାଇବାକୁ କହିଲେ
ନଚେ ମଦଭର୍ତ୍ତି ଗ୍ଲାସଟିଏ ହୋଇ
ଗୋଟାଏ ଢୋକରେ, ଓଠରେ
ଶେଷ ହୋଇଯିବ ।'

ଏହି ସଂକଳନର କବିତା ଗୁଡ଼ିକ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ସୁନ୍ଦର ଲିରିକ୍‌ର ଉଦାହରଣ । ଏଥିରେ ଭାଷାର ଚାତୁର୍ଯ୍ୟ ନାହିଁ କିମ୍ବା ଦର୍ଶନର ପ୍ରଲେପ ନାହିଁ । (ଦର୍ଶନ କବିତାକୁ ଭାରାକ୍ରାନ୍ତ କରିଥାଏ) । ନିର୍ଜନତାର କୋଳରେ ବୋହି ଯାଉଥିବା ଝରଣାର ସିଂଫୋନି ଏ ଗୁଡ଼ିକରେ ଶୁଣିବାକୁ ମିଳେ ।

କବିତାଗୁଡ଼ିକରେ, କବିଙ୍କର ପୂର୍ବବର୍ତ୍ତୀ କବିତା ସଂକଳନମାନଙ୍କରେ ଥିବା ଭାଷାର ଉଦାସ ଗାଂଭୀର୍ଯ୍ୟ ବା ରୂପକଳ୍ପର ଦକ୍ଷ ବ୍ୟବହାର ପରିଲକ୍ଷିତ ହୁଏନାହିଁ । ରାଧାକୃଷ୍ଣ ପ୍ରେମର ବିକଳ୍ପଟିଏ ଗଢ଼ିବା ଇଚ୍ଛାରେ କବି ଯେଉଁ ଇସ୍ତାହାର ବାଢ଼ିଥିଲେ, ସେଥିରେ ସେ ଅନେକାଂଶରେ ସଫଳ ହୋଇଛନ୍ତି ।

ଏହି ଗ୍ରନ୍ଥର ନାମକରଣ ଅନେକ ଦୃଷ୍ଟିରୁ ମଧ୍ୟ ଅପାରଂପରିକ । 'ଚିତାଅଙ୍କା କନ୍ଥର ଛବି' ସୌନ୍ଦର୍ଯ୍ୟବୋଧର ସଂକେତ ଦେଉଥିଲାବେଳେ 'ପରିଧି ବାହାରେ ଅପେକ୍ଷାରତ ପୃଥିବୀ' ଅନ୍ୟ ଏକ ସ୍ୱତନ୍ତ୍ର ଚେତନାର ଆଭାସ ଦିଏ ।

**ଶାନ୍ତନୁ କୁମାର ସର**
ଅଧ୍ୟାପକ, ଇଂରାଜୀ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ସାନ୍ଧ୍ୟ ମହାବିଦ୍ୟାଳୟ, ପୁରୀ

# ଶାଣିତ ବକ୍ତବ୍ୟ : କମଳାକାନ୍ତଙ୍କ ସାଂପ୍ରତିକ କବିତା

(ଛିଟା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ବୃଥିକା)

ସମାବେଶ- ବିଷୁବ ସଂଖ୍ୟା ୧୯୮୮

ଶ୍ରୀ କମଳାକାନ୍ତଙ୍କ ସଦ୍ୟତମ କବିତା ସଂକଳନ 'ଛିଟା ଅଂକା କାଂଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ବୃଥିକା' (୧୯୮୬)ର ପ୍ରଥମ ପାଠରେହିଁ ସମ୍ବେଦନଶୀଳ ପାଠକ ମନରେ ଉଙ୍କିଉଠେ— ଯାହା କହନ୍ତି, ପାଣି ଚହଲି । ଟିକେ ଦର୍କାର ବି । କାରଣ ମଣିଷ ମନ ବହୁସବୁ ବାଟରେ ଗୁଳି ଗୁଳି ଗତାନୁଗତିକତାକୁ ଏକ ପ୍ରକାର ଶେଷ ସତ୍ୟ ବୋଲି ଧରି ନେଇଛି, ଯାହାକି ବଧ୍ୟମାସ୍ତ । ଜଣେ ସମାଲୋଚକ କହିଲେ : 'Poems ambush one unpredictably, sometimes inconveniently' । ଭାରି ସୁନ୍ଦର କଥାଟିଏ । କବିତା ଆମକୁ ଛପିଛପି ଅତର୍କିତ ଆକ୍ରମଣ କରେ । ଅସୁବିଧାରେ ପକାଏ । ଠିକ୍‌କଥା । ନହେଲେ କବିତା କଣ ଦରକାର ! ଅବଶ୍ୟ ଆଜି ଟୋଟିଏ ବିକଳ୍ପ ମତ ଅଛି । କବିତା ଧୀରେ ଧୀରେ ଲୋରି ଗାଇ ଆମକୁ ଶୁଆଇ ପକାଇବ କିମ୍ବା ବୈଠକ ଘରର ନିଖାଦ ପ୍ରାଚ୍ୟହୀନ ପ୍ଲାଷ୍ଟିକ ଫୁଲପରି ଆମ ଆଖିରେ ପଡ଼ି ଥିବା/ପଡୁନଥିବ । ପ୍ରକୃତ କଥା ହେଲା ଅସଲ କବିତା ବହୁରୂପୀ, ବିସ୍ଫୋରଣୀ, ଯେ ଯେପରି ତାକୁ ଭଜେ, ସେପରି ପାଏ ।

ତେବେ ଯାହାହେଉ, ଦେଖିଲାବେଳକୁ କମଳାକାନ୍ତ ତାଙ୍କ ମୁଖବନ୍ଧରେ ଲେଖିଛନ୍ତି— 'ଏ କବିତା ଗୁଡ଼ିକ ଆପଣ ଝୁଣ୍ଟିବେ ।' 'Poems ambush one' । କି ସଂଯୋଗ ଦେଖନ୍ତୁ । ଝୁଂଟିବା କଥାଟା କ'ଣ କି ? ଏଥିରେ ଅଛି କେତୋଟି ନିଷିଦ୍ଧ ଇଲାକାର କବିତା । ସେ ପୁଣି କ'ଣ ? ଆଶ୍ଚର୍ଯ୍ୟ ବ୍ୟାପାର ଯେ ଯାହା ନିଷିଦ୍ଧ ବୋଲି ଧରି ନିଆଯାଏ ତାହା ବରଂ ସ୍ୱତସିଦ୍ଧ, ସ୍ୱୟଂସିଦ୍ଧ । ସେଇଠି ସବୁ ବିଡ଼ମ୍ବନା । କେତେଗୁଡ଼ାଏ କଥା

ଅଖାଡ଼ୁଆ ବୋଲି ଆମେ ବାଁରେଇ ବୁଲୁଥାଉ, ଅନେକ ସମୟରେ ଛଳନା କରୁ ସେଗୁଡ଼ାକ ସତେ ଯେପରି ନଷ୍ଟି ହୁଏ, ନାସ୍ତି । ଏଇ ଯେପରି ଦେଖନ୍ତୁ । ପ୍ରେମ— ଏ ସମସ୍ତ ବ୍ୟାପାରଟି ବାସି ହୋଇଗଲାଣି । (କେବଳ ସୃଜନଶୀଳ କଳ୍ପନାହିଁ ଏ ବାସି ପରସାକୁ ନବ କଳେବର ଦେଇପାରେ । ) ପ୍ରେମ ଏକ ବହୁ ଚର୍ଚ୍ଚିତ ବିଷୟ । କବିତା, ଚିତ୍ର, କଳା ସ୍ଥାପତ୍ୟ ସବୁଆଡ଼େ ଭରପୂର । ଏପରିକି କହିବାକୁ ଗଲେ ପାବ୍‌ଲୋଭଙ୍କ କୁକୁର ପରି ଆମେ ପ୍ରେମ ପ୍ରତି ଏକ ପ୍ରକାର Conditioned । କିନ୍ତୁ ବିଷୟଟି ପୁନଃପୁନଃ ଅନ୍ୱେଷଣ ସାପେକ୍ଷ । ପ୍ରେମ ଶାରୀରିକ ଆକର୍ଷଣ, ଆସକ୍ତିରୁ ଜନ୍ମ ନିଏ । ଯେଉଁ ମାଟିରୁ ଉଠି ଡାଳ, ପତ୍ର, ଫୁଲ ମେଲିବା ପରି ପ୍ରେମର ବି ବ୍ୟାପ୍ତି ଅଛି । ସମାପ୍ତି ଅଛି । ବେଳେବେଳେ ମନେହୁଏ, ପ୍ଲାଟୋନିକ୍ ପ୍ରେମ ହିଁ ଚରମ ସତ୍ୟ । ନଶ୍ୱର ଶରୀରର କ୍ଷଣିକ ଆକର୍ଷଣର ଊର୍ଦ୍ଧ୍ୱରେ ଏକ ଚିରନ୍ତନ ଧାରଣାର ପ୍ରାଞ୍ଜଳ ବିକାଶ, ଯାହା କାଳଜୟୀ । ପୁଣି ପକ୍ଷାନ୍ତରେ ରହିଛି ଅନ୍ୟ ଏକ ଶକ୍ତ ଯୁକ୍ତି, ଏକ ଦୁର୍ଦ୍ଧର୍ଷ ବାସ୍ତବ ବାସନା । ଦେହର ସମସ୍ତ ସଂସ୍କାରକୁ ଉପଭୋଗ କରି ତାକୁ ସତ୍ୟ ପର୍ଯ୍ୟାୟକୁ ନେବା ଏବଂ ଅନ୍ୟ ଦିଗଗୁଡ଼ିକୁ ଅବହେଳା କରିବା । ପୁଣି କେତେକଙ୍କ ମତରେ ପ୍ରେମର ଗୂଢ଼ ସତ୍ୟ ଏକ ଅବିରାମ ଦ୍ୱନ୍ଦ୍ୱରେ ହିଁ ନିହିତ । ବସ୍ତୁ ଓ ଚେତନାର ଦ୍ୱନ୍ଦ୍ୱ, ଶରୀର ଓ ଆତ୍ମାର ଦ୍ୱନ୍ଦ୍ୱ, ସଦା ସକ୍ରିୟ ଦ୍ୱନ୍ଦ୍ୱ । ଦ୍ୱୈତର ଦ୍ୱନ୍ଦ୍ୱରୁ ଅଦ୍ୱୈତର ଜନ୍ମ । W. B. Yeats ଲେଖିଛନ୍ତି ।
'Nothing is sole or whole / that is not rent / love has pitched its mansion / in the places of excrement'

କମଳାକାନ୍ତଙ୍କ କବିତା 'ପ୍ରେମ' (ପୃ-୬)ରେ ପ୍ରେମ, ମୃତ୍ୟୁ ଓ କବିତା ସଂପର୍କିତ ହୋଇଛନ୍ତି ଏକ ସୁନ୍ଦର, ସଂକ୍ଷିପ୍ତ ପରିଧି ମଧ୍ୟରେ :

ଯେଉଁଦିନ
ଶୁଣ ନରୁ ଫେରିବ
ତମ ଶବ ସତ୍କାରକରି
ହୁଏତ
ମୋର ଶବ ସହ
କଥାବାର୍ତ୍ତାରେ

ମତ ଅଭିମତ ଭିନ୍ନମତ ।।

ସାଗ ଗଛ ଭଙ୍ଗିଯିବ,
ହୁଏତ
ସାଗ ଗଛର ଅନ୍ଧାର
ଜଣାଯିବ
କବିତାର ପ୍ରତିମାରେ,
ପ୍ରେମର ଜୁଇ ପରି ।

ପୁଣି ଉପରୋକ୍ତ ଦ୍ୱନ୍ଦ୍ୱ ତଥା ଅଦ୍ୱୈତର ପରିପ୍ରକାଶ ଘଟିଛି 'ଆଶ୍ଚର୍ଯ୍ୟ' କବିତାରେ । (ପୃ ୨୦)

'ତୁ ମଂଦକୁ ଘୃଣାକରୁ । କାରଣ ମଂଦଇଁ ତୋର ପ୍ରତିବିଂବ । ତୁ ଭଲକୁ ଭଲ ପାଉ ।/କାରଣ/ଭଲଇଁ ତୋର ସମଜ ଶତ୍ରୁ !/ତେଣୁ ତୋତେ ବାଳୁଚି ।/ଯେହେତୁ : ତୋ/ଭିତରେ/ଦେଖୁଚି ନିଜକୁ/ନିଜ ଭିତରେ ତୋ ଦ୍ୱିତ୍ୱକୁ ।'

ଅଧିକାଂଶ କବିତା ସଂକ୍ଷିପ୍ତ ଭାବନାର ଗୋଟିଏ ଗୋଟିଏ ସଂଭାବନା-ପୂର୍ଣ୍ଣ ବୀଜ । ପ୍ରେମ ଓ ମୃତ୍ୟୁ ଏକଇ ମୁଦ୍ରାର ଦୁଇପାଖ । ପ୍ରେମିକ ପ୍ରେମିକାକୁ ପ୍ରେମର କ୍ଷୟିଷ୍ଣୁତା ସଂପର୍କରେ ଚେତେଇ ଦେଇଛି ଏହିପରି—

'ସତରେ/କେତେ ସଅଳ ତମେ ବୁଢ଼ୀ ହୋଇଗଲ !/ପାଙ୍କ ସମୟ ଠାରୁ କି ଭୟଙ୍କର/ଦୁଷ୍‌ମନ ମୁଁ ? ଦେଖି ଲ' (ଦୁଷ୍‌ମନ୍ - ପୃ- ୨୧)

'ବିଲ୍ଲୀନ' (ପୃ-୨୯)ରେ ହୁଏତ ଏକ ରହସ୍ୟବାଦର ଚିନ୍ତା ପ୍ରଚ୍ଛନ୍ନ । ପ୍ରେମୀ ଦ୍ୱନ୍ଦ୍ୱର ସଂପୂର୍ଣ୍ଣ ମିଳନକୁ ବାଚନିକ ପ୍ରକାଶମାନତା ଅନ୍ତିମ ସମାଧି ପ୍ରଦାନ କରେ । 'ଯେମିତି ତୁ ଓ ମୁଁ/ନିଶ୍ଚିହ୍ନ ହୋଇଯିବା/ଅକ୍ଷରେ ଶବ୍ଦରେ ବର୍ଣ୍ଣମାଳାର କୋଳେଇରେ ।'

'ଗୋଟେ ଛୋଟ ସ୍ୱପ୍ନ' (ପୃ-୨୮)ରେ ପ୍ରେମ ସଂପର୍କୀୟ ସମସ୍ତ ଗୁରୁ ଗମ୍ଭୀର ଦାର୍ଶନିକ ଓ ଛଦ୍ମ ଦାର୍ଶନିକ ଚିନ୍ତାକୁ ବିସର୍ଜିତ କରି କେବଳ ଦୁଇଟି ପ୍ରାଣର ସୌଖ୍ୟକୁ ଦୁଇଟି ପକ୍ଷୀଙ୍କର ବସାବାନ୍ଧିବାର ରୂପକଳ୍ପ କରିଆରେ ବାନ୍ଧି ରଖାଯାଇଛି ସୁନ୍ଦର କେତୋଟି ଶବ୍ଦ ଗୁଚ୍ଛରେ । ପାଣି ଫୋଟକା ପରି କ୍ଷଣିକ

ଜୀବନରେ ପ୍ରେମ ଏକ ସ୍ୱପ୍ନିଳ ଇନ୍ଦ୍ରଧନୁ । ତେଣୁ କାହିଁକି ତା' ପାଇଁ ଏତେ ଚିନ୍ତାର ସୌଧ ନିର୍ମାଣ ? ପ୍ରେମର ସମସ୍ତ ଅକ୍ଷମତାକୁ ଏକ ଆଶ୍ଚର୍ଯ୍ୟ ସୁନ୍ଦର ଶକ୍ତିରେ ପରିଣତ କରାଯାଇଛି ଏହିପରି— 'ଆସ ଉଦ୍ଭଳ ପଡ଼ିଥିବା / ଭଙ୍ଗା ଡାଳଗୁଡ଼ିକରେ / ମଣ୍ଡିଦବା ଅକ୍ଷମ ସଂବୋଧନକୁ / ଗୋଟିଏ ଶ୍ରେଷ୍ଠ ଚୁମ୍ବନରେ/ ଜୀବନ୍ୟାସ ଦାବାନଳପଥର ଉପଯୁକ୍ତ/ସାନ୍ତ୍ୱନାକୁ ।'

ଆଗରୁ ଯେଉଁ ଦ୍ୱନ୍ଦ୍ୱର ଅବତାରଣା କରାଯାଇଛି ତା'ର ଅନ୍ୟ ଯୋଡ଼ିଏ ପାର୍ଶ୍ୱ ହେଲା ଯୌନତା ଓ ଶୁଦ୍ଧ ପ୍ରେମ । ଏହା ଦ୍ୱାରା ମୁଁ ବୁଝାଉ ନାହିଁ ଯେ ଯୌନତା ସର୍ବଦା ଅଶୁଦ୍ଧ ଓ ଶୁଦ୍ଧ ପ୍ରେମ ସଂପୂର୍ଣ୍ଣ ଯୌନତା ମୁକ୍ତ । ବରଂ ଦୁଇଟି ମଧ୍ୟରେ ସୀମାରେଖା ନିର୍ଣ୍ଣୟ କରିବା କଷ୍ଟ । ମନସ୍ତତ୍ତ୍ୱ କହେ— ସାହିତ୍ୟ, ସଙ୍ଗୀତ, ନୃତ୍ୟ ଓ କଳାର ରୋମାଣ୍ଟିକ ପ୍ରେମ ମୌଳିକ ଯୌନ ଶକ୍ତିର ସୃଜନଶୀଳ ରୂପାନ୍ତରଣ ।

ଯା' ହେଉ, ଏ ବିଷୟଟି ନିଃସନ୍ଦେହରେ ଜଟିଳ । ଏଠି ତାତ୍ତ୍ୱିକ ଚିନ୍ତା ବାଟବଣା ହୋଇଯାଏ । କବିତା ତା' ବାଟରେ ଚାଲିଥାଏ । ଆମମାନଙ୍କ ମନ୍ଦିର ଗାତ୍ରରେ ମୈଥୁନ ମୂର୍ତ୍ତି ଏବେ ବି ବିବାଦମାନ ବିଷୟ ହୋଇରହିଛି । ଯେଉଁ ଶିଳ୍ପୀ ସେସବୁକୁ ଗଢ଼ିଥିବ ତା'ର ଆତ୍ମା ହୁଏତ ଆମ ଯୁକ୍ତିସବୁ ଦେଖି ହସୁଥିବ । ମୋ ର ମନେହୁଏ, ମଣିଷର ଗୋଟାଏ ବଡ଼ ସମସ୍ୟା ଯେ କେତେକ ବ୍ୟକ୍ତି ସମନ୍ୱୟର ଭଳି ଧାରଣା ନେଇ ଆକାଶରେ ଉଡ଼ନ୍ତିବେଳେ ଅନ୍ୟ କେତେକ ବିଭକ୍ତି କରଣ ଓ ଶ୍ରେଣୀ ବିଭାଗରେ କାଦୁଅ ପଙ୍କରେ ପଡ଼ି କଳହ ତତ୍ପର ହୁଅନ୍ତି । ତେବେ ପ୍ରେମର ବୀଜ ଯେ ଯୌନତାରେ ନିହିତ ଏହା ଅସ୍ୱୀକାର କରିବା ଅସାଧୁତା ହେବ । ଅବଶ୍ୟ ଏକଥାର ଅର୍ଥ ନୁହେଁ ଯେ ପ୍ରତ୍ୟେକ ବୀଜରୁ ଏକ ସୁନ୍ଦର ବୃକ୍ଷ ସମ୍ଭବ ।

'ବିଲ୍ୱମଙ୍ଗଳ' (ପୃ-୩୯) କବିତାକୁ ଲକ୍ଷ୍ୟ କରାଯାଉ ଏଥିରେ । ଅବଚେତନ ଯୌନତା ମୂର୍ତ୍ତିମାନ ହୋଇଛି କେତୋଟି ଉଲ୍ଲେଖନୀୟ ପ୍ରତୀକରେ । ଅଳ୍ପ କଥାରେ କୁହାଯାଇଛି ବହୁତ କଥା । ସମୁଦ୍ରର ଅକାତକାନ୍ତ ପାଣିରେ ଭାସିଯିବା ବେଳେ ହଠାତ୍ ସୁନା ଝଡ଼କା ପରି ଡଙ୍ଗା— ପୁଣି 'ଡଙ୍ଗା

ନୁହେଁତ ସାପ/ଜିଭ ହଲାଇ ଫଁ ଫଁ/ଫୁତ୍କାରରେ କହିଲ '/ମଙ୍ଗଳ, ଶିବ
ପିଠିରେ ବସିଯାଅ/ପାଣିର ଅଥଳତାରେ ତ ମୋ ଘର ।' (ପୃ-୩୪) ଅଥଳ,
ଅମାପ ଜଳ, ଡଙ୍ଗା— ଯାହା ସୁନାପର ଉଜ୍ଜ୍ୱଳ ସୌନ୍ଦର୍ଯ୍ୟରେ ଉଦ୍ଭାସିତ ।
ଡଙ୍ଗା ପୁଣି ସାପରେ ରୂପାନ୍ତରିତ । ଶିବ ପିଠିରେ ନଈପାର ହେବାର ତାତ୍ପର୍ଯ୍ୟ
(ବିଲ୍ୱମଙ୍ଗଳ କିମ୍ବଦନ୍ତୀ) ଏକ ସୁନ୍ଦର ସଂଯୋଜନାରେ ସଂଗଠିତ । କିନ୍ତୁ
ବାହୁଲ୍ୟ ନାହିଁ, ଅତିଶୟୋକ୍ତି ନାହିଁ । ଯାହା କହନ୍ତି— 'ଶ୍ଳୋକାର୍ଦ୍ଧେନ
ପ୍ରବକ୍ଷ୍ୟାମି ଯଦୁକ୍ତଂ ଗ୍ରନ୍ଥ କୋଟିଭିଃ ।' ପ୍ରଜ୍ଞାତ୍ମକ ଶୈଳୀରେ ସେହି
ରହସ୍ୟମୟ ଯୌନ ଶକ୍ତିର ବ୍ୟାପ୍ତି ଓ ସମାପ୍ତିର କଳାତ୍ମକ ଇଙ୍ଗିତ ଦିଆ-
ଯାଇଛି । ଅଧ୍ୟାପକ ଶ୍ରୀଭେଦ ମୁଣ୍ଡ ବନ୍ଧୁଟିର ଉପକ୍ରମଣିକାରେ ଯଥାର୍ଥ
କହିଛନ୍ତି— 'ଅନେକ କବିତା ମୁହୂର୍ତ୍ତ ହେବସ୍ତୁ ଜୀବନର ଜୟଗାନରେ ମୁଖର
ଓ ଗୀତିଧର୍ମୀ ।' ମୁଁ ଗୀତି-ଧର୍ମିତା ସାଙ୍ଗକୁ ନାଟକୀୟତା ଯୋଡ଼ୁଛି ।
ଗୀତି ଧର୍ମିତା ସାଙ୍ଗକୁ ନାଟକୀୟତା ନଥିଲେ ହୁଏତ କବିତା ଗୁଡ଼ିକ ଶିଥିଳତା
ଜଡ଼ିତ ହୋଇଥାନ୍ତେ । ଅବଶ୍ୟ ସଂକ୍ଷିପ୍ତତା, ନାଟକୀୟ ଗୀତିଧର୍ମିତା ଓ
ତଦ୍‌ଜନିତ ଛନ୍ଦଗତ ବୈଶିଷ୍ଟ୍ୟ— ଏ ସବୁର ତନ୍ନତନ୍ନ ଅନୁଶୀଳନ ଏଠାରେ
ମୁଁ କରୁନାହିଁ । ତେବେ ଏତିକି କୁହାଯାଇପାରେ— କମଳାକାନ୍ତଙ୍କ ଏକ
ନିଜସ୍ୱ ମୌଳିକ ସ୍ୱର ସର୍ବତ୍ର ପରିସ୍ଫୁଟ ।

ଶେଷ କରିବା ଆଗରୁ ଆଉ ଗୋଟିଏ ବିଷୟର ଅବତାରଣା କରା-
ଯାଇପାରେ । ପ୍ରେମରେ ଉଚିତ ଅନୁଚିତର ପ୍ରସଙ୍ଗ । ପ୍ରେମ ବିଷୟରେ
ସାଧାରଣତଃ ଅନେକ ଅସ୍ପଷ୍ଟ ଧାରଣା ରହିଯାଇଛି । ଶରୀରର ଆକର୍ଷଣ
ଏକ ଜୈବିକ ସଚରାଚରତା । ପ୍ରେମ ସହିତ ଏହାର ପ୍ରକୃତ ସମ୍ବନ୍ଧ କ'ଣ ?
ପଶୁ, ପକ୍ଷୀ, କୀଟ ପତଙ୍ଗମାନଙ୍କ ମଧ୍ୟରେ ଆମ ଅର୍ଥରେ ପ୍ରେମ ଓ କାମନା
କିଛି ଅଛି କି ? ମନେହୁଏ ମଣିଷ କ୍ଷେତ୍ରରେ ଜୈବିକ ପ୍ରବୃତ୍ତି ସହିତ ମାନସିକତା
ଓ ଆବେଗ ମିଶି ପୁଣି ଭାଷା ତଥା ଅନ୍ୟାନ୍ୟ କଳାତ୍ମକ ପ୍ରକାଶ ସରଣୀର କାଉଁରୀ
ସ୍ପର୍ଶରେ ତା'ର ରୂପାନ୍ତର ହୋଇ, ଆମେ ଯାହାକୁ ପ୍ରେମ କହୁ, ତାହାର ବିବର୍ତ୍ତନ
ଘଟିଛି । ତେଣୁ ଅପରିହାର୍ଯ୍ୟ ଯେ ଏଥିରେ ସାମାଜିକ-ସାଂସ୍କୃତିକ ବିଧି
ନିଷେଧର ପ୍ରଶ୍ନ ପଡ଼ିବ । ଉଚିତ ଅନୁଚିତର ବିବାଦ ରହିବ । ଏଇଠି ଗୋଟେ
ଅସୁବିଧା ଉପୁଜିପାରେ । କବି ବା ଲେଖକ ବେଳେ ବେଳେ ଉଚିତ ଅନୁଚିତ

ହୃଦ୍ୟରେ ପ୍ରତି ଯାହା ଯେ ଘଟୁଛି ତା' ନଲେଖି ଯା' ଘଟିବା ଉଚିତ ସେଇଆ ଲେଖେ । କେବଳ ସାମାଜିକ, ସାଂସ୍କୃତିକ ଶାଳୀନତା ଓ ଗ୍ରହଣୀୟତାକୁ ମୁଣ୍ଡରେ ଥୋଇ ଶିଳ୍ପୀ ସାଧୁତାର ଅଗ୍ନି ପରୀକ୍ଷାକୁ ବର୍ଜନ କରେ । 'ଉଚିତ-ଅନୁଚିତ'ର ଲୁଚକାଳି ଖେଳ ଏଇ ଅନ୍ୱେଷାକୁ ରୂପ ଦିଏ । "ତମେ ପ୍ରେମ କରୁଚ ତ !/ଡେଇଁପଡ଼ ଔଚିତ୍ୟର ପାଚିରୁ । /କାନ୍ଦି ପାରୁଚ ତ/ମୌନ ରହିଯାଅ/କୋଳାହଳରୁ !/ନିର୍ଧୂମ ପ୍ରେମ କରିବା କି. ମାନେ ଯେ !!" (ଉଚିତ-ଅନୁଚିତ- ପୃ ୫୪) ।

ନିର୍ଧୂମ ଧୂମାଭ କଳ୍ପନାଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରେମ ଯେବେ ଜ୍ୱଳନ, ତେବେ ତାକୁ ନିର୍ଧୂମ କରିବାର ସାମାଜିକତା କାହିଁକି ?'ଅପବାଦ' (ପୃ ୪୫)କବିତାର ସମାପ୍ତି ହୋଇଛି ଏହିପରି- କୌଣସି କୁଣ୍ଠିତ/ଅନୁଭବର/ଭୌଗୋଳିକତାକୁ/ଖୁଂଟି ପଢ଼ିବାଇଁ/ଆମର ମୁକ୍ତ/ମୁହୂର୍ତ୍ତଟିର ନୈଚ ଚିହ୍ନରେ/ଅପବାଦର ଆକାଶ ।"

ଏ ଯାବତ୍ ଗୋଟାଏ ଗତରେ ପଡ଼ିଥିବା ରାଧାକୃଷ୍ଣ ପ୍ରେମ ଯାହା କାବ୍ୟର ବହୁଳ ଉପଜୀବ୍ୟ ହୋଇଛି, ତା'ର ଏକ ବିକଳ୍ପ ହିସାବରେ ଜଣେ ସାଧାରଣ ମଣିଷର ସ୍ୱାଭାବିକ ଅନୁଭୂତିକୁ ରୂପ ଦେବାକୁ ଏ କବିତା ମାନଙ୍କରେ ଚେଷ୍ଟା କରାଯାଇଛି ବୋଲି କବି ଆରମ୍ଭରେ ବକ୍ତବ୍ୟ ରଖିଛନ୍ତି । ଅନୁଭୂତି ସମୂହର ପ୍ରକାଶ ଋଜୁତାପୂର୍ଣ୍ଣ ହୋଇଛି ବୋଲି ପାଠକର ହୃଦବୋଧ ହୁଏ ।

ଆମେରିକାର ଜଣେ ବିଶିଷ୍ଟ ସମାଲୋଚକ Morse Peckham କହିଛନ୍ତି— "Sex is a stage on which any psychic drama can be acted out" ରାଧାକୃଷ୍ଣ ମିଥ୍‌କୁ ଆଶ୍ରୟ କରାଯାଉ ବା ମଣିଷର ନିରୁତା ଅନୁଭୂତିକୁ ସିଧା ସଳଖ ନିଆଯାଉ, ଯୌନତାରୁ ଆରମ୍ଭ କରି ପ୍ଲାଟୋନିକ୍ ପ୍ରେମ ପର୍ଯ୍ୟନ୍ତ ଯେଉଁ Paradigm ପ୍ରଲମ୍ବିତ, ତାହା ଏକ ବିସ୍ତୃତ ଅରଣ୍ୟପରି

ଢଙ୍ଗ, ରହସ୍ୟମୟ ଓ ବିପଦ ସଙ୍କୁଳ । ସେ ଅରଣ୍ୟର ସନ୍ଧାନ କରି କରି ସାରା ଜୀବନ ବିତିଯାଏ । ପୁଣି ମଝିରେ ବିସ୍ତା ଅବବୋଧକାରୀ ଅତି ସଭ୍ୟ ସଂସ୍କୃତ ରକ୍ଷଣଶୀଳତା, ଅତି ମାର୍ଜିତ ଭାଷାର ଲକ୍ଷ୍ମଣରେଖା । ଏହି ପରିପ୍ରେକ୍ଷିତରେ ଏ ବହିରେ ସନ୍ନିବିଷ୍ଟ ଅନେକ କବିତାରେ ଦେଇ ଅରଣ୍ୟର ନୀରବ ଶ୍ୱାସ ପ୍ରଶ୍ୱାସ ତଥା ଗୁଳ୍ମ ଆଳୁଅର ଆକର୍ଷଣକୁ ରୂପ ଦେବାରେ କବି କମଳାକାନ୍ତଙ୍କ କୃତିତ୍ୱ କିଛି କମ୍ ନୁହେଁ ।

ସତ୍ୟ ନାରାୟଣ ମହାନ୍ତି
ରିଡର୍, ଇଂରାଜୀ ବିଭାଗ
ଏସ୍. ସି. ଏସ୍. କଲେଜ, ପୁରୀ

## ଖସିବାର ବେଳ

( ୧୯୮୦ )

[ ଝଙ୍କାର, ୩୪ଶ ବର୍ଷ, ନବମ ସଂଖ୍ୟା—ଡିସେମ୍ବର ୧୯୮୭ ]

ଆଧୁନିକ ଓଡ଼ିଆ କବିତା ପ୍ରସଙ୍ଗ ମନକୁ ଛୁଇଁ ଛୁଇଁ ଯେଉଁ କେତେଜଣ କବିଙ୍କ କାବ୍ୟ-ବ୍ୟକ୍ତିତ୍ୱ ସ୍ୱତଃ ସାମ୍ନାସାମ୍ନି ହୁଏ, ଝଟନ୍ତ ଚିସ୍ତାଶ କାବ୍ୟମୟ ଆବେଦନ ଓ ସ୍ୱରରେ — ତନ୍ମଧ୍ୟରୁ କମଳାକାନ୍ତୀୟ ସ୍ୱର ଅନ୍ୟତମ ଓ ନିଜସ୍ୱ ଢଙ୍ଗରେ ସ୍ୱତନ୍ତ୍ର । କିନ୍ତୁ ସପ୍ତମ ଦଶକର ପ୍ରାନ୍ତ ବୟସ କେତୋଟି ଠାରୁ କେବଳ ଓଡ଼ିଆ କବିତା କାହିଁକି, ଆନ୍ତର୍ଜାତିକ କବିତା କ୍ଷେତ୍ରରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ ଘଟି ଯାଇଛି ତାର ଆଲୋଚନା ଓ ବିଶ୍ଳେଷଣ ଏ ଯାବତ୍ ଓଡ଼ିଆ ସାହିତ୍ୟ ପତ୍ର-ପତ୍ରିକା ମାନଙ୍କରେ ଦୃଷ୍ଟି-ଗୋଚର ହୁଏନାହିଁ । କବି ବନ୍ଧୁ ଅମରେନ୍ଦ୍ର ଖଟୁଆ ଶ୍ରମ ସ୍ୱୀକାର କରି ସମସାମୟିକ ଆନ୍ତର୍ଜାତିକ କବିତା, ଏକ ଆଲୋଚନା ('ସମାସ' କର୍ତ୍ତୃକ ପ୍ରକାଶିତ)ରେ ଏହି ପରିବର୍ତ୍ତିତ କାବ୍ୟ ସ୍ୱରର ପରିଚୟ ଓଡ଼ିଆ ପାଠକ ମାନଙ୍କୁ ଦେଇଥିବାରୁ ସେ ବିଶେଷ ଧନ୍ୟବାଦାର୍ହ । ଅଷ୍ଟମ ଦଶକରେ

ପ୍ରକାଶିତ ଏକ କବିତା ଗ୍ରନ୍ଥର ଭୂମିକା ଲେଖିଲାବେଳେ ଏହି ପରିବର୍ତ୍ତିତ କାବ୍ୟ ପ୍ରବାହ ସମ୍ପର୍କ ଏକ ସଂପୃକ୍ତ ଆଲୋଚନାର ଅପେକ୍ଷା ରଖିବା ସ୍ୱାଭାବିକ ମନେହୁଏ । ଅବଶ୍ୟ ପରିବର୍ତ୍ତିତ କାବ୍ୟଧାରାର ଏକ ସବିଶେଷ ଆଲୋଚନା ଏ ପରିସରରେ ସମ୍ଭବ ନୁହେଁ । ତେଣୁ ଏକ ସୂଚନା ପ୍ରଦାନ ଜରୁରୀ । ଏ ପରିବର୍ତ୍ତନ ଏକ ହଠାତ୍ ବା ତତ୍‌କ୍ଷଣାତ୍ ପରିବର୍ତ୍ତନ ନୁହେଁ । ଚତୁର୍ଥ ଦଶକଠାରୁ ଆରମ୍ଭ ଆଧୁନିକ ଓଡ଼ିଆ କବିତା ତା'ର ପରୀକ୍ଷା ନିରୀକ୍ଷା, ପ୍ରୟୋଗ ଓ ଉପଲବ୍ଧିର ସ୍ତର ଅତିକ୍ରମ କରି ଏହି ପର୍ଯ୍ୟାୟରେ ଉପନୀତ । ନିତ୍ୟ ସମାଜର ନିତ୍ୟ କବିତା, ଆଜିର କବିତାର ସ୍ୱର । ତାର ଅର୍ଥ ନୁହେଁ କେବଳ ନିତ୍ୟ ସମାଜର ଚିତ୍ରଟିଏ ଦେଖାଇଦେବା । ମୂଳତଃ ତାହା ନିତ୍ୟ ସମାଜରୁ ଜନ୍ମ, ନିତ୍ୟ କବିତା । ଉପସ୍ଥିତ ସମୟର ନିବିଡ଼ କାବ୍ୟୋପଲବ୍ଧି ଓ ତାହାର ଆବେଦନ, କବିତାକୁ ଚିରନ୍ତନ କରିବାର ସର୍ତ୍ତ । ସମୟକୁ ନିବିଡ଼ଭାବେ ଉପଲବ୍ଧି କରିପାରିଲେ ଆବେଦନ ଉଭୟ ସମୟ ସ୍ୱୀକୃତ ଓ ସମୟୋତ୍ତର ! ପୁରାଣର ମିଥ୍ ବା ଇତିହାସର ରୂପକଳ୍ପ ପ୍ରତି ମୋହ ଅପ୍ରଚୁର । କାରଣ ନିଜ ସମୟଟି ପୁରାଣ ଓ ଇତିହାସର ବଂଶଜ । ତେଣୁ ଅତୀତ ଦୃଷ୍ଟି ଅବାଂଛିତ ମନେହେଉଛି । ବର୍ତ୍ତମାନତା ପ୍ରତି ବାର୍ତ୍ତାସ୍ଥାନତା କବିଙ୍କୁ ଅତୀତକୁ ଟାଣେ । ନିର୍ଲିପ୍ତି ବା ଆତ୍ମ ବିଲୁପ୍ତି ପାଇଁ କାବ୍ୟପୁରୁଷ ହକାରି ଉଠେ । କିନ୍ତୁ ଉତ୍ତର ସପ୍ତମ ଦଶକ ଠାରୁ କାବ୍ୟପୁରୁଷ ନିଜକୁ, ନିଜ ନିତ୍ୟ ସମାଜକୁ ଭେଟୁଛି ବାରମ୍ବାର । ଯାହା ଭିତରେ ମଣିଷ ଓ ସଂସ୍କୃତିର ସମସ୍ତ ଅତୀତର ମୂହଁ ଓ ଦାର୍ଶନିକ ଭବିଷ୍ୟତକୁ ଠାବକରି ପାରୁନାହିଁ । ତେଣୁ କବି ଦୃଷ୍ଟି ବିମୁକ୍ତ ନହୋଇ ବରଂ ସଚେତନ । ସାମାଜିକ ଘଟଣାବଳୀ, ଦାର୍ଶନିକ ଅଭିବ୍ୟକ୍ତି, ରାଜନୈତିକ ଓ ଅର୍ଥନୈତିକ ପାରିପାର୍ଶ୍ୱିକା, ଆଧ୍ୟାତ୍ମିକ ଜିଜ୍ଞାସା, ନୈତିକ ଅବବୋଧ, ଉଭୟ ସ୍ୱପ୍ନ ଓ ମାଟିର ଯନ୍ତ୍ରଣା ଜନିତ କାବ୍ୟିକ ଉପଲବ୍ଧି ଚଳିତ ବର୍ତ୍ତମାନର କବିତା । ଉପସ୍ଥିତ ଘଟଣାବଳୀ ପ୍ରତି କବି ଏବେ ଆଦୌ ବିମୁଖ ନୁହେଁ । କିନ୍ତୁ ଆଜିର ମଣିଷ ସବୁବେଳେ ଉତ୍ତ୍ୟକ୍ତ ଓ ଉତ୍ତେଜିତ । ସିଧା ସଳଖ ନିତ୍ୟ ବାସ୍ତବତାକୁ ହୁଏତ ପାଠକ ସହ୍ୟ କରି ପାରିବେନାହିଁ । ତେଣୁ ସାଂଗୀତିକ ଉଚ୍ଛ୍ୱାସ, ଶବ୍ଦର ନୃତ୍ୟଧର୍ମୀ ପ୍ରୟୋଗ, ଧ୍ୱନିର ସମାହିତ ଐକ୍ୟତାନ

ହୋଇଛି କବିତାର ଅଙ୍ଗ ସୌଷ୍ଠବ । ସମଗ୍ର ବକ୍ରୋକ୍ତିକୁ କବିତା କ୍ରମଶଃ ପରିହାର କରି ଆସୁଛି । କିନ୍ତୁ କବିତା ଆଜିର ମଣିଷ ଓ ସମାଜର ଏକ ନିଚ୍ଛୋଳ ମନୋବୈଜ୍ଞାନିକ ବିଶ୍ଳେଷଣ- ସର୍ବସ୍ୱ ନୁହେଁ । କବି ଏ ସମ୍ପର୍କରେ ସଚେତନ ! କାରଣ ଜଣେ ମନୋବିଜ୍ଞାନୀ ବିଦ୍ରୂପ ହସ ହସି ଦେଇ କହି ଦେଇ ପାରେ ଯେ ମଣିଷ ସ୍ୱପ୍ନରେ ଯେଉଁ ବାଘ, ଗୋରୁ, ଶବ, ତେଲ, ବିଗଡ଼ ଇତ୍ୟାଦି ଦେଖେ ତାହା ମଣିଷର ବାସ୍ତବ ଜୀବନାବସ୍ଥାର ଏକ ଏକ ପ୍ରତୀକ ବା ସଂକେତ ମାତ୍ର । ତେଣୁ କବିତା ତା'ଠୁ କ'ଣ ବା ଅଧିକ !

ତେଣୁ କବିତା ଏକ ବିଶ୍ଳେଷଣ ନୁହେଁ । ଏକ ଉପଲବ୍‌ଧି । ଆଜି କବିତା ତାହାଁକ ସମଗ୍ର ସାହିତ୍ୟର ମୂଳ ଉତ୍ସ ଆବେଗ ନୁହେଁ କି ଉପଲବ୍‌ଧି ନୁହେଁ, ଆହ୍ୱାନହିଁ ମୂଳ ଉତ୍ସ । ଆବେଗ ଓ ଅନୁଭୂତି ପରବର୍ତ୍ତୀପର୍ଯ୍ୟ୍ୟବୁ । ବ୍ୟକ୍ତି ସୃଷ୍ଟି କବି ସତ୍ତାରେ ସ୍ଫୁଲିଙ୍ଗ ହେବା ପାଇଁ କାବ୍ୟିକ ଚେତନାର ଆହ୍ୱାନ ଓ ଆହ୍ୱାନକୁ ସହ୍ୟ କରିବା କବି ପକ୍ଷେ ଢ଼େର୍ ବଡ଼ କଥା । ତେଣିକି କବିତାର ଆବେଗ ଓ କାବ୍ୟାନୁଭୂତିର ଅନୁରଣନ । ଏ ଆହ୍ୱାନକୁ ସହ୍ୟ ନକଲାଏ ଆବେଗ ସଂଗଠିତ ହୋଇପାରେ ନାହିଁ । ଆହ୍ୱାନଟି ମୁଖ୍ୟ ହେବାର ମୂଳ କାରଣ ହେଲା ଆତ୍ମ ବିଲୁପ୍ତି ଅପେକ୍ଷା ସଚେତନତାଟି କାବ୍ୟ ଉପଲବ୍‌ଧିର ମୁଖ୍ୟ ଆଧାର ହୋଇ ଠିଆ ହୋଇଛି, ଆଜିର କବିତାରେ । ତେଣୁ କାବ୍ୟ ପ୍ରବହଣ ଓ କବି ସଚେତନତାର ମିଳନ ଓ ସଂପର୍କ ଉଭୟରୁ ଜାତ ଆଜିର କବିତା । ସଂଗଠିତ ସାମାଜିକ ଇତିହାସ ଭିତରେ କ୍ରମଶଃ ଦ୍ରବମାଣ ସମାଜ ଓ ବ୍ୟକ୍ତିର ଭାଗ୍ୟକୁ ନିଜ କାନ୍ଧକୁ ଉଠାଇ ନେବାକୁ ଚାହେଁ ଆଜିର କବି । ଭାଗ୍ୟବାଦରୁ ମୁକ୍ତ ଦେବାକୁ କବିର ଏ କଳା-କୌଶଳ ଯେତିକି ଆତ୍ମୀୟ, ସେତିକି ପରିମାଣରେ ଗୁରୁତ୍ୱପୂର୍ଣ୍ଣ । ଅସହାୟ ବୋଧ, ମୃତ୍ୟୁ ଚେତନା ଓ ଚିନ୍ତା-ବାତ୍ୟା-କ୍ଳାଂନ୍ତିଗ୍ରସ୍ତ ମଣିଷକୁ ସଂଜୀବନୀ ଦିଅିବାରେ ଅଗ୍ରସର ଆଜିର କବି । ପ୍ରକାରାନ୍ତରେ କବି ହୋଇଉଠିଛି ବେଶି ଦାୟିତ୍ୱପୂର୍ଣ୍ଣ । କାବ୍ୟପୁରୁଷ ବର୍ତ୍ତମାନକତାରେ ଅସହାୟତାବୋଧ,ମୃତ୍ୟୁ-ବୋଧ ଓ କ୍ଳାନ୍ତିବୋଧରେ ଜର୍ଜରିତ ହୋଇଛି ସତ, କିନ୍ତୁ ସେଇଠି ସେ ମୀରବ

ତା ସ୍ଥାଣୁ ହୋଇ ରହିନାହିଁ । ବରଂ ଜୀବନବୋଧକୁ ଚେତନ୍ୟାନ କରି ଏହିବୁକୁ ସହ୍ୟ କରନେଇଛି । ବ୍ୟକ୍ତିସତ୍ତାର ଅସହାୟତାବୋଧ ଜୀବସତ୍ତାରେ ଉତ୍ତାନ୍ ହୋଇଯାଇଛି । ତେଣୁ କବି ଉଭୟ ମୃତ୍ୟୁ ଓ ଜୀବନ ପଥର ଯାତ୍ରୀ । ମୃତ୍ୟୁ ଉପରେ କିନ୍ତୁ ଜୀବନକୁ ଜାବୋଡ଼ ଧରୁନାହିଁ । ଜୀବନକୁ ପ୍ରଚୁର ଜାଗିବାର ଆବେଗରେ ମୃତ୍ୟୁକୁ ଭେଟୁଛି ବାରମ୍ବାର । Spinoza ତାଙ୍କର Ethics ରେ ଲେଖନ୍ତି— and his wisdom is not a meditation upon death but upon life ଏବଂ ମୃତ୍ୟୁକୁ ମଧ୍ୟ ମୂଲ୍ୟବାନ କରିବାକୁ କବି ଅଗ୍ରସର । Ignace Lepp. ତେଣୁ ଲେଖନ୍ତି— Those whose lives have no meaning, can not give meaning to their death. (Death and its mysteries : Page 38). ତେଣୁ ସପ୍ତମ ଦଶକ ପୂର୍ବର କବିତାରେ ଥିବା ମୃତ୍ୟୁବୋଧ ଆଜିର କବିତାର ମୃତ୍ୟୁବୋଧ ଦୁଇଟି ଭିନ୍ନ ସ୍ୱରର ବାଙ୍ମୟ ।

ଏଠାରେ ସ୍ମରଣ କରି ଦିଆଯାଇ ପାରେ ଯେ ବ୍ୟକ୍ତିଗତ ଅସହାୟତାବୋଧ ଓ ମୃତ୍ୟୁବୋଧର ଜଟିଳତା ବିମୁକ୍ତ ନ ହୋଇ କବିତା କେବେ ନ କାଳେ ସୃଷ୍ଟି ହୋଇନାହିଁ । ଜଟିଳତା ମୁକ୍ତ ହେବାର ଉପାୟ ଦ୍ୱିବିଧ : ଏକରେ ପଳାୟନ, ଦୁଇରେ ଅଙ୍ଗୀକାର । ବିଶେଷ ଲକ୍ଷ୍ୟ କରିବାର କଥା ଯେ ଉତ୍ତର ସପ୍ତମ ଦଶକଠାରୁ କବି ଆତ୍ମ ବିଲୁପ୍ତି ନାମକ ପଳାୟନ ଠାରୁ ବେଶି ଆତ୍ମ ଅଙ୍ଗୀଭୂତ ଓ ଯନ୍ତ୍ରଣା ସଂଘର୍ଷକୁ ଅଧିକ ସମର୍ଥନ ଜଣାଇଛି । ଏଲିଅଟ୍ କବିତାରେ ଅନୁଭୂତି ଅପେକ୍ଷା ଆବେଗକୁ ମୂଳ ଉତ୍ସ ବୋଲି କହିବା ମୂଳରେ ରୋମାଣ୍ଟିସିଜମ୍ ର ପ୍ରଚ୍ଛନ୍ନ ଅଙ୍ଗୀକାର ଥିଲା । କିନ୍ତୁ ବର୍ତ୍ତମାନର କବିହୃଦୟରେ ଆହ୍ୱାନ ଓ ପ୍ରବହଣ ସହ ପରିଚିତନାରା ଯେଉଁ ସଂଘର୍ଷ ତା'ର ଆଧାର କବିତାରେ ଉଭୟ ଆବେଗ ଓ ଅନୁଭୂତିର ସମ୍ମେଳନ ଘଟିଛି । ରୋମାଣ୍ଟିସିଜମ୍ ର ସ୍ଥାନଟି ମାନବିକ ଚରମାବସ୍ଥା (Humanist Acuteness) ଗ୍ରହଣ କରିଛି । କବିତାର ପ୍ରକାଶିତ ଏଇ ଅବବୋଧ ତେଣୁ ମଣିଷକୁ ଓ ତା'ର ସମାଜକୁ କ୍ରମଶଃ କବିତାର

ମତ ଅଭିମତ ଭିନ୍ନମତ ॥

ନିକଟବର୍ତ୍ତୀ କରିବା ସଂଗେ ସଂଗେ ପାଠକ ଜଗତକୁ ଆକର୍ଷି ପାରିଛି । ଆବେଦକେ ଅନୁଭୂତି ଅବସ୍ଥା ଆନୁଭୂତିକ ଆବେଗ ହୋଇଛି କବିତାର ସ୍ପନ୍ଦନ । M. L. Rosenthal ତେଣୁ ବର୍ତ୍ତମାନର କବିତାକୁ ଯଥାର୍ଥରେ ଚିହ୍ନାଇ ଦିଅନ୍ତି— The greatest poetry is closest to the common life (Music of Awareness — Time and Space-Page-57) ମୋଟାମୋଟି ଭାବରେ ଏହାହିଁ ଉତ୍ତର ସତ୍ତର ଦଶକରୁ କାବ୍ୟିକ ଚେତନାର ସ୍ଥିତାବସ୍ଥା ।

୬

କମଳାକାନ୍ତଙ୍କ 'ଝରିବାର ବେଳ' କବିତା ଗ୍ରନ୍ଥର ଶବ୍ଦ ଲେଖିବା ପୂର୍ବରୁ ବର୍ତ୍ତମାନର କବିତାରେ ପରିବର୍ତ୍ତିତ ସ୍ୱର ସଂପର୍କରେ ସମ୍ୟକ୍ ଧାରଣା ଦେବାର ଔଚିତ୍ୟ ଏଥିପାଇଁ 'ଝରିବାର ବେଳ' କବିତା ଗ୍ରନ୍ଥରେ କିଛିଟା ଏହି ପରିବର୍ତ୍ତନର ସ୍ୱର ଉପଲବ୍ଧ । 'ସ୍ରୋତର ନାମ ରକ୍ତ' ଗ୍ରନ୍ଥରେ ଯେଉଁ ଆଧ୍ୟାତ୍ମିକ ଉତ୍ତରଣ ଓ ଈଶ୍ୱରସ୍ପୃହା ଜିଜ୍ଞାସାର ସ୍ୱର ବଳବତ୍ତର ଥିଲା, ସେ ସବୁ କ୍ରମଶଃ ଝରି ଆସିଛି ମାଟିର ବସ୍ତ୍ରାଳୁ । ସାପ ଲୁଗାର ସିଡ଼ିକୁ ଯେଉଁ ଯେଉଁ ଝରି ପଡ଼ିବାର ଜଖମୀ ଦୃଶ୍ୟ (ଅଦ୍ୱୈତ ଭଳି । ପରବର୍ତ୍ତୀ ଅନୁଭବ ଆସିଛି 'ଈଶ୍ୱର ପ୍ରତାରଣାର ଭିନ୍ନ ନାମ' (କ୍ଷମଣୀୟ) । ତେଣୁ କାବ୍ୟପୁରୁଷ କୌଣସି ଉତ୍ତରଣର ଅପେକ୍ଷା ନରଖି ନିତ୍ୟ ସତ୍ତାର ନିତ୍ୟ କବିତା ଲେଖୁଛନ୍ତି ଆତ୍ମ-ଏକ୍ଷ୍ୟ ଖୀନ-ସଂଘର୍ଷ ଓ ସମର୍ପଣରେ । ଚେତନା ଓ ଦୂରଦୃଷ୍ଟିକୁ ବିସ୍ମୃତ ଦେଇ ପ୍ରତିଟି ଉପସ୍ଥିତ ସତ୍ୟ ନିକଟରେ ସର୍ତ୍ତ ବାନ୍ଧୁଛି କାବ୍ୟପୁରୁଷ । ତେଣୁ ସେ ଲେଖନ୍ତି— "ମୋ ପ୍ରତିଟି ଉଚ୍ଚାରିତ ଶବ୍ଦ/ମୋ ପ୍ରତିଟି ପ୍ରସିଦ୍ଧ/ନିଷେଧ ସତ୍ୟର ସ୍ୱରଲିପିରେ ମୁଁ ବଞ୍ଚିବି" । (କବିତା : ସ୍ଥିରରେ ସ୍ଥିରହିଁ ହଜେ) । ଏ ସତ୍ୟର ଅନ୍ୱେଷଣ ଫାଙ୍କା ଫାଙ୍କା ନୁହେଁ ଏକ ନିଜସ୍ୱ ସଂଗଠିତ ମୂଲ୍ୟବୋଧ ଉପରେ ଛିଡ଼ା ହୋଇଛି କାବ୍ୟ-ପୁରୁଷ ; ଯାହା ନୈତିକବୋଧ ଭିନ୍ନ ଅନ୍ୟ କିଛି ନୁହେଁ । ତେଣୁ ଅନ୍ୱେଷୀ-ଆତ୍ମା ଭେଟୁଛି ଯନ୍ତ୍ରଣା, ତିକ୍ତତା, ବିବ୍ରତତାବୋଧ ଓ ସର୍ବୋପରି ଦୁର୍ଭାଗ୍ୟକୁ ।

॥ କବି କମଳାକାନ୍ତ

ଏ ଅନ୍ୱେଷାର ସ୍ୱରୂପ ନାହିଁ । ଅବଶ୍ୟ କବିତାର ଅନିବାର୍ଯ୍ୟ ଅନର୍ଦ୍ଦକତା ସଂସ୍କୃତିର ବାସ୍ତବବାଦୀ ଜୀବନ ଉନ୍ମୁଖତା । ନିଜ ସଂସ୍କୃତିର କାବ୍ୟିକ ଦାୟାଦ ନହେଲେ କବିତା ସୃଷ୍ଟି ଅଦ୍ଭୁତ ହୁଅନ୍ତା । ତେଣୁ ସଂସ୍କୃତି ପ୍ରତି ସେ ଆସ୍ଥାବାନ୍ ଅଥଚ ଦୃଷ୍ଟିକୋଣରେ ତିର୍ଯ୍ୟକ୍ ଓ ଶାଣିତ ବ୍ୟଙ୍ଗକାର । ସଂସ୍କୃତିର ସମଗ୍ର ଅତୀତତାର ବର୍ତ୍ତମାନକତା ଭବିଷ୍ୟତପାଇଁ ବସ୍ତା ଖୋଲିବାକୁ ତାଙ୍କ ସୃଷ୍ଟିରେ ବାଧ । ସମୟାନୁଭୂତିର ସ୍ରୋତ ହେଟେର୍.ଲିଟେନ୍ରନ, ଯେମିତି କାହାଣୀଟିଏ କହୁ କହୁ ଅଙ୍କ/ତୁନ ପଡଲେ ନାତି କହେ/ଅଙ୍କ, କହ— ଆଉଥରେ କହ । (କବିତା : ଅର୍ଥ-ଅନର୍ଥ) । ଉତ୍ତର ଦାୟାଦମାନେ ମଧ୍ୟ ଏହି କାବ୍ୟିକ ପରଂପରା, ବାସ୍ତବବାଦୀ ଆହ୍ୱାନ ଓ ସ୍ୱପ୍ନିଳ ଉତ୍ତେଜନାର ଆଧାର ଆବଦ୍ଧ ହେବେ ।

କମଳାକାନ୍ତଙ୍କ ଦୃଷ୍ଟିରେ ପ୍ରତିଟି ମୁହୂର୍ତ୍ତ ଗୋଟେ ଗୋଟେ ଦୁର୍ବଳ ସମୟ ଏବଂ ପ୍ରତିଟି ମୁହୂର୍ତ୍ତ ଗୋଟେ ଗୋଟେ କବିତାର ମୁଦ୍ରା । ପରିଶେଷରେ ସମଗ୍ର ସମୟଟିକୁ ସେ ଆସ୍‌ଥେଟିକ୍ କରି ଥୋଇବାକୁ ବ୍ୟଗ୍ର । ତେଣୁ କବିତାର ସ୍ରୋତ ହେଉଛି ନିରବଚ୍ଛିନ୍ନ । ଏ କ୍ଷେତ୍ରରେ ଉଭୟ ସବଳ ଓ ଦୁର୍ବଳ କବିତାର ଜନ୍ମହେବା ସ୍ୱାଭାବିକ । ପ୍ରତିଟି ଭଲ କବିତାରେ ସୃଷ୍ଟି-ନିୟା କ୍ଷେତ୍ରରେ ଏହା ଘଟିଥାଏ ।

୪୭ଟି କବିତା ସମ୍ବଳିତ ଏହି ସଂକଳନଟିରେ ଚେତନାଶ୍ରିତ ବାସ୍ତବତାକୁ ସିଧା ସଳଖ ସାମନା ସାମନା କରିବା, ଛଳନାହୀନ ଆତ୍ମ-ସ୍ୱୀକାରୋକ୍ତି, ଅଭିବ୍ୟକ୍ତି ଓ ପ୍ରୟୋଗସିଦ୍ଧ କାବ୍ୟିକ ପରିଚୟ ମିଳେ । ପାରଂପରିକ ଶବ୍ଦଚେତନା ପ୍ରତି ଅସ୍ୱାଚ୍ଛନ୍ଦ ପ୍ରତିକ୍ରିୟା, ଯଥା : ଶବ୍ଦକଣ ଶବ୍ଦର ଦୁର୍ଭିକ୍ଷ ବେଳେ ତାର ଉପୁ (ଅନନ୍ତର ପ୍ରତିଶ୍ରୁତିର ନିର୍ଭରତା) ବା ଯେମିତି ତୁ ଓ ମୁଁ/ନିଶ୍ଚିହ୍ନ ହୋଇଯିବା ଅନ୍ୱେଷଣଟି ବର୍ଣ୍ଣମାଳାର କୋକେଇରେ, (ଅଦ୍ୱୈତ) ପାରଂପରିକ ମୂଲ୍ୟବୋଧ ଓ ଧାରଣା ପ୍ରତି ବିମୁଖତା ଏବଂ ବିପ୍ଳବ ପ୍ରତି ଅଙ୍ଗୀକାର, ଯଥା— ରାସ୍ତାର ମୋଡ଼ ଭାଙ୍ଗିଲା ବେଳେ/ମଣିଷର ସାମର୍ଥ୍ୟ ବୁଝାଯାଏ (ଏକା ଏକା) । ମୃତ୍ୟୁବୋଧ ଶତଶରେ

ମତ ଅଭିମତ ଭିନ୍ନମତ ॥

ଜୀବନବୋଧର ବିଦ୍ରୋହ, ଯଥା— ଦେଖୁଚି ମାରୁବଡ଼ାର ମାଲଭାଇଙ୍କ ଆଖିକୁ (ଦୁଷମନ୍ ପାଇଁ ଗୋଟିଏ ପ୍ରଶସ୍ତି) ଏବଂ ମାନବିକ ସ୍ଖଳନର ସିଧା ଉଚ୍ଚାରଣ, ଯଥା— ଭଦ୍ରତାର ଅନ୍ୟନାମ ମୃତ୍ୟୁ (ଅର୍ଥ-ଅନର୍ଥ), ଭଦ୍ର ଉଦ୍ୟାନରକ୍ଷୀ ମଣିଷର ଗୁପ୍ତ କୌଶଳ ପ୍ରତି କଟୂକ୍ତି, ଯଥା— 'ମାରବଡ଼ାଇ ନଗ୍ରୋଧର ଅମୁହାଁ ଘାଟ' ପ୍ରଭୃତି କମଳାକାନ୍ତଙ୍କ କାବ୍ୟ ଚେତନାର ବଳିଷ୍ଠ ସ୍ୱର ।

"ନାରାୟଣ ଶବ୍ଦରେ ଉତ୍ତରୁଏ ନାରଦ" (ଅଶେଷକୁ ରଖି ନାରାୟଣ) ପଂକ୍ତିଟି ବୋଧହୁଏ ସମଗ୍ର ସଂକଳନର ସବୁଠୁ ବଡ଼ କାବ୍ୟିକ ବୈଭବ, ଉଭୟ ଆବେଗ ଓ ସଂଗଠନରେ । ଶତାବ୍ଦୀର କାବ୍ୟିକ ମୂଳକ ଏବଂ ବାସ୍ତବ ବାଦୀ ଚିତ୍ରକଳ୍ପ ସଂଗଠନରେ, ସାହିତ୍ୟ ଇତିହାସରେ ଏ ପଙ୍କ୍ତିର ପଟାନ୍ତର ନାହିଁ । ସାଂସ୍କୃତିକ ଜୀବନରେ ପ୍ରତିଟି ଉପଲବ୍ଧି ମୂଳରେ ତର୍କ, ବିଶ୍ୱାସ ମୂଳରେ ଦ୍ୱନ୍ଦ୍ୱର ଅତିକାବ୍ୟିକ ଆବେଦନ, ନାରାୟଣ ଓ ନାରଦ ଏଇ ଦୁଇଟି ନିତ୍ୟ ପ୍ରବୃତ୍ତି ମିଥ୍‌ର ପ୍ରୟୋଗବାଦୀ ବିସ୍ଫୋରଣରୁ ସୃଷ୍ଟି ଚିତ୍ରକଳ୍ପ ସଂଗଠିତ ।

ବହୁ ଭଲ କବିଙ୍କ ସୃଷ୍ଟିରେ ପରିଦୃଷ୍ଟ ହୁଏ ଯେ ସମଗ୍ର କବିତା ଏବଂ ତାର ଗତିଶୀଳ ଭାବ ପ୍ରବାହ ଅପେକ୍ଷା ସେଇ କବିତାର ଗୋଟିଏ ଗୋଟିଏ ପଙ୍କ୍ତି ପାଇଁ କବି ଚିରଂଜୀବୀ ହୋଇଛନ୍ତି । (ଏ ସମ୍ବନ୍ଧୀୟ ଆଲୋଚନା ଅନ୍ୟ ଏକ ପ୍ରବଂଧର ଆବଶ୍ୟକତା ରଖେ)

କମଳାକାନ୍ତଙ୍କ କବିତା (କାବ୍ୟପୁରୁଷ) ଠିଆ ଠିଆ ଚାଲିଥାଏ, ଅନ୍ୱେଷଣ ଭିତରେ ଗତି କରି । କୌଣସି ସତ୍ୟଠି ସ୍ଥିର ନ ରହି । କାରଣ ସେ ଜାଣେ, ସତ୍ୟର ନିର୍ଦ୍ଦିଷ୍ଟରୂପରେଖ ନାହିଁ । ତେଣୁ ଅନ୍ୱେଷଣହିଁ ସତ୍ୟ । ଚାଲୁ ଚାଲୁ ଝୁଂଟିପଡ଼େ, ରକ୍ତାକ୍ତ ହୁଏ । କିନ୍ତୁ ସେଇଠି ଥିର କରି ବସି ପଡ଼େନା, ବେଳେ ବେଳେ ଥକ୍‌କାରେ ଅଣ୍ଟା ନଇଁ ଯାଏ । ପୁଣି ଦମ୍ଭ ଧରେ, ଅଣ୍ଟା ସଳଖେ, ଚାଲେ । ଭେଟିଥିବା କାଳ ଓ ମଣିଷର ଦୁଇ ମାଲଭାଇଙ୍କୁ ଚେତନା ସ୍ତରରେ ଘଣ୍ଟାକଡ଼କୁ ଠେଲି ଦେଇ ଇତସ୍ତତଃ

ଏମିତି ବୁଲୁଥାଏ— ଗଳି କନ୍ଦି, ସହର, ଗ୍ରାମ, ପ୍ରାନ୍ତର, ନଈ ଓ ସାଗର । ଯେମିତି କି ଏକ ଅନିଦ୍ର ପୁରୁଷ ଅନ୍ୱେଷଣରେ ବ୍ୟସ୍ତ । ପ୍ରତ୍ୟେକ ମଣିଷର ମାପକାଠି, ସାମାଜିକ ମସ୍ତକ, ବ୍ୟକ୍ତିଗତ କୋଠରୀରେ ଝାମ୍ପ ମାରୁଥିବା ଶୂନ୍ୟ ଚଢ଼େଇ । ବାହୁର ବାହୁର ଗୁଳିପାଏ ଜୀବନବୋଧ ଅନ୍ତର୍ଦୃଷ୍ଟି । ଏଭଳି କି ଈଶ୍ୱରଙ୍କ ସତ୍ତା ଛୁଇଁବା ପାଇଁ ମଣିଷର ସମଗ୍ର ଜୀବନ କାଳକୁ ଆରାଧନାରେ ବିତେଇ ଦେବାର ଦରଣ୍ଡରେ ନା ଥାଏ ଈଶ୍ୱର, ନା ଥାଏ ଜୀବନର ପ୍ରତି-ଚିନ୍ତା । ଯାହା ବୁଝାଇ ଦିଏ, ଈଶ୍ୱରର ଅର୍ଥହିଁ ଅବର୍ତ୍ତମାନ ଓ ମୋହମୁକ୍ତି ।

କାବ୍ୟପୁରୁଷ ଗଛର ପତ୍ର ସନ୍ଧିରୁ ଜନକନ ବାହୁର ପଡ଼ୁଥିବା ଜହ୍ନର ଜହ୍ନ କିରଣରେ ବେଳେ ବେଳେ ଆମ୍ଭିକ ଉତ୍ତରଣର ଆଭାସ ପାଇଯାଏ । କିନ୍ତୁ ପର ମୁହୂର୍ତ୍ତରେ ଚେତନା ଓ ସତ୍ୟ ଆବିଷ୍କାର କରେ ଗଛର ପତ୍ର ଦୋହଲି ଯାଉଛି ଏବଂ ଜହ୍ନାଲୋକରେ ଆଲୋକିତ ଅଞ୍ଚଳ ଗୁଇ ଗୁଇକା ପଡ଼ି ଯାଉଛି । ଉଭୟ ଜହ୍ନ ଓ ପତ୍ର କେବଳ ଗୋଟେ ଗୋଟେ ଉପଯୋଗହିଁ ମାତ୍ର । ମାନବୀୟ ବିଶ୍ୱ ଓ ବସ୍ତୁବୋଧ ଚେତନାର ମଝିରାସ୍ତାରେ କମଳାକାନ୍ତୀୟ କବ୍ୟପୁରୁଷ ଅଗ୍ରସର । ଏହାହିଁ କମଳାକାନ୍ତଙ୍କ 'ଖସିବାର ବେଳ'ର ଅନ୍ୟତମ ମୁଖ୍ୟ କାବ୍ୟଚେତନା

ସଂକଳନଟିରେ ବାରମ୍ବାର ଅମୂର୍ତ୍ତଚେତନାଗୁଡ଼ିକ ମୂର୍ତ୍ତରୂପ ଦେବାରେ ପ୍ରଚେଷ୍ଟା ଅଦମ୍ୟ । ନର୍ମମକୁ ନର୍ମମତା, ପ୍ରତ୍ୟୁତ୍ପନ୍ନକୁ ପ୍ରତ୍ୟୁତ୍ପନ୍ନତା, ଦୁର୍ଦମନୀୟକୁ ଦୁର୍ଦମନୀୟତା ପ୍ରଭୃତି ରୂପ ଦେବାରେ କମଳାକାନ୍ତ ଜୀବନର ଅନେକ ସଫଳ ଅଭିବ୍ୟକ୍ତିକୁ ସାଧନାର କାଠଗଡ଼ା ଭିତରକୁ ଭିଡ଼ି ଆଣିଛନ୍ତି ।

ରୂପ, ପସନ୍ଦ/ଅପସନ୍ଦରେ ବାସନ୍ଦ ( ଯାହାକୁ ଯିଏ ଭସେ ) ବା ଦକ୍ଷିଣା ପବନ ପରି ପତ୍ର ସବୁ ଖିଲ୍ ଖିଲ୍/ଦଲ୍ ଦଲ୍ ଦଲ୍ ରୁବା/ଦଲ୍ ଦବୁ ସିଲ୍ (ଆଖି-୨) ପ୍ରଭୃତି ଭାଷାର ସଂଗୀତମୟତା, ଧ୍ୱନିର ଚମତ୍କାରିତା ସୃଷ୍ଟି

କବିତା ସଙ୍ଗେ ସଙ୍ଗେ ଶକ୍ତିଶାଳୀ କାବ୍ୟାନୁଭୂତି ମଧ୍ୟ ସଂଗଠନ କରେ । ଗ୍ରାମ୍ୟ ରୂପକଳ୍ପର ପ୍ରୟୋଗ, ଭାଷାର ସାଂଗୀତିକ ସ୍ୱର ପ୍ରବାହ, ଶବ୍ଦର ନୃତ୍ୟଧର୍ମୀ ବିନ୍ୟାସ ଏହି ସଂକଳନର ଅନ୍ୟ ଏକ ବିଶେଷତା ।

'ଖସିବାର ବେଳ'ର କାବ୍ୟାନୁଭୂତି ଏକ ଉଲ୍ଲେଖ୍ୟ ମୋଡ଼ ବା ପରିବର୍ତ୍ତିତ କାବ୍ୟବୋଧର ସଂକଳନ, ଯେଉଁଥିରେ ମଣିଷ (ପ୍ରକାରାନ୍ତରେ ପାଠକ) ହଠାତ୍ ଏକ ଆଚମ୍ବିତ ପରିବେଶ ବା ଚେତନାକୁ ଭେଟି ବିସ୍ମିତ ହୁଏନାହିଁ । ବରଂ ନିତ୍ୟ ପ୍ରବହମାନ ଇତିହାସର କାବ୍ୟମୂର୍ତ୍ତି ସହ ଅନ୍ତରଙ୍ଗ ହୋଇଉଠେ, ନିବିଡ଼ରୁ ନିବିଡ଼ତର ହୁଏ । ଉତ୍ତର ସପ୍ତମ ଦଶକର କାବ୍ୟାନୁଭୂତି ଓ ପ୍ରବାହର ଏହାହିଁ ବିଶେଷ ପରିଚୟ । କମଳାକାନ୍ତଙ୍କ କାବ୍ୟସାଧନା ଏକାନ୍ତ ଅନୁଗନ୍ତ, ଏଇ ନୂତନ ଜିଜ୍ଞାସା ଓ ଅବବୋଧର । ବର୍ତ୍ତମାନର ଓଡ଼ିଆ କବିତାକୁ ଓ ତା'ର ଐତିହାସିକ ଏବଂ କାବ୍ୟିକ ଆବେଦନକୁ ଏହାର ପ୍ରସାରିତ ଭୂମିକା ତେଣୁ ସ୍ୱୀକାର୍ଯ୍ୟ ।

**ରଜନୀକାନ୍ତ ମହାନ୍ତି**
କ୍ଷୀରକୋଣୀ, ସୋରୋ, ବାଲେଶ୍ୱର

# କମଳାକାନ୍ତଙ୍କ ଶ୍ରେଷ୍ଠ କବିତା

[ ନବଲିପି- ୩ୟ ବର୍ଷ, ୨ୟ ସଂଖ୍ୟା - ମାର୍ଚ୍ଚ ୧୯୮୧ ]

କମଳାକାନ୍ତଙ୍କ ଶ୍ରେଷ୍ଠ କବିତାର ପ୍ରକାଶନ କବିତା ପାଠକ ପାଠିକାଙ୍କ ପକ୍ଷରେ ଏକ ଶୁଭ ସମ୍ବାଦ ହେଲେ ବି ଆମ ପକ୍ଷରେ ଏହା ଏକ ବିଡ଼ମ୍ବିତ ସମ୍ବାଦ । କାରଣ ଶ୍ରୀ ଲେଙ୍କା ଏବେବି ସାଧନାରତ ଓ ତାଙ୍କର ଅଜସ୍ର କିଛି କବିତା ଗ୍ରନ୍ଥ ମଧ୍ୟ ଯନ୍ତ୍ରସ୍ଥ । ତେଣୁ ଏ ଗ୍ରନ୍ଥ ପ୍ରକାଶନ ପଛରେ ଶ୍ରୀ ଲେଙ୍କାଙ୍କର

ବା ପ୍ରକାଶକଙ୍କର ବା ସମସ୍ତର କଣ୍ଟିଂହା ଦୁର୍ବଳତା ଓ ଦ୍ରୁତଶୀଳତା ଥିଲେବ ଆମ ପାଇଁ ତେତେ ସୁଦୃସୂଦ ନୁହେଁ, ତେଉଁ ଉଦ୍ୟମ ସାଧୁ ଓ ପ୍ରଚେଷ୍ଟା ଅଭିନନ୍ଦନୀୟ ।

ସବୁଠୁ ମଜାକଥା ହେଉଛି ଯେ ଶ୍ରୀ ଲେଙ୍କା ଏ ଗ୍ରନ୍ଥରେ ତାଙ୍କର ଭଲଭଲ କବିତା ସବୁକୁ ପ୍ରାୟ ବାଦ ଦେଇଛନ୍ତି । ବିଶେଷ କରି ପ୍ରଥମ ୧୦।୧୧ଟି କବିତା ଏଥିରେ କୌଣସି ବିଲକ୍ଷଣ ଭାବ ଜାଗ୍ରତ କରୁନାହିଁ । ଏଇ ହେତୁରୁ ଯେ ଏଗୁଡ଼ିକ ଆଧୁନିକତାର ମର୍ଯ୍ୟାଦା ଦାବୀ କରନ୍ତିନାହିଁ । ସ୍ୱୀ'ଛଡ଼ା 'ମୋ ମା' ମୋ ପ୍ରତି', 'ଈଶ୍ୱରଙ୍କ ପାଖି ପାଇବା ଦିନ', 'ରବିବାର', 'ସ୍ୱପ୍ନ', 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା', 'ଜଣାଣ,' 'ନିରୁଦ୍ଦିଷ୍ଟ ବନ୍ଧୁ ସଂପର୍କରେ,' 'ଗ୍ରାହ୍ୟସ୍ଥ୍ୟ' ଓ 'ନିଜସ୍ୱ ପ୍ରାର୍ଥନା' ଭଳି କେତେକ ଭଲ କବିତା ଏଥିରେ ସ୍ଥାନିତ ହୋଇଛନ୍ତି । କମକାକାନ୍ତ ନିଜେ ଯେମିତି ଏଇସବୁ କବିତା ଭିତରେ ଉଭା ହେଲାଭଳି ଜଣାଯାନ୍ତି । କବିତା ଓ କାବ୍ୟକତାର ଏକ ସୁନ୍ଦର ଏକକତା ଆମେ ଏଇସବୁ କବିତାରେ ଲକ୍ଷ୍ୟକରୁ ।

ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ ଶ୍ରୀ ଲେଙ୍କାଙ୍କ ସ୍ଥାନ ଏବଂ ସ୍ୱୀକର ସମ୍ପର୍କରେ କିଛି କହିବା ପରିସର ଦୃଷ୍ଟିରୁ ଧୃଷ୍ଟତା ହେବ ନିଶ୍ଚୟ । ତେବେ ଜଣେ ସଚେତନ ପାଠକ ଓ ସମାଲୋଚକ ଲକ୍ଷ୍ୟ କରିବେ ତାଙ୍କ କବିତାର ଗୀତିଧର୍ମିତା, ସାବଲୀଳତା, ସ୍ୱଚ୍ଛତା, ନିଷ୍କପଟ ଆତ୍ମିକ ପ୍ରକାଶଭଙ୍ଗୀ । ସ୍ୱୀ'ଛଡ଼ା ଆତ୍ମସ୍ୱୀକାରୋକ୍ତି, ମୋହମୁକ୍ତ ଦୃଷ୍ଟିଭଙ୍ଗୀ (ଜୀବନ ପ୍ରତି, ସମାଜ ପ୍ରତି-ପ୍ରଚଳିତ ଧର୍ମ, ନ୍ୟାୟ ଓ ପାରଂପରିକ ମୂଲ୍ୟବୋଧ ପ୍ରତି ଲକ୍ଷ୍ୟଣୀୟ ।

ଶ୍ରୀ ଲେଙ୍କା ଓଡ଼ିଆ କବିତାରେ ଜଣେ ଦକ୍ଷ ଶବ୍ଦ ଶିଳ୍ପୀ ଓ ଜୀବନବାଦୀ କବି । ଗ୍ରାମ୍ୟ ଶବ୍ଦ ସହ ସଂସ୍କୃତ ଶବ୍ଦର ସହାବସ୍ଥାନ, ଭଙ୍ଗା ପୁରୁଣା ଦାଂଥଡ଼ା ଶବ୍ଦ ସହ ନୂଆ ତାଜା ଅର୍ଥବହ ଶବ୍ଦର ମିଳିତ ଅବସ୍ଥାନ ଜରିଆରେ ଆମ ପୁରୁଣା ମୂଲ୍ୟବୋଧକୁ ନୂଆ ମୂଲ୍ୟବୋଧ ସହ

ମତ ଅଭିମତ ଭିନ୍ନମତ ।

ଯୋଡ଼ି ଜୀବନ ଭିତରର ନୂଆ ଅର୍ଥ ଉନ୍ମେଷ କରିବାର ଦକ୍ଷତା ଆମେ ତାଙ୍କ କବିତାରେ ଲକ୍ଷ୍ୟ କରିପାରିବା ।

ମୃତ୍ୟୁ ତାଙ୍କ କବିତାର ଏକ ବିଶେଷ ଆକର୍ଷଣୀୟ ଦିଗ । ତାଙ୍କ କାବ୍ୟନାୟକ କ'ଣ ମୃତ୍ୟୁର ଅମୃତ ରୂପ ପାଇଁ କାକୁସ୍ଥତାରେ ଅସ୍ଥିର ? ନା ତାର ନିଃଶବ୍ଦ ପାଦଶବ୍ଦରେ ଉତ୍କଣ୍ଠା-ଜର୍ଜର ? ଉଭୟ ସତ୍ୟ । ସତ୍ୟ ପାଇଁ ସତ୍ୟବ୍ରତର ଦୀକ୍ଷା ନେଇଥାଏ କବି । ତାଙ୍କର କାବ୍ୟ ସ୍ୱରରେ ଅନ୍ତତଃ ଏତିକି ବିଶେଷ ଉଦ୍‌ଘୋଷଣ ଏବର ମଣିଷ ପାଇଁ— ପ୍ରତିନିୟତ ଯନ୍ତ୍ରଣା ଜର୍ଜରିତ ମଣିଷର ଆତ୍ମିକ ଉପଲବ୍‌ଧି ପାଇଁ ।

କବିଙ୍କର ଜୀବନ ପ୍ରତି ମୋହ ଓ ପୁଣି ଜୀବନ ବିମୁଖତା ପ୍ରତି ପାଠକର ଦୃଷ୍ଟି ପଡ଼େ । ଭୋଗର ପ୍ରାଚୁର୍ଯ୍ୟ ଭିତରେ ଜୀବନର ଯେଉଁ ତ୍ୟାଗର ସ୍ପଷ୍ଟ ଦିଗଟି ଦିଶିଯାଏ, ଆମ ପରମ୍ପରାରେ ତା' ଭିତରୁ ଏଇଟି ନିବେଦନ ଓ ସନ୍ତୋଷ । କାବ୍ୟ ନାୟକ ରୂପ ପ୍ରବଣତା ଭିତରେ ଅରୂପର ଅଦୃଶ୍ୟ ଭୂମିକୁ ଭେଟିବାକୁ ଚାହିଁଲାବେଳେ ପୁଣି 'ନୂଆଗୀତ'ର ଆକର୍ଷଣ, ପୁଣି 'ଶାମୁକା'ର' ନିମନ୍ତ୍ରଣ । ଜୀବନର ଏଇ ବିରୋଧାଭାସ ଭିତରେ ଜୀବନର ସଂଜ୍ଞାର ଓ ତା'ର ଜୀବନପଣିଆ ନେଇ କବି ଶ୍ରୀ ଲେଙ୍କାଙ୍କ 'ଶ୍ରେଷ୍ଠ କବିତା' ।

-କମଲ କାଂତ

# ଉଚ୍ଛ୍ୱସିତ ଆବର୍ତ୍ତ

[ କମଳାକାନ୍ତଙ୍କ ଶ୍ରେଷ୍ଠ କବିତା : କମଳାକାନ୍ତ ଲେଙ୍କା (ଜନ୍ମ ୧୯ ନଭେମ୍ବର, ୧୯୩୫ । ପୃଷ୍ଠା ବୟାନବେ । ମୂଲ୍ୟ : ପନ୍ଦର ଟଙ୍କା ମାତ୍ର ।

॥ କବି କମଳାକାନ୍ତ

ପ୍ରକାଶ କାଳ : ୧୫ ଡ଼ିସେମ୍ବର, ୧୯୭୯ । ପ୍ରକାଶକ : ଜଗନ୍ନାଥ ରଥ, ବିନୋଦ ବିହାରୀ, କଟକ-୭୫୩୦୦୨ । ] "ସମାବେଶ"

ମାଆ ଲୋ ! ତୁ ପରି ଭିଜାଇଥିଲୁ ଗାଁ ଦାଣ୍ଡ ହସରେ ଉତ୍ତୁରି ମୋ ଅଣ ଜନମ ଦିନ ? କେଉଁ ଗଲା ହଜିଲାର ପୁରୁଣା କାହାଣୀ । ଏବେ ମୁଁ କଉଡ଼ି ଗଣେ, ଜୁଆ ଖେଳେ/ରୂପଜୀବା ମେଳେ ଭଙ୍ଗାଏ ତୋଅର ଧୃର୍ୟ । ମଜଦୁର୍, ଭୋକୀ, ଶୋଷୀ, ବଞ୍ଚିତର ମନେ ତୋଅର ଲୁହର ଛବି ଦେଖି ମୁଁ ଟେଢୁଛି ଏକ କଷ୍ଟକର ପ୍ରୀତିର କଅର । ମାଆଲୋ, ତୁ ଝିଂଗାସିବୁ ମନଲଗ୍ନ । କାନମୋଡ଼ି ଚମ୍ପକ ଛ ଦେବୁ ଦେଖି ଏଇ ବିପରୀତ ସ୍ୱଭାବର କୁମରମଣି ମହିମା ଅପାର ! ଯ ହା ଭାବ ! ଯେଉଁ ଶାସ୍ତି ଦେବୁ ଦେ । ମୁଁ ତ ତୋର ଅନ୍ତବୁଜୁଳାକୁ ଭଣିଭଣି ମନଛଳ୍ପ ନଖରେ ବିଦାରି ଓ ମୁଁ ତ ତୋର ଲୁହର ତପସ୍ୟା ଓ ବୃନ୍ଦାବଣ୍ଡି ମାତ୍ରର ଶିଖାରୁ ଏ ପୃଥିବୀକୁ ଆସିବାର ସ୍ୱପ୍ନ ଦେଖିଅଛି । ...... ମାଆଲୋ, ମୁଁ କେଉଁମିତି ବୁଝାଇବି ଏ ନଂଗେଳା ଟୋକାର ଖିଆଲ ? ଓ ଘଣ୍ଟିଆ କଳିଜାର ଜଳନ୍ତା କଅାଁର ତେଜ ମାଗେ ତୋର ସ୍ନେହର ଅସଂଖ୍ୟ ହାତ ସ୍ପର୍ଶ, ମାଆ ।...... ମାଆଲୋ, ମୁଁ ଏଇନେ ଫେରୁଚି ପିଙ୍ଗ ସରପ ଓ ସେଥିପାଇଁ ତୁ ବୋଧେ କଷ୍ଟକରୁଣ ହେଲୁ ଏବଂ ପେଲଦେଲୁ ରକ୍ତର ସମୁଦ୍ରେ ମାଆ କଅାଁର ହୃଦକୁ ? ( ମୋ ମା' ପ୍ରତି )

ନିଜ କବିତାର ନାୟକ ନିଜେ, କମଳାକାନ୍ତ ଲେଙ୍କା । ୧୯୫୮ରେ ପ୍ରକାଶିତ 'ସୁନା ଫସଲ' ଠାରୁ ଆରମ୍ଭ କରି 'ନିତ୍ୟ ନିୟମିତ' ପର୍ଯ୍ୟନ୍ତ ନଅଟି ସଂକଳନର ପ୍ରଣେତା, ବୋଧହୁଏ ଗ୍ରନ୍ଥ ସଂଖ୍ୟା ଦୃଷ୍ଟିରୁ ଦୀପକ ମିଶ୍ରଙ୍କ ସହିତ ଏ ସମୟର ସବୁଠାରୁ ବହୁ ପ୍ରସୂ କବି । 'ସ୍ରୋତର ନାମ ଋତ', 'ନିଜ ସହ ଗୋଟେ ସାକ୍ଷାତକାର' ଓ 'ନିତ୍ୟ ନିୟମିତ'କୁ ଛାଡ଼ି ଅନ୍ୟ ସମସ୍ତ ସଂକଳନରୁ କବିଙ୍କ ଦ୍ୱାରା ନିର୍ବାଚିତ ୩୭ଟି କବିତାର ସମାହାର : କମଳାକାନ୍ତଙ୍କ ଶ୍ରେଷ୍ଠ କବିତା ।'

ଜୀବନ ସହିତ ତୀବ୍ର ଓ ବ୍ୟାକୁଳ ମୁହାମୁହିଁ ସଂଘର୍ଷ, ଯାହା ତାଙ୍କ ପ୍ରକାଶ ଭଙ୍ଗୀକୁ କରେ ଅସ୍ଥିର, ତାଙ୍କ କବିତାର ଏକ ମୁଖ୍ୟ ବିଭବ । ଏହି

ମତ ଭିନ୍ନମତ ଅଭିମତ ।

ଦୃଷ୍ଟିରୁ ଗ୍ରନ୍ଥଟିର ୧୦।୧୧ଟି କବିତା ପ୍ରାପ୍ୟ ଅ-କମଳାକାନ୍ତୀୟ ମନେ ହୁଅନ୍ତି । ଏ ଗୁଡ଼ିକର ଆପାତ ସାରଲ୍ୟ କବିଙ୍କର ପ୍ରାରମ୍ଭିକ କାବ୍ୟଜୀବନର ଆପେକ୍ଷିକ ନିର୍ଜ୍ଞାନ ସ୍ଥିତିର ସୂଚକ । ପରବର୍ତ୍ତୀ କାଳରେ ଏ ଗୁଡ଼ିକର ଅପ୍ରକାଶ ତାରଲ୍ୟ ଦେଖିବାକୁ ମିଳେନାହିଁ । ଏହି କବିତା ଗୁଡ଼ିକ ବୋଧହୁଏ କବିଙ୍କର ନିମ୍ନବିକାଶର ପରିଚୟ ଦେବା ପାଇଁ ଅନ୍ତର୍ଭୁକ୍ତ କରାଯାଇଛି ।

ବସ୍ତୁତଃ 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା' ଠାରୁ 'ଏଥାନ ନିଲଠା ସହି' ପର୍ଯ୍ୟନ୍ତ ସଙ୍କଳିତ କବିତା ଗୁଡ଼ିକ ମଧ୍ୟରେ କମଳାକାନ୍ତଙ୍କର ନିଜସ୍ୱ ପରିଚୟ ମିଳେ । ଆପଣାର କଲିଜାକୁ ନିଜ ରକ୍ତରେ ଧୋଇ କବିତାରେ ଫୁଲଫୁଟାଇବାର ସଂକଳ୍ପ କରିଥିବା କାବ୍ୟ ନାୟକ 'ଲେମ୍ବୁକୋ'ଗ୍ଡ ବକ୍ଷ', 'ବନ୍ଦ ନାଭି', 'ନାତିଦୀର୍ଘ ଦେହ', 'ପାନଖିଆ ଅସୁନ୍ଦର ଦାନ୍ତ', ଥିବା ଏକ 'ଜଦ୍‌ଖୋର' ସ୍ତ୍ରୀ ଠାରେ ଆତ୍ମ ସମର୍ପଣ କରେ, 'ବାଦୁଡ଼ିର ଚିଁ ଚିଁ ଶବ୍ଦ' ସହିତ 'ଇଷିକାର ଶୁଙ୍ଘେ' ଏବଂ 'କବରର ଗନ୍ଧ ସହିତ 'ଆତ୍ମାର ସଞ୍ଚିତ ଦୁଃଖ' ଏକୀଭୂତ ହୋଇ ଯିବାର ଅନୁଭବ କରେ । ସେଇ ସହବାସରୁ, 'ମହୁରଗି ବଜାର ଓ ଫାଙ୍କା ଫାଙ୍କା ଶୂନ୍ୟର ଭୟରୁ', 'ପିଲଙ୍କର ଗୁହମୂତ, କାହାଳ ଓ ରକ୍ତହୀନତାରୁ' ମୁକ୍ତି ମିଳେନାହିଁ । 'ଏକ ମଧ୍ୟ ବନ୍ଦରର ଇସାରି' କେବେ କେମିତି ସହିଗଲପରି ଲାଗିଲେ ବି ଜୀବନଠୁ ନିସ୍ତାର କାହିଁ ?

ଜୀବନର ଏହି ଅନିବାର୍ଯ୍ୟତା ଓ ପୌନଃ ପୁନିକତା ସଂପର୍କରେ କବି ସଚେତନ । ମା'ଆର ଗର୍ଭକୁ ମଣିଷର ଅନ୍ତହୀନ ଚକ୍ରଯାତ୍ରା । ତାର ଭିତରେ ଗାର୍ହସ୍ଥ୍ୟ ଓ ସନ୍ନ୍ୟାସର ଅପୂର୍ବ ବିରୋଧାଭାସରେ କାବ୍ୟନାୟକର ଜୀବନ— 'ରକ୍ତମୟ, ଅଶ୍ରୁମୟ, ପ୍ରୀତିମୟ' ରଙ୍ଗ ପୃଥିବୀରେ ।

ଉବ୍‌କ ପଡ଼େ କ୍ଷୀର ଭାଣ୍ଡ
ହାଡ଼ ଏବଂ ମାଂସର କେନ୍ଦର
ଛନ୍ଦମୟ, ଛନ୍ଦହୀନ ·
ଅକ୍ଷିଜ ଆକାଶ ।

॥ କବି କମଳାକାନ୍ତ

କେବେ 'ରହସ୍ୟର ରମଣୀୟା ନାରୀ' ଘାରେତ କେବେ 'ଫାଶିଦିଆ ମଣିଷର ରକ୍ତକ୍ଲାଂତ ମୁହଁ' ଦେଖେ ।

ପ୍ରେମ ଓ ବୈରାଗ୍ୟ; କେବେ
ଯୋଗୀ, କେବେ ଭୋଗୀ
କେବେ ଏକ ସନ୍ତପ୍ତ ରାତ୍ରିର ବାତ୍ୟା !

ତା ର ଭିତରେ 'ଶବ୍ଦହୀନ ନକ୍ଷ ଏବଂ କାନ୍ଦହୀନ ଦୁଃଖ' ରହିଯାଏ । ଘରଦ୍ୱାର ପୁଅ ଝିଅର ସଂସାର ଭିତରେ ହଜିଯାଏ । ମାତ୍ର ଏକ ଛଟପଟ ଲେଖା ପତଙ୍ଗର ଆତୁରତା, ସଫେଦ ଅଂଧାର ।' ଘେଣ୍ଟା, ମିଛଟା, ସତମିଛ ଗୁଜବ୍, ମାନ ଅଭିମାନ, ଦ୍ୱେଷ ଶୋଷ; ସୂର୍ଯ୍ୟ ଦେହ ଫେଣ ଫେଣି ହୋଇଯାଏ । ଏତିକିବେଳେ କହ୍ନାଇଆ ଉପରେ : ଭାଙ୍ଗିଦିଅ ମିନାକରା କୋଠରୀର ଆଭିଜାତ୍ୟ, ଜାଳିଦିଅ ଦେହ ଏବଂ ରକ୍ତର ଦେଶକାଳ, ଫିଙ୍ଗି-ଦିଅ ମଣିମୁକ୍ତା ଧୂପଦୀପ ଚନ୍ଦନ କାଠର ଅପୂର୍ବ ବାହାର ମତ ସମସ୍ତ ଚର୍ଚ୍ଚିତ, ଏତିକିବେଳେ—

ନିଜେ ଅଛି, ନିଜ ଛଡ଼ା
କିଏ ଅଛି ରକ୍ତପରି
ଏତେ ଆପଣାର ?...
କି ଘର କି ଦ୍ୱାର
ପୁଅ ଝିଅର ସଂସାର
ନିଜ ପରି ସ୍ୱୟଂପୂର୍ଣ୍ଣ କିଏ ଅଛି ?
ଦୁଃଖ ଏବଂ ସୁଖର ଊର୍ଦ୍ଧ୍ୱରେ !

'ରକ୍ତ' କମଳାକାନ୍ତଙ୍କ କବିତାର ଛନ୍ଦେ ଛନ୍ଦେ । କିନ୍ତୁ ତାହା ବିଦ୍ରୋହର ରକ୍ତପାତ ନୁହେଁ । ତାହା ଯେପରି ଜୀବନର ଆତ୍ମିକ ଶୁଦ୍ଧତା, ପ୍ରାଣ ଶକ୍ତି ଓ କାବ୍ୟ ନାୟକର ଅସ୍ତିତ୍ୱ : ସୃଜନଶୀଳ ଅହଂର ପ୍ରତିଭୂ ।

କମଳାକାନ୍ତଙ୍କର ବହୁ କବିତା ଆତ୍ମସ୍ୱୀକାରୋକ୍ତିଧର୍ମୀ । ତହିଁରେ ସାହସିକତା ଅଛି, ଏକ ବିଶେଷ ବ୍ୟକ୍ତିକୈନ୍ଦ୍ରିକ ନର୍କରେ ଧାଣ୍ଡି ହେଉଥିବା କଥା ପ୍ରକାଶ କରି ଦେବାରେ କୁଣ୍ଠା ନାହିଁ । ଈଶ୍ୱର, ନାରୀ ଓ ଅହଂ; ସଭିଙ୍କୁ ଶାବ୍ଦିକ ବାଣ ଫୁଟାରେ ଦଗ୍ଧ ତଥା ଅଲୋକିତ କରିବାର ପ୍ରୟାସ ଲକ୍ଷ୍ୟଣୀୟ । 'ଜଣୋଣ' କବିତାରେ ସେ ଈଶ୍ୱରଙ୍କୁ ସିଧା ଶୁଣେଇ ଦେଇଛନ୍ତି ଯେ ଈଶ୍ୱରଙ୍କର 'ଓସ୍ତାଦ ଖେଳର ବନୋକା'ରୁ ବା 'ଉଜ୍ଜ୍ୱଳ ମଣିର ସ୍ପର୍ଶ'ରୁ କୌଣସି 'ଅଂଶି ଦୃଢ଼ଶା ଭାଗ୍ୟର ଚଂପାଫୁଲ' ପାଇବା ପାଇଁ ତାଙ୍କର ଚାଳି ବା ଅଭିସନ୍ଧି ନାହିଁ । ସେ 'ଏକ ନିର୍ଭୀକ ଯୋଦ୍ଧାର ବେଶରେ' ଠିଆ ହୁଅନ୍ତି ଏବଂ 'ମୋ ଭିତରେ ଅନେକ ଅଂଶିର ଜ୍ୟୋତି' ଯଦିଓ 'ବର୍ତ୍ତମାନ ଉଦ୍ୟତ ଆତଙ୍କର ଶିହରଣ ଓ ଅନେକ ଅରଣ୍ୟର ସମ୍ମିଳିତ ଡାକ' (ନିଜସ୍ୱ ପ୍ରାର୍ଥନା)। ଈଶ୍ୱରଙ୍କୁ ଫାଶିମଞ୍ଚକୁ କଢ଼ାଇ ନେଇ କବି ବର୍ଣ୍ଣନା କରନ୍ତି ପରିବେଶ;

ଏଇ ଦେଖ ସୂର୍ଯ୍ୟ ନିଦ୍ରିତ ପୃଥିବୀ ଚକିତ
ଗ୍ରହ ନକ୍ଷତ୍ର କକ୍ଷଚ୍ୟୁତ, ଏବଂ
ରେ ରେ କାର ଧ୍ୱନିରେ
ତୁମେ ଝୁଲୁଚ ଶୂନ୍ୟରେ । ହେ ଅଘୋରୀ,
ହେ ଯାଯାବରୀ, ହେ ସଂଜ୍ଞାହୀନ ଉତ୍କଣ୍ଠିତ ସଂଙ୍ଗ,
ତୁମର ପ୍ରତ୍ୟେକ ଲତା ବିଳାତାରେ
ନିମଜ୍ଜିତ ମହାକାଳ, ତୁମର ପ୍ରତ୍ୟେକ
ବିପନ୍ନ ଅହଂକାରର ତେଜରେ
ଅସମ୍ଭବ ଖୁସିର କରତାଳି !
ହେ ଆତ୍ମିକ, ହେ ଦୋଳିତ, ବ୍ୟାକୁଳତାର
ଶ୍ରାବଣ, ତୁମର ଫାଶି ଖାଇବାର ଦିନରେ
ବିଶ୍ୱର, ନିର୍ବିଶ୍ୱର ଏକାକାର, ଏବଂ
ସମୁଦ୍ର, ଆକାଶର ବନ୍ଧନୀରେ
ମୁଁ ଏକ ଅପସୃୟମାନ ଶୂନ୍ୟତା !

॥ କବି କମଳାକାନ୍ତ

ଭିନ୍ନ ମେଜାଜର ଅନ୍ୟାନ୍ୟ କବିତା ମଧ୍ୟରେ 'ଟଙ୍କାଳ, ସଂଜ, ବି ପ୍ରହର', 'ସମ୍ରାଟ' 'ସ୍ତନ' ଇତ୍ୟାଦି ଉଲ୍ଲେଖଯୋଗ୍ୟ । 'ମୋ ପ୍ରେମିକା, ମୋ ମା' ଓ ମୋ ସ୍ତ୍ରୀଙ୍କ ସ୍ତନରେ ଜହ୍ନି ଫୁଲ, ବର୍ଷା ଏବଂ ଗ୍ରୀଷ୍ମର ଶାସନ ।' ଓଡ଼ିଆ ସାହିତ୍ୟରେ ସ୍ତନ ସଂପର୍କରେ ଏକ ଅପୂର୍ବ କବିତା ଅଛି ହନୁଜଙ୍କ ଗାଓଙ୍କର, ଯହିଁରୁ କିଛି ଉଦ୍ଧୃତ ଦେବାର ଲୋଭ ସଂବରଣ କରି ହେଉନାହିଁ; 'ତୁମର ସ୍ତନ ଦୁଇଟାକୁ ମୁଁ ଭାବୁଛି ଯେ ଦୁହେଁ ଯେମିତି କୋଣାର୍କର ମୁଣ୍ଡ ଉପରେ ଥିବା ଚୁମ୍ବକ । ମୁଁ ଅ.ଉ ସେହି ସୁଦୂରର ବୋଇତ, ଯେ ସମାଗତ ପାଖେଇ ଆସୁଛି ତୀବ୍ର ଆକର୍ଷଣରେ ଶୋଷାଣି ହୋଇ, ଭାଙ୍ଗି ଚୁରମାର ହୋଇଯିବାକୁ ତୁମ ଦେହର ଉପକୂଳରେ........ତା' ପରେ– ରାତିର ଅ.କାଶରେ ତାରା ସବୁ ଯେତେବେଳେ ନିଭି ଯାଉଛି, ସେତେବେଳେ ବିନିଦ୍ର ବିଛଣାରେ ଶୋଇ ଶୋ ଇ ଭାବୁଛି, ଏ ସବୁ ମିଛ, ସ୍ତନ ଦୁଇଟି ମନ ଫରୁଆ ଉପରର ଡ଼ାଙ୍କୁଣୀ କେବଳ ।''

କମଳାକାନ୍ତଙ୍କର ଭାଷା ତୀବ୍ର ଓ ତୀକ୍ଷ୍ଣ, ଟଙ୍କ୍ରି ବିନ୍ୟାସରେ ଛନ୍ଦାବର୍ତ୍ତିର ସ୍ପନ୍ଦନ । କିଛି କିଛି ଅସଂଲଗ୍ନ ଧାଡ଼ିର ଅନୁପ୍ରବେଶ, କୋଉଠି କେମିତି ସାମଗ୍ରିକ ବକ୍ତବ୍ୟକୁ ବ୍ୟାହତ କରେ । 'ପ୍ରିୟାପ୍ରୀତି' ପାଖରେ 'ଡମପଣ' ଭଳି ଶବ୍ଦଟିଏ ବେଖାପ୍ ଲାଗେ । ଅସତର୍କବେଳରେ 'ଅ ଠକାଳୀ ବାରମାସୀ' ସ୍ଥଳେ 'ଆଠମାସୀ ବାରକାଳୀ' ଲେଖିହୋଇଯାଏ । କେତେବେଳେ ଅନୁପ୍ରାସିକ ଉଚ୍ଚାରଣରେ ଧ୍ୱନି ପ୍ରବାହରେତ କେତେବେଳେ ତର୍କଶାସ୍ତ୍ର ଅସ-ମର୍ଥିତ ଯୁକ୍ତି-ପ୍ରତିଯୁକ୍ତିର ବିନ୍ୟାସରେ ସେ କିଛି କିଛି ଶବ୍ଦଖେଳ ବି ଦେଖାନ୍ତି । ଯେମିତି :

ତୁମକୁ ମୁକ୍ତ କଲେ ସମୁଦ୍ର,  
ତୁମକୁ ଯୁକ୍ତ କଲେ ସନ୍ନ୍ୟାସ ।  
ଓ ତୁମକୁ ଛିନ୍ନ କଲେ  
ବିଷାକ୍ତ ପୃଥିବୀର ହାହାକାର ।  
ଅଥଚ ତମେ !

ମନ ଅଭିମତ ଭିନ୍ନମତ ॥

ମୋତେ ଯୁକ୍ତ କର
ମୁକ୍ତ କର
ଛିନ୍ନ କର ॥

କମଳାକାନ୍ତଙ୍କର କାବ୍ୟନାୟକ ଜୀବନ ଚର୍ଯ୍ୟାରେ ବୋହେମିଅନ୍ । ନାନା ବପରୀତ ଧର୍ମୀ ଅନୁଭବରେ ସେ ଜୀବନ୍-ଜର୍ଜର, ସମାକୁଳ । ନିରନ୍ତର ସାଧନାରତ । ତା'ର ଭିତରେ କମଳାକାନ୍ତ ଇଚ୍ଛାମତେ ଖେଳ୍ ଠୋକ୍ ସଂଳାପ ଶୁଣାନ୍ତି ଈଶ୍ୱରଙ୍କୁ, ବ୍ୟବହାର କରନ୍ତି ନାରୀକୁ ଏବଂ ମୁକ୍ତ ଭାବରେ ସାମ୍ନା କରନ୍ତି ଜୀବନକୁ । ମନେହୁଏ, ଖୋଜିବୁଲିବାର ବ୍ୟାକୁଳତା କାଳେ ସରିଯିବ ବୋଲି ସେ ସ୍ରସ୍ତ, ନିଜକୁ ଛଟ୍‌ପଟ୍ ହେଉଥିବାର ଦେଖି ଅଦ୍ଭୁତ ଏକ ଆତ୍ମ-ପୀଡ଼ନ-ସୁଖରେ ସେ ଯେମିତି ଶିହରିତ । ଫଳରେ ଓ ଶୈଳୀରେ ଏକ ଆବର୍ତ୍ତ ଭିତରେ ସେ ଉବୁଟୁବୁ, ବୁଡ଼ ଯାଆନ୍ତି ନାହିଁ କି ଉଠି ଆସନ୍ତି ନାହିଁ ଭଉଁରୀ ଭିତରୁ । ନିରୁଦ୍ଦିଷ୍ଟ ହୋଇଯାଇଥିବା 'ଡେଙ୍ଗା, ଜୋରଦାର୍ ବୁଲା ଫକୀର'ଙ୍କୁ ସେ ଦେଖନ୍ତି, କିନ୍ତୁ ତା' ସହିତ ଏକାତ୍ମ ହୋଇ ପାରନ୍ତି ନାହିଁ । 'ତା' ପାରୁଶେ ଠିଆ' ହେବାର ଦୁଶ୍ୟଟାଏ ଦେଖନ୍ତି । ଅବଶ୍ୟ ମନେ ରଖିବାକୁ ହେବ ଯେ ସଂଶିତ ଗ୍ରନ୍ଥରେ କବିଙ୍କର ୧୯୬୫ ପରବର୍ତ୍ତୀ ରଚନା ସ୍ଥାନିତ ହୋଇନାହିଁ, ତଥାପି ଏଥିରୁ କମଳାକାନ୍ତଙ୍କର କାବ୍ୟିକ ବିକାଶର ଏକ ସମ୍ୟକ୍ ଧାରଣା ମିଳେ ଏବଂ 'ମୋ ମା' ପ୍ରତି', 'ନିଜସ୍ୱ ପ୍ରାର୍ଥନା' 'ମୋ ମୃତ୍ୟୁ ପରକୁ କେତୋଟି ମୁହୂର୍ତ୍ତ', 'ନିରୁଦ୍ଦିଷ୍ଟ ବ୍ୟକ୍ତି ସଂପର୍କରେ' 'ସନ୍ନ୍ୟାସ', 'ଗାର୍ହସ୍ଥ୍ୟ', 'ଈଶ୍ୱରଙ୍କ ଫାଶି ପାଇବା ଦିନ', 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା' ପରି କବିଙ୍କର କେତୋଟି ସ୍ୱ-ପ୍ରତିନିଧି ମୂଳକ କବିତା ଏଥିରେ ରହିଛି । ୧୯୬୫ ପରବର୍ତ୍ତୀ କାବ୍ୟସୃଷ୍ଟିରେ ସେ ତାଙ୍କ କବିତାର ଗୁଣ ସବୁରୁ ବଞ୍ଚିତ ହୋଇ ନାହାନ୍ତି ଏବଂ ସ୍ୱଏତ ଦୋଷଗୁଡ଼ିକରୁ ବି ସଂପୂର୍ଣ୍ଣ ମୁକ୍ତ ହୋଇନାହାନ୍ତି । ତଥାପି ଏ କବି ନିଷ୍ଠାପର ଓ ମଧ୍ୟପଥରେ ଏବେ ବି ସାଧନାରତ । ପରିଣତିରେ ଆହୁରି ବ୍ୟାପକତା ଆସିବ । ଏତିକିବେଳେ ଶେଷ କଥାଟି କ'ଣ କହିଦେବ ହେବ ? ଯେଉଁ ଅବିନମ୍ରୀ ଆଲୋଚକ ଶେଷକଥା କହି ଦେଲି ବୋଲି ଭାବେ, ଅନେକ କାଳ ଅନ୍ତରେ ଦେଖାଇ ଦିଏ ଯେ ସେ ଏକ ଭ୍ରାନ୍ତ ବିବୃତ୍ତିତ ବକ୍ତା ।

॥ କବି କମଳାକାନ୍ତ

ତତ୍ ସଙ୍ଗେ ସଙ୍ଗେ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଈଶ୍ୱରୋତ୍ତର ଐଶ୍ୱରିକତାର ମହିମ୍ନ ବିଭୂତି, ନାରୀ ଭିତରେ ଦିବ୍ୟ ନାରୀର ଦ୍ୟୁତି, ଏବଂ ବିଶ୍ୱ ବେଦନାକୁ ଆତ୍ମାରେ ଓତପ୍ରୋତ କରି ଏକ ମହାଜୀବନର vision ଦେଖି ଦେଖାଇ ପାରୁଥିବା କବି ଗୋଟିଏ ଶତାବ୍ଦୀରେ ଜଣେ ଦୁଇଜଣ ଜନ୍ମନ୍ତି, ଯେଉଁମାନଙ୍କ ପଥ-ପ୍ରସ୍ତୁତି କରୁଥାନ୍ତି ଅନ୍ୟମାନେ ।

କ୍ରାନ୍ତଦର୍ଶୀ

(ରାଜେନ୍ଦ୍ର କିଶୋର ପଣ୍ଡା)

# ନିତ୍ୟ ନିୟମିତ

[ 'ପୁନର୍ବସୁ'— ୪, ଏପ୍ରିଲ୍ ୧୯୭୯ ]

'ନିତ୍ୟନିୟମିତ' ବହୁଳ ପ୍ରକାଶିତ କବି କମଳାକାନ୍ତଙ୍କ ଏକ ବିଲକ୍ଷଣ-କାବ୍ୟଗ୍ରନ୍ଥ-ଯାହାର ପ୍ରକାଶକ ସ୍ୱୟଂ ସ୍ୱୀକାର କରନ୍ତି ଏଥିରେ 'ଜୀବନକୁ ଜୀଆଇ ରଖିବାର' ଧକଢ଼ଥିବା ହୃଦୟର ବିମୂର୍ତ୍ତ ପ୍ରାଣବାନ୍ ଆବେଗ ସଂପର୍କରେ ।' କାବ୍ୟାମ୍ଭେରୁ 'ହସିବ, ରସିବ, ଶୋଷିବ'ର ଅଧିପ୍ରାୟରେ କବି ଅତନ୍ଦ୍ର । ଏକ ବ୍ୟଥାମୟ ବ୍ୟକ୍ତିତ୍ୱ, ଅପେକ୍ଷାକୃତ ଜାବଂପ୍ରବଣତା ଓ ଐକତାନିକ ଶବ୍ଦ କସରତରେ ଚମକାଏ ପାଠକର ଚିତ୍ତବୃତ୍ତିକୁ । ଅନ୍ତଃଶାୟୀ ଅଥର୍ବତା, ଜଟିଳ ଯୌନ ଚେତନା, ବାକ୍ଶକ୍ତିର ସ୍ୱଚ୍ଛନ୍ଦତା ଓ ମଧ୍ୟ ପ୍ରବାହଶାଳୀ ଶୈଳୀ ପ୍ରକ୍ରିୟା କାବ୍ୟକ ସବୁଜ ଶସ୍ୟକୁ ଶିର ହରିତ୍ କରିବାରେ ଅପ୍ରତିହତ । ଜୀବନର ସୌନ୍ଦର୍ଯ୍ୟ ଓ ସାର୍ଥକତା, ଦେହ ଓ ଦେହାତୀତରେ ବିପ୍ରଲମ୍ଭୀ ଓ ମିଳନାତ୍ମକ ଚିନ୍ତା ଏଇ ଉଭୟ ଭୂମିକାରେ କେବେ କେବେ ବ୍ୟାପକ ଅନୁଭୂତିର ଯେଉଁ ଚିତ୍ର ଫୋଟେ ତାହା ଓଡ଼ିଆ ସାହିତ୍ୟରେ ଦୁର୍ଲଭ । କାବ୍ୟ-ଚେତନାର ସଂପ୍ରସାରିତ ବିବିଧାନୁଭୂତିରେ ଭବାବବୋଧ ଓ

ଛୁଇ ଅ.ଳୁଅର, ପାଇ ନ ପାଇବାର ମୋହମହନୀୟତାରେ ପ୍ରତ୍ୟେକ ପଙ୍‌କ୍ତି ଅତ୍ୟନ୍ତ ରସସିକ୍ତ : 'ପାର ପାରବତ ଗ୍ରୀଣ୍ଡ଼ିଲ ପରେ ବସି ଲେଖେ ସ୍ୱ/ମେଘ ଉମ୍ବରୁ ଫିଙ୍ଗି ଦେଲାବେଳେ ଷେତ ମାଗୁଥାଏ ପାଣି ।' କିମ୍ବା 'ଟୋପାଏ ପାଣି ପାଇଁ ଓଠ ମେଲା ରହିଛି କାଙ୍ଗାଳୁଣୀ × × × ନୋଳିଆ ଖୋଜୁଥାଏତ ବୁଡୁଥାଏ' ଉଦ୍ଧୃତ ପଙ୍‌କ୍ତିରେ ପ୍ରୋକ୍ତ ଭାବ ଚେତନା ସଫଳତାସହ ବିକଶିତ ।

ପ୍ରକଷ୍ଟ ଭାବ ଓ ଶୈଳୀର ସ୍ୱରବଳୟ ଅସାଧାରଣ ଓ ଅଦ୍‌ଭୁତ ଚେତନାରେ ଉଛଳିତ । ଜୀବନାନୁଭୂତି ଓ କାବ୍ୟ ସୃଷ୍ଟି ମନେ ହୁଏ ଓତଃପ୍ରୋତ ଭାବେ ଜଡ଼ିତ । ଏଇ ଅଦ୍‌ଭୁତ ବ୍ୟଞ୍ଜନାର ଉପସ୍ଥାପନାରେ ଯେଉଁ ସାହସ ଓ ଧୈର୍ଯ୍ୟ କବି ପ୍ରକାଶ କରିଛନ୍ତି ତା' ପାଇଁ ସହୃଦୟତାର ମିନାର ଉପରେ ଲକ୍ଷ ଲକ୍ଷ ମାଳବତୀ ଜଳେ— 'ଯୋଗିମାଖିଆ ଚଣ୍ଡୀର ଦେଖା ଦ୍ୱାର/ ଆଖି ବୁଜି ଦେଲେ ନିଆଁ ଧରେ ନା ରକ୍ତ/ଦେହ କଳାଦେଲେ/ ଝଳ୍‌ଝଳାଏ ନା ସ୍ନାୟୁରେ ହୁଂକାର' କିମ୍ବା 'ପ୍ରେମାସ୍ପଦାକୁ ଛାଡ଼ ନାହିଁ ଯେ: ଫର୍ଦ୍ଦ ଫର୍ଦ୍ଦ ଛିଡ଼ିଯାଏ ଛାତି/ପ୍ରେମାସ୍ପଦାକୁ ବୁଦ୍ଧି ଦିଶେ ନାହିଁ ଯେ: ମୂର୍ଚ୍ଛା ହୋଇଯାଏ ଯୋନି' । ପ୍ରାଣରେ ସଦ୍ୟ ଉଦ୍‌ଗତ ଅଶ୍ରୁ ସମ କାଳ କାଳ ଏକ ଅମ୍ଳାନ ବର୍ଷନ୍ତର ଶରତ୍ ଋତୁର ଉତ୍ସବ ସମ ଆନ୍ଦୋଳିତ ଓ ଶବ୍ଦମୟ କାରୁକାର୍ଯ୍ୟ ମଣ୍ଡିତ ଶବ୍ଦକଳା ଏକ ଅତ୍ୟନ୍ତ ଅନୁଭବମୟ କାବ୍ୟଧାରାରେ ସର୍ବସ୍ୱ ଝଳସିତ । ଅନୁଚ୍ଚରିତ ବିରହ ଜ୍ୱାଳା ଓ ଅତ୍ୟନ୍ତ ପ୍ରେମାତୁରତା ବୋଦ୍‌ଲେ ଆଗ୍ନେୟ ଶିଖା ସମ ପ୍ରଜ୍ୱଳିତ । ଶୈଳୀଗତ ଚମତ୍କାରିତାରେ ପାଠକ ଚିତ୍ତ-ବୃତ୍ତି ହୁଏ ଚକିତ— 'ନା କେଉଁ ନର୍ତ୍ତକୀର ମେଖଳାରେ ଜଡ଼ିତ ପାପର ଅର୍ଦ୍ଧବୃତ୍ତ ।'

ଗଭୀର ମାନବୀୟତା ଗର୍ଜ୍ଜୁଚି ସର୍ବସ୍ୱ । ଚରମ ଜୀବନବୋଧର କାବ୍ୟିକ ମହନୀୟତାରେ ମହିମାନ୍ୱିତ, ମାଧୁର୍ଯ୍ୟ ମଣ୍ଡିତ ହୋଇ ଉଠିଛି 'ନୃତ୍ୟ ନୟୁମିତ'ର ପ୍ରତିଟି ପୃଷ୍ଠା । ଶିଳ୍ପୀର ପ୍ରେରଣାକୁ ଗୁରୁତ୍ୱ ପ୍ରଦାନ କରିଛନ୍ତି କବି । 'କିଏ ତୁମେ ଦେଖି ନା ଦେହାତୀତା ନିରୂପମ ନା ପ୍ରତ୍ୟକ୍ଷ/

ତୁମ ତାଗିଦ୍‌ରେ ପ୍ରେରଣାର କାବ୍ୟାଲୋକ ଜଳୁଛି ଅମ୍ଳାନ ହୋଇ। ତୁମେ କହିଛ ପରା—ପାରିବ। ନଖ ଦର୍ପଣରେ ସାରା ପୃଥିବୀକୁ ଦେଖିବ, ଲେଖିବ।' ଲେଖ। ଲେଖନ୍ତୁ କମଳାକାନ୍ତ। କଳାର ଚିର ହରିତ୍ ଚିରନ୍ତନରେ ଘାସ୍ତିମାନ ହୋଇ ଜଳୁ କଳାର ଜଗତ।

ଗୌରୀ ଶତପଥୀ

୧୮।୪।୭୯

## ନିତ୍ୟ ନିୟମିତ

[ ଝଙ୍କାର- ୩୧ ବର୍ଷ, ୫ମ ସଂଖ୍ୟା- ୧୯୭୯ ଏବଂ ଆକାଶବାଣୀ କଟକଙ୍କ ସୌଜନ୍ୟରୁ- ୧୦।୨।୭୯ ]

ଜୀବନର ନିଚ୍ଛକ ସତ୍ୟ ରୂପ ୧୦୨ଟି ଶ୍ରେଷ୍ଠ ଶ୍ରେଷ୍ଠ କଥା କବିତାରେ କବି ପ୍ରକାଶ କରିଛନ୍ତି। କବିତା ଗୁଡ଼ିକ ନାମହୀନ, କେବଳ ସଂଖ୍ୟା ଦ୍ୱାରା ଚିହ୍ନିତ। କବି ପ୍ରତି ମୁହୂର୍ତ୍ତର ନିଃଶ୍ୱାସ ଭିତରେ ଜୀବନର ଯେଉଁ ବିଶୃଙ୍ଖଳ ରୂପ ଦେଖିଛନ୍ତି ତାକୁହିଁ ବର୍ଣ୍ଣନା କରିଛନ୍ତି ନିତିଦିନିଆ କଥାର ଏକ ବଳିଷ୍ଠ ଓ ସଂଯତ ଅଭିବ୍ୟକ୍ତିରେ। କଥା ଅଳ୍ପ, ଅଭିବ୍ୟକ୍ତି ଅନେକ। ଶ୍ରେଷ୍ଠ ଶ୍ରେଷ୍ଠ କବିତା ଖଣ୍ଡରେ ଜୀବନର ଆପାତ ଉଦ୍‌ଭଟ ଅନେକ ଭାବନାକୁ କବି ଖଞ୍ଜି ଦେଇଛନ୍ତି— କିନ୍ତୁ ସେଇ କଥାର ଅଳିଆ ଗଦାରୁ ଜୀବନର ସତ୍ୟ ଚିହ୍ନିତ ରୂପଟି ଫୁଟି ଉଠୁଛି। କେଉଁଠି ସ୍ପଷ୍ଟ, କେଉଁଠି ଅସ୍ପଷ୍ଟ। ଜୀବନବାଦୀ କବି ଖୋଜିଛନ୍ତି ମଣିଷ ପଣିଆକୁ ହରାଇ ସଂକୀର୍ଣ୍ଣତାକୁ ଜାବୁଡ଼ି ଧରିଥିବା ମଣିଷର ଅନୈଃଶ୍ୱାସୀ ବନ୍ଧନ ଭିତରୁ ମୁକ୍ତିର ସ୍ୱାଦ। ସେଥିପାଇଁ ତା'ର ଫୁଲପରି ଫାଙ୍ଗୁଡ଼ା ଗେଲ କଅଁଳ ମନକୁ ସେ ପାଷାଣ ପରି କଠୋର କରୁଛି। ତା'ର

ମତି ଅନୁମତି ଭିନ୍ନମତି।

ପଣ— ପୃଥିବୀ ବକ୍ଷରୁ ସେ ନଷ୍ଟ ହିଁ କରିବ, ମଣିଷକୁ ମୁକ୍ତ ଦେବ ଆଦର୍ଶର ଅସ୍ୱାଭାବିକ ବନ୍ଧନରୁ, ଆଦର୍ଶର ଗୋଲକ ଧନ୍ଦାରେ ସ୍ୱାଭାବିକ ହଜିଯିବାକୁ ଦେବନି । ସମସ୍ତ୍ୱର ଏଇ ଉତ୍ତରଣରେ ସଂଗୀତ ଗାଇଛନ୍ତି କମଳାକାନ୍ତ ତାଙ୍କର କବିତା ଗ୍ରନ୍ଥ 'ନିତ୍ୟ ଅନିୟମିତ'ରେ ।

କବିଙ୍କ ମତରେ ଶୁଦ୍ଧତା, ପବିତ୍ରତା ଆତ୍ମାର ସର୍ବସ୍ୱ ନୁହେଁ । ବସ୍ତୁର ସାପେକ୍ଷ । ଯେଉଁମାନେ ଜୀବନକୁ ଅସ୍ୱୀକାର କରି ଜୀବନାତ୍ମାକୁ ଗୁରୁତ୍ୱ ଦିଅନ୍ତି ସେମାନେ ଧର୍ମଧ୍ୱଜୀ । ଧର୍ମପ୍ରାଣ ନୁହନ୍ତି । କବି ବିପ୍ଳବୀ ନୁହନ୍ତି । ବିପ୍ଳବର ଅଶେଷ ପବନ ବୁହାଇ ଜୀବନକୁ ଅସ୍ତବ୍ୟସ୍ତ କରିଦେବା ତାଙ୍କର ଲକ୍ଷ୍ୟ ନୁହେଁ କିନ୍ତୁ ଜୀବନ-ସତ୍ୟର ପ୍ରକାଶ ଓ ପ୍ରତିଷ୍ଠା ପାଇଁ ମହାମହା ପ୍ରାଚୀନ ଧ୍ୱଂସକୁ ଭାଙ୍ଗି ରୁଜ ଚୂର୍ଣ୍ଣିଭୂତ କରିବାକୁ କବି ଟିକିଏ ବି କୁଣ୍ଠିତ ନୁହନ୍ତି ।

କବିଙ୍କର ସବୁ କବିତା ଭିତରେ ଗୋଟିଏ କଥା ପ୍ରଚଣ୍ଡ ସ୍ୱରରେ ବିସ୍ଫୋରିତ — ନୀତି, ନିୟମ, ଆଦର୍ଶ, ଶୃଙ୍ଖଳା, ସୀମା ସରହଦ ଓ ସାମାଜିକ ବନ୍ଧନ ଭିତରେ ମଣିଷର ସହଜ ସ୍ୱାଭାବିକ ସୌନ୍ଦର୍ଯ୍ୟ ଖଣ୍ଡିତ ହୋଇ ମଣିଷ ବିକଳାଙ୍ଗତାର ଶିକାର ହୋଇପଡ଼ୁଛି । ନୀତି, ଆଦର୍ଶ ଓ ଆତ୍ମାର ଶୃଙ୍ଖଳାରେ ନାରୀକୁ ବାନ୍ଧି ଦିଆଯାଇଛି ବୋଲି ସେ ବାହ୍ୟତଃ ଆତ୍ମସ୍ତୀ, ମନରେ ବ୍ୟଭିଚାରିଣୀ, ନୀତିଭ୍ରଷ୍ଟା । ବେଶ୍ୟାଟି ଭଦ୍ର ହେଲେ ଲୋକ ଭଦ୍ର ହୁଏନା, ବରଂ ଭଦ୍ରତା ସେଠି ନିର୍ଜ୍ଜାନ୍ତ । ନିତ୍ୟ ନିୟମିତ ଜୀବନର ଅଶେଷ ରୂପରାଶିକୁ ନିକନିଖି କରି ବିସ୍ତାର କରି କବି ଯେଉଁ ଜୀବନ ବେଦର ପରିଚୟ ପାଇଛନ୍ତି ତାକୁଇ ଶ୍ରେଷ୍ଠ ଶ୍ରେଷ୍ଠ ସଂଜ୍ଞାରେ ପରଶି ଦେଇଛନ୍ତି । ଅଡ଼୍‌ଆ ତଡ଼୍‌ଆ ବୌଦ୍ଧିକ କଥା ନୁହେଁ— ଜୀବନର କଥା, ନିତି ଦେଖୁଥିବା, ଅଂଗେ ନିଭାଉଥିବା ଅଥଚ କହି ବି କହି ପାରୁନଥିବା ଜୀବନ ସହିତ ସେ ପରିଚୟ କରାଇ ଦେଇଛନ୍ତି ସମଗ୍ର ମଣିଷ ସମାଜକୁ । ମଣିଷ ତା' ମନକୁ ଯେତେ ସାତ ତାଳ ପଙ୍କ ଭିତରେ ସହସ୍ର ଟଣ୍ଡେଇ ଗୋପନ କରିବାକୁ ଚାହିଁଲେ ବି କବି ଦୃଷ୍ଟିରେ ତା' ସ୍ୱଚ୍ଛ ଜଳରେ ପ୍ରତିଫଳିତ ଚନ୍ଦ୍ର ବିମ୍ବ ପରି ଦୃଶ୍ୟମାନ । ସେଥିପାଇଁ 'କବିତ୍ୱ ଯନ୍ତ୍ରଣା ପୀଡ଼ିତ ପଦବୀର ଏକ ହସ୍ତୃ ।'

॥ କବି କମଳାକାନ୍ତ

ଅଜର ମଣିଷ ନିଜକୁ, ନିଜର ସ୍ଥିତିକୁ ଅସ୍ୱୀକାର କରିବାକୁ ଚାହେଁ । ସେ ଚିରାଚରିତ ଜୀବନ ଧର୍ମରୁ ଯେ ବିରୋଧ କରୁଛି ତା' ନୁହେଁ, କିନ୍ତୁ ନିର୍ବିଘ୍ନରେ ତାକୁ ସ୍ୱୀକାର କରିନେବା ସମ୍ଭବ ନୁହେଁ—ତେଣୁ କବିର ଆହ୍ୱାନ--'ନିଆଁକୁ ଠେଲ୍ଲା କରିବା ଆ ରେ ସାଙ୍ଗ; କେଇ ଚମକ ଯିବ ନାଇଁ ଅତଳ୍କରେ ।' ଏ କିନ୍ତୁ ଅସମ୍ଭବ କଥା ନୁହେଁ, ଖାଲି ଜୀବନ ସ୍ୱରର ପରିବର୍ତ୍ତନ । ଯେମିତି 'ମଣିଷକୁ ମେଣ୍ଢା ବା ଚେଞ୍ଚୁଆ କରିବାର ଗୋଟେ ଶାକ୍ତ ଗିଲୋଟିନ୍' ଅନୁଭୂତିକୁ ଏମିତି ସହଜ ସଙ୍କେତ କଥାରେ ତୋଳି ଧରିବାର ଶିଳ୍ପଶକ୍ତିକୁ କବି ଆୟତ୍ତ କରିଛନ୍ତି ।

କମଳାକାନ୍ତ ଜୀବନ ସଚେତନ କବି । ଜୀବନକୁ ସେ ବିଶ୍ଳେଷଣ କରିଛନ୍ତି ଏକ ଉଦାସ ମନ ଆଉ ଋମାଲୀନ ବୌଦ୍ଧିକତାରେ । ତାଙ୍କ ବୁଦ୍ଧି-ଦୀପ୍ତ ଚିନ୍ତା ମାନସ ନିର୍ଦୋଷ ସତ୍ୟର ଯେଉଁ ପରିଚୟ ପାଇଛି ତାକୁ ନିର୍ଭୀକ କଣ୍ଠରେ ପ୍ରକାଶ କରିଛନ୍ତି ।

'ବକ୍ତବ୍ୟ ନାଇଁ ବୋଲି ପ୍ରତଲ୍ଭତା,
ନିର୍ଦ୍ଦିଷ୍ଟତାର ଶାକୁଟ ଲଞ୍ଚ ଦଳିଉ ନାଇଁ
ବୋଲି ଶ୍ରାବଣ— '

ଅନ୍ୟତ୍ର କବି କହିଛନ୍ତି—'ମାରବତା ତ ପ୍ରେମର ସହୋଦର ।' ପୁଣି ଈଶ୍ୱର ଜଡ଼ା ପାଲଟି ଯାଇଛି ବୋଲି ଆଜି ଦ'ଟା ଜଳୁଛି । 'କାଳେ କିଛି ଅଘଟଣ ଘଟିଯିବ ଏଇ ଆତଙ୍କାନୁରୂତ ହାତ କାଟି ଦେଇଛି ଅଜନ୍ମରୁ ।' ଯଥାର୍ଥରେ ମଣିଷର କିଛି ବକ୍ତବ୍ୟ ନ ଥିଲେ ସେ ହୁଏ ବାତୁଳ । କର୍ମେନ୍ଦ୍ରିୟର କରଣି ଅବଶ ହେଲେ ଜ୍ଞାନେନ୍ଦ୍ରିୟ ଉଚ୍ଛକିତ ହୁଏ । ମାଦକ ଯୋଗସଇଁ ହୁଏ କେବଳ ଜଗତର ରକ୍ଷାକର୍ତ୍ତା । କମଳାକାନ୍ତଙ୍କ କବିତା ପାଠକର ଚିନ୍ତାଧାରାକୁ ପ୍ରସାରିତ ଓ ପ୍ରବର୍ଦ୍ଧିତ କରେ ।

ସମଗ୍ର କାବ୍ୟ ଗ୍ରନ୍ଥରେ ଅନାବଶ୍ୟକ ଶବ୍ଦ କାଠିନ୍ୟ ନାହିଁ । କିନ୍ତୁ ରୂପକଳ୍ପର ନୂତନତା ଓ ପ୍ରୟୋଗ ବିଧିରେ ନୂତନ ଚେତନା ଅନେକ

ମତ ଅଭିମତ ଭିନ୍ନମତ ||

ସମୟରେ ପାଠକ ପ୍ରାଣକୁ ଓ ବୋଧସତ୍ତାକୁ ଛୁଇଁ ପାରେ ନାହିଁ । ଯେମିତ— ଆଲୁଅର କ କ୍ଲାନ୍ତକର ବିତୃଷ୍ଣ ହୃଦୟ ଅଛି ଯେ ନିମିଷଟିଏ କେନାଲ ପାଣିରେ ଗାଧୁଆ ବଢ଼ାଇବା ଯାହାଙ୍କ ଗୋଚରରେ ଭାରତ ଏମିତ କିଛି ଦୁସ୍ତାନ୍ତ ଦୁଃଖ ନାହିଁ ।

ଏମିତ କେତେକ କବିତାର ଭାବ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ନୁହଁ । କବିତାର ନିଚୋଳ ସତ୍ୟ ରୂପଟି ବୁଝିବାକୁ ହେଲେ କବିଙ୍କର ଅନ୍ତର ସହିତ ଅନ୍ତରଙ୍ଗ ହେବାକୁ ପଡ଼ିବ । କିନ୍ତୁ କବି ଏପରି ସତର୍କତାର ସହିତ ଶବ୍ଦ ସଂଯୋଜନା କରିଛନ୍ତି ଯେ ପାଠକ ମନରେ ତୀବ୍ର ଆଲୋଡ଼ନ ସୃଷ୍ଟି କରେ । ଶ୍ଳୀଳେଙ୍କା ଏପରି ଶବ୍ଦ ପ୍ରୟୋଗ କରିଛନ୍ତି ଯେ ଅର୍ଥ ପ୍ରତୀତ ପାଇଁ ଚିନ୍ତା ଚେତନାର ପ୍ରସାର ଏକାନ୍ତ ଆବଶ୍ୟକ ।

କମଳାକାନ୍ତଙ୍କ ବକ୍ତବ୍ୟ ବିସ୍ତାରିତ ବା ବିସ୍ତୃତ ନୁହେଁ । ସଂକ୍ଷିପ୍ତ ଓ ସଂଯତ । ଭାଷା ଶାଣିତ, ତୀକ୍ଷଣ ଓ ଆବେଗ କମ୍ପିତ । କବି ଜାଣିଛନ୍ତି ଯେ କବିତା କିଛି ଆକାଶକୁସୁମ କଳ୍ପନା ନୁହେଁ । ଏହା ମଣିଷର ସୁଖଦୁଃଖ ସହିତ ଅତି ନିବିଡ଼ ଭାବେ ଜଡ଼ିତ, କିନ୍ତୁ ସାଧାରଣ ମଣିଷ ପାଖରେ ଜୀବନର ସତ୍ୟ ଢାଙ୍କି ହୋଇ ପଡ଼ିଥାଏ । ସେଇ ଆବରଣକୁ ଖୋଲି ଦେବା କବିର ଦାୟିତ୍ୱ ।

ଏଇ କବିତା ଗ୍ରନ୍ଥର ଅନ୍ୟ ଏକ ଆକର୍ଷଣ କବିତାର ଶେଷ ଭାଗରେ କମଳାକାନ୍ତଙ୍କ ବିଭିନ୍ନ ସୃଷ୍ଟି ସମ୍ଭାର ଉପରେ ବିଭିନ୍ନ ପତ୍ର ପତ୍ରିକା ଓ ବ୍ୟକ୍ତି ବିଶେଷଙ୍କର ଅତି ଉତ୍କୃଷ୍ଟ ଓ ଉପାଦେୟ ମତାମତ । ଶିଳ୍ପୀ ଯେତିକ ଚିନ୍ତା ରାଜ୍ୟର ସୋପାନ ଗୁଡ଼ିକ ଅତିକ୍ରମ କରିଯାଏ, ତା'ର ସୃଷ୍ଟି ସେତିକ ସମାଲୋଚନାର ସୁବର୍ଣ୍ଣ ତୋରଣରେ ସମ୍ମୁଖୀନ ହୁଏ । ଏହା ସମାଲୋଚନା କହେ କମଳାକାନ୍ତ ଜଣେ ପ୍ରତିଭାବାନ୍ ଶିଳ୍ପୀ ।

ଅଧ୍ୟାପିକା **ରେଖା ମହାନ୍ତି**

# ଝସିବାର ବେଳ

( 'ସମାସ'—ଭଲ୍ୟୁମ୍-୨-ସଂଖ୍ୟା-୧-୧୯୮୨ )

'ଝସିବାର ବେଳ' ବୋଧହୁଏ କମଳାକାନ୍ତ ଲେଙ୍କାଙ୍କ ଦଶମ କବିତା ସଂକଳନ । ଏହାର ପ୍ରଚ୍ଛଦ ପଟ୍ଟ ଦେଖିଲେ ମନେହୁଏ ଯେମିତି ଜଣେ ଅଳ୍ପ ବୟସ୍କ ମଣିଷଟିଏ ଆଜି ଏକ କଳା ଗାଉନ୍ ପିନ୍ଧା ମଣିଷର ଅଣ୍ଟାକୁ ଜାବୁଡ଼ି ଧରି ତଳକୁ ଝସି ଆସିବାର ସାମଗ୍ରିକ ଝଞ୍ଜାରୁ ନିଜକୁ ମୁକୁଳେଇ ନେବାପାଇଁ ଅପ୍ରାଣ ଚେଷ୍ଟା ଚଳେଇଛି । ଶିଳ୍ପୀ ଅସିତ୍ ମୁଖାର୍ଜୀଙ୍କର ଏଇ ସୂଚନାତ୍ମକ ପ୍ରଚ୍ଛଦ ବାସ୍ତବରେ କବିତା ସଂକଳନ ସଂପର୍କରେ ପ୍ରଥମରୁହିଁ ବେଶ୍ ଧାରଣାଦିଏ । କାବ୍ୟ ନାୟକର ସାଂସାରିକ ବିରାଜମାନ ନିହାତି ପକ୍ଷେ ଅଳୀକ, ତା' ପାଦ ତଳର ମାଟି ତାକୁ ସଂପୂର୍ଣ୍ଣ ରୂପେ ଧରି ରଖି ପାରୁନି । କାବ୍ୟ ନାୟକର ବୋଝ ଯେପରି ଏଇ ଧରିତ୍ରୀ ପାଇଁ ଅସହ୍ୟ । ତେଣୁ କବିତାସବୁ ଉତ୍ସର୍ଗୀକୃତ 'ଜୀବନ ନାମକ ବେପରୁଆ ଶକ୍ତିଶାଳୀ ସାହସିକତାର ଥୁଂଟା ଡ଼ାଳରେ ଫୁଟିଥିବା ଅଜସ୍ର ରଙ୍ଗ ବେରଙ୍ଗ ସଂଭାବନାକୁ ।

ଏଇ ସମ୍ଭାବନାର ଭିତ୍ତିଭୂମିକୁ ପାଥେୟ କରି ନାୟକ ସୁଦୃଢ ଭାବରେ ଛିଡ଼ାହେବାର ପ୍ରୟାସ କରୁଥିଲେ ସୁଦ୍ଧା କେମିତି ମନେ ହେଉଛି କବିତାମାନଙ୍କର ଶିରା ପ୍ରଶିରାରେ ନୈରାଶ୍ୟବାଦର କ୍ଲାନ୍ତ ବିଶେଷ ଭାବରେ ଗୁଞ୍ଜରି ଉଠୁଛି । 'ମୁଁ ଜାଇଚି, ଜାଇଚି ଜୀବନ—ଦୁଃଖ ବିନା ପାରେ କିଏ ଯୋଜା ହସ ଖୋଲାମନ ଆକାଶର ଦପ୍ ଦପ୍ ତାରକୁ ରେ ଗଣି'' (ରାଜା) । କଅଁଳିଆ ହୃଦୟର ଏଇ ଆତ୍ମା ଖୋଲା ଅଭିବ୍ୟକ୍ତିରେ ଚୋଟିଏ କଥା ମନେ ହେଉଛି—ମୁଁ ଜୀବନକୁ ବଞ୍ଚେଇ ରଖିଛି । ଜୀବନ ମତେ ବଞ୍ଚେଇ ରଖିନି । ଜୀବନର ଡ଼ାକ ନାଁ ଜୀବନ ସଂପର୍କରେ ଏକ ରକ୍ତାକ୍ତ ପୃଷ୍ଠଭୂମିକୁ ଉନ୍ମୋଚନ କରୁଛି । 'ଅଜ୍ଞାତ'ରେ କେହି ବି ପାରେ ନା କହି ବୋଲି କହିବା ବେଳକୁ

କବି ମନେ କରି ପାରୁ ନଥିବେ କେବେ ? 'ଗୃଳିଥାଏ ମୃତ ସଙ୍ଗେ ଅମୃତର, ଭଲ ସହ ମନ୍ଦ ଏବଂ ଜନ୍ମ ସାଥେ ମରଣର ଯେ ପ୍ରେମ ଶୃଙ୍ଗାର' ବକ୍ତବ୍ୟର ଲବ୍ଧତା ଏଠି ଅନୁମେୟ । 'ମୁଁ କେବେ କାହାକୁ ଏ ଯାଏ ଫାଙ୍କିଛି ? ଖାଙ୍କିଛି ? ଖାଁ ଖାଁ ହୋଇ ଖାଇ ଯାଉଛି ଦୁନିଆ ଗୋଟାକୁ ଯେ !' ବୈଷୟିକ ଅବଚାରଣା କାବ୍ୟ ମାନସର ଅନ୍ୟ ଏକ ପରିଚୟ । କେବେ କବିତାର ଡେଣାରେ ଏକ ଅଲୌକିକ ରାଜ୍ୟକୁ ଗମନ କରି ସେଠାରେ ନିଜସ୍ୱ ବକ୍ତବ୍ୟ ପ୍ରକଳ୍ପିତ ଏକ କାଳ୍ପନିକ ସାମ୍ରାଜ୍ୟରେ ବିଚରଣ କରିବାର ପଦ୍ଧତି ସାଧାରଣ ପାଠକଙ୍କୁ ବିଶେଷ ନିରୁତ୍ସାହିତ କରୁଛି । ଯଥା—ନିରୁପାୟର କି ଉପାୟ ଥାଏ ମୋ ବନା, ଦେଖୁଚ୍ : ତୁ, ତୋ ଶାଦ୍ୱଳ ଜଙ୍ଗଲରେ ଫେରିବ୍ । ସମୟ ସମୟରେ କବିଙ୍କର ବକ୍ତବ୍ୟ ଅସ୍ପଷ୍ଟ ଓ ଅନେକାଂଶରେ ଅସ୍ୱାଭାବିକ ମଧ୍ୟ । ଯଥା— 'ପ୍ରତିଶ୍ରୁତିର ନରମ ପବନରେ ଝଞ୍ଜର ଯାଏ ଆଶ୍ୱାସନାର ଯେଉଁ ସୁଟକେଶ ତାହା ଅବ୍ୟକ୍ତରେ ବ୍ୟକ୍ତ କରେ ଯନ୍ତ୍ରଣାର ପରିହାସ ।' (ଅଦେଖା) 'ଏକକ ଚଳାଚଳର ସଂଳାପ ଯେଉଁଠି ସାମ୍ନା ସାମ୍ନି ହୋଇ ଲଢ଼େଇ କରିବାର ସତ୍ ସାହସର ଘୋର ଅଭାବ । 'କ୍ଲାନ୍ତ ଓ ଅବସନ୍ନତାର ଅନ୍ଧାରରେ ବିଭ୍ରାନ୍ତ ହୋଇଲ କ୍ଷୁବ୍ଧ ରମାନଦୀ ଚଢ଼ାର ସକାଳ ।' ଷମଶୀପୂରେ କ୍ଷମା ଦିଆଯାଇଛି ଈଶ୍ୱରଙ୍କୁ । ଯଥା— ଈଶ୍ୱର ପ୍ରତାରଣାର ଭିନ୍ନ ନାମ । ତାଙ୍କୁ କୃତଜ୍ଞତାର ଝଟର ଫୁଲରେ ପୋଡି ଦିଅ ।

ସାଧାରଣ ତର୍କ ପ୍ରତିଷ୍ଠିତ ସତ୍ୟ ଓ ପ୍ରତିପାଦିତ ତଥ୍ୟ ବାହାରେ କବିତାଗୁଡ଼ିକ ଅନେକ ସମୟରେ କମଳାକାନ୍ତଙ୍କ ନିଜଦ୍ୱାରା ଆବିଷ୍କୃତ ବକ୍ତବ୍ୟରେ ଭରପୂର ଯାହା ସାଧାରଣ ଚିନ୍ତାଚେତନା ଦ୍ରଷ୍ଟା ପାଠକଙ୍କ ପାଇଁ ଅବୋଧ୍ୟ ଓ ରହସ୍ୟମୟ ହୋଇ ରହିଯାଇଛି । ତଥାପି କେବଳ ବେଳେ ଏହି କବିଙ୍କର ବର୍ଣ୍ଣନା ଶୈଳୀ ପାଠକର ମନ ଛୁଇଁଯାଏ । ଯେମିତି— ମଣିଷକୁ ମଣିଷ ଗାଈ ଗୋରୁ ଭଳି ଗୋଟିଏ ଗୋଟିଏ ଯଦି ଜଗୁଥାନ୍ତା, ବୋଧେ ଏତେ କଥା ଏତେ ବେଶୀ ମନେ ପଡ଼ି ନ ଥାନ୍ତା । (ଅନୁଶାସନ) । କିମ୍ବା ନିର୍ଦ୍ଦିଷ୍ଟ ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ଭଳି ଉଦ୍ଦିଷ୍ଟ ମୁଁ । ମୋ ପ୍ରତିଟି ଉଚ୍ଚାରିତ ଶବ୍ଦ, ମୋ ପ୍ରତିଟି ଭଙ୍ଗାରୁଜା

॥ କବି କମଳାକାନ୍ତ

କର୍ମ କର୍ମାଣିର ମାନଚନ୍ଦ, ମୋ ପ୍ରସିଦ୍ଧ ନଷିବ ସନ୍ଧ୍ୟାର ସ୍ୱର୍ଣ୍ଣଲିପିରେ ମୁଁ ବଞ୍ଚିଛି ।' 'ଅଦ୍ୱୈତ'ର ପ୍ରାରମ୍ଭରୁ ନାଟକୀୟତା । ଏଠି ରସିକତା ଲୁଚକାଳି ଖେଳୁଛି । ଯଥା—ପାଖକୁ , ଆଉର ପାଖକୁ, ଟିକେ ଲାଗି ଆ ରେ ମିଛଣି । ଯେମିତି ତୁ ଓ ମୁଁ ନିଶ୍ଚିହ୍ନ ହୋଇଯିବା ମାତ୍ର ଏକ ଚନ୍ଦ୍ର ବନ୍ଦରେ ।' ଏଇ କବିତାର ଚିତ୍ରକଳ୍ପ ଯେମିତି କବିଙ୍କ ତୀକ୍ଷ୍ଣ ବାହ୍ୟ ଦୃଷ୍ଟିର ପ୍ରତିଫଳନ । 'ଯେମିତି ଆଉ ନ ଥିବ ଝୁଲୁଥିବା ବିଶ୍ୱାସ, ନା ଅନ୍ଧ ସନ୍ଦେହର ବୋହୂଲୁଗା' 'ନ ଥିବ ସାପ ଲୁଡୁର ସିଡ଼ିକୁ ଡେଇଁ ଡେଇଁ ଖସିପଡ଼ିବାର ଜଖମୀ ଦୃଶ୍ୟ ? ତେଣୁ 'ଚନ୍ଦ୍ରବନ୍ଦ' ଠାରୁ ଆରମ୍ଭ କରି 'ରକ୍ତର ଗୋଲାପୀ ଅଧର' ପର୍ଯ୍ୟନ୍ତ କବିଙ୍କ ପଳାୟନବାଦର ନିଭୃତ ସ୍ୱଗତୋକ୍ତିର । ଏଇ କବିତାର ଶେଷ ପରିଚ୍ଛେଦଟି ବାସ୍ତବରେ ବର୍ଣ୍ଣନାର ଶୀର୍ଷତମ ପର୍ଯ୍ୟାୟ ଯଥା : 'ପାଖକୁ, ଆଖିରୁ ଆଖିକୁ, ଓଠରୁ ଓଠକୁ, ଦେହରୁ ଦେହକୁ ଲୁଚି ଆ'ରେ ମିଛଣି । ଯେମିତି ତୁ ଓ ମୁଁ ନିଶ୍ଚିହ୍ନ ହୋଇଯିବା ଅକ୍ଷରଗୁଣଟି ବର୍ଣ୍ଣମାଳାର କୋଳେ-ଇରେ ।' ଏଠି କାବ୍ୟିକ ଉତ୍କର୍ଷତା ପ୍ରଣିଧାନର ବିଷୟ । ଲକ୍ଷ୍ୟ କରନ୍ତୁ—ଅକ୍ଷରଗୁଣଟି ବର୍ଣ୍ଣମାଳାର କୋଳେଇ ଉଠିଛି । ଶବ୍ଦ ନିଷ୍ପ୍ରୟୋଜନ ମନେ ହୋଇଛି । ତେଣୁ ଓଠ ଦୁଇଟି ଅତି ନିକଟକୁ ଲଗାଲଗି ହୋଇ ଆସିଯିବାପରେ ଏଇ ପୃଥିବୀର କେବଳ ଯେଉଁ ଗୋଟିକୁ ନିଜର ସାଥି କରି ନେଇଛନ୍ତି—ତାହା ହେଲା ନୀରବତା ।

କମଳାକାନ୍ତଙ୍କ ଏଇ କବିତାଟି ଯେଉଁ ସାମଗ୍ରିକତାର ସୂଚନା ଦେଇଛି ସେଥିପାଇଁ ସେ ଅଭିନନ୍ଦନୀୟ ନିଶ୍ଚୟ । ସେଇଭଳି 'ଅନ୍ଧ ପର୍ଦ୍ଦାରୁଣ୍ଡା ଅନ୍ଧାରର ନକ୍ଷ(ଅନ୍ଧ) ଚମତ୍କାର ରୂପକଳ୍ପଟିଏ । 'ଈଶ୍ୱର' କବିତାର ବକ୍ତବ୍ୟ ଜଣା ପଡ଼ୁନ । ସେ ନିତ୍‌ସେଙ୍କ ଭଳି ନାସ୍ତିବାଦୀ ନ. ସାର୍ତ୍ରଙ୍କ ଭଳି ଉଦାସୀନ ନା ଶଙ୍କରାଚାର୍ଯ୍ୟ ଅରବିନ୍ଦ, ବିବେକାନନ୍ଦଙ୍କ ଭଳି ଆମୂଳ ଚୂଳ ଐଶ୍ୱରିକ ଚେତନାର ପୃଷ୍ଠପୋଷକ । ଅବଶ୍ୟ ପ୍ରଥମରୁ ହିଁ ଈଶ୍ୱର ନିରାକରଣା ସ୍ୱତଃ ପ୍ରବୃତ୍ତ 'ମଞ୍ଚ' ସେଇଭଳି ଗ୍ରହଣ ଯୋଗ୍ୟକୁ ମାନି ନେଇଛି । 'ମାଟିକୁ କୋଳେଇ ନଉଚି ବଡ଼ ଆନନ୍ଦରେ ସୋହାଗ ମିଶା ଯନ୍ତ୍ରଣାରେ ।' ବିମ୍ବ୍ୟ ସେଇଭଳି ସୃଷ୍ଟି

ମତ ଅଭିମତ ଭିନ୍ନମତ ।

ଣୀଳ ପ୍ରେରଣାର ଆଦ୍ୟ କଥନିକା । କମଳାକାନ୍ତଙ୍କ କବିତାରୁ କୌଣସି ତାତ୍ତ୍ୱିକ ବିଷୟ ବସ୍ତୁ ଖୋଜି ବାହାର କରିବା ବାଜେ କଥା । ସମସ୍ତ ସମସ୍ୟରେ 'ଏକାକାର' ଭଳି କବିତାର ଅର୍ଥହୀନ ଭାବଦ୍ୟୋତକତା ଆମ ସଭିଙ୍କ ପାଇଁ ପୀଡ଼ାଦାୟକ । 'ମୁଁ' ଉପେକ୍ଷା କରୁଛି ରଙ୍ଗିନ୍ ଜଗତର ବଡ଼ମାନ୍ (ଦେବା ନେବାର ରହସ୍ୟ) । 'ଗୁମ୍ଫା' କବିତାରେ ବାଘକୁ ଯେ ଡରେ, ସେ ମଣିଷ । ମଣିଷକୁ ବାଘ ଡରେ ଅର୍ଥାତ ମଣିଷ ଗୋଟେ ବାଘ କହିଲାବେଳେ ମଣିଷ ପ୍ରବୃତ୍ତିର ଉଗ୍ର ଜାନ୍ତବତା ଆଲୋଚନାର ବିଷୟ ।

କମଳାକାନ୍ତ ଲେଙ୍କା ଓଡ଼ିଆ କବିତାକାଶରେ ବହୁ ଦିନର ଜ୍ୟୋତିଷ୍କଟିଏ । ତାଙ୍କର ପ୍ରଥମ ସଂକଳନ 'ସୁନା ଫସଲ' ପ୍ରକାଶ ପାଇଥିଲା ୧୯୫୮ରେ ଯେତେବେଳେ ଏହି ସମାଲୋଚକର ବୟସ ମାତ୍ର ଛଅ ବର୍ଷ । ଆଜି ଯେଣୁ କଲମଟିଏ ହାତରେ ଧରିଛି ବୋଲି ସେଇ ଅଗ୍ରଜଙ୍କ କାବ୍ୟିକ ବ୍ୟକ୍ତିତ୍ୱକୁ ତଉଲି କରିବା ହୁଏତ ମୋ ପାଇଁ କେତେକାଂଶରେ ଧୃଷ୍ଟତା ହୋଇପାରେ । ତେବେ ସାଧାରଣ ପାଠକଟିଏର ଯେଉଁଭଳି କୌଣସି ଜିନିଷ ପତି ସାହିତ୍ୟରେ ମତାମତ ଦେବାର ସଂପୂର୍ଣ୍ଣ ଅଧିକାର ଅଛି, ସେହିଭଳି ମୁଁ କହିବାରେ କମଳାକାନ୍ତଙ୍କ ବକ୍ତବ୍ୟ ଏବେ ସୁଦ୍ଧା ଅସ୍ପଷ୍ଟ । ସେ କ'ଣ କହିବାକୁ ଚାହୁଁଛନ୍ତି ଓ କାହାପାଇଁ କଲମ ଧରିଛନ୍ତି ତାହା ଏବେ ସୁଦ୍ଧା ସ୍ପଷ୍ଟ ହୋଇ ପାରି ନାହିଁ । ତାଙ୍କ 'ସାମାଜିକ ଅଙ୍ଗୀକାର' ଅତି ନ୍ୟୂନ ଅବସ୍ଥାରେ ଏବେ ସୁଦ୍ଧା ବିଚରଣ କରୁଛି । ଅବଶ୍ୟ ଏଇ କବି ଜଣେ ଝାଣ୍ଟି ଓଡ଼ିଆ ଓ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଯାଙ୍କ ଉପରେ ପଡ଼ି ନାହିଁ କହିଲେ ଚଳେ । ତେବେ ବେଳ ଆସିଛି, ତାଙ୍କ ବକ୍ତବ୍ୟକୁ ଏବେ ସେ ଆଉଟି ସ୍ପଷ୍ଟ ଭାବେ କହିବା ଆରମ୍ଭ କରନ୍ତୁ । ଏହା ହୁଏତ ତାଙ୍କ କବିତାର 'ଶାଶ୍ୱତିକ ଏକତା' ଆଣିବା ଦିଗରେ ସକ୍ଷମ ହେବ । ଏସବୁ ସତ୍ତ୍ୱେ 'ଝସିବାର ବେଳ' ପରି ଏକ ପ୍ରତିବାଦ ମୂଳକ କବିତା ସଂକଳନ ପ୍ରକାଶକର ଓଡ଼ିଶା ବୁକଷ୍ଟୋର ଧନ୍ୟବାଦାର୍ହ ହୋଇଛନ୍ତି ।

ଅଶ୍ୱିନୀ କୁମାର ମିଶ୍ର
ସଂପାଦକ 'ମୋହ'

# ଖସିବାର ବେଳ

( 'ଇସ୍ତାହାର'-୨୧-ଜାନୁଆରୀ/ମାର୍ଚ୍ଚ-୧୯୮୩ )

'ଖସିବାର ବେଳ' କଣ୍ଠ କମଳାକାନ୍ତଙ୍କ ଦ୍ୱାଦଶ କବିତା ସଂକଳନ । ପଚିଶ ବର୍ଷର (୧୯୫୮-୧୯୮୨) କବିତା ସୃଷ୍ଟିର ଫଳ ସ୍ୱରୂପ ତାଙ୍କର ଦଶ ଚୋଟି ଓଡ଼ିଆ ଏବଂ ଗୋଟିଏ ଇଂରାଜୀ—ଏଭଳି ଏଗାରଟି କବିତା ସଙ୍କଳନ ପ୍ରକାଶିତ ହୋଇଛି । ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ କବି ବେଶ୍ ଜଣା ଶୁଣା । ଆଲୋଚ୍ୟ ପୁସ୍ତକରେ ୪୭ଟି କବିତା ସ୍ଥାନ ପାଇଛି ।

କମଳାକାନ୍ତଙ୍କ କବିତାରେ ଦୁଃଖାନୁଭୂତି ମୁଖ୍ୟ ଉପଜୀବ୍ୟ । ଦୁଃଖାନୁଭୂତି, ଅସହାୟତା ଏବଂ ହତାଶାଭାବର ପ୍ରଭାବରେ କବିତାର ସ୍ୱର କେତେବେଳେ ମନ୍ଦ୍ର, ଗମ୍ଭୀର ତ କେତେବେଳେ ଆତ୍ମ-କରୁଣାତ୍ମକ ( Self pity) ବା ବ୍ୟଙ୍ଗାତ୍ମକ (ଅନ୍ଧ, ଗୋଟାଏ ଧାକ୍କାତ ଇତ୍ୟାଦି) ଦୁଃଖାନୁଭୂତିର ଅନ୍ତର୍ମୁଖିନତା ଫଳରେ ଥରେ ଥରେ କାବ୍ୟିକ ସତ୍ତା ଏକ ଅଛୁଆଁ ଗଭୀରତାକୁ ଚାଲିଯାଏ । କବିତାର ରହସ୍ୟଧର୍ମିତା ଏବଂ ଅସଙ୍ଗତି—ଏ ଦୁଇଟି ଖୁବ୍ ପାଖା ପାଖି ଚାଲିଥାନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ସ୍ତରରେ ଆବେଗ ଅନିୟନ୍ତ୍ରିତ ହୋଇ-ଗଲେ କବିତା ରହସ୍ୟଧର୍ମୀ ହୋଇପାରେ ନାହିଁ । ବରଂ ଗୋଳମାଳିଆ ହୋଇଥାଏ । ଦୁଃଖର କଥା, କମଳାକାନ୍ତଙ୍କ ଗୁଡ଼ିଏ କବିତା ବକ୍ତବ୍ୟ ପ୍ରକାଶ ସଂଯମହୀନତା ଯୋଗୁଁ ସମସ୍ତ ସମୟରେ କଥାଟିକୁ ଭାଷାଜାଲର ଏକ ବିଚିତ୍ର ଭୁଲ-ଭୁଲେୟା (Maze) ଭିତରେ ଅସହାୟ ଭାବରେ ଧନ୍ଦି ହେବାକୁ ଛାଡ଼ି ଦିଏ । ଅଥଚ ଅନେକ କବିତାରେ କମଳାକାନ୍ତଙ୍କ ଭଳି ଜଣେ ପୋଖତ କବିର ହାତ ସ୍ପଷ୍ଟ ବାରିହୋଇ ଉଠେ ।

ବକ୍ତବ୍ୟକୁ ସ୍ପଷ୍ଟ କରିବାପାଇଁ ଦୁଇଟି ନିର୍ଦ୍ଦିଷ୍ଟ କବିତାର ଉଦାହରଣ

ନିଆଯାଉ । 'ଏକା ଏକା' (ପୃ-୪୮) କବିତାଟିରେ ନିର୍ଦ୍ଦିଷ୍ଟ ବକ୍ତବ୍ୟଟିଏ ଅଛି ଏବଂ ଏହି ବକ୍ତବ୍ୟଟି ଖୁବ୍ ସ୍ପଷ୍ଟ ଏବଂ ଚମତ୍କାର ଭାବରେ କବିତାରେ ସାମଗ୍ରିକ ଭାବେ ଫୁଟି ଉଠିଛି । ମଣିଷ ଭିଡ଼ ଭିତରେ ଥିଲେ ବି ଅସହାୟ ଭାବରେ ଏକା ଏକା ଜୀଇଁବା ଅନିବାର୍ଯ୍ୟ ।

ଭିଡ଼ ଭିତରର ମଣିଷ ପାଖରେ ସହ ଅନୁଭୂତିଶୀଳତା ନାହିଁ । ତେଣୁ ମଣିଷ ଏକା ଏକାଇଁ ବଞ୍ଚି ରହିବାକୁ ବାଧ୍ୟ । ପ୍ରତିକୂଳତା ମଧ୍ୟରେ 'ପାଣିର ଘେର ଭିତରେ/ଜୀବନ ବିକଳ ସାପକୁ ଦେଖି/ଅତର୍କରେ ତା' ଜଭରେ ହସିବାକୁ ହୁଏ ।' (ପୃ-୪୮-୪୯) । ଏଇଠି ସବୁବେଳେ 'ମୁଣ୍ଡୁଗୁମାନଙ୍କ ହୈଁସ ନ ଧୋଇବାର/ଫିକର; ରାସ୍ତାରେ ଯେଉଁ ବାଲୁଆଟି ହୋଂଠାଳେ, ବାଟରେ ମନାପି ଯାଏ ଶୁଭ ।' (ପୃ ୪୯) 'ସହାବସ୍ଥାନର ଚହଳ ଉପାୟ' ଉପରେ ସବୁବେଳେ କିନ୍ତୁ ବିଜେତା ହୁଏ 'କୋରବ ର ସତ୍ୟ,ଝଗର ଗଜଲ'(ପୃ-୫୦) ଏବଂ 'ଘଣ୍ଟାକଣ୍ଟାର ଅଚଳ ସ୍ଥିତାବସ୍ଥା/ଓଗାଳ ପାରେ ନା ସୂର୍ଯ୍ୟର/ପ୍ରତିନିଯୁତ ସ୍ୱଚ୍ଛନ୍ଦ ବାଟ ।' (ପୃ-୪୯) ଏହି କବିତାଟିରେ ବଞ୍ଚିବାର ଅନୁଭୂତି ବାସ୍ତବ ରୂପ ପାଇଛି ସୁସଂହତ ଏବଂ ସୁନିୟୋଜିତ ଭାଷା ଏବଂ ଶୈଳୀରେ । 'ହସିଗଲା ବେଳେ ଖିଏ ଲୁହ/ହାତ ପାଆନ୍ତାର ଉଡ଼ିଯାଉଥିଲା କୃତଜ୍ଞତା/ଜଣାଇବାକୁ ହୁଏ ।' (ପୃ ୪୯) ଭଳି ଉପଯୁକ୍ତ ଚିତ୍ରକଳ୍ପ ବକ୍ତବ୍ୟକୁ ଶୈଳୀ ଏକୀଭୂତ କରି ଦେଇ ପାରିଛି । ତେଣୁ କବିତାରେ ଅନୁଭୂତି ଏବଂ ବକ୍ତବ୍ୟ ମଧ୍ୟରେ ତାରତମ୍ୟ ନାହିଁ ଏବଂ ବକ୍ତବ୍ୟ ଯଥାର୍ଥ ପରିପ୍ରକାଶ ଲାଭ କରିଛି ।

ବର୍ତ୍ତମାନ ଅନ୍ୟ ଏକ କବିତା ଦେଖାଯାଉ । କବିତାଟିର ଶୀର୍ଷକ 'ମୁଁ ଓ ଈଶ୍ୱର' (ପୃ-୨୮) । ଈଶ୍ୱର ସବୁକାଳରେ କବିତା ସୃଷ୍ଟି ପାଇଁ ଏକ ଉତ୍କୃଷ୍ଟ ଉତ୍ସ । ପରିବର୍ତ୍ତିତ ସମୟର ମୂଲ୍ୟବୋଧରେ ଅସହାୟ ମଣିଷରେ ଈଶ୍ୱର ସଚେତନତାର ଏକ ଭିନ୍ନ ଅବବୋଧ କବି କମଳାକାନ୍ତ ଏ କବିତାରେ ଦେବାକୁ ଚେଷ୍ଟା କରିଛନ୍ତି । ସାମୂହିକ ଅବଚେତନର ବ୍ୟକ୍ତି ଉପରେ ପ୍ରଭାବର ସୂଚନା ଦେଇଥିବା ପ୍ରଥମ ପଦଟି କାବ୍ୟିକ ଓ ସୁନ୍ଦର । କିନ୍ତୁ

ପରବର୍ତ୍ତୀ ତିନୋଟି ପାଦରେ ଏହି କାବ୍ୟିକତା ଅପସରି ଯାଇଛି ଏବଂ କବି ସଂଜ୍ଞାଧର୍ମୀ ବାକ୍ୟଗୁଡ଼ିକ ପ୍ରୟୋଗ କରୁଛନ୍ତି । ଯଥା—'ଈଶ୍ୱର ସମସ୍ତ ବିକୃତ ଚିନ୍ତାର/ଭାବନାର ସୁନାର ମନ୍ଦିର' । ଈଶ୍ୱର/ବେଶ୍ ସଂଭ୍ରାଂତ ଓ କଳୁଷ କାକୁସ୍ଥ', 'ଈଶ୍ୱର ଗୋଟାଏ ଉରକୁଳା ଶୂନ୍ ଚଢ଼େଇ' ଏବଂ ଶେଷରେ-'ସେ ଈଶ୍ୱର ସେ ମୁଁ'—ପୁଣି ଶେଷ ଅଡ଼ାକୁ 'ଈଶ୍ୱର ମୋ ଦୁଃଖର ମାଲିକ/ମୋ ସୁଖର ଅଂଶୀଦାର ।' ଚାତୁର୍ଯ୍ୟ ଉପରେ କେବଳ ଆସ୍ଥାବାନ୍ ହେବାଦ୍ୱାରା କାବ୍ୟିକ ଅନ୍ତର୍ଦୃଷ୍ଟି ବ୍ୟାହତ ହୋଇପଡ଼ିଛି । ଏହି କବିତାରେ, ତେଣୁ, କବି ବିଧିବଦ୍ଧ ଭାବରେ ଈପ୍ସିତ ଲକ୍ଷ୍ୟସ୍ଥଳରେ ପହଞ୍ଚି ନ ପାରି କେବଳ ହାଲୁକା ବାକ୍ୟ କେତୋଟି ବ୍ୟବହାର କରିବାଦ୍ୱାରା କବିତାର ସୌନ୍ଦର୍ଯ୍ୟ ବ୍ୟାହତ ହୋଇଛି । ଅସଂହତ ରୂପକଳ୍ପ ଏବଂ ଉପମାର ବ୍ୟବହାର, ଅନୁଭୂତିର କାବ୍ୟିକ ସଂଯୋଜନା ଏବଂ ସମ ଉତ୍ତରଣର ଅଭାବରେ କବିତାଟି ବିଫଳ ହେବାକୁ ବାଧ୍ୟ ହୋଇଛି । (ଗୁମ୍ଫା-ପୃ: ୮୬)

'ମଂଚ' (ପୃ : ୩୦), 'କଳଙ୍କୀ ରୂପ ଖୁମା ହେଇ' (ପୃ : ୮୦), 'ଅନର୍ଭର ପ୍ରତିଶ୍ରୁତିର ନର୍ଭରତା'(ପୃ : ୪୨) ପ୍ରଭୃତି କେତେକ କବିତା ଏଭଳି ଭାବରେ କେନ୍ଦ୍ରବିନ୍ଦୁଠାରୁ ଦୂରେଇ ଯାଇଛନ୍ତି । 'ସଂଅ ବିଦା'—(ପୃ : ୩୫) କବିତାଟିରେ ବକ୍ତବ୍ୟ ସହଜ ସୁନ୍ଦର ଗତିରେ ଆଗେଇ ଯାଇଛି ଶେଷ ପର୍ଯ୍ୟନ୍ତ କିନ୍ତୁ ଠକ୍ ମୁଣ୍ଡି ମାରିବା ବେଳକୁ ବିଶେଷ ଭାବରେ ଉଷୁଡ଼ି ପଡ଼ିଛି -'ବିଦା ହୋଇଗଲାବେଳେ ଧକେଇଥାଏ ମା'/ସକଉ ଥାଏ ଝିଅ/ବାପା ଦେଖେ ବ୍ୟାକ-ରଣ ।' ପୃ : ୩୬) ସାମାନ୍ୟ ଅବହେଳା ଯୋଗୁ ବୋଧହୁଏ ଏମିତି କେତେକ କବିତା ଦୁର୍ବଳ ହୋଇ ଯାଇଛି କିମ୍ବା ବିଫଳ ହୋଇଯାଇଛି ।

ସାମଗ୍ରିକ ଭାବରେ ଦେଖିବାକୁ ଗଲେ କେତୋଟି ସ୍ଥଳରେ ପ୍ରଶ୍ନ ପତ୍ରରବର ଉତ୍କଣ୍ଠା, ଏବଂ ଉତ୍ତର ନ ପାଇବାର ଅସହାୟତା ଏବଂ ନୈରାଶ୍ୟ ପରିଦୃଷ୍ଟ ହୁଏ । ଯେମିତି—'ବୋଉ, କ ଦଅଁ ତୁ ନିଶପ୍ରଜୁ ? ନା ଛାଗ କ'ଣ? କେଉଁ ମନ୍ତ୍ର ଜପିଲେ ସେ ଧରା ଦିଏ ? କେମିତି ତା'/ଦେହର ଚେତଣ·· ?' ବା ବ୍ୟକ୍ତିଗତ ସଂପର୍କର ସଂଶୟ ଏବଂ ଅନିଶ୍ଚୟତାର ସୂଚନା ଦେଉଥିବା—

'ପଙ୍କରେ ବୁଡ଼ିଲେ ମୁଁ ତୋର କ'ଣ ଯାଏ ?' (ପଦାକୁ କାଢ଼ିଲେ ଡୋଙ୍ଗି) (ପୃ : ୭୩)। ଅଧିକାଂଶ କବିତାରେ କିନ୍ତୁ ପ୍ରଶ୍ନହୀନ ଉତ୍ତରହୀନ, ଦୁଃଖାଇଁ କମଳାକାନ୍ତୀୟ କବିତାର ଉପଜୀବ୍ୟ। କମଳାକାନ୍ତଙ୍କ କବିତାର ମୁଖ୍ୟ ବିଭବ ହେଲା ତାଙ୍କର ନିଦା, ଗ୍ରାମୀଣ ଭାଷାରେ ଅନୁଭୂତିର ପରିପ୍ରକାଶ। ଭାରି ସହଜ ଭାବରେ ଚିତ୍ର କଥାଟିଏ କହି ଦେଇ ପାରିବା। ('ଭଦ୍ରତାର ବନ୍ଧୁଣୀ ଚାଧୁଆ ବେଳରେ/ଅବିକା ହାତରେ ଯାହା ଅଛି ତୋ ପାଇଁ/ତା' ନିଷ୍ଠୁର ଖରାଦିନଆ ମେଳାରୁ କିଣିଥିବା/ଆଡ, ହୁଂକା ପିଠା ସ୍ୱପ୍ନଙ୍କ ଦପ୍ତରୁ/ନା ମିଟିଲା ଆଖି , ନା ପାଚିଲା ଫଳ।''— ଚୁପ୍ କନା ସମୟ-ପୃ :୭୬) କବିଙ୍କର ବୈଶିଷ୍ଟ୍ୟ। ଅନେକ କବିତାରେ ଏହି କୃତିତ୍ୱର ନିଦର୍ଶନ ମିଳିଥାଏ, କିନ୍ତୁ ଦୁର୍ଭାଗ୍ୟର କଥା ଯେ, ସ୍ଥଳ ବିଶେଷରେ ଏଭଳି ସୁନ୍ଦର ପ୍ରୟୋଗଗୁଡ଼ିକ ମଧ୍ୟ କବିତାର ଅସଂହତି ଦୂର କରିପାରନ୍ତି ନାହିଁ। କବିତାର ବିଭିନ୍ନ ଅଂଶ ସମତୁଲ ଏବଂ ଉପଯୁକ୍ତ ଭାବରେ, ନିର୍ଦ୍ଦିଷ୍ଟ ଭାବରେ ସମିଶ୍ରିତ ହୋଇ ପାରୁ ନ ଥିବାରୁ କବିତା ଅଯଥା ଦୁର୍ବୋଧ୍ୟ ହୋଇଯାଏ। ମନେହୁଏ କବିତାର କେନ୍ଦ୍ର ବିନ୍ଦୁ ଯେମିତି କୁହୁକ ଉପରେ ବୁଢ଼ୀଆଣିଟିଏ ଭଳି ମାୟାଜାଲ ରଚି ଚାଲିଛି। ଏବଂ ଶେଷରେ କବି ନିଜେ ତା' ଭିତରେ ବନ୍ଦୀ ହୋଇ ଶ୍ୱାସରୁଦ୍ଧ ହୋଇ ଯାଉଛି।

ଆଧୁନିକ କବି ମୁଖ୍ୟତଃ ଅନ୍ତର୍ମୁଖୀ। ଏହି ଅନ୍ତର୍ମୁଖିତା ଅନେକ ସମୟରେ କବିତାର ପରିବେଶକୁ ମଧ୍ୟ ଆତ୍ମମଗ୍ନ କରିଦେଇଥାଏ। ଏହି ଅନୁଭୂତିଟି ପାଠକକୁ 'ଅନ୍ଧ ପହଁରୁଚି ଅନ୍ଧାରର ନଈ' (ଅନ୍ଧ-ପୃ : ୨୫) ଭଳି ମନେ ହୋଇପାରେ। ଏଇ ଅଂନ୍ଧାର ନଈରେ ଅନ୍ଧ ପହଁରିବାର ଅସହାୟତାକୁ ପ୍ରକାଶ କରିବାକୁ ଯାଇ କବି କହୁଛନ୍ତି— 'ହାତ ବଢ଼ାଇଲେ ନା ହାତ/ଗୋଡ଼ ବୁଡ଼ାଇଲେ ନା ଗୋଡ଼/ପାଉଚି ଯେ ସେ ପହଁରୁଚି ତ ପହଁରୁଚି।' (ଅନ୍ଧ-ପୃ : ୨୫ ) ଏହି ଅସହାୟତା ଏବଂ କେବଳ ପହଁରିଚାଲିବାର, ଜୀଇଁ ଯିବାର ଅନନ୍ୟୋପାୟ ଇଚ୍ଛା କେବଳ ନୁହେଁ, ତା'ର ସତ୍ତ୍ୱେ ସ୍ୱପ୍ନ ଦେଖେ— 'ପ୍ରତିଟି ଛୁଆଙ୍କ ଓଠ ମହୁ ଝରୁ। ଦୁଃଖ ଏବଂ ଦୁର୍ବିପାକ, ହତାଶାର ଅରଣ୍ୟରେ। × × × ସମୁଦ୍ରରୁ ପୁନଶ୍ଚ ଆସିବ ବର୍ଷା ଟୁପ୍ ଟୁପ୍ ଠାଙ୍ଗର ମାଟିକୁ/ମୁଁ ଯଦି ବିଦାୟ ନିଏ ; ତିଳେ ହେଲେ କାନ୍ଦ ନାହିଁ, ଅନୁରୋଧ—ପ୍ରେମମୟୀ/

ଦଗ୍ଧ ପ୍ରତୀକ୍' (ସ୍ୱପ୍ନରେ ଦୁଇଜଣ-ପୃ : ୪୩) 'ଠାଙ୍ଗର ମାଟି' ଏବଂ 'ଦଗ୍ଧ ଧରିତ୍ରୀ'ର ବୁକୁ ଉପରେ 'ବର୍ଷା'ର ପ୍ରତ୍ୟାଶା କମ୍ପା ପ୍ରକୃତି ଛୁଅଁଙ୍କ ଓଠରୁ ମଦ୍ଧୁ ଝରିବାର କାମନା କବିଙ୍କର କାବ୍ୟସ୍ୱରକୁ ଚାମ୍ପୀର୍ଯ୍ୟ ମଣ୍ଡିତ କରିଛି । ସୃଷ୍ଟିର ଅନୁକ୍ରମରେ ନିଜ ଅସ୍ତିତ୍ୱକୁ ଅଙ୍ଗୀଭୂତ କରିବା କାବ୍ୟିକ ଦାର୍ଶନିକତାର ଉତ୍ତରଣର ଏକ ସଫଳ ପର୍ଯ୍ୟାୟ ।

ସଂକଳନଟିରେ ସମସ୍ତ ଅନେକ କବିତା (ଯଥା-ଦବା ନେବାର ରହସ୍ୟ, ରଜା, ଏକା ଏକା, ସ୍ୱପ୍ନରେ ହୁଏତ, ଅନୁଶାସନ, ଛୁଇଲେ ଛୁଇଁ ହସନ୍ତ, ଅଦ୍ୱୈତ, ଅନ୍ଧ, ଗୋଟାଏ ସାକ୍ଷାତ, କଥା ନ କହେ ବିଗମ୍ବରୀ, ରୂପ୍ କଲା ସମୟ, ଓହ୍ଲାଇବା ମାତ୍ରେ, ଅରଣ୍ୟକୁ ରଖ ନାରାୟଣ) ସଫଳ ବୋଲି ନିଶ୍ଚିତ ଭାବେ କୁହାଯାଇପାରିବ । 'ଝସିବାର ବେଳ'ର ପ୍ରକାଶନ କମଳାକାନ୍ତଙ୍କ କବି ଜୀବନର ଓ ସାଂପ୍ରତିକ କାବ୍ୟଧାରାର ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ଏବଂ ତାଙ୍କ ଭଳି ଜଣେ ପ୍ରବୀଣ କବିଙ୍କର ସାମଗ୍ରିକ ମୂଲ୍ୟାୟନ ପାଇଁ ବିଜ୍ଞ ଓ ସଚେତନ ସମାଲୋଚକଗଣ ଉଦ୍ୟମ ଆରମ୍ଭ କରି ଦେବା ଉଚିତ ବୋଲି ମୋର ବିଶ୍ୱାସ ।

**ଶୁଭେନ୍ଦୁ ମୁଣ୍ଡ**
ଏସ୍. ସି. ଏସ୍. କଲେଜ, ପୁରୀ

## ସ୍ରୋତର ନାମ ରତ

( 'ସମାସ'-୭, ଭଲ୍ୟୁମ-୨-ସଂଖ୍ୟା-୩ )

ଜୀବନରେ ଭିତରେ ଥାଇ ଜୀବନକୁ ଭଲ ପାଇ ବସି କେହି ବୋଧ-ହୁଏ କବିମଣିଷକୁ ନିବିଡ଼ ସାନିଧ୍ୟ ଭିତରେ ପାଇପାରେ । ତା' ବିନା କବିତା ବା କଳା ଅସମ୍ଭବ । ବରିଷ୍ଠ ଓଡ଼ିଆ କବି କମଳାକାନ୍ତ

ଲେଙ୍କାଙ୍କ 'ସ୍ରୋତର ନାମ ରକ୍ତ' ସପ୍ତମ ଦଶକର ଶେଷ ଭାଗରେ ପ୍ରକାଶିତ ଏକ ସୁଠାମ କବିତା ସଙ୍କଳନ । ଏଥିରେ ବିବିଧ ଭାବ ଅନୁଭବ ସଙ୍କଳିତ ଦୀର୍ଘ ଅଦୀର୍ଘ ଛପ୍ପାଳିଶଟି କବିତା ସନ୍ନିବିଷ୍ଟ । ମାତ୍ର ପ୍ରାପ୍ତ ସମଗ୍ର କବିତାର ଆତ୍ମଗ୍ରନ୍ଥୀ ଏକ, ଅନଚ୍ଛାରିତ ଧର୍ମଧ୍ୱନି ଅଭିନ୍ନ । ବାହ୍ୟ ବାକ୍ଚାତୁରୀର ଶପଣି ଗୃକଚ୍ଛକ୍ୟମୟ, ସ୍ୱତଃସ୍ଫୂର୍ତ୍ତ ଲଳିତ ପଦ, ଗ୍ରଂଥିତ ବାକ୍ଛନ୍ଦ ନିଖୁଣ । କିନ୍ତୁ ଅନେକ କବିତାର ଆତ୍ମସ୍ରୋତ ରହିତ । କେତେବେଳେ ଆବେଗ ବେଗହୀନ ଏବଂ ବିକାଶ ଅବିନ୍ୟସ୍ତ । ତେଣୁ ସୃଷ୍ଟି ନିର୍ମିତିର ମାପକାଠିରେ କବିଙ୍କର ସ୍ରୋତର ନାମ ରକ୍ତ ନୁହେଁ, ଅନ୍ୟଟିହଁ ଜୀବନର ସ୍ରୋତ ।

କବି ଶ୍ରୀ ଲେଙ୍କା ପାଠକମାନଙ୍କ ନିକଟରେ ସଂପୂର୍ଣ୍ଣ ପରିଚିତ । ମାତ୍ର ଏକ ସମୃଦ୍ଧ ଭାଷା ଗ୍ରନ୍ଥିର ଗହନତା ଭିତରେ ପାଠକ ମୋହଗ୍ରସ୍ତ ହୋଇ କବିଙ୍କ ଭାବାତ୍ମାକୁ ଅନେକ ସମୟରେ ଠଉରେଇ ପାରେ ନାହିଁ । ସମୀକ୍ଷକ ଏବଂ ତଥାକଥିତ ଜାଗ୍ରତ ପାଠକମାନଙ୍କର ବାହା ବାହା ଭିତରେ କବି ନିଜର ଚିନ୍ତା ଦୌର୍ବଲ୍ୟକୁ ସଂପୂର୍ଣ୍ଣ ସୁଧାରି ନେବାର ସୁଯୋଗ ମଧ୍ୟ ନାହିଁ । ଫଳରେ କବି ଶ୍ରୀ ଲେଙ୍କାଙ୍କ ପରି ଜଣେ କୋଡ଼ିଏ ବରଷିଆ ବର୍ଷ ଧରି ନିରବଚ୍ଛିନ୍ନ ସାଧକ କବିଙ୍କ ଅନେକ କବିତାର ଚିନ୍ତା ଓ ଚେତନାର ଭାବ ଓ ଭାଷା ଅଭିବ୍ୟକ୍ତିର ସମନ୍ୱୟ ମିଳେ ନାହିଁ । ବେଳେ ବେଳେ କବି ଅସମ ଭାବ ଖଣ୍ଡର ବେଖାପ ବେଙ୍ଗଳା ପକାନ୍ତି, ପୁଣି ବେଳେବେଳେ ଅଧୁନାର ମଣିଷର ବିପର୍ଯ୍ୟସ୍ତ ମାନସ ଭୂମିର ବାଭଙ୍ଗ ଉପରର ସ୍ପର୍ଶ କରୁ କରୁ ରୋମାଣ୍ଟିକ୍ ଗୁରଣ ଭୂମିରୁ ଖସି ଯାଆନ୍ତି । କିନ୍ତୁ ମନେ ହୁଏ, ଆଧୁନିକ କବିତାର ନିଗ୍ରହୀ କଳାତ୍ମକତା ଏକ ନିଷ୍ଠୁର ସଂଯମ ଦାବୀ କରେ, ଯାହା ଖୁବ୍ କମ୍ ଓଡ଼ିଆ କବିଙ୍କଠାରେ ଦେଖାଯାଉଛି ।

ଗ୍ରନ୍ଥର ପ୍ରଥମ କବିତା 'ଟୋଲକ ଧନ୍ଦା'ରେ କବି 'ପାପ'କୁ ରଙ୍ଗ ହଣ୍ଡା, କାଟିଲଣ୍ଡା, ହାଡ଼ନସ ଗନ୍ଧଉଡ଼ା, ପ୍ରୁରୁଣା, ମହିଆ ଦାନର ବେକଭଙ୍ଗା ଠାଣିକୁ ଭଲ ପାଉପାଉ 'ଲଭଲେଙ୍କସାନର ଶରତ କ୍ଷେତକୁ' ବଗିଚାରେ ଫୁଟି

॥ କବି କମଳାକାନ୍ତ

ଅସୁଥିବା ଫୁଲଟିର ନିର୍ଲୋଭ କଢ଼କୁ ଅନୁସ୍ପୃଷ୍ଟ କରିବାକୁ ଚେଷ୍ଟା କରନ୍ତି ।'
ବାହାର ଓ ଭିତରର ଛବି ଅଙ୍କୁ ଅଙ୍କୁ କବି ଭାବଗ୍ରାହ୍ୟ ଚିତ୍ରକଳ୍ପ ଗୁଡ଼ିକ
ପ୍ରୟୋଗ କରନ୍ତି । କିନ୍ତୁ ସାଧାରଣ ପାଠକ ତାକୁ ଧରିବା କଷ୍ଟ ହୋଇପଡ଼େ ।
କବିତାର ୨ୟ ଥାକରେ କବି ମାତାଲ ହୋଇ କାମିନୀ, ତଗଠ ଓ ଠଟରର
ଅନ୍ୱେଷଣ କରେ । ପୁଣି ୩ୟ ଥାକରେ ମୈଥୁନ କାମନା ଭିତରେ ମୃତ୍ୟୁକୁ
ଉପଲବ୍ଧି କରେ । ନିଷ୍ଠୁର ଖବର ବିଷ ତାପରେ ଜର୍ଜର ମଣିଷର ପୁଣି ରାତି
ପାହିଯାଏ । 'ଫେରିବାଲା'ରେ ମଧ୍ୟ ଚମତ୍କାର ଏବଂ ବଳୀୟାନ ପ୍ରକାଶ ମୂର୍ତ୍ତି
ଭିତରେ ଲୁଚିରହେ ଅସଂହତ, ଅନିର୍ଦ୍ଦିଷ୍ଟ ବକ୍ତବ୍ୟ । ଉଦାତ୍ତ ଆବେଗୀ ଆରମ୍ଭ
କିନ୍ତୁ ବିଷଣ୍ଣ ସମାପନ । ଫଳତଃ ଭାବ କ୍ରମ ବ୍ୟାହତ; ଆବେଦନ ଶିଥିଳିତ ।
ସେହିପରି 'କଥାର ମଞ୍ଜି' କବିତାରେ ଛଅଟି ଥାକରେ ନିଃଶବ୍ଦ ସ୍ୱର ।
ପରସ୍ପର ବିରୋଧୀ । ତିନି ଓ ପାଞ୍ଚ ଥାକରେ ବହଳ ଆଲୁଅ ବିଜୁଳି ବାଛର
ଖୁନ୍ଦାଖୁନ୍ଦି ପଥ, ଅଟଙ୍କ ଝରଣା, ବଉଳିତ ଫୁଲ୍ କଢ଼ି, ଯୁଦ୍ଧାବସ୍ଥା ଯୁବାବସ୍ଥାର
ହୃଦୟ ଠିକଣା, ମହୁଲ ଗଛର ପୁଷ୍ପିତ ନିଆଁ, ଜଳ ଭଉଁରୀ ଓ ଚକା-
ଡୋଳାର ବ୍ରହ୍ମାଣ୍ଡର ପ୍ରାୟତଃ ରୋମାଣ୍ଟିକ୍ ଛବିଳତା ସାଙ୍ଗକୁ ଏକ, ଦୁଇ, ଚାରି
ଏବଂ ଛଅ ଥାକରେ ବାବୁର ଅନ୍ଧାର, ଅଣ୍ଡା ଚବନ, ମିଞ୍ଜି ମିଞ୍ଜି ଦୁଃଖ,
ଘାତକର ଭୁଜାଳି, ବସ୍ତିର ପାଗଲ୍ ବାଳ, କଳା ଚମିନ, ଶେତା ବସନ୍ତର
ଛବି ଗ୍ରନ୍ଥନ—କବିତାକୁ ଦିଚହୀନ କରେ, ଯଦିଓ ପ୍ରକାଶଭଙ୍ଗୀ ନିଖୁଣ ଓ
ତ୍ରୁଟିହୀନ ।

'କଳାକାହ୍ନୁ' ଏକ ବଳିଷ୍ଠ କାବ୍ୟ-ପ୍ରବନ୍ଧ । କବିଙ୍କର ସମ୍ଭାବନା
ଅବିଦ୍ୟ ପ୍ରତିଭାର ସୁଦୃଶ୍ୟ ସାକ୍ଷୀ । ତଥାପି ଏଥିରେ ମଧ୍ୟ ଭାବ ବିନ୍ୟାସରେ
ନିଖୁଣତା ଅବିଦ୍ୟମାନ । ବ୍ୟାହତ ସଂହତି ଜନିତ ତ୍ରୁଟି ଭାବ ସଙ୍ଗଠନକୁ
କିଞ୍ଚିତ୍ ଦୁର୍ବଳ କରିଛି । ଅଯଥା ଏକ ସାର୍ଥକ ଭାବୋତ୍ତୀର୍ଣ୍ଣ କବିତାରେ
ହଠାତ୍—

'ରେ କାହ୍ନୁ, ତୋ ମୟୂର ପକ୍ଷୀ ସ୍ୱପ୍ନର
ଜଉଘର, କାଚ ହିଆଲ, କାଗଜ ଖୋଳରେ
ଆକାଶୀ ଘର କେମିତି ଜଳୁଚି ଦେଖ୍ ! ଦେଖ୍

ମତ ଭିନ୍ନମତ ଅଭିମତ ।

ଶିର୍ ଶିର୍ ହେଇ ଝରେଁର ହ୍ଲେଡ୍ ଦାଢ଼କୁ
ପକେଇ ଦଉଚି ସେ। ପାଦର ଅଳତା ଟେଡ଼,
ମୋ ଅନ୍ତ ବୁଜ୍ଜଳାର ରକ୍ତ, ହାଡ ଯାଡ
ପୋକ ମାଛିର ଶୁଣ୍ଢ ଉଖାର ଦଉଚି
କଲବଲିଆ, ଛଟପଟିଆ, ନାଲଠା ଶୁଖିଲା ହପର ମୁହଁ ।'

'ମଳ ମୂତର ପଚ୍ଚ ଗନ୍ଧ'ର ଅନୁପ୍ରବେଶ କବିତାର ମୂଳ ଭାବ ମୂର୍ତ୍ତିକୁ ଅବିନ୍ୟସ୍ତ କରି ପକେଇଛି । ମୂଳରୁ ଚୂଳ ଯାଏ କବିତାଟି ଏକ ସ୍ଥଳରେ କଳା ପୁରୁଷ ଓ ସୁନ୍ଦର ସୃଷ୍ଟି ସଂସାରର ବାସ୍ତବିକ ଜୀବନ ଗତିର ଛବି ଆଙ୍କିବାରେ ସଫଳ ହୋଇଥିବା ସ୍ଥଳେ ମଝିରେ ମଝିରେ ଏପରି ବିକଟ ବିକୃତ ଛବିର ଅବତାରଣାର ପ୍ରାସଙ୍ଗିକତା ବୁଝା ପଡ଼େ ନାହିଁ । ଅପରନ୍ତୁ କାବ୍ୟକ ମର୍ମଧ୍ୱନି ଅଯଥା ବିକ୍ଷିପ୍ତ ହୋଇଥାଏ ।

ଏହା ସତ୍ତ୍ୱେ ଗ୍ରନ୍ଥର ଶେଷ ଭାଗରେ ସନ୍ନିବିଷ୍ଟ କେତେକ କବିତା (ଛନୋଟି କବିତା, ନିଜ ସପକ୍ଷରେ, ଅବିବେକୀ, କ୍ରମଶଃ ବର୍ଷା, ବ୍ୟକ୍ତି ମନ ଓ ଈଶ୍ୱର) କଳାତ୍ମକ ନିଖୁଣତା ମଣ୍ଡିତ । ଏଇ କବିତା ଅନ୍ୟାନ୍ୟ କେତେକ କବିତା ପରି କବିଙ୍କର ଲେଖି ଲେଖି କବିତା ନୁହଁ । ଏଥିରେ ଭାଷା, ଭାବାବେଗ ଏବଂ ସୁନିର୍ଦ୍ଦିଷ୍ଟ ବକ୍ତବ୍ୟର ଓଜନ ମାପଚୁପ୍, ସୁସମନ୍ୱିତ ।

'ଏବଂ ତୁମ ମୌନତାର
ମେଘନାଦ ପାଚେରୀର ପ୍ରଥମ
ପଥର ଖଣ୍ଡକୁ, ଓ
ଶିଳ୍ପୀର ନଷ୍ଟ ପ୍ରତିମାକୁ
ଚୁମିବା ପାଇଁ
ଏକାନ୍ତ ଅକୁଣ୍ଠ ଆଗ୍ରହ ମୋର ।'

( ଛନୋଟି କବିତା-ଚୁମ୍ବନ )

ଏଠାରେ ଆବେଗ ଶାଣିତ, ଭାଷା ମିତ, ଏବଂ ଭାଷା ଓ ଆବେଗର

ମଧୁର ଭାବସାମ୍ୟ ସଂରକ୍ଷିତ । ତେଣୁ 'ଛଦେନ ଟି କବିତା' ଏକ ଅନବଦ୍ୟ ସର୍ଜନ । 'ଛନୋଟି କବିତା'ର ଶେଷ କବିତା 'ଜଭ' ମଧ୍ୟ ବଡ଼ ପ୍ରାଣବନ୍ତ ଓ ରସାନୁଭୂତ । ନେସଇପର 'ନିଜ ସଂରକ୍ଷରେ' ଏକ ପ୍ରମୂର୍ତ୍ତି କବିତା । ଭାଷା-ଭାବ-ଧ୍ୱନିର ଏକ ନିବୀଡ଼ ସଂଯୋଗ । ଏ କବିତାକୁ ମନ୍ତ୍ରବତ୍ ନିର୍ଯ୍ୟାସୀ କରିଛି । ପ୍ରଶ୍ନବାଚୀରେ ଆରମ୍ଭ ପ୍ରଶ୍ନବାଚୀରେ ଶେଷ ଏ କବିତା ଏକ ସ୍ରୋତ-ଶୀଳ ଅତ୍ମ ନିରୀକ୍ଷଣତାର ପ୍ରବାହକ । 'ଅବିବେକୀ' ରାଧାନାଥଙ୍କ କାବ୍ୟକୃତିର ଆଧାରିତ ହେଲେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଭାବ ସନ୍ଦେଶବାହୀ କବିତା । ସାଧାରଣତଃ ଏପରି କବିତା ପ୍ରାମାଣିକ କବିତା ହୋଇଯିବାର ଆଶଙ୍କା ଥାଏ । ମାତ୍ର କବି ଶ୍ରୀ ଲେଙ୍କାଙ୍କ ପରିବେଶର ସମସ୍ତ ସୀମିତତା ସତ୍ତ୍ୱେ ଏ କବିତା ବଳିଷ୍ଠ ଏବଂ ସ୍ୱୟଂ ସମ୍ପୂର୍ଣ୍ଣ । ଏକ ବାଦ୍ଧାଣୀର ସମସ୍ତ ହସ୍ତ କୁଶଳତା ଏଥିରେ ବିଦ୍ୟମାନ । ଶେଷ କବିତା : 'କ୍ରମଶଃ ବର୍ଷା······' ଗୋଟିଏ ଜଟିଳ ମାନ-ସିକତାର ଉଦ୍‌ବୋଧୀ ପ୍ରକରଣ । ଗୋଟିଏ ବର୍ଷା ମୂଳର ଆବଦ୍ଧତା ଭିତରେ ମନର ପ୍ରତିକ୍ରିୟାକୁ ରୂପାୟିତ କରିବାର ଚେଷ୍ଟା ଏକ ସହଜ କ୍ରିୟା ନୁହେଁ । କବି ଲେଙ୍କା ଏପରି ଏକ ଆହ୍ୱାନ ପରିପ୍ରେକ୍ଷୀରେ ନିଜର ସୃଷ୍ଟିଶୀଳ ସାମର୍ଥ୍ୟ ବଡ଼ କୁଶଳତାର ସହିତ ପ୍ରୟୋଗ କରି ପାରିଛନ୍ତି । ଏ କବିତା ମଧ୍ୟ ଏକ ଉଦ୍ଧୃତିକୁ ନେଇ ଆରମ୍ଭ ହୁଏ—ମୂଷାଧାର ଇତସ୍ତତଃ ଧାବମାନ ମନର ବିକ୍ଷିପ୍ତ ମୁଡ୍ (Mood)କୁ ପିଞ୍ଜରାବଦ୍ଧ କରିବାରେ ସଫଳ ହୁଏ । ଘନଘୋର ମୂହୂର୍ତ୍ତ ମଧ୍ୟରେ ରହସ୍ୟ ରୋମାଞ୍ଚଭରା ଜୀବନ ସତ୍ତାକୁ ଛିନ୍‌ଭିନ୍ ପ୍ରଶ୍ନାତ୍ତୁର ସମୀତ କରିବାର ଦୁଃସାଧ୍ୟ ଚିନ୍ତାଖେଳଡ଼ା ପ୍ରସ୍ତୁତ କରେ । ସର୍ବୋପରି ମୂଳରୁ ଚୂଲିଯାଏ କଳାତ୍ମକ ବିକାଶ, ଚେତ୍ରବୃଦ୍ଧି ନେଇ କବିତାଟି ସ୍ୱଚ୍ଛନ୍ଦରେ ଗତି କରେ ।

ଏ ପରିପ୍ରେକ୍ଷୀରେ ମନେ ହୁଏ କବି ନିର୍ଦ୍ଦିଷ୍ଟ ପ୍ରସ୍ତୁତ ପରିକଳ୍ପନା ନେଇ ଯେଉଁ କବିତାକୁ ରୂପ ଦେଇଛନ୍ତି ତାହା ହୋଇଛି ଅପରୂପ,ଲାବଣ୍ୟମୟ । ମାତ୍ର ଅନେକ ସମୟରେ ବିନା ଚିନ୍ତା ଖେଳଡ଼ାରେ, ବିନା ପ୍ରାକ୍-ପ୍ରସ୍ତୁତିରେ କବି ଲେଖିବାକୁ ଆରମ୍ଭ କରନ୍ତି ଏବଂ ଲେଖା ପଥରେ ଶବ୍ଦକଳ୍ପ, ରୂପକଳ୍ପ, ଆବେଗମଧୁର ରୋମାଣ୍ଟିକ୍ ଯାବତୀୟ ଶବ୍ଦ ସମ୍ଭାରକୁ ଗୋଟେଇ ନେଇ ଏକ

ରଙ୍ଗ ବେରଙ୍ଗ ସବସ୍ଵ ଜୋଡ଼େଇରେ 'କାବ୍ୟ ମୂର୍ତ୍ତି' ଗଢ଼ି ପକାନ୍ତି । ଏ ଅବସରରେ ମୋର ନମ୍ର ବକ୍ତବ୍ୟ ଏହି ଯେ କବି ନିଜର ବଳିଷ୍ଠ କାବ୍ୟ ପ୍ରତି-ଭାକୁ କାଳଜୟୀ କରିବାକୁ ଚାହାଁନ୍ତେ ଲେଖା ଆଗରୁ ସୁଚିନ୍ତିତ ଯୋଜନା ପ୍ରସ୍ତୁତ ଓ ଲେଖିଲାବେଳେ ଭାବ ଅନୁଯାୟୀ ଭାଷା, ଶବ୍ଦକଳ୍ପ ଏବଂ ରୂପକଳ୍ପର ପ୍ରୟୋଗରେ ମନଯୋଗୀ ହେବା ବିଧେୟ ।

ଗ୍ରନ୍ଥର ମୁଦ୍ରଣ ତ୍ରୁଟିହୀନ । ପ୍ରଚ୍ଛଦ ରୁଚିଶୀଳ । ମୂଲ୍ୟ ମହାର୍ଘ ନୁହେଁ । ସର୍ବୋପରି ପ୍ରଫେସର ତ୍ରିଲୋଚନ ମିଶ୍ରଙ୍କ ଭୂମିକା ଆଧୁନିକ କବିତାର ମୋଡ଼ ଉପରେ ଏକ ତାତ୍ତ୍ୱିକ ଅବଲୋକନ ।

**ଶ୍ରୀ ରାମଚନ୍ଦ୍ର ରାଉତ**
ଅଧ୍ୟାପକ, ଇଂରାଜୀ ବିଭାଗ
ଗଙ୍ଗାଧର ମେହେର କଲେଜ, ସମ୍ବଲପୁର ।

## ସ୍ରୋତର ନାମ ଋତ

( ୧୯୭୮ )

[ ସମାସ-୧ମ ବର୍ଷ, ୧ମ ସଂଖ୍ୟା-୧୯୮୧ ]

କବି କମଳାକାନ୍ତ ଲେଙ୍କାଙ୍କ 'ସ୍ରୋତର ନାମ ଋତ' କବିତା ଗ୍ରନ୍ଥଟି ତାଙ୍କ ଉତ୍ତରଣର ଏକ ନିଶ୍ଚିତ ପ୍ରମାଣ । କେବଳ କବିତ୍ୱ ଦୃଷ୍ଟିରୁ ନୁହେଁ, ଦାର୍ଶନିକତା ମଧ୍ୟ । କବିତାର ଭାବ ଭାଷାରେ ପରିପକ୍ୱତା ଏକ ଅତ୍ୟନ୍ତ ସ୍ୱାଭାବିକ ବିଷୟ, ମାତ୍ର କବିତ୍ୱର ଉତ୍ତରଣରେ ଦାର୍ଶନିକତାର ପରିବର୍ଦ୍ଧନ ଲକ୍ଷଣୀୟ ।

ଏହା ପୂର୍ବରୁ କବି ଶ୍ରୀ ଲେଙ୍କାଙ୍କର ଅନ୍ୟୂନ ପ୍ରାୟ ସତୋଟି କବିତା

ଗ୍ରନ୍ଥ ପ୍ରକାଶିତ ହୋଇଛି । ତାଙ୍କ 'ଉତ୍ତରଣ' (୧୯୬୭), 'ମୂରଣ ବିସ୍ମରଣ' (୧୯୭୩), କବିତାର ମୁହଁ (୧୯୬୪), ଓ 'ଅନ୍ତତଃ ନିଷ୍ଟୁପ' (୧୯୬୫) ପ୍ରଭୃତି କେତୋଟି ପ୍ରଧାନ କବିତା ଗ୍ରନ୍ଥରେ ଭାବ ଓ ଭାଷାର ଯେଉଁ ଚମତ୍କାରିତା ଲକ୍ଷଣୀୟ, ଯେଉଁଥିପାଇଁ ଆଧୁନିକ ଓଡ଼ିଆ କବିତାରେ କବି ଶ୍ରୀ ଲେଙ୍କାଙ୍କ ବିଶେଷ ସ୍ଥାନ ରହିଛି ତାହା ନିର୍ଦ୍ଦିଷ୍ଟତଃ 'ସ୍ରୋତର ନାମ ରକ୍ତ' ଗ୍ରନ୍ଥଟି ଅଧିକ ସମୁନ୍ନତ ଅଭିବ୍ୟକ୍ତି ଲାଭ କରିଛି । ସାନ ବଡ଼ ୪୨ଟି କବିତା ଉକ୍ତ ପୁସ୍ତକରେ ସ୍ଥାନ ପାଇଛି ; ସବୁଥିରେ କିନ୍ତୁ ତାଙ୍କ ଶୈଳୀର ବିଶେଷତ୍ୱ ପରିଲକ୍ଷିତ । ଓଡ଼ିଶାର ବହୁ କବିତା ପାଠକ କବି ଶ୍ରୀ ଲେଙ୍କାଙ୍କ ରଚନା ଶୈଳୀର ବୈଶିଷ୍ଟ୍ୟ ବିଷୟରେ ସଚେତନ ।

ଭାଷା ଗ୍ରନ୍ଥନ ଓ ଭାଷା ବିନ୍ୟାସରେ ଏକ ସ୍ୱତଃସ୍ଫୂର୍ତ୍ତ ଅନର୍ଗଳତା ତାଙ୍କ ଶୈଳୀକୁ ପ୍ରକୃତରେ ଏକ ବିଶେଷ ମର୍ଯ୍ୟାଦା ଆଣି ଦେଇଛି । ଉଭୟ ପର୍ଯ୍ୟବେକ୍ଷଣ ଓ ପରିବେଷଣରେ ତାଙ୍କ କବିତା ଅଧିକ କାବ୍ୟିକ । ନିଷ୍ଠାପର କାବ୍ୟିକ ତନ୍ମୟତା ତାଙ୍କ କବିତାର ଏକ ଉଲ୍ଲେଖଯୋଗ୍ୟ ଗୁଣ । ସେ ନିଜେ ଓ ତାଙ୍କର ଅଭିବ୍ୟକ୍ତି କେଉଁଠି କୁଣ୍ଠିତ ନୁହେଁ । ସହଜ ଛଳ ଛଳ ବେଗମାନ କବିତା କୌଣସି କାଳରେ କେବେ କୁଣ୍ଠିତ ମନର ଭାଷା ନୁହେଁ । ପ୍ରାଣର ବ୍ୟାପ୍ତି ଓ ପ୍ରସାରଣଶୀଳତାରେହିଁ କବିର କବିତା ଅଧିକ ପ୍ରାଣପୂର୍ଣ୍ଣ । ଭାବ-ଭାଷାର କବିତା ହେଉଛି କବି ଶ୍ରୀଲେଙ୍କାଙ୍କର କବିତା । ବିଶେଷତଃ ଏହି ଗ୍ରନ୍ଥର କବିତା ଗୁଡ଼ିକ ସେ ଦୃଷ୍ଟିରୁ ଅଧିକ ସଫଳତା ଦାବୀ କରେ । ତାଙ୍କର 'ଫେରିବ ନି' 'କଳାକାହ୍ନୁ' 'ମରଣ ନାଟକ', 'ଆଦିବାସୀ ପଲ୍ଲୀରେ ସକାଳ' ଏବଂ 'ହେମନ୍ତଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର' ଇତ୍ୟାଦି କବିତାଗୁଡ଼ିକ ଏକ ଅନ୍ତର୍ଗତ ଛନ୍ଦ ଗତିକତା ଭିତରେ ଅଧିକ ଭାବ ଗମ୍ଭୀର ଓ ଗୀତିମୁଖର ହୋଇଛି । ଏହି ଅନ୍ତର୍ଗତ ଛନ୍ଦ ଗତିକତା କବିଙ୍କ ନିଜ ଅନୁଭବରୁ ଜାତ; ଯେଉଁ ଅନୁଭବ 'ଜଳନ୍ତା ନିଆଁର ଦୁଃଖ,ଭସ୍ମାଭୂର ବନର ପାହାନ୍ତି', 'ଜୀଅନ୍ତା ଶବର ଲୁହ' ଅବା ନବୁନ ଉତ୍ସବର ମାରବିତାରେ କାନ୍ଦିବା ଭିତରେ ଅଧିକ ଜୀବନ ପ୍ରିୟତାର କାରଣ ହୋଇଛି ଓ ଯେଉଁଥିପାଇଁ ପୁଣି କବି ଅନେକ

ଅନୁଭବର ପ୍ରକାଶ ପରିପ୍ରେକ୍ଷୀରେ ଏକ ବ୍ୟକ୍ତିବାଦୀ ମନର ସ୍ପର୍ଶ ଲେଖିଛନ୍ତି । ପାଠକ ଭିତରେ ଭାବର ସଞ୍ଚାରଣଶୀଳତାରେ କିନ୍ତୁ ଯେଉଁ ଅନୁଭବର ସାଧାରଣୀକରଣ (Generalisation) ଅତ୍ୟନ୍ତ ଦ୍ରୁତ ଓ ସହଜ । କବି ଯେତେବେଳେ ଲେଖିଛନ୍ତି—

> 'ମୁଁ ଏକାନ୍ତ ଭଲପାଏ ଆନନ୍ଦର
> ନୂତନ ପୃଥିବୀକୁ, ଆପଣାର
> ତୃପ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ,
> ଭଲପାଏ ଭଙ୍ଗା ଖେଳନାକୁ,
> ଭଲପାଏ ଦୁଃସ୍ଥ ମଣିଷକୁ । ଭଲପାଏ
> ବଞ୍ଚିବାର ନୂଆ ନୂଆ ଆଶ୍ଚର୍ଯ୍ୟର
> ସ୍ପନ୍ଦିତ ଇଚ୍ଛାକୁ ।''
>
> ( ନିଜ ମଧ୍ୟରେ )

ସେତେବେଳେ ନିଜସ୍ୱ ଅନୁଭବ ତୃପ୍ତି ନିଷ୍ଠା ଓ ସ୍ୱପ୍ନର ଅନ୍ତରଙ୍ଗତ୍ୟ ପ୍ରକଟିତ । ଏହାଦ୍ୱାରା ସେ ବହିର୍ଜଗତ ପ୍ରତି ଉଦାସୀନ ନୁହନ୍ତି କିମ୍ବା ପୃଥିବୀ ସହିତ ନିଜକୁ ସମ୍ପୃକ୍ତ କରିବାରେ ବିମୁଖ ନୁହନ୍ତି । ତାଙ୍କର ପୂରୁଣା କବିତା ସହିତ ପରିଚୟଥିବା ଯେକୌଣସି ପାଠକ ଏହି ଗ୍ରନ୍ଥର କବିତାମାନଙ୍କରେ ଲକ୍ଷ୍ୟ କରିପାରେ—କବି ଶ୍ରୀ ଲେଙ୍କା କ୍ରମଶଃ ଏକ ଅତି ବଡ଼ ସ୍ୱୈରବାଦୀ ଆବର୍ତ୍ତ ଭିତରୁ ଅଜସ୍ର ଅଭିଜ୍ଞତା ନେଇ ସନ୍ଧାନ ଏବା ଅପେକ୍ଷାକୃତ ଅଧିକ ଜୀବନଧର୍ମୀ ଅନୁଭବର ଅଭିବ୍ୟକ୍ତିରେ ଅତ୍ୟନ୍ତ ପ୍ରଗଲ୍ଭ ହୋଇ ଉଠିଛନ୍ତି । ଯେଉଁ ପ୍ରଗଲ୍ଭତାକୁ ପାଠକ ତାଙ୍କ 'ଉତ୍ତରଣ'ରେ ଲକ୍ଷ୍ୟକରେ । ତା'ର ଗାମ୍ଭୀର୍ଯ୍ୟ ଭିନ୍ନ ଏବଂ ସେ କବିତାର ସ୍ୱର ଓ ସମତଳ(Canvas) ମଧ୍ୟ ଭିନ୍ନ ।

ଅଣଇଲଅଟୀୟ କାବ୍ୟଧାରାର ଲିରିକାଲ ପ୍ରକାଶ ଭଙ୍ଗୀ, ସରଳ ଓ ସହଜ ଶୈଳୀ ତାଙ୍କର ଅନ୍ୟତମ ବିଶେଷତ୍ୱ, ଯାହା ତାଙ୍କ ସମସାମୟିକ ଅନ୍ୟ ତରୁଣମାନଙ୍କ କବିତାରେ ଦୁର୍ମିଳ ପ୍ରାୟ । ଶବ୍ଦଗୁଡ଼ିକର ନିର୍ଦ୍ଦିଷ୍ଟ ଅର୍ଥ ପ୍ରକରଣ ବିଷୟରେ ସେ ଯେତେ ସଚେତନ ନୁହନ୍ତି, ଯେତେ ବେଶି ସଚେତନ ସେହି

ଶବ୍ଦଗୁଡ଼ିକ ପଛରେ ଥିବା ମୁଖ୍ୟ ଆବେଗ ଓ ଅପେକ୍ଷାକୃତ ଅଧିକ କାବ୍ୟିକ ଅଭିବ୍ୟକ୍ତି ଯାହାର ଭାବ ସଞ୍ଚରଣଶୀଳତାର ପରିଧି ବ୍ୟାପକ । କବି ଶ୍ରୀ ଲେଙ୍କାଙ୍କ ଭିନ୍ନ ସ୍ୱାଦର ଗୋଟିଏ କବିତାରୁ କିଛି ଅଂଶ ଏଠାରେ ତା'ର ଉଦାହରଣ ରୂପେ ଗ୍ରହଣ କରାଯାଇପାରେ ।

'କହରେ କହ, ଜୀବନଠାରୁ
ମରଣ କ'ଣ ଏମିତି ଭଲ ?
କଅଁଳ ଖରା, ନରମ ଘାସ,
ନେଳି ଆକାଶ, ଲହଡ଼ା ଘାଟ
କଚର ମିଚର ଚଢ଼େଇ ଗୀତ
ସତରେ ମିଛ ?'

'କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର' କବିତାଟି ଶ୍ରୀ ଲେଙ୍କାଙ୍କ ସହଜାତ ପ୍ରଗଲ୍‌ଭତା ଓ ସ୍ୱତଃସ୍ଫୂର୍ତ୍ତ କାବ୍ୟିକତାର ଏକ ଚମତ୍କାର ଶିଳ୍ପରୂପ । କବିତାଟିର ସଂଯୋଜିତ ଶବ୍ଦଗୁଡ଼ିକ ଅଭିଧାନିକ ଅର୍ଥ ପ୍ରକରଣ ବାହାରେ ପୁଣି ଅଧିକ ଅର୍ଥବୋଧୀ । ସେହି ଦୃଷ୍ଟିରୁ ଶ୍ରୀ ଲେଙ୍କାଙ୍କ ଶବ୍ଦ ଯୋଜନାର ବିଶେଷତ୍ୱକୁ ଅନେକ ପାଠକ ଲକ୍ଷ୍ୟ କରିଥାଆନ୍ତି । 'କେଉଁଆଡ଼େ ଯିବା କହ ଚବ ଚବ ପାଣି କାଦୁଅରେ ? ବର୍ଷା, ବର୍ଷା—ଯାହା ଆମ ଜୀବନକୁ ଫୁଲାଇ ଫଳାଇ/ସୁନ୍ଦର କରିବା କଥା ଲୋକସିଦ୍ଧ । ଚଣ୍ଡୀଦାସ, ଲୋକ ନିନ୍ଦା ପରେ/ ବସନ୍ତ ଝାଡୁଛି କରେ ଝକମକ ଫୁଟିଥିବା ଭକ୍ତର ଫଗୁଣୋ/ବର୍ଷା ବି ଜଳାଏ ନିଆଁ କୁତ୍ସିତ୍ସା ଓ ଅନ୍ଧକାର ସାଇତା ଦୁଃଖରେ ।'' ଆଦି ଧାଡ଼ିଗୁଡ଼ିକ ସେଇ ଉତ୍ତୁଳା ଆବେଗର ଯେ ଭାବଭାଷା ଏଥିରେ ସନ୍ଦେହ ନାହିଁ ।

ଆମର ପୁରୁଣା ସାଇତା ଶବ୍ଦଗୁଡ଼ିକ କବି ଶ୍ରୀ ଲେଙ୍କାଙ୍କୁ ନୂତନ ଶକ୍ତି ଓ ସୌନ୍ଦର୍ଯ୍ୟ ଆଣି ଦେଇଛନ୍ତି । ଏହାଦ୍ୱାରା ଓଡ଼ିଆ ଶବ୍ଦ ଭଣ୍ଡାର ଖୁବ୍ ସମୃଦ୍ଧ ଓ ତା'ର ନାନା ସମ୍ଭାବନା ରହିଛି—ଏହି 'ସ୍ରୋତର ନାମ ରୀତି' କବିତା ଗ୍ରନ୍ଥଟି ତା'ର ସୁସ୍ପଷ୍ଟ ପ୍ରମାଣ । ଗୋଟିଏ ନିର୍ଦ୍ଦିଷ୍ଟ କେନ୍ଦ୍ରରୁ ଦୂରତମ

ପରିଧି ଆଉ ଅତ୍ୟନ୍ତ ଦ୍ରୁତ ଗତିରେ ନିଜ ଅନୁଭବର ଭାବ କେନ୍ଦ୍ର ଆଡ଼କୁ ସତ୍ୟର ସନ୍ଧାନ ପାଇଁ ଗତି କରିବାରେ ତାଙ୍କ କବିତ୍ୱ ଅତ୍ୟନ୍ତ ଗତିଶୀଳ, ଯେଉଁଥି ପାଇଁ ଆଲୋଚିତ ଗ୍ରନ୍ଥର ଭାବ ସଂଚରଣଶୀଳତା ଓ ଦ୍ରୁତ କେନ୍ଦ୍ରା-ଭିମୁଖିନତା—ଏ ଉଭୟର ସମନ୍ୱିତ ସଫଳତା ପରିଲକ୍ଷିତ ହୁଏ । 'ସାପଟିଏ ଜନ୍ମିଲେ ସଞ୍ଜ ହସିଦିଏ/ତରାଟିଏ ଚେଇଁଲେ ସଞ୍ଜ ଲୁଚିଯାଏ/ବିଲୁଆଟିଏ ଭୁକିଲେ ସଞ୍ଜ ହଜିଯାଏ/କେଉଁ କାଳାନ୍ତରର ଅନ୍ଧାରିଆ ଜିଭରେ ।' ଧାଡ଼ିଗୁଡ଼ିକ academic verse ନୁହେଁ ବା ଅନର୍ଗଳ ବକ୍ତୃତା ପ୍ରବଣତା ( Long speech habit )ଭିତରେ ବହୁ ଭାବନା ବହୁ ଭାଷାର ବ୍ୟଞ୍ଜିତ ସମଷ୍ଟି ନୁହେଁ, ବରଂ ନିଜସ୍ୱ ଅନ୍ତରୀଣ ତନ୍ମୟତାର ବିଦଗ୍ଧ ଭାଷାଭିବ୍ୟକ୍ତି ।

ମହାକାଳର ପ୍ରବାହମାନତା ଭିତରେ ସେ ନିଜ ସମ୍ପର୍କରେ ନିଜର ଅନୁଭବକୁ ପରୀକ୍ଷା କରନ୍ତି । ଆପଣାର ଚେତନଶୀଳତା ଭିତରେ ଯେଉଁ ସତ୍ୟର ସନ୍ଧାନ କରନ୍ତି ତାହା ଜୀବନର ନିର୍ଯ୍ୟାସ ନୁହେଁ, ଜୀବନର ସମଷ୍ଟି ନୁହେଁ, ବରଂ ନିଜର ବ୍ୟକ୍ତିକ ସୁଖ ଦୁଃଖର ପରିଧିରୁ ଦୂରତମ ଦିଗନ୍ତରୁ ସବିଶେଷ ଦେଖିବାର ନିଷ୍ଠା ତାଙ୍କର 'ଫେରିବାଲା', 'ଦୁଆର', 'ଲଢ଼େଇ' ପ୍ରଭୃତି କବିତାଗୁଡ଼ିକ ସେହି କେନ୍ଦ୍ରଭାବର ପ୍ରୋତ୍ସାହନରୁ ସୃଷ୍ଟି । ଏହି କବିତାମାନଙ୍କରେ କବି ଶ୍ରୀ ଲେଙ୍କାଙ୍କ ବ୍ୟକ୍ତିକେନ୍ଦ୍ରିକ ଅନୁଭବର ସାଧାରଣୀକରଣ କଳାତ୍ମକ ଚମତ୍କାରିତାର ପ୍ରମାଣ । ସେ ପ୍ରକୃତରେ ସବୁବେଳେ ତାଙ୍କ ନିଜ ଅନୁଭବ ପ୍ରତି ଯେତେ ଅନୁରକ୍ତ ସେତେ ବେଶି ଭାଷା ଓ ଅଭିବ୍ୟକ୍ତି ପ୍ରତି ନୁହେଁ ।

ଏଇଥିପାଇଁ ତାଙ୍କର ସମସାମୟିକମାନଙ୍କ ମଧ୍ୟରେ ତାଙ୍କର ନିଷ୍ଠା ଭିନ୍ନ ପ୍ରକାରର । ସେ ନିଜେ ଲେଖିଛନ୍ତି—'କବିତା ସୃଷ୍ଟି, ତାର ପ୍ରଶସ୍ତି, ତା'ର ବ୍ୟାପ୍ତି ଓ ମହାମ୍ନତା ପାଇଁ ଆଉ କିଛି ଥାଉ ବା ନ ଥାଉ, ଲୋଡ଼ା ଯୋଡ଼ାଏ ବିଶ୍ୱସ୍ତ ଆତ୍ମମୁଗ୍ଧ ହୃଦୟ । ଏ ହୃଦୟ ପାଇଁ ହୃଦ୍ୟତା ଆପଣ ଛୁଏଁ ଆସେ, ଆପେଆପେ କନ୍ଧିଟି ତା' ନିଜ କବି ସତ୍ତାର ଭିତର ଘର ଦୁଆରକୁ ଭେଟିଯାଏ । କେତେବେଳେ କେଉଁଠିକରେ ଏ ଦୁଆର ଦର୍ଶନ ଘଟେ ତା' କେବଳ

କବିତାକୁହିଁ ଜଣା । ତେଣୁ କବିତାଇଁ ମୋ ଦୃଷ୍ଟିରେ ଶୁଦ୍ଧ ଆତ୍ମାର ଉଚ୍ଚାରଣ, (ଯଦିଓ ସାଧାରଣ ଅର୍ଥରେ ଆତ୍ମା ଶୁଦ୍ଧ ) ।

ଆଲୋଚିତ ପୁସ୍ତକର ଅନେକ ଧାଡ଼ି ରହିଛି ଯେଉଁଥିରେ ଅତ୍ୟଧିକ ବ୍ୟକ୍ତି ମୁଖ୍ୟତା (Extreme subjectivity)ର ଅନୁଭବ ରହିଛି । କେଉଁଠି ଆଂଶିକ ଭାବେ ଅବା କେଉଁଠି ପରିପୂର୍ଣ୍ଣ ଭାବେ । ଏହି ଅନୁଭବ କେଉଁଠି ପୁଣି ଶରୀର ଚେତନାରେ ପୀଡ଼ିତ ଅବା କେଉଁଠି ପୁଣି ଅତ୍ମାର ବ୍ୟାପ୍ତି ଓ ମହା-ନୁଭବତାରେ ପ୍ରକଟିତ । ଏହି ସମସ୍ତ ଚିନ୍ତାଧାରାର ଗୁମ୍ଫନ (Exquisite union of thought ) ନିର୍ଦ୍ଦିଷ୍ଟ ଭାବେ କିନ୍ତୁ କବିଙ୍କ ପ୍ରତିଶ୍ରୁତିବାଦୀ କାବ୍ୟା-ନୁଭବରୁ ସଂପ୍ରେରିତ । ମଣିଷର ଜୀବନଚକ୍ର (whole human cycle) ସମ୍ପର୍କିତ ସଚେତନତା କବିଙ୍କର ଗଭୀର ତଥା ତୀବ୍ର ଅନୁଭବର ବିଷୟ । ତାଙ୍କ କବିତାରେ ଅନେକ ଭଗ୍ନ ବା ଖଣ୍ଡିତ ଚିତ୍ରର ପରିକଳ୍ପନା ଉଲ୍ଲିଖିତ ମୌଳିକ ଅନୁଭବରୁହିଁ ପ୍ରସ୍ଫୁଟିତ ହୋଇ ଆସିଛି । 'ସୃଷ୍ଟିର ଅଦୃଷ୍ଟି କୀଟେ କଳ୍ପନାର ସଙ୍କଟ ଭିତରେ, ସ୍ଥିତିର ଅସ୍ଥିତି ହିଁ ଜୀବନକୁ ଠିଆ କରାଇବା' ଇତ୍ୟାଦି ଧାଡ଼ିରେ ଉଲ୍ଲିଖିତ ପ୍ରତିଶ୍ରୁତିବାଦୀ କାବ୍ୟାନୁଭବ ଚିତ୍ର ଯାହା କବିଙ୍କ ଚେତନା ସ୍ତରରେ ଏକ ବିପୁଳ ପ୍ରାଣବାନ୍ ସତ୍ୟ ବା ଉପଲବ୍ଧିର ବିଷୟ । 'ଲଢ଼ିବାର ପଣ ଜୀଇବାର ଦଂଶନରେ ହୁଏ ଉଗ୍ର' ଅବା 'ମୋ କବିତା ଦୁଃଖ ସୁଖ, ପ୍ରୀତିମୟ ମୁହୂର୍ତ୍ତର କଳ୍ପାନ୍ତର କ୍ଷୀର' ଆଦି ଧାଡ଼ିମାନଙ୍କରେ କବିଙ୍କ ଜୀବନ ସମ୍ପର୍କିତ ଉପଲବ୍ଧିକୁ ବିଚ୍ଛୁରିତ କରିବାର କଥା । ରୋମାଣ୍ଟିକ୍ କବିମାନଙ୍କ ପରି ସେ ଦୁଃଖର ବିଳାସ କରି ନାହାନ୍ତି । ଦୁଃଖ ତାଙ୍କ ପାଇଁ ଅତି ବଡ଼ ଏକ ଆବଶ୍ୟକତା । ଦୁଃଖ ସମଷ୍ଟିଗତ ଜୀବନର ଏକ ଅଂଶ । ବଞ୍ଚିବାର ଏକ ପ୍ରାଣବାନ୍ ବିପୁଳ ସତ୍ତା ।

'ସ୍ରୋତର ନାମ ରିତ' କବିତା ଗ୍ରନ୍ଥର କବି ଶ୍ରୀ ଲେଙ୍କାଙ୍କ ଅନ୍ୟ ଏକ କୃତିତ୍ୱ ଲକ୍ଷ୍ୟ କରିବାର କଥା ଯେ ତାଙ୍କର ସମସ୍ତ ଆବେଗିକ ପ୍ରଗଲ୍‌ଭତା ସତ୍ତ୍ୱେ ଭାବନାଶ୍ରୟୀ ସହିତ ସମନ୍ୱିତ କରି ନିଜସ୍ୱ ବୌଦ୍ଧିକ ଅନୁଭବର

ପ୍ରାଜ୍ଞିକ ସ୍ରୋତ (Intellectual stream) କବିତାଗୁଡ଼ିକୁ ଉଭୟ ମହିମ୍ନ ଓ ଗୁଢ଼ପ୍ରୟର କ୍ରିୟା ପ୍ରକ୍ରିୟା ଭିତରେ ଅଧିକ ହୃଦ୍ୟ ଓ ଚେତଶୀଳ କରିଛି ।

ଅଧ୍ୟାପକ **ଡକ୍‌ଟର ଆନନ୍ଦ ସାହୁ**

# ସ୍ରୋତର ନାମ ରତ

( 'ଇସ୍ତାହାର'-୨ୟ ବର୍ଷ-୧ମ ସଂଖ୍ୟା-୧୯୬୯ )

'ନିସ୍ପୃହ ନର୍ମମ ଏକ ମଣିଷ ମୁଁ ଦୟାର୍ଦ୍ର, ଲଜିତ
ଓ ଦ୍ରବୀଭୂତ ମୋ' ପୁରୁଷକାର ।
ମୋ' କବିତା ଦୁଃଖ-ସୁଖ,
ପ୍ରୀତିମୟ ମୁହୂର୍ତ୍ତର କଲ୍ୟାଣୀର କ୍ଷୀର ।'

( ନିଜ ସପକ୍ଷରେ )

'ସ୍ରୋତର ନାମ ରତ' (୧୯୭୮) କବିତା ସଂକଳନଟି କବି ଶ୍ରୀ କମଳାକାନ୍ତଙ୍କର ଅଷ୍ଟମ ଗ୍ରନ୍ଥ । କବି ଚେତନାର ଏକ ନମ୍ର ସଂପ୍ରସାରିତ ଓ ନମ୍ର ପରିଣତ ସ୍ୱର ଏଥିରେ ଉପଲବ୍‌ଧ । ଅଖଣ୍ଡ ଓ ସାର୍ବଭୌମ ସମୟ ସଚେତନତା, ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ବୈକଲ୍ୟ, ସାର୍ବିକ କଲ୍ୟାଣ ଚେତନା ବ୍ୟକ୍ତିର ଆଧ୍ୟାତ୍ମିକ ନିଃସଙ୍ଗତା, ନିଭୃତ ଈଶ୍ୱରାନୁଭବ ଓ ନିରାସକ୍ତ ସନ୍ନ୍ୟାସର ସ୍ୱରକୁ ନେଇ କବିତାଗୁଡ଼ିକର ଅନ୍ତଃମଣ୍ଡଳ ଗଠିତ । 'ସ୍ରୋତର ନାମ ରତ'ରେ ବିଭିନ୍ନ ସମୟରେ ରଚିତ ମୋଟ ୪୬ଟି କବିତା ସଂକଳିତ ଓ ଜୀବନାଭୂତିର ବିବିଧ ସ୍ୱରାନୁରଣନ ଏସବୁର ବୈଶିଷ୍ଟ୍ୟ । ଯଦିଓ ଗ୍ରନ୍ଥଟିରୁ ଏକ ସାମଗ୍ରିକ ଓ ଅବିଭକ୍ତ କାବ୍ୟ ଚେତନାର ଆସ୍ୱାଦନ ସହଜ ନୁହେଁ, ତଥାପି ସବୁ କବିତାର ଅନ୍ତରଙ୍ଗ ଅଧ୍ୟୟନ ପରେ ସଚେତନ ପାଠକଙ୍କ ନିକଟରେ କବିଙ୍କର ମୁଖ୍ୟ କାବ୍ୟାବେଶଟି ସ୍ପଷ୍ଟ ଧରା ଦେଇଥାଏ ।

॥ କବି କମଳାକାନ୍ତ

କବି କମଳାକାନ୍ତଙ୍କ କବିତାରେ ଦୁଇଟି ବିଶ୍ୱ—ଗୋଟିଏ ବ୍ୟକ୍ତି ବିଶ୍ୱ ଓ ଅନ୍ୟଟି ଗୋଷ୍ଠୀ-ବିଶ୍ୱ । ତାଙ୍କ କବିତାରେ ଯୋଡ଼ିଏ ମଣିଷ ଆତଯାତ ହୁଅନ୍ତି । ଜଣେ ସେ ନିଜେ ଏକ ନିର୍ଦ୍ଦିଷ୍ଟ ପେଶାବୃତ୍ତିର ମଣିଷ କମଳାକାନ୍ତ ଏବଂ ଅନ୍ୟ ଜଣେ କବି କମଳାକାନ୍ତ । ଜଟିଳତା, ଈର୍ଷା, ସନ୍ଦେହ, ଲୋଭ, ପ୍ରବଞ୍ଚନା, ନପଡ଼ୋଶୀ ମନୋଭାବ ଓ ବିଶ୍ୱାସଘାତକତାରେ ସାଂପ୍ରତିକ ସମାଜ ରୁଧିରାକ୍ତ । କବି ତା'ର ତୃତୀୟ ଚକ୍ଷୁ ନେଇ ପ୍ରତ୍ୟକ୍ଷ କରୁଛି ତା' ଆଗରେ ଫାଶିଦିଆ ବରଗଛ ଓ ସହରକୁ ଅନ୍ଧାର ଘେରିଛି । ସୀମାହୀନ କ୍ରମଶଃ ଯନ୍ତ୍ରଣାରେ ବ୍ୟକ୍ତି ମଣିଷଟି ଦଗ୍ଧମଗ୍ନ । ମୂଷାମାରି ଭଣଭଣ, ଅଧାଜଳା ମଡ଼ର ଗନ୍ଧରେ ସେ ଅଣନିଃଶ୍ୱାସୀ । ସମୟର ଲୁଣି ହାଓ୍ୱାରେ ଭଲ ପାଇବାର କଦମ୍ବଡ଼ାଳ ଶୁଖିଯାଇଛି । 'ଯେଉଁଆଡ଼େ ଗୁହାଁଲେଇଁ ଶବ୍ଦର ଝମକ ବାଜେ । ରକ୍ତମୁଖା ଯୋଗିନୀର କଙ୍କାମୁଣ୍ଡ; ନାଲି ଛିଟ × × × ପବନର ସୂଅ କାଟି ଉଡ଼ାଣିରେ ଭାସେ ।' ( ଅଧୀଶ୍ୱର ) । 'ମଣିଷ', 'ଜୀବନ', 'ଶ୍ଳୋକ', 'କଳାକାହ୍ନୁ' 'ଅଜ୍ଞାତବାସ' ଏବଂ 'କ୍ରମଶଃ ବର୍ଷା, ବ୍ୟକ୍ତି ମନ ଓ ଈଶ୍ୱର' ପ୍ରଭୃତିରେ କବିଙ୍କର ଜୀବନ ଓ ମଣିଷ ସମ୍ପର୍କୀୟ ଅନୁଭୂତି ଅନ୍ତରଙ୍ଗ । ଗୋଟିଏ କିସମର ମଣିଷ 'ଯାହାଙ୍କ ମୁଣ୍ଡରୁ ଛଳପା ଯାଏ ଖାଲି ଗୁଜବାଣ ମେଣ୍ଟିବାର/ଲଢ଼େଇର ଜଳ ମିଟମିଟା/ହାଡ଼ୁଆ ଶବ୍ଦ' (ଲଢ଼େଇ) ଏବଂ ଅନ୍ୟ କିସମର ମଣିଷ ଯେ କି 'ଦୋ ମୁଣ୍ଡିଆ ସାପ; କେଞ୍ଚୁଆ ପରି ମନ, ଚେଗୁ ପରି ବିବେକ ଓ ଛଞ୍ଚାଣ ପରି ଇଚ୍ଛା ।' ପ୍ରଥମ କିସମର ମଣିଷ ଦେହରେ ଟାଁ । ମାଟିର ସରଳତାର ସ୍ତୂପ ଓ ଦ୍ୱିତୀୟ କିସମର ମଣିଷ କୃତ୍ରିମ ଛଳନା ଓ ଜଟିଳ ସନ୍ଦିଗ୍ଧ ବ୍ୟକ୍ତି ମାନସର ପ୍ରତିଭୂ । ମଣିଷ ଓ ଜୀବନ ହବୁର ମଧ୍ୟ ଦେଇ ସମୟର ସନାତନ ପ୍ରବାହ । ଏହି ସମୟର ମୁହଁ ପୁଣି ବ୍ରଣମୟ ଏବଂ ଏବଂ ଥପ୍ ଥପ୍ ରକ୍ତକ୍ଷରେ ତାର ଅଣ୍ଟା, ଜଂଘ ଏବଂ ଲୋମଶ ପାଦରୁ ।' (ଅଜ୍ଞାତବାସ) ବ୍ୟକ୍ତି ମଣିଷର ସ୍ୱତନ୍ତ୍ର ଦଶା ନାହିଁ । ସେ ସମୟ ମଧ୍ୟରେ ନିର୍ବିକାର ଓ ନିଷ୍କ୍ରିୟ । ଏପରିକି ସମୟର ଅନନ୍ତ ସ୍ରୋତରେ ଈଶ୍ୱର ବି ତନ୍ଦ୍ରା ବିଜଡ଼ିତ । ସମୟ ଜନ୍ମ ଦିଏ, ଜରା ବ୍ୟାଧି ଦିଏ, ଓ ପୁଣି ଟୋଇଟାଣି ବେଳ ହେଲେ ରଥ ଅଶ୍ୱର ଖୁରା ଧରି ଝୁଙ୍କି ଦିଏ । ଏହି ଧରାବନ୍ଧା ନିର୍ଦ୍ଦିଷ୍ଟ

ଅଷ୍ଟରେ ଆବର୍ତ୍ତିତ ଜୀବନ ପ୍ରତି କବିଙ୍କର ପ୍ରତିକ୍ରିୟା ତ୍ରିବିଧ । (୧) ଜୀବନ ପ୍ରତି ବୀତସ୍ପୃହତା, (୨) ଜୀବନ ପ୍ରତି ଅନାସକ୍ତି ଓ (୩) ଜୀବନ ଅଙ୍ଗୀକାର । ‘ଅନ୍ତ ବୁଜଳା ରକ୍ତ, ହାଡ଼ଯାଉ/ପୋକ ମାଛିର ଶୁଣ୍ଢ ଉଠାଉ ଖାଉଚି’ । ଏବଂ ‘ଖେଟେନାଡ଼ଙ୍କୁ ଖୁମ୍ପୁଥିବା କୁଆର ବିକଟ ଶବ୍ଦ’ (କମଳାକାନ୍ତ)— ଏହି ଉପଲବ୍ଧିରୁ ଜୀବନ ପ୍ରତି କବିଙ୍କର ବୀତସ୍ପୃହତାର ଜନ୍ମ । ସେଥିପାଇଁ ବଡ଼ ଶ୍ଳେଷପୂର୍ଣ୍ଣ କଣ୍ଠରେ ସେ କହନ୍ତି—‘ଆମେ ସବୁ ଯିବା ଆସ/ଦପୁମାପୁ ଜୀବନ ଗଳାରେ ବଞ୍ଚିବାର ଟେଣ୍ଡର ଦେଇ ଆଜି ପରଖିବା ।’ (ମରଣ ଜାତକ) କବିଙ୍କର ଜୀବନ ପ୍ରତି ଅନାସକ୍ତି ଜନ୍ମିଛି ଜୀବନ ଅନୁଭବର ଅନ୍ୟ ଏକ ସ୍ତରରେ । ଏ ସ୍ତରର ଉପଲବ୍ଧି ‘କେ କାହାର? କେହି ନୁହେଁ ଏକାନ୍ତ ନିଜର !’ ବା ମୁଁ ସମ୍ପର୍କହୀନ’ର ଉପଲବ୍ଧି । ସଚରାଚର ଛଳନା, କ୍ଷମତା ଓ ଧନଆଦିର ମୋହରୁ ଜାତ ହିଂସ୍ର ପାଶବିକତା, ଦିଆ ନିଆ, ଫେର ବଦଳର ପାରିବାରିକତାରେ ସଂସାରୀ । ମଣିଷଟି ନିଷ୍ଠୁର ଭାବେ ପୀଡ଼ିତ । ସୁତରାଂ ସଂସାର ପ୍ରତି ଏକ ନିରାସକ୍ତ ଗୈରିକ ସନ୍ନ୍ୟାସୀର ସ୍ୱରହିଁ ଏହାର ଅନିବାର୍ଯ୍ୟ ପରିଣତି । ‘କ୍ଷେତରେ ବଢ଼ଲି ଆସୁଥିବା ଫୁଲ କଣ୍ଠିର ଗୁମାନ, ଜୁଡ଼ା ସଜାଉଥିବା ଯୁବତୀ, ଜଟର ମିଟର ଟଣେଇ ଗୀତ, ଉଡ଼ନ୍ତା ମେଘର ଘୁଙ୍ଗୁର, କଅଁଳ ଖରା, ରେଶମୀ ଘାସ, ନେଳିଆ ଆକାଶ ଓ ଲହଡ଼ା ଘାଟ’ ଉପରୁ ମୋହ ଏଡ଼ାଇ ନପାରି କବି ପରିଶେଷରେ ଜୀବନକୁ ଅଙ୍ଗୀକାର କରି ନେଇଛନ୍ତି । ଏ ପର୍ଯ୍ୟାୟରେ ଜୀବନ ପ୍ରତି କବିଙ୍କର ଅପ୍ରମାଦ ମୋହ । ‘କହ ରେ କହ, ଜୀବନଠାରୁ ମରଣ କ’ଣ ଏମିତି ଭଲ ?’ (ଭିନ୍ନ ସ୍ୱାଦର ଗୋଟିଏ କବିତା) । ଜୀବନ ପ୍ରତି କବି ଦୃଷ୍ଟିର ଏହି ତିନୋଟି ପର୍ଯ୍ୟାୟ ମଧ୍ୟରୁ ପ୍ରଥମ ପର୍ଯ୍ୟାୟରେ କମଳାକାନ୍ତ ଏକ ଶ୍ରେଷାଦାର ମଣିଷ, ଦ୍ୱିତୀୟ ପର୍ଯ୍ୟାୟରେ ଜଣେ ଦୁଃସ୍ଥ ସଂସାରୀ ଓ ଶେଷ ପର୍ଯ୍ୟାୟରେ ଜଣେ ଅନୁରାଗୀ କବି ।

‘ସ୍ରୋତର ନାମ ଋତୁ’ରେ ମୃତ୍ୟୁ ତାତ୍ପର୍ଯ୍ୟହୀନ । କେଉଁଠି ମୃତ୍ୟୁ କବିଙ୍କଦ୍ୱାରା ଶ୍ଳେଷବିଦ୍ଧ ତ କେଉଁଠି ମୃତ୍ୟୁର ଦପୁମାପୁ ଅସହାୟତା ପ୍ରତି କବି ପ୍ରାଣରେ କୋମଳ ସହାନୁଭୂତି । ମୃତ୍ୟୁକୁ ‘ଆହା, ବିଲେଇଟିଏ, କାଣୀ ବିଲେଇ’ ବା ‘ଆସ ଗୁରମିନାର ଠାଣି ଠାଣି ମରଣକୁ ତଲାସ କରିବା’ କହିବା

ବେଳେ ମୃତ୍ୟୁର ସକଳ ହିଂସ୍ରତା ସତ୍ତ୍ୱେ ବି ତାର ଅସହାୟତା ପ୍ରତି ପଥାନ୍ତରେ କବି ପ୍ରାଣର ସମବେଦନା ଓ ଖେଳୁଆଡ଼ ମନୋବୃତ୍ତି ବିମୂର୍ତ୍ତ । 'ସ୍ରୋତର ନାମ ରାତ୍ର'ରେ ଦୈହିକ ପ୍ରେମ ସନ୍ଦର୍ଭ ଅନୁମ୍ଭିତ ନୁହେଁ, ତଥାପି ଗୌଣ । 'ଯୁବତୀର ଅକାତ କାତ ହୃଦର ଠିକଣା'ରେ ହଜିଯିବା ବା ତା' ଦେହର ଧୂଳିରେ ଧୂସରିତ ହେବା'ର ମୋହ ମଧ୍ୟରେ ଦେହାତୀତ ଚେତନାର ଉତ୍ତାପ ସଂକ୍ରମିତ । ଯୁବତୀର ସୁଗୋଲ ମୁହଁରେ ଚକାଚୌଦ୍ଧ ବ୍ରହ୍ମାଣ୍ଡର ଗ୍ଲାନି ଏବଂ ଯୁବତୀ ଦେହର ଧୂଳିରେ ବାଇଶି ପାହାଚର ପ୍ରତିବିମ୍ବନ । ଉଭୟ ପ୍ରେମ ଓ ମୃତ୍ୟୁର ଚୈତନିକ ଉପଲବ୍ଧି ଭିତରେ ସବୁଠି ଦେହ ଆଉ ବିଦେହର 'ମତେ ଛୁଁ, ମତେ ଛୁଁ ଖେଳ ।'

ଆଲୋଚ୍ୟ କାବ୍ୟ ଗ୍ରନ୍ଥର କବିଙ୍କ ପାଇଁ ହୁଏତ ଏମିତି ଗୋଟିଏ ଗୋଟିଏ ମୁହୂର୍ତ୍ତ ଆସିଛି, ଯେତେବେଳେ କି ଏକ ସାର୍ବିକ କଲ୍ୟାଣ ଚେତନାରେ ତାଙ୍କ କବି ପ୍ରାଣ ଶତମୁଖ ହୋଇ ଉଠିଛି । ସାବ୍‌ଜା ଆକାଶ ତଳେ ଛଟପଟ ହେବାର ସମୁଦ୍ର କୂଳ ଲଂଘୁ ନାହିଁ (ଚଢ଼େଇ) । ତେଣୁ କବି କଣ୍ଠରେ 'ସକାଳ ହେଲଣି ଉଠ'ର ଆହ୍ୱାନ ଗୋଷ୍ଠୀ ମଣିଷ ପାଇଁ କମ୍ ଆତ୍ମ ବିଶ୍ୱାସ ସଂଚରି କରୁନାହିଁ । କମଳାକାନ୍ତଙ୍କ କବିତାରେ ମୁହୂର୍ତ୍ତର ଖଣ୍ଡିତ ଅଭିବ୍ୟକ୍ତ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ପ୍ରତ୍ୟେକ ଅଭି-ବ୍ୟକ୍ତିରେ ପୁଣି ଦୃଷ୍ଟିର ସ୍ୱାତନ୍ତ୍ର୍ୟ ଓ ଅନୁଭୂତିର ପୃଥକ୍ ଜଗତ ବିକୀର୍ଣ୍ଣ । ସେଉଁ କବିଙ୍କ ନିକଟରେ ସମୟର ଦୁର୍ନାମ ଅଛି, ବିତିଲି ଝିଅକୁ, ବଉଳ ଗଛ ଓ ଚଳନ୍ତା ଟାଉନ୍କୁ ଠେଲିଦେଲି ତା' ଚକ ଅଖର ମୁଣାରେ ଭର୍ତ୍ତି କରେ ବୋଲି ସେହି କବିଙ୍କ ପାଇଁ ସୁବାସିତ ସମୟର ସମ୍ଭାବନା ବି ରହିଛି । ସମୟ ତା'ର ବିଷଣ୍ଣ ମୁଖରେ କେବଳ ମାଡ଼ ଦେବାର, ଦଳି ଦେବାର ପ୍ରବୃତ୍ତି ଚରିତାର୍ଥ କରୁନାହିଁ; ବେଳେବେଳେ ସେ ଅସୁଛି ମୋଡ଼ ବଦଳାଇ ଅନ୍ଧାରର ବେହୁ ପଟେ ଓ ନର୍ଦ୍ଦମାର ଦଉଡ଼ଣିକୁ ଫିଙ୍ଗି ଦେଇ ଉଆରି କରୁଚି ଅତରର ତରଳ ଗୃହମା ।

ଆଲୋଚ୍ୟ କବିତା ପୁସ୍ତକର କାବ୍ୟ ପୁରୁଷଟି କେବଳ ମୁଖଶାଳାର

ମତ ଅଭିମତ ଭିନ୍ନମତ ।

ମଣିଷ ନୁହେଁ । ଭିତର ଘରର ଝରଅଁ ବା କାବ୍ୟ ପୁରୁଷର ଅନ୍ତର୍ଗଣ 'ମୁଁ' ଟି ଏଠି ଗୁରୁତ୍ୱପୂର୍ଣ୍ଣ । ଏହି ଅନ୍ତର୍ଗଣ 'ମୁ' ଟିକୁ ଘେରି ରହିଛି ଏକ ଆଧ୍ୟାତ୍ମିକ ନିଃସଂଗତା । ଗାଢ଼ ନୀଳ ରାତିର କାନ୍ଦଣା ପରି ତା' ସୁପ୍ତ ଚେତନାର ପ୍ରାର୍ଥନା-ସ୍ୱର ସେ ଶୁଣେ (ତୀର୍ଥ କ୍ଷେତ୍ର) । ଜୀବନର ସକଳ ସମ୍ଭାବନା, ମୃତ୍ୟୁର ସକଳ ସମ୍ଭାବନା Every one carries inside him his own death— ରିଲ୍‌କେ) ମଣ୍ଡେ ବି କାବ୍ୟ ପୁରୁଷର ବନ୍ଧନ ଆଖିରେ ବହୁ କାଳର ପାରମାର୍ଥିକ-କ୍ଷୁଧା । ତା' ସମ୍ଭାବନାର ଦୁଆର ବଂଧରେ ଝୁଲି ପଡୁଛି କଳାପର୍ଦ୍ଦା, ଉଆସ ଅନ୍ଧାର, ତଥାପି ସେ ଆଶା ହରାଇ ନାହିଁ । ଦୁଃଖ ତା' ପାଇଁ ପରମ ଏବଂ ଦୁଃଖର ପୁଷ୍ପିତ ଶବାଧାର ସଜେଇ ସେ ତାକୁ (The Supreme Being) ଅପେକ୍ଷା କରିଛି । 'ତାର ଜନ୍ମ ନାହିଁ ଆସିବା, ତା'ର ଉତ୍ତର ନାଇଁ ଢେଉ ଢେଉକା ସମୁଦ୍ରର ନାଦରେ ଅଦୃଶ୍ୟ ପାଦ ଶବ୍ଦ × × × ସେ ଆସିବଇଁ ଆସିବ ।' (ଅପେକ୍ଷା କେବଳ) । ଝନେ ନମଶଃ ବର୍ଷାରେ ବିବ୍ରତ ମନ ନେଇ ବସିଥିବା ବେଳେ କବିର ଅନ୍ତରଙ୍ଗ ଅନୁଚିନ୍ତନରେ ଈଶ୍ୱର ଉପଲବ୍ଧି ଆସିଛି ଏହିପରି : ମୁଁ ଯେମିତି ପ୍ରତିଦିନ ରୁଟିନ୍ ସମାପ୍ତ କରୁଛି/ସେମିତି ହୁଏତ ପ୍ରଭୁ ତାଙ୍କ ନିତ୍ୟକର୍ମ କରୁଥିବେ/ହୁଏତ ମୋ ଭଳି ବସି କେତେବେଳେ କଫି ପିଉଥିବେ ।'

କବିଙ୍କର ସଧ ବଳିଛି,— ସେ ଭାବିଛନ୍ତି 'ମୁଁ' ଡେବେ ଅନୁରୋଧ କରିବି କି ଭଗବାନ ଆଜିର ବର୍ଷାରେ ? କଦଳୀ ଭେଳାରେ ଯିବା ମଫସଲ ଗାଁ ବୁଲା/ନୌକା ଓ ଷ୍ଟିମର ସବୁ ଦଦରା ଓ ଅକାମି ହୋଇଛି ।' ଏହି ପଙ୍‌କ୍ତିରେ କବି ଚଳମାନ ସଭ୍ୟତାକୁ ଯେମିତି ଆକ୍ଷେପ କରିଛନ୍ତି, ଭଗବାନଙ୍କୁ କଦଳୀ ଭେଳାରେ ମଫସଲ ବୁଲିଯିବାର ଅନୁନୟ ଜଣେଇ ସେମିତି ଏକ ଘନିଷ୍ଠ ଅନ୍ତରଙ୍ଗତା ସୃଷ୍ଟିରେ ସମର୍ଥ ହୋଇଛନ୍ତି । ମନେହୁଏ, ଆଲୋଚ୍ୟ କବିତାରେ କବି ଯେମିତି ଈଶ୍ୱରଙ୍କ ଫେରକାନ ଧରି ପାଖେ ପାଖେ ବସିଛନ୍ତି ଏବଂ 'ଈଶ୍ୱର ଯଦି ମରନ୍ତି, ସେ ତାଙ୍କ ଅଣ୍ଟା, ବେକ ଓ ଗୋଡ଼ ଧରି ମରିବେ ।' ନିଜ ମଧ୍ୟରେ ଏକ ମାନସିକ ପ୍ରସ୍ତୁତି ମଧ୍ୟ କରି ନେଇଛନ୍ତି । ସମଗ୍ର

କାବ୍ୟରେ ଯାହାଙ୍କ ଅନ୍ୱେଷଣରେ କବି ବ୍ୟାକୁଳ, ଅନ୍ତେଷରେ ନିଜ ପିଲ-ଛୁଆ, ଘର କଥା ଭୁଲି ତାଙ୍କର ହାତରେ ନିଜକୁ ସମର୍ପି ଦେଇ କହନ୍ତି —
'ଆଜଠୁ ତୁମରି ହାତେ ସମର୍ପଣ କଲି × × × କ୍ଷମା ଦିଅ ଅଜଣା
ଦୋଷରୁ ।'

'ସ୍ରୋତର ନାମ ରୁଚି' ର ମୁଖ୍ୟ ଚେତନାଟି ସମସ୍ତ ଚେତନ ।
ଜନ୍ମ, ଜରା, ବ୍ୟାଧି ଓ ମୃତ୍ୟୁ ସବୁକୁ ଛୁଇଁ ଛୁଇଁ ରହିଛି ସମସ୍ତ । ଧମନୀର
ବଜ୍ର କଠିନ ଜାବରୁ ମୁକୁଳି ଶିଆଳ ଲଟାର ନୁଟଗୁଟ କାଦୁଆ କବି-ମଣିଷଟି
ଏକ ଊର୍ଦ୍ଧ୍ୱତନ ଝାଁଶୀ-ପ୍ରଶାନ୍ତି ପାଇଁ ବଡ଼ ବ୍ୟାକୁଳ । ଏହି ବ୍ୟାକୁଳତାର
ଅଶାନ୍ତି ମଧ୍ୟରେ ସେ ନିଃସଙ୍ଗ ଏବଂ ପରିଣାମରେ ମୁହୂର୍ତ୍ତକ ପାଇଁ ହେଲେ ବି
ନିଭୃତ ଈଶ୍ୱରାନୁଭବ ତୃପ୍ତିରେ ସେ ଉଲ୍ଲସିତ । ଜାଗତିକ ବିତୃଷ୍ଣା ଓ
ଜୀବନ ପ୍ରତି ନିରାସକ୍ତି ମଧ୍ୟ ଦେଇ ଜୀବନ ଅଙ୍ଗୀକାର ଓ ଜୀବନର ଊର୍ଦ୍ଧ୍ୱୋତ୍ତର
ସତ୍ୟଟିକୁ ଖୋଜି ଧରିବାର ଆତ୍ମିକ ପରିକଳ୍ପନାଟି ଅଧୁନାତନ କାବ୍ୟ-
ଚେତନାର ସ୍ୱକୁଟଭୂମୀ ଏବଂ ଗ୍ରନ୍ଥର ସଫଳତା ଏଇଥିରେ ନିହିତ ।

ପ୍ରତ୍ୟେକ କାବ୍ୟ ବା କବିତାର ସଫଳତା କେବଳ ଆତ୍ମିକ ବସ୍ତୁତ
ବା ବିଜ୍ଞପ୍ତି ଉପରେ ନିର୍ଭର କରେ ନାହିଁ । ଆଙ୍ଗିକ ଦିଗଟି ହେଉଛି କାବ୍ୟର
ଅନ୍ୟତମ ଅପରିହାର୍ଯ୍ୟ ଅଙ୍ଗ । ସଚେତନ କବି ମାନେଇ ସେମାନଙ୍କ
କବିତାରେ ଶବ୍ଦର ଯଥା ସମ୍ଭବ ମୌଳିକ ବ୍ୟବହାର ଓ ଭାଷାର ପରିଚ୍ଛନ୍ନତା
ତଥା ଋଜୁତା ପ୍ରତି ସମଧିକ ଧ୍ୟାନଦିଅନ୍ତି ।

ପ୍ରତ୍ୟେକ ଶବ୍ଦର ଏକ ନିର୍ଦ୍ଦିଷ୍ଟ, ସାମାଜିକ ସହୋଦରତା ରହିଛି ।
ଯେଉଁ ଶବ୍ଦ ସମାଜର ନିବିଡ଼ ସ୍ମୃତି ସହ ଯେତେ ଜଡ଼ିତ ସେ ଶବ୍ଦ କାବ୍ୟ
ଆଙ୍ଗିକ କ୍ଷେତ୍ରରେ ସେତେ ପ୍ରଭାବଶାଳୀ ଓ ପାଠକ ମନରେ ବିବିଧ ଭାବରେ
ଯୁଗପତ୍ ପ୍ରତିକ୍ରିୟା ସୃଷ୍ଟି କରିବାରେ ସେତେ ଅଧିକ ସକ୍ଷମ । ଏହି ବିଶେଷ
ପ୍ରୟୋଗ ମାଧ୍ୟମ ଦେଇ ଶବ୍ଦ ଯେତେବେଳେ ପାଠକର ଇନ୍ଦ୍ରିୟବେଦ୍ୟ
ହୋଇଉଠେ, ସେତେବେଳେ ସର୍ବାଧିକ କାବ୍ୟରସ ଆସ୍ୱାଦନ ସମ୍ଭବ

ମତ ଅଭିମତ ଭିନ୍ନମତ ||

ହୋଇଥାଏ । ପ୍ରୟୋଗବାଦୀ କବି କମଳାକାନ୍ତଙ୍କ କବିତାରୁ ଏହି ଅନୁରୂପ ପ୍ରୟୋଗ କୌଶଳଟି ସଂପର୍କରେ ବର୍ତ୍ତମାନ ବିଚାର କରାଯାଉ ।

୧) ଶୋକର ଟ୍ରେଲିଂ ଧରାଯିବ ପୁଏଁ କଏ ? ପୁଷି/
ନା ବଉଳାଲ୍ଲ ଗଛର ପତର/ଆଉ ମୁହେଁ ଧକଉଚ ଶୋକାତୁର/
ଛୁଇ ନା ଅଚ୍ଛନ୍ନ ମୃତ୍ୟୁର ସତ୍ତ୍ୱ (ଝଗର ଆଷାଢ଼)

୨) ଟମ ଆସିବଇଁ ଆସିବ/ନାଲ ଗ୍ଲୁଡ଼ିଥିବା କାଳିଆ କଷବର/ଦବଲ ଦବଲ
ପାଦ ଚିହ୍ନର ରକତରେ/ × × × /ଟକ ତଳେ ଗୃପି ହୋଇଥିବା
ଗୁଣ୍ଡୂଚିର/କାନ୍ଦରେ ! ପଥୁରିଆ ଧୈର୍ଯ୍ୟର/ଏକାଗ୍ର ମୂହୂର୍ତ୍ତରେ ।

(ଅପେକ୍ଷା କେବଳ)

୩) ଘାପଟିଏ ଜଳିଲେ ସଂଜ/ହସିଯାଏ,
ତାରଟିଏ ଡେଇଁଲେ ସଂଜ/ଲୁଚି ଯାଏ,
ବିଲୁଆଟିଏ ଭୁକିଲେ/ସଂଜ ହଜିଯାଏ କେଉଁ
କାଳାନ୍ତରରେ/ଅଠାଳିଆ ଜଭରେ । (ଅପେକ୍ଷା କେବଳ)

ଉପରୋକ୍ତ ପଙ୍କ୍ତି ଗୁଡ଼ିକ ମଧ୍ୟରୁ ପ୍ରଥମଟିରେ 'ପୁଷି' ଓ ବଉଳଲ୍ଲ ଗଛର ପତର' ଏବଂ ଦ୍ୱିତୀୟଟିରେ 'ନାଲ ଗ୍ଲୁଡ଼ିଥିବା କାଳିଆ କଷବର ଦବଲ ଦବଲ ପାଦଚିହ୍ନ' ଓ 'ଗୁଣ୍ଡୂଚି ମୂଷାର କାନ୍ଦ' ପାଠକ ମନରେ ନିର୍ଦ୍ଦିଷ୍ଟ ରେଖାପାତ କରିବାରେ ସହାୟକ । କୌଣସି କବିତାର ସବୁ ଶବ୍ଦର ଯଥାର୍ଥ ଅର୍ଥ ଅବବୋଧ ଯେତେ ବଡ କଥା ନୁହେଁ; ଶବ୍ଦର ଅନ୍ତରାଳରେ ଥିବା ଯାଦୁହିଁ ବଡ଼ କଥା । I understand the funy in your wards. But not the words.' ( ସେକ୍ସପିଅର ) 'ନାଲ ଗ୍ଲୁଡ଼ିଥିବା କାଳିଆ କଷବର ଦବଲ ଦବଲ ପାଦଚିହ୍ନ' ପଙ୍କ୍ତିଟିକୁ ପାଠକଲେ ପାଠକର ହୁଏତ ମନେ ପଡ଼ିଯାଏ ଶଗଡ଼ିଆର 'ରାମ ହେ ଲଇକ୍ଷଣ ଗୀତ', 'ମାଗୁଣିର ଶଗଡ଼' କିମ୍ବା କେଉଁ ଛନ୍ଦାବର ତଳେ 'ଟୋପୀ ସାହୁର ପୁରୁଣା ଦୋକାନ' ଏବଂ 'ବିଲୁଆଟିଏ ଭୁକିଲେ' ଉଚ୍ଚାରଣ କଲାବେଳକୁ ପାଠକ ସାମନାରେ

ହୁଏତ ହସିଉଠେ, ଗାଁ ର ଝିଟିଝିଟି ରାସ୍ତା, ବର୍ଷାଦିନିଆ କାଲୁଆ ପାଗ ବା ବୁଢୀମା'ର ଚଉରର ବାଲୁଆ ଗପ । ପାଠକ ନିକଟରେ କବିତାର ଆବରଣ ଅର୍ଥଟି ଏଠି ଆଉ ମୁଖ୍ୟ ହୋଇ ରହେ ନାହିଁ; ସେ ମୂଳ କବିତାର ସଉକ କନାର ଗୁଡ଼ ଉପଲବ୍ଧିର ଏକ ଗହନ ବଣରେ ହଜିଯାଏ । ସେହିପରି ପ୍ରଥମ ପଙ୍କ୍ତିର 'ପୃଷ୍ଟି' ଓ 'ବଉଳଳ ଗଛର ପତରେ' ଭାବ ଅବବୋଧ କ୍ଷେତ୍ରରେ କଷ୍ଟିଠା ଅସ୍ପଷ୍ଟତା ସୃଷ୍ଟି କରୁଥିଲେ ବି ଏହା ଭଲ ଲାଗେ, ଠିକ୍ କିଛି ନ ବୁଝିବ ଯେମିତି ଭଲ ଲାଗେ କୁମ୍ଭାଟୁଆର କୁହାଟ ବା କନ୍ଦ ପିଲାର ଡ଼ଙ୍ଗ୍ ଡ଼ଙ୍ଗା । 'ପୃଷ୍ଟି' ଓ 'ବଉଳଲ୍ ଗଛର ପତରର' ପାଠକ ମନରେ ଯେଉଁ ଭାବ ସଂକ୍ରମଣତା ସୃଷ୍ଟି କରେ, ତା' ସ୍ଥାନରେ ଯଥାକ୍ରମେ 'ବରଜ଼' ଓ 'କଅଁଳଲ୍ ଗଛର ପତରର' କିମ୍ବା ଅନ୍ୟ କିଛି ଅନୁରୂପ ଉଙ୍କ୍ତିର ପ୍ରୟୋଗ କଲେ ଠିକ୍ ସେଇ ଭାବ ସଂକ୍ରମଣତା ସୃଷ୍ଟି ହୋଇ ପାରିବ ନାହିଁ ।

ସେ, ଯେ, କି ନା ପ୍ରଭୃତିର ବିବିଧ ଭଙ୍ଗୀ ମଣ୍ଡିତ ପ୍ରୟୋଗ ଏବଂ ସମାନ ଶବ୍ଦ, ଧାଡ଼ି ଓ ଅନୁପ୍ରାସ ବହୁଳ ପଙ୍କ୍ତିର ପୁନରାବୃତ୍ତି କବି କମଳାକାନ୍ତଙ୍କ କାବ୍ୟର ଅଙ୍ଗ-ବୈଚିତ୍ର୍ୟର ଅନ୍ୟତମ ବିଶେଷତ୍ୱ । ଶବ୍ଦ ପ୍ରୟୋଗ କ୍ଷେତ୍ରରେ ପରମ୍ପରାର ବ୍ୟତିକ୍ରମ ଦୃଷ୍ଟିରୁ ଶ୍ରୀ ଲେଙ୍କାଙ୍କ କବିତାରୁ କେତେ ପଙ୍କ୍ତି ଖଣ୍ଡର ଉଦାହରଣ ଏଠାରେ ଉପସ୍ଥାପିତ କରାଗଲା । ଯଥା— ବାବୁର ଅନ୍ଧାର, ହକଳା ହକଳ ଜହ୍ନ ଆଲୁଅ, ଖରାର ହାତ, ଖରାର ଚର୍ମ, ଗ୍ଳଳର ଗଜୁରା ବିଷ ଦାନ୍ତ, ରଜୋବତୀ ଦୁଃଶ୍ଚିନ୍ତା, ସମୟର ବିଚର୍ଣ୍ଣ ମୁଠା ଏବଂ ଧାବଶ୍ୱାସର ଗୋଇଠି ପ୍ରଭୃତି ।

ଶବ୍ଦ ପ୍ରୟୋଗରେ ପଲ୍ଲୀ-ଆମୁଖତା ଓ ବିଭିନ୍ନ ସଫଳ ପରୀକ୍ଷା ସତ୍ତ୍ୱେ କବି କମଳାକାନ୍ତଙ୍କ କବିତ ରେ ଠାଣି ଦେଖାଇବାର ଛଇଟି ଅନେଇଁ କମ୍ ନୁହେଁ । ତାଙ୍କ କବିତାରେ ଠ ଏ ଠାଏ ଥିବା ବାକ୍ ପ୍ରଚଲ୍ଭତା ପାଠକକୁ ଉଣା ଅଧିକେ ଉତ୍ପୀଡ଼ିତ କରିଥାଏ । 'ଠାପରର ମାନେ କ'ଣ ? ପରୁର ହାଡ଼ୁଆ ଦନ୍ଦ ଓ ବଙ୍କା ବାଡ଼ର ଘରକୁ : ପରୁର ଧୂଳଖିଆ ଓ ମଳଚିଆ ଆଇନା!

ମତ ଅଭିମତ ଭିନ୍ନମତ ।।

ବା ଦାନ୍ତଭଙ୍ଗା ପାନଆକୁ' କହିଲାବେଳେ କବି ତାଙ୍କ ନିଜ ଭାଷା ପ୍ରୟୋଗର କଣ୍ଟୁଠା ବଦବ୍ୟୟ କରନ୍ତି ନାହିଁ କି? ଠାଣି ଦେଖାଉ ଦେଖାଉ, ଗାଁ ଦାଣ୍ଡର ଦେହ ଘଷାଉ ଘଷାଉ କବି ବେଳେବେଳେ କାବ୍ୟିକ ସୌନ୍ଦର୍ଯ୍ୟବୋଧକୁ ମଧ୍ୟ ପାଶୋରି ପକାନ୍ତି । 'ପିଲାଦିନେ ସାଙ୍ଗମାନେ କହୁଥିଲେ—ନାଭି ଧରି କାନ୍ଧ କାନ୍ଧ ପଡ଼୍ ପଡ଼୍ 'ମାଣ୍ଡିଆ'—ଏହା ନା କବିତାର ମାନ ବୃଦ୍ଧି କରୁଛି ନା କବିଙ୍କ ପ୍ରୟୋଗବାଞ୍ଛା କାବ୍ୟଧାରାକୁ ପୃଷ୍ଠବଣ୍ଡି କରାଉଛି ?

'ସ୍ରୋତର ନାମ ଋତ'ର ନାମ କରଣ ଯଥାର୍ଥ ଓ ସ୍ପଷ୍ଟ । କାବ୍ୟ ଆତ୍ମିକ ସନ୍ତୋଷ ଜନକ ହେଲେ ବି ତଥାପି ଅସନ୍ତୋଷ ରହିଯାଏ । କବିଙ୍କଠାରେ ବିନମ୍ର ଅଭିଯୋଗ ଯେ, ସେ ତାଙ୍କ କାବ୍ୟର ଆତ୍ମିକ ତଥା ଆଙ୍ଗିକ ଉଭୟର ସାମଗ୍ରିକତା, ଅଖଣ୍ଡତା ଅଧିକ ପ୍ରଭାବଶାଳିତା ପ୍ରତି ସଚେତନ ରହନ୍ତୁ ।

ହୃଷୀକେଶ ମଲ୍ଲିକ

## **ଅନ୍ତତଃ ନିଷ୍ଠୁର**

( ୧୯୭୫ )

ଏହି କବିତା ଗ୍ରନ୍ଥରେ ବିଭିନ୍ନ ସ୍ବାଦର ୪୭ଟି କବିତା ସନ୍ନିବେଶିତ । ଏହା ଲେଖକଙ୍କ ଷଷ୍ଠ କବିତା ଗ୍ରନ୍ଥ । ଏ ସଂକଳନଟି କବି କମଳାକାନ୍ତ ଲେଙ୍କାଙ୍କ କବି ପ୍ରତିଭାର ସାର୍ଥକ ପ୍ରତିନିଧି । ରବିବାର, ପୂଜାକୁଟି, ଶବ ଆଦି କବିତାରେ ସାର୍ବଜନୀନ ଆବେଦନ ରହିଥିଲାବେଳେ ନିଶାଣ, ମ୍ଳେଚ୍ଛ ଆଦି କବିତାରେ ବୌଦ୍ଧିକ ଓ ଆଧ୍ୟାତ୍ମିକ ଚେତନାର ସ୍ବର ସୁସ୍ପଷ୍ଟ । କବି କମଳାକାନ୍ତଙ୍କ କବିତାର ବୈଶିଷ୍ଟ୍ୟ ହେଲା ଗ୍ରାମ୍ୟ ରୂପକଳ୍ପ ଏବଂ ଆବେଗ

ମିଶ୍ରିତ ପ୍ରଜ୍ଞା । ତେବେ ଏ ଗ୍ରନ୍ଥଟିରେ ସ୍ଥଳ ବିଶେଷରେ ଅନାବଶ୍ୟକ କଠିନ ଶବ୍ଦାଡ଼ମ୍ବର ଥିବାରୁ ରସାସ୍ୱାଦନରେ ବ୍ୟାଘାତ ସୃଷ୍ଟି ହୁଏ । ସେ ଯାହା ହେଉ, ବିଦଗ୍ଧ ପାଠକ ମଣ୍ଡଳୀ ମଧ୍ୟରେ ଗ୍ରନ୍ଥଟି ଆଦୃତ ହେବା ଆଶା ।

( ସମାଜ-ମାର୍ଚ୍ଚ-୧୯୭୬ )

'ଅନ୍ତତଃ ନିଷ୍ଟୁପ'ରେ ଶ୍ରୀ ଲେଙ୍କା ସମଷ୍ଟିକୁ ଲ୍ୟାଣ୍ଡସ୍କେପ୍ ଭାବେ ଗ୍ରହଣ କରିଛନ୍ତି । ଅନ୍ୟ ଅର୍ଥରେ କହିବାକୁ ଗଲେ ସମୟ ହିଁ ଏହି ଗ୍ରନ୍ଥର କାବ୍ୟ ନାୟକ ଭାବେ ଦେଖାଦେଇଛି । ଏହି କାବ୍ୟର ନାୟକ ସମୟର ଦାସ ନୁହେଁ, ବରଂ ତାର ଉଦ୍‌ଗାତା । ସମୟର ନିରବଚ୍ଛିନ୍ନ ପ୍ରବାହ ଏହି ଉଦ୍‌ଗାତାର ଉଚ୍ଚାରିତ ମନ୍ତ୍ରକୁ ପଦ୍ମ ଭଳି ଭସାଇ ନେବାକୁ କେବେ ବି ସାହସ କରି ନାହିଁ । ଏଠି ନାୟକ ଗଭୀର ଆତ୍ମ-ପ୍ରତ୍ୟୟରେ ବିଭୋର ଓ ବଳିଷ୍ଠ । × × × ଏହି କାବ୍ୟ ଗ୍ରନ୍ଥରେ ଶ୍ରୀ ଲେଙ୍କାଙ୍କର ସବୁଠାରୁ ବଡ଼ ସଫଳତା ହେଉଛି ବକ୍ତବ୍ୟର ସ୍ପଷ୍ଟତା, ଆବେଗ ଓ ପ୍ରଜ୍ଞା ମିଶ୍ରିତ ସ୍ୱକୀୟ ଅଭିବ୍ୟକ୍ତି । ଏସବୁ ଦୃଷ୍ଟିରୁ 'ଅନ୍ତତଃ ନିଷ୍ଟୁପ' ତାଙ୍କୁ କବି ହିସାବରେ ଓଡ଼ିଆ ସାହିତ୍ୟରେ ଅଧିକ ପ୍ରତିଷ୍ଠିତ କରିଛି, ଏଥିରେ ସନ୍ଦେହ ନାହିଁ ।

( 'ଧରିତ୍ରୀ'-ରବିବାର-୧୮।୧।୭୬ )

## କବିତାର ମୁହଁ (୧୯୭୪)

( ସମାବେଶ- ୧୯୭୪-୭୫, କୌଣସି ସଂଖ୍ୟା )

( ଆପୁଦଂଶ )

କବିଙ୍କ ପୂର୍ବବର୍ତ୍ତୀ ଗ୍ରନ୍ଥ 'ସୁରଣି ବସ୍ତୁରିଣି'କୁ ଯଦି ପ୍ରେମ ଓ ଚେତନାଗତ ଜୀବନ ସମ୍ପର୍କୀୟ ଏକ ନୂତନ ଆଲେଖ୍ୟ ବୋଲି ଗ୍ରହଣ କରାଯାଏ ତେବେ 'କବିତାର ମୁହଁ' କବିଙ୍କ ଭାବବୋଧର ଗୁରୁ ଗମ୍ଭୀର

ମତ ଅଭିମତ ଛନ୍ଦମନ୍ତ ।।

ମନସ୍ଥିତି ମଧ୍ୟରେ ବ୍ୟକ୍ତିଗ ଏବଂ ତତ୍ସଂଲଗ୍ନ ସାମାଜିକ ଜୀବନର ମ୍ରିୟମାଣ ଅବସ୍ଥା ଓ ତଜ୍ଜନିତ ଅଶୁସ୍ତ ମଧ୍ୟରୁ ମୁକ୍ତି ପାଇଁ ଏକ ଅନ୍ୱେଷୀ ମନର ପଥ ଖୋଜିବାର ଉଦ୍ୟମ । ବସ୍ତୁତଃ ଏ କବିତା ଗ୍ରନ୍ଥ କବିଙ୍କ କୁଞ୍ଚିତ କପାଳଯୁକ୍ତ ବିପୁଷ୍ଟ ଭାବନାର ଗୁରୁଗମ୍ଭୀର ସ୍ୱରକୁ ବହନ କରୁଛି ଯାହା ସମୟଦ୍ୱାରା ଭାରାକ୍ରାନ୍ତ ଓ ସମୟର ମୂକର ଧ୍ୱନି ପ୍ରତିଧ୍ୱନିର ସ୍ୱରଲିପି କହିଲେ ଅତ୍ୟୁକ୍ତି ହେବନାହିଁ । ମୁଖ୍ୟତଃ ମୃତ୍ୟୁ , ଶୋକ, ଯନ୍ତ୍ରଣା, ବ୍ୟସ୍ତତା, ଶୂନ୍ୟତା ବିସ୍ମୟ, ବେଦନା, ଅନୁରାଗ ଏବଂ ସର୍ବୋପରି ଆଲୋକ ପ୍ରତି ଅନ୍ୱେଷୀ ମନର ବିଭ୍ରାନ୍ତ ଅବସ୍ଥା ଇତ୍ୟାଦି ଯାବତୀୟ ମାନସିକ ଭାବବୋଧ କବିଙ୍କର ଚେତନା ବସ୍ତୁ ହୋଇ କବିତାମାନଙ୍କରେ ସ୍ଥାନ ପାଇଛି ।

ପ୍ରମୋଦ ପଣ୍ଡା

'କବିତାର ମୁହଁ' ମୁଖ୍ୟତଃ ପ୍ରାଣ ଓ ଜୀବନ ଭିତ୍ତିକ କବିତାର ସଂକଳନ । × × × ଜୀବନ, ଯନ୍ତ୍ରଣା, ଦ୍ୱନ୍ଦ୍ୱ, ସଂଶୟ, ଆତ୍ମପ୍ରତ୍ୟୟ ଜନିତ ନିଷ୍ଠାର କାରିଗରୀରେ ଏ ସଂକଳନ ସମୃଦ୍ଧ । ଗୁରୁପ୍ରସାଦ ମହାନ୍ତିଙ୍କ ପରେ ଆଧୁନିକ କବିତାର ଚିନ୍ତାଶୀଳତାରେ ମାର୍ମିକ ସଂବେଦଣୀଳତା ଓ ଲଳିକାଲ ଅପିଲ୍ ସୃଷ୍ଟି କରିବାରେ କବି ଶ୍ରୀ ଲେଙ୍କା ସିଦ୍ଧ ହସ୍ତତା ପ୍ରଦର୍ଶନ କରିଛନ୍ତି । ନିର୍ଦ୍ଦିଷ୍ଟ ଭାବ ଓ ଶବ୍ଦ ସଂଯୋଜନାରେ ଶ୍ରୀ ଲେଙ୍କା ନିଶ୍ଚିତ ଭାବେ ତାଙ୍କ ସମସାମୟିକ କବିମାନଙ୍କଠାରୁ ସ୍ୱତନ୍ତ୍ର ଓ ଏକକ ବୋଲି ପ୍ରତୀତ ହୁଅନ୍ତି । କବିତା ଯଦି ପ୍ରାଣ ଓ ଜୀବନର ବାତତ୍ରଜନିତ ଆବେଗ, ଆକାଂକ୍ଷା ବା ଆଶା ନିରାଶାର ମୁଦ୍ରାଙ୍କ ହୁଏ, ତେବେ ଏ ସଂକଳ ଓଡ଼ିଆ କବିତାରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ବାଛି ନେବ, ସନ୍ଦେହ ନାହିଁ ।

'ଧରିତ୍ରୀ'

॥ କବି କମଳାକାନ୍ତ

# କବିତାର ମୁହଁ (୧୯୭୪)

(ଝଙ୍କାର-୨୭ଶ ବର୍ଷ, ତୃତୀୟ ସଂଖ୍ୟା, ଜୁନ୍-୧୯୭୫)

'ଉତ୍ତରଣ', 'ସ୍ମରଣ ବିସ୍ମରଣ' ପରେ କମଳାକାନ୍ତଙ୍କର 'କବିତାର ମୁହଁ' ତାଙ୍କ କବି ପ୍ରତିଭାର ଏକ ସ୍ୱତନ୍ତ୍ରତାର ବାର୍ତ୍ତାବହ । 'ସ୍ମରଣ ବିସ୍ମରଣ'ରେ ସ୍ତ୍ରୀ ଲୋକଙ୍କ ପ୍ରେମ ଭିତରେ ଦେଖିଥିଲେ ଡ୍ରେକ୍ ଓ ଲୁଦ । କିନ୍ତୁ 'କବିତାର ମୁହଁ' ତାଙ୍କ ବେଦନାଦ୍ର ପ୍ରାଣର ନିର୍ଭୀକ ଉଚ୍ଚାରଣ । କେବଳ କୌଣସି ସଙ୍କଳ ସ୍ମୃତିରୁ ବେଳେବେଳେ ସେ ମୁହଁରେ ହସର ଆଭାସ ଦେଇ ଲୁଚିଯାଏ । କିନ୍ତୁ ଯେଉଁମାନେ କମଳାକାନ୍ତଙ୍କର କବିତା ପଢିଥିବେ ସେମାନେ ସ୍ୱୀକାର କରିବେ ଯେ 'କବିତାର ମୁହଁ'ରେ ତାଙ୍କର କାବ୍ୟ ସ୍ୱରରେ କିଛି ନୂତନତା ଅଛି ।

ସଂକଳନଟିରେ ମୁଖ୍ୟତଃ ଦୁଇ ପ୍ରକାର କବିତା ମିଳେ । ପ୍ରଥମେ ହରାଇବାର ଦୁଃଖ ପରେ ଖୋଜିବାର ଅବାରିତ ଚେଷ୍ଟା ଓ ଦ୍ୱିତୀୟରେ ଜୀବନର ସ୍ୱୀକାରୋକ୍ତି ଓ ମୃତ୍ୟୁ ପ୍ରସ୍ତୁତି । ପ୍ରଥମ ପ୍ରକାର କବିତା ମଧ୍ୟରୁ 'ନିଜସ୍ୱ ପ୍ରାର୍ଥନା' ନିଜକୁ, ନିର୍ଜନ ମୁହୂର୍ତ୍ତକୁ, ଓ......', 'ଜଣେ ନୂଆ ଅତିଥି ପାଇଁ ସମ୍ବର୍ଦ୍ଧନାର ଗୀତ' ଧ୍ୱଂସ ଭିତରେ ମଧ୍ୟ ଆଶାର ସଞ୍ଚାର କରେ । 'ଚଇତି ପୁରୁଷ' ସୃଜନ ଓ ଧ୍ୱଂସର ସମନ୍ୱିତ ପ୍ରତୀକ ।

'ଏଇ ଯେ ଅ‌ସୁଛି ଟିକି ନାଲି ଘୋଡ଼ା  
ହିଂସ୍ରତାର ଘାର୍ଘ କରିବାକି  
ଭୁଲିଇ ସଉଟେ ହସେ  
ଖପ୍ ଖାପ୍ ଉଏଁ ନଇ ନାଳ  
ଚଇତି ପୁରୁଷ ସେ କି ?  
ମତ୍ତ ଏକ -  
ନିଆଁର ଦୁର୍ଦ୍ଦାନ୍ତ ଝଡ଼,  
ହାଓ୍ୱାର ଭସ୍ମଯୋଂ !'

ମିଛ ଅଭିମତ ଭିନ୍ନମତ ॥

ସେ କୃଷ୍ଣ ଓ ଯୀଶୁର ଶବ୍ଦ, ପ୍ରକୃତି ପରି ବ୍ୟାପକ, କାଳିଦାସୀୟ ମେଘ ବା ବସନ୍ତ ପରି ରାଜକୀୟ ସମ୍ମାନଯୁକ୍ତ । ପ୍ରେମ ଓ ମୃତ୍ୟୁର ଏକୀଭୂତ କଳ୍ପନା । କିନ୍ତୁ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ସେ ଆସିବ ପ୍ରଥମ ସନ୍ତାନର ଆହ୍ଲାଦ ପରି—ଯଦିଓ ସ୍ଥିତିର ବାସ୍ତବତା ପ୍ରତି କବି ସଚେତନ, ତଥାପି ଅପେକ୍ଷା ରହିଛି, ଆଶା ମଧ୍ୟ ରହିଛି । କାରଣ ଗୋଠହଳା ଗାଈ ମଧ୍ୟ ଫେରି ଆସେ ଅନେକ ସମୟରେ ଓ ନୂଆ କଦମ୍ବର କଢ଼ି ମଧ୍ୟ ଫୁଟେ । ଶରବିଦ୍ଧ ଓ କଣ୍ଟାବିଦ୍ଧ ଭବିଷ୍ୟତକୁ ଉପେକ୍ଷା କରି ସେ ଆସିବ ଘୋଡ଼ା ଚଢ଼ି, କଳଙ୍କୀ ଓ କୃଷ୍ଣର ଦ୍ୱୈତ ଶବ୍ଦ ପରି । କିନ୍ତୁ 'ସୁଦୂର ନାଗର' ବଦଳରେ ଅନ୍ୟ କିଛି ବ୍ୟବହାର ହୋଇଥିଲେ ବିରକ୍ତି ଖୁବ୍ ବଳିଷ୍ଠ ହୋଇଥାନ୍ତା । କାରଣ 'ବାଟଭୁଲା ସୁଦୂର ନାଗର'ର ଧ୍ୱନି ଓଡ଼ିଆର କାନରେ ରାଧାର ଗୁଞ୍ଜରିତ ଗୀତ ସହିତ ଅନାବିଳ ପ୍ରେମ ଭାବକୁ ସଂଯୋଗ କରେ । ତା'ଛଡ଼ା 'ଚଇତି ପୁରୁଷ' ଯେହେତୁ କୃଷ୍ଣର ପ୍ରତୀକାତ୍ମକ ଶବ୍ଦ, 'ସୁଦୂରନାଗର' ବିରକ୍ତି ବଦଳରେ ଲୋକାଶ୍ରିତ ସ୍ମୃତିର ଅନୁପ୍ରବେଶ କରାଉଛି ।

'ନିଜସ୍ୱ ପ୍ରାର୍ଥନା' ଗୋଟିଏ ସଫଳ କବିତା । ସଂଗଠନ, ଛନ୍ଦ, ଧ୍ୱନି ଦୃଷ୍ଟିରୁ କମଳାକାନ୍ତ 'ସ୍ମରଣ ବିସ୍ମରଣ'ରୁ ଅନେକ ଆଗେଇଛନ୍ତି । ଅନ୍ଧାର ଓ ଆଲୁଅ ଦୁଇଟି ସ୍ଥୂଳ ଶବ୍ଦକୁ ନେଇ ବ୍ୟକ୍ତି ମାନସର ଦ୍ୱନ୍ଦ୍ୱ, ନୈରାଶ୍ୟ; କାରୁଣ୍ୟ ଓ ସ୍ମୃତି ବିଜଡ଼ିତ ଆନନ୍ଦକୁ ସେ ସଫଳ ଭାବେ ପରସ୍ପର ସହିତ ଧକ୍କା ଖୁଆଇ ବ୍ୟକ୍ତିକ ଚେତନାକୁ ନୈର୍ବ୍ୟକ୍ତିକ ସ୍ତରକୁ ଉଠାଇ ନେଇଛନ୍ତି ।

ସ୍ଥୂଳଶବ୍ଦ ଦୁଇଟି ଅନେକ ଶବ୍ଦକଳ୍ପ ମାଧ୍ୟମରେ ପୁନର୍ଜୀବିତ ହେଉଛି । ଅଜଗର, କୁମ୍ଭୀର, ପେଚା, ଶୃଗାଳ ଓ ଅରଣ୍ୟ, ରାତିର ଅନ୍ଧାର ଭିତରେ ମାଟି (ଅଜଗର, ଶୃଗାଳ, ଅରଣ୍ୟ) ପବନ (ପେଚା) ଓ ପାଣି (କୁମ୍ଭୀର)କୁ ଆବୋରି ରହିଛନ୍ତି । ସମସ୍ତ ପଶୁପକ୍ଷୀ ଶବ୍ଦ ପ୍ରାୟ ଅଚଳ ବା ସାମାନ୍ୟ ଚଳମାନ ଅନ୍ଧାରକୁ ବ୍ୟାପକ କରନ୍ତି । ଏ ଅନ୍ଧାର ଚେତନାର ତିନୋଟି ସ୍ତରର ସ୍ଥିତିକୁ ଘେରି ରହି ମଣିଷର ଦୈହିକ ସ୍ଥିତିର ଗୌଣତା

ପ୍ରତିପାଦନ କରନ୍ତି । କିନ୍ତୁ ମଣିଷ କେବଳ ଦେହଧାରୀ ପ୍ରାଣୀ ନୁହେଁ । ତାର ମନ, ଆତ୍ମା ଓ ବିବେକ ରହିଛି—ଯେଗୁଡ଼ିକ 'ଆଲୁଅ'ର ବିଭିନ୍ନ ଚିତ୍ରକଳ୍ପ, ଯଥା—ତାରା, ଚନ୍ଦ୍ର, ସୂର୍ଯ୍ୟ ଓ ଆଖି ଦ୍ୱାରା ସୂଚିତ । ଯେହେତୁ ଏ ଆଲୋକ, ଅନ୍ଧାର ଭିତରେ ପ୍ରାପ୍ୟ ନଷ୍ଟ ହିଁ । ତେଣୁ ତାର ବାସ୍ତବ, ଜଡ଼ ଅସତ୍ତ୍ୱ ଓ ସ୍ୱପ୍ନରତ ଏବଂ ସୂର୍ଯ୍ୟବ୍ୟସ୍ତ । ଅପର ପକ୍ଷରେ, ଦ୍ୱିତୀୟ ପର୍ଯ୍ୟାୟ ଭୁକ୍ତ କବିତାଗୁଡ଼ିକ ଯଥା 'ମୋ ମା' ପ୍ରତି', 'ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ' 'ଗାର୍ହସ୍ଥ୍ୟ', 'ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ', ଓ 'ସ୍ୱରଲିପି' ମୃତ୍ୟୁ ପ୍ରସୂତ ଓ ବୁଝା-ଅବୁଝାର କୋହ କହନ୍ତି । 'ମୋ ମା' ପ୍ରତି' ଗୋଟିଏ ବଳିଷ୍ଠ କବିତାର ସମସ୍ତ ସ୍ୱାକ୍ଷର ବହନ କରିଥିଲେ ମଧ୍ୟ କିଛିଟା ବକ୍ତବ୍ୟ ମ୍ଳାନ ହୋଇଛି । ଓଡ଼ିଆ ସଂସ୍କୃତି, ସାଧାରଣ ନାରୀର ଧୈର୍ଯ୍ୟ ଓ ସହନଶୀଳତା, ପାରିବାରିକ ଜଞ୍ଜାଳ ଓ ବ୍ୟସ୍ତତା, ବ୍ୟକ୍ତିର କାରୁଣ୍ୟ, ସ୍ଖଳନ ଓ ନିର୍ବାସିତ ଜର୍ଜରିତ ପ୍ରାଣସତ୍ତା ବହନକରି । 'ମୋ ମା' ପ୍ରତି' ଶୋକ କବିତାର ସୀମା ଡେଇଁ ଚୌତ୍ତଧର୍ମୀ ସ୍ୱଗତ ହୋଇଛି । ଟୀକା ଗୋବିନ୍ଦଚନ୍ଦ୍ରଙ୍କ ପ୍ରଭାବ ପ୍ରାଣ ସତ୍ତା ଉପରେ ନ ହେଲେବି ଛନ୍ଦ ଓ ଆବେଗ ଉପରେ ସ୍ପଷ୍ଟ । କବିତାଟି ଖୁବ୍ ଆବେଗମୟ ଏବଂ କେତେକ ସ୍ଥାନରେ ଅତି ସମ୍ବେଦନଶୀଳ ହୋଇଛି ।

'ଏଇକ୍ଷଣି ସଞ୍ଜବେଳେ କାନ୍ଦ କାନ୍ଦ ଲାଗେ ଓ/ଘର ଇଚ୍ଛା ହୁଏ ତୋର ମାଟିର ଦେହକୁ ଘାଣ୍ଟି/ଅଣ୍ଡାଳନ୍ତି ପିଲାଦିନ ତୋଅରି ଶୁଖିଲା ଥନ । ଏବଂ/ତୋଅରି ଆଖିରେ ଖୋଜି ଦେଖନ୍ତି ମୁଁ/ମଲଗଲା ଶ୍ରାବଣ ଓ କାଶତଣ୍ଡୀ ହସର ଲହର ।'

ଏହାଛଡ଼ା ଏହି ପର୍ଯ୍ୟାୟଭୁକ୍ତ ଅନ୍ୟାନ୍ୟ କବିତାରେ ମୃତ୍ୟୁ ଲାଗି ପ୍ରସ୍ତୁତି ରହିଛି ଓ ଅସହଜ ଯନ୍ତ୍ରଣାର ଆତ୍ମପ୍ରକାଶ ଘଟିଛି । କିନ୍ତୁ ଏ ମୃତ୍ୟୁ ପ୍ରଶ୍ନୋତ୍ତର ନା କେବଳ ଘଟ ପରିବର୍ତ୍ତନର ଠିକ୍ ଜଣା ପଡ଼େ ନାହିଁ । ଘର ଜଞ୍ଜାଳରେ କେବଳ ପ୍ରାଣୀ ଯେ ମୃତ ତା' ନୁହେଁ, ମୃତ୍ୟୁ ମଧ୍ୟ ମୃତ । କାରଣ ମାଂସ ଓ ହାଡ ଡେଇଁ ଯେଉଁ ସମୟ ତା' ଭିତରେ ହାଡ ମାଂସର ଧ୍ୱଂସକାରୀ ମଧ୍ୟ ଅନ୍ତର୍ଭୁକ୍ତ—ତେଣୁ ମୃତ୍ୟୁ ବି ମ୍ଳାନ ହୁଏ ।

ମତ ଅଭିମତ ଭିନ୍ନମତ ॥

'ମୃତ୍ୟୁରେ ସମସ୍ତ ହଜେ/ସମସ୍ତରେ ମୃତ୍ୟୁ ହୁଏ ଲୀନ ! /
ହଜିବାର ଐକ୍ୟତାନ/ ଦ୍ରୁତ କିବା ବିଲମ୍ବିତ/ଆପଣାର ସଂଜ୍ଞା ।'

କିନ୍ତୁ ସମସ୍ତ ଓ ମୃତ୍ୟୁ ଯଦି ପରସ୍ପରରେ ଲୀନ, ତେବେ ଜିଜ୍ଞାସାରେ ଯନ୍ତ୍ରଣାର ଅବକାଶ କାହିଁ ? ସତ୍ୟର ଯେଉଁ ଅବଧାରଣା ରହିଛି, ତା' ଲାଗି କାବ୍ୟିକ ପ୍ରସ୍ତୁତି କବିଙ୍କର ସରିନାହିଁ ବୋଲି ମନେ ହୁଏ । ଏ ସତ୍ୟ ଅନୁସନ୍ଧିତ୍ସା ସଫଳ ଜୀବନଚର୍ଯ୍ୟାର ବ୍ୟାପକ କ୍ଷେତ୍ରପାଇଁ ଯେପରି ପ୍ରଶ୍ନଷମାଣ !

ତଥାପି ଏଥିରେ କେତୋଟି ଦୁର୍ବଳ କବିତା ରହିଛି । ଯେଉଁଥିରେ ସାମୟିକ ଉତ୍ତେଜନା ବ୍ୟତୀତ ଅନ୍ୟ କିଛି ନାହିଁ । ସେଗୁଡ଼ିକ ଯଥା— 'ଓଭର ବ୍ରିଜ୍' 'ଏ ଥାନ ନଳଠା ସହି', ଓ 'ନିଃଚେଦ ଚେଦ ଓ ସଫେଦ ପୃଥିବୀ' ପ୍ରଭୃତି ଚିତ୍ରକଳ୍ପ ଓ ସଂଗଠନ ଦୃଷ୍ଟିରୁ ଅନିଶ୍ଚିତତା ଭିତରେ ନିଶ୍ଚିତତାର ସନ୍ଦେହ ଆଣେ ।

'କବିତାର ମୁହଁ' କାବ୍ୟିକ ଓ ଜୀବନ ଗର୍ଭିତ ପ୍ରାଣ ସତ୍ତାର ବାର୍ତ୍ତାବହ । ଆଖିର ଯାତ୍ରା ଓ କାରୁଣ୍ୟର ମମତାସିକ୍ତ ଆଭାରେ ଏହା ଆକର୍ଷଣୀୟ, ଯାହା ସମସାମୟିକ ବହୁ କାବ୍ୟଶିଳ୍ପୀଙ୍କ କଣ୍ଠସ୍ୱରଠାରୁ ଅନେକଟା ଭିନ୍ନ ଓ ସ୍ୱତନ୍ତ୍ର । ଏ ଗ୍ରନ୍ଥଟିକୁ ଛାପିଛନ୍ତି ବ୍ରହ୍ମପୁରସ୍ଥ ଅଗ୍ରଣୀ ପ୍ରକାଶକ ସଂସ୍ଥା 'ବିଜୟ ବୁକ୍ ଷ୍ଟୋର' । ପ୍ରଚ୍ଛଦ ବେଶ୍ ରୁଚି ସମ୍ମତ ଓ ଲୋଭନୀୟ ।

**ପ୍ରଫୁଲ୍ଲ କୁମାର ମହାନ୍ତି**
ରିଡ଼ର, ଇଂରାଜୀ ବିଭାଗ, ଖଲ୍ଲିକୋଟ କଲେଜ, ବ୍ରହ୍ମପୁର

# ସ୍ମରଣ ବିସ୍ମରଣ

(ବିଚ୍ଛିନ୍ନ ସ୍ମୃତି)

('ନବ ରବି'—ନଭେମ୍ବର-୧୯୭୩-୪ର୍ଥ ସଂଖ୍ୟା)

ଭଗବାନ, ପ୍ରକୃତି, ସମାଜ ଓ ପରିବାରରୁ ବିଚ୍ଛିନ୍ନ ମଣିଷ ଅନ୍ତଃସ୍ୱରରେ ବିଭିନ୍ନ ଚିନ୍ତା ପ୍ରକାଶ କରିବା ବ୍ୟକ୍ତିର କୌଣସି ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣର ସ୍ୱରୂପ ଯେ ତାଙ୍କୁ ନିର୍ଣ୍ଣୟ କରି ପାରିବନି ସେ ବିଷୟରେ ବହୁତ ଯୁକ୍ତି ଓ ପ୍ରତିଯୁକ୍ତି ଆଜିକାଲି ଶୁଣାଯାଇଥାଏ । 'ଅର୍ଥହୀନ' ପୃଥିବୀରେ ଶବ୍ଦମୟ ମନର ଢଙ୍ଗ ପ୍ରାଣ ପ୍ରାଚୁର୍ଯ୍ୟ ନେଇ ବଞ୍ଚି ପାରିବାନି ବୋଲି ଯେଉଁମାନେ ମତ ଦିଅନ୍ତି ସେମାନଙ୍କୁ ଅଦୃଶ୍ୟ ମର୍ମରି ଶୁଣିଲେ ସନ୍ତୁଷ୍ଟ ହେବାକୁ ପଡ଼େ । ଆମର ବର୍ତ୍ତମାନ ସ୍ଥିତି ବା ଆତ୍ମମୁଖ୍ୟର ପ୍ରସୂତି ସେ ମର୍ମର ଭିତରେ ଯେ କେଉଁଠି ହଜିଯାନ୍ତି ତାର ଖବର ଶ୍ରୋତା କିମ୍ବା ସ୍ରଷ୍ଟା କେହି ପାଆନ୍ତି ନାହିଁ । କମଳାକାନ୍ତ ଲେଙ୍କାଙ୍କର 'ସ୍ମରଣ ବିସ୍ମରଣ' ସେଇ ଅଦୃଶ୍ୟ ମର୍ମରର ଗୋଟିଏ ପ୍ରତିଧ୍ୱନି ।

ଅନେକଗୁଡ଼ିଏ ଭିନ୍ନଧର୍ମୀ କବିତାର ସଙ୍କଳନ କେବେହେଲେ ଗୋଟିଏ ଭାବ ବହନ କରିପାରେ ନାହିଁ । କାରଣ ବିଭିନ୍ନ ସମୟରେ ବିଭିନ୍ନ ପତ୍ରିକାରେ ପ୍ରକାଶିତ ଲେଖାର ଏକତ୍ରୀକରଣ ସେପରି କୌଣସି ଉଦ୍ଦେଶ୍ୟ ରଖେ ନାହିଁ । 'ସ୍ମରଣ ବିସ୍ମରଣ' ସେହିପରି କୌଣସି ଭାବସତ୍ତାର କ୍ରମ ବର୍ଦ୍ଧମାନ ପ୍ରକ୍ରିୟାର ଦାବୀ କରେ ନାହିଁ । କିନ୍ତୁ ସାଂପ୍ରତିକ କବିତାର ନୈରାଶ୍ୟବାଦ ଓ ଆତ୍ମସଂକୋଚନର ସ୍ୱାକ୍ଷର ଏଠି ସ୍ପଷ୍ଟ । କବିତାଗୁଡ଼ିକରେ ମୁଖ୍ୟତଃ ତିନିଗୋଟି ସ୍ଥୂଳଶବ୍ଦ ମିଳେ । ରକ୍ତ, ଲୁହ ଓ ଆକାଶ । ରକ୍ତ ଓ ଲୁହର ଦେହଜ ସ୍ଥିତି ଉପରେ ଏ ଆକାଶ, ପ୍ରତିଫଳିତ ମୁକ୍ତିର ବ୍ୟଙ୍ଗ ପ୍ରତିବିମ୍ବ । ରକ୍ତହିଁ ଏକମାତ୍ର ସତ୍ୟ । ଏ ରକ୍ତର ତିନିଗୋଟି ରୂପ ସାଧାରଣତଃ ଦେଖାଦିଏ । ପ୍ରଥମେ ଶରୀରଗତ ପ୍ରେମ :

'ପ୍ରେମ ମାନେ କିଛି ଲୁହେଁ
ଆଖି ଏବଂ ଆଖିର ନିଃଶ୍ୱାସ
ବିଛଣାରେ ଧୂସରିବା ।

ସମ୍ଭବତଃ ରକ୍ତର ନଈକୁ ଭିଡ଼
ବେଳେ ବେଳେ ରକ୍ତର ଭୂଇଁରେ
ଠିଆ କରାଇବା ।'

( ମାନଚିତ୍ର )

ଏ ରକ୍ତ ଯୌନ କ୍ଷୁଧାର ନିଲଜ୍ଜିତ ପ୍ରବାହ । ସୃଷ୍ଟିର ପ୍ରାରମ୍ଭରୁ ଏହା ସାର୍ବଜନୀନ ସଂଯୋଗ କବିତାରେ ରହିଛି । ଦେହ ଛଡ଼ା ପ୍ରେମର ପ୍ରକୃତ ବର୍ଣ୍ଣନା ନାହିଁ ।

ରକ୍ତର ଦ୍ୱିତୀୟ ଚିହ୍ନ ବେଦନା, ଦୁଃଖ ଓ ନଷ୍ଟ ମୁଖୀ କଳ୍ପନାର ପ୍ରତୀକ । ଏ ରକ୍ତରେ କାବ୍ୟିକ ପବିତ୍ରତା ଅଛି । କାରୁଣ୍ୟ ଓ ସଂଘାତର ସମଧିକ ଅଭିମାନ ଅଛି, ଜୀବନର ରୋମାଞ୍ଚ ପୁଲକ ଅଛି ।

'ଆଜି ମୁଁ ରକ୍ତରେ ଧୁଏଁ ଆପଣାର କଲିଜାକୁ ନିତି ।
ଯାହା ଫୁଟେ ଫୁଲ ହୋଇ ମୋ ନିର୍ଲଜ କବିତାରେ ।
ଯାହା ତୁମ ସୁନ୍ଦି ।'

(ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା)

ବା

'ଆଜିର ଏ ଉଲୁସିବା ପର୍ବର ଦିନରେ
ତରଙ୍ଗିତ ଭିଡ଼ କାହିଁ ? ଓ ଭାସୁଥିବା ହଂସର ଶ୍ରେଣୀରେ
ରକ୍ତର ଶିରା କିଏ ଅଙ୍କେ ? ମୋ ଗାଁ ର ଆମ୍ବ ତୋଟା
କ୍ଷୀରବଣ ଓ ଭଇଁଚର ସୁନ୍ଦର ନିଶ୍ଚରେ
କାହାର ସଂଭ୍ରାନ୍ତ ସ୍ୱପ୍ନ ଦିଶେ ।'

( ସ୍ୱପ୍ନ )

ତୃତୀୟ ଚିହ୍ନ ପୌରୁଷ ଓ ଶକ୍ତିର ଓ ତାର ଅପଚୟର । ଏଠି ରକ୍ତ ବିଶେଷ କରି କଳୁଷ, କାମନା ଓ ଧ୍ୱଂସମୁଖୀ ଲାଳସାର ଆଭାସ ଦିଏ ।

॥ କବି କମଳାକାନ୍ତ

'ମୋ ରକତ ହେଲଣି ବୁଡା ! ସ୍ୱପ୍ନ ମୋର ବୁଢ଼ୀ ପାଲଟିଛି ।
ମୋ ଭଲଙ୍ଗ ଇଚ୍ଛା ଏବେ ଜଙ୍ଗମୂଳୀ ଧାରଣ କରିଛି ।
ଏବଂ ମୋର ବଣୁଙ୍କ ରକତର ସଂପର୍କ ସବୁ ଆଗରେ ଅଭୁଟ ରହିଛି ।'

( ଶଠି : ଶିମୁଳି ଓ ପଳାଶ ଫୁଲକୁ

କିଂତୁ ରକ୍ତର କଳୁଷିତ ରୂପର ପରିବର୍ତ୍ତନ— ଯେ ରକ୍ତ ଦ୍ୱାରାହିଁ ସମ୍ଭବ, ଏ ସମ୍ଭାବନା କୌଣସି କବିତାରେ ନାହିଁ । ରକ୍ତ ସବୁ ଧୁଇପାରେ ଏବଂ ପାପରୁ ମୁକ୍ତି ଦେଇପାରେ । ଯେଉଁ ମୁକ୍ତ ଚେତନାର କ୍ଷୀଣ ଇଂଗିତ 'ଆକାଶ' ଦ୍ୱାରା ସୂଚିତ, 'ରକ୍ତର' ପାପ-ପୁଣ୍ୟ ସମନ୍ୱିତ ପ୍ରତୀକ ପରି ବ୍ୟବହାର ହୋଇଥାନ୍ତା ତେବେ କବିତା ଗୁଡ଼ିକରେ ଆଉ ଗୋଟିଏ Dimention ଆସିଥାନ୍ତା ।

'ଲୁହ', ମଣିଷର ଅଶ୍ରୁ, କୋହ ଆକାଶର ମେଘର ଦ୍ୱୈତ ଶବ୍ଦ । ମେଘ, ଅନେକ କବିତାରେ ଲୁହର ରୂପାନ୍ତର ଭାବେ ବ୍ୟବହୃତ ହୋଇଛି । ଉଭୟ ମେଘ ଓ ଲୁହ ଦର୍ପଣ ବା ପ୍ରତିଫଳନର ଲକ୍ଷଣ ନେଇ ମୁକ୍ତ ବା ମୁକ୍ତି ଇଚ୍ଛାର ତଳତଳ ଅନୁରୂପ, ଯାହା କେବେହେଲେ ମୁକ୍ତାର ସ୍ୱଚ୍ଛ ଆହ୍ଲାଦ ପାଇବ ନାହିଁ । ମେଘ ଓ ବର୍ଷା, ଦୁଃଖ ଓ ଅଶ୍ରୁର ଉର୍ଦ୍ଧ୍ୱ ରୂପ । ଶ୍ରାବଣ ଏଠି ଆତ୍ମସାତ୍ତ୍ୱିକ ନୁହେଁ । ବର୍ଷା ମନର ବାଘକୁ ଗୁଂଫା ଭିତରକୁ ନେବା ପରିବର୍ତ୍ତେ ତାକୁ ଅଧିକା ଶକ୍ତିଶାଳୀ କରି ବାହାରକୁ ଟାଣି ନେଇଛି । ବର୍ଷା-ଧୂଆ ଆକାଶ ଓ ଲୁହଧୂଆ ମୁହଁ ପବିତ୍ର ଆଧ୍ୟାତ୍ମିକତାର ସଂସ୍କାର କରେନାହିଁ ।

କବିତା ଯଦି ଅନୁଭୂତିର ନାଟକୀୟ ଏକକ ହୁଏ 'ସ୍ମରଣ ବିସ୍ମରଣ'ର ଅଧିକାଂଶ କବିତା ଦୁର୍ବଳ ମନେ ହୁଅନ୍ତି । ଭାଷାର ଚଞ୍ଚଳ ସହିତ ଭାବ ସତ୍ତାର ସମତାଳ ଅନେକ ସ୍ଥାନରେ ନଥିବା ହେତୁ ନାଟକୀୟତ ବ୍ୟାହତ ହେଲାପରି ଲାଗେ । ପୁଣି ଯେଉଁ ଶବ୍ଦ ବା ରୂପକଳ୍ପ ସ୍ୱୟଂ ସଂପୂର୍ଣ୍ଣ ନୁହେଁ, ସେ ସବୁର ଖିଆଲି ସମାବେଶ ବୌଦ୍ଧିକ ସଂଗଠନ ଅବ୍ୟାହତ ରଖିଲେ ମଧ୍ୟ ଜୈବିକ ସଂହତିକୁ କ୍ଷୁଣ୍ଣ କରିଛି ।

ମତ ଅଭିମତ ଭିନ୍ନମତ ॥

ତୁମେ ଏମିତି ରକ୍ତାକ୍ତ
ଓ ନିସ୍ପଂଦ ହେ : ଶୂନ୍ୟ ଲଫାପାରେ
ସଂପର୍କକୁ ନିବଦ୍ଧ କରିବା ଭଳି
ତୁମ ଭଙ୍ଗା ହୃତ୍ପିଣ୍ଡର ଡେଣାରେ
ସାମାନ୍ୟ ମେଘର ତୁଳି
ଚକଚକ୍ ଛୁରୀ ଛୁଇଁପାରି । ଓ
ଭଉଁରିର ମଝି ଦରିଅରେ
ଶୀତର ଅଧୀର ଦେହ
ପବନ ଫାଶରେ ବାଂଧି
ପ୍ରତୀକ୍ଷାଙ୍କି କରି ।

( ଚିଠି ତୁମକୁ )

ଆଉ ପଦେ କଥା । ସଂକଳିତ କବିତା ସବୁ ଦୁର୍ବୋଧ୍ୟ ନହେଲେ ମଧ୍ୟ ଅନିଶ୍ଚିତ । ଗୋଟିଏ ଭାବ ବା ନିର୍ଦ୍ଦିଷ୍ଟ-ଦୃଷ୍ଟି କରିବା ଛଡ଼ା କୌଣସି ନିର୍ଦ୍ଦିଷ୍ଟ ଆଙ୍ଗିକ ବା ଉଦ୍ଦେଶ୍ୟ କବିତା ଗୁଡ଼ିକରେ ନଥିବାରୁ ସେଗୁଡ଼ିକ ଶବ୍ଦାୟିତ ସ୍ୱଗତର କାମ କରନ୍ତି । କିନ୍ତୁ 'ପୁନର୍ଗମନ', 'ମାନଭଙ୍ଗ' ଓ 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା' ସଫଳ ଓ 'ସ୍ତନ'ର ବୌଦ୍ଧିକ ପ୍ରେରଣା ଉଚ୍ଚକୋଟୀର । କମଳାକାନ୍ତଙ୍କର ଭାଷା ସଂଯତ, ସମସ୍ତ ସ୍ପଷ୍ଟବାଦିତା ସତ୍ତ୍ୱେ ବି ଆବିଳ ନୁହେଁ । ବିଭିନ୍ନ ମନ ସ୍ଥିତି ଲାଗି ଛନ୍ଦ ନିରୂପଣ ଖୁବ୍ ଯୁକ୍ତିଯୁକ୍ତ । ଗାଉଁଲି ଭାଷାର ଆନ୍ତରିକତା ଓ ସଂଭ୍ରାନ୍ତ ଭାଷାର ଗାଂଭୀର୍ଯ୍ୟ ଉଭୟ 'ସ୍ମରଣ' ଓ ବିସ୍ମରଣ କୁ ଆବେଗ ଦିଅନ୍ତି ଓ ପଙ୍କ୍ତିର ଗତି ଭାବ ସତ୍ତାର ଦୁର୍ବଳତାକୁ ଲୁଚାଇ ନପାରିଲେ ମଧ୍ୟ ପାଠକ ମନରେ ଆନନ୍ଦର ସାମୟିକା ସୃଷ୍ଟି କରନ୍ତି ।

ଚିରନ୍ତନ ମୂଲ୍ୟବୋଧର ବିସର୍ଜନ କାଳୀନ ଅଧ୍ୟାୟରେ ଆମର ପାଠକ ନିଶ୍ଚୟ ଗ୍ରହଣ କରିବ ସେଇ ସାମୟିକ ଆନନ୍ଦ ଏବଂ ପୁନର୍ଗମନର ଲୋଭନୀୟ ଭୁଲକୁ ସ୍ୱୀକାର ନକଲେ ମଧ୍ୟ କରି ବସିବ ।

॥ କବି କମଳାକାନ୍ତ

'ବାରମ୍ବାର ମନା ସତ୍ତ୍ୱେ
ଜାଣେନା ମୁଁ କେଉଁପରି
ଫେରୁଅଛୁ ନିଷିଦ୍ଧ ସହର ଟେପି ଓଲଟା ରାସ୍ତାରେ ।
ବାରମ୍ବାର ମନା ହେବା ସତ୍ତ୍ୱେ ସେଏ ।
ଫେରେ ନୂଆ ଦର୍ଧିଭୂତ ସନ୍ତରୀର
ଜବର କାନ୍ଧେଇ । ସେତେବେଳେ ଶୂନ୍‌ଶାନ୍
ତାରଙ୍କର ହସ ଏବଂ ଅକାଶର ଲୁହସବୁ
ଏ ପୃଥିବୀକୁ ପ୍ରେମ ହୋଇ
ଆସଇ ଓହ୍ଲାଇ ।'

( ପୁନର୍ଗମନ )

**ଶ୍ରୀ ପ୍ରଫୁଲ୍ଲ କୁମାର ମହାନ୍ତି**

## ଉତ୍ତରଣ

[ 'ସମାଜ' ୯ । ୪ । ୭୬ ]

କବି ସା ଜ୍ୟାଁ ପାର୍ସଙ୍କ 'ଆନାବେସ୍' କବିତା ଅନୁରୂପ 'ଉତ୍ତରଣ' କାବ୍ୟଟି ଭାବ, ଭାଷା ଓ ସଂହତିରେ 'ଆନାବେସ୍'ସ୍ତରକୁ ପହଞ୍ଚ ପାରି ନଥିଲେ ମଧ୍ୟ ଓଡ଼ିଆ କାବ୍ୟ ଜଗତରେ ଏକ ନୂତନ ପରୀକ୍ଷା ଭାବେ ସମସ୍ତ ଚିନ୍ତାଶୀଳ ପାଠକ-ପାଠିକା ତଥା ଆଧୁନିକ ଜୀବନର ଅର୍ଥ ଅନୁସନ୍ଧାନ୍ତୁମାନଙ୍କ ନିକଟରେ ନିଶ୍ଚୟ ଏହାର ଏକ ବିଶେଷ ସ୍ଥାନ ରହିଛି । ଏହି ଦୀର୍ଘ କବିତାଟିରେ ଆଧୁନିକ ଜୀବନର ମୌଳିକ ସ୍ୱପ୍ନ ଓ ସମସ୍ୟା ଗୁଡ଼ିକର ବିଶ୍ଳେଷଣାତ୍ମକ ତଥା ଅନ୍ତରଙ୍ଗ ଆଲୋଡ଼ନ ସମ୍ବଳିତ ଏକ ଗଭୀର ସାମାଜିକ ଚେତନା ଓ ଆବେଗ ସୁସ୍ପଷ୍ଟ ।

ମତ ଅଭିମତ ଭିନ୍ନମତ ॥

## ଉତ୍ତରଣ

[ 'ଦିଗନ୍ତ' - ନୂତନ ପ୍ରସ୍ଥ ]

କବି କମଳାକାନ୍ତ ଲେଙ୍କାଙ୍କ ପ୍ରଣୀତ କେତୋଟି କବିତାର ସମଷ୍ଟି । କେତେକ କବିତାରେ କବି ମାନସର ସ୍ପର୍ଶ କାତରତା, ଏକ ପ୍ରାଣ କୈନ୍ଦ୍ରିକ ଚେତନାରେ ରୂପାନ୍ତର ଲାଭ କରିଛି । 'ଆର୍କିଟାଇପ୍' ପ୍ରତ୍ୟାହାର କରିବାକୁ ଯାଇ କବି ଯଦି ଆତ୍ମ-କୈନ୍ଦ୍ରିକତାର ଶିକାର ହୋଇ ଥାଆନ୍ତି, ତେବେ ତାହା କବିତାର ଗତିବେଗର ଏକ ଅପରିହାର୍ଯ୍ୟ ପରିଣତି ରୂପେ ସ୍ୱୀକାର କରିବାକୁ ମନେ ହୁଏ । କବିତାର ମୁଖବନ୍ଧ ଲେଖାଳୀଙ୍କ କଥାରେ 'ସ୍ଥିତିବାଦୀ ଦୃଷ୍ଟିକୋଣର ପରିଚୟ' ମିଳେ କି ନାହିଁ ସେଥିରେ ପାଠକର କିଛି ଯାଏ ଆସେ ନାହିଁ । ତଥାପି ପାଠକ ବହୁ ସ୍ଥଳେ ଓ ସଂଶୟର ଦ୍ୱନ୍ଦ୍ୱରେ ଆନ୍ଦୋଳିତ ହେବାକୁ ବାଧ୍ୟ । ଅସ୍ପଷ୍ଟତା କବିଙ୍କର ବକ୍ତବ୍ୟକୁ ବେଳେବେଳେ ଗୁପ୍ତାଚ୍ଛନ୍ନ କରି ପକାଇଛି । । ଶବ୍ଦ ଗ୍ରଂଥନରେ ସଂଯମ ଓ ଶୁଚିତା ଲକ୍ଷଣୀୟ । 'ଉତ୍ତରଣ' କବିଙ୍କର 'ବିକଳ୍ପ ମମତା'ର ଊର୍ଦ୍ଧ୍ୱାୟନ ନୁହେଁ । ତେଣୁ 'ସମ୍ରାଟ'ଙ୍କର ଅଭିଷେକ ମଂଚର ଏକ ଶବ୍ଦ ହେବାକୁ ସବୁ ଦିଗରୁ ଉପଯୁକ୍ତ ।

ସଚ୍ଚିଦାନନ୍ଦ ରାଉତରାୟ

## କବିତାର ମୁହଁ

['ମୁଖଶାଳା' - ଭଦ୍ରକ, ୧୯୭୬ ବାର୍ଷିକ ସଂଖ୍ୟା]

କବିତା ଗୁଡ଼ିକରେ କବିଙ୍କର ବ୍ୟକ୍ତିକୈନ୍ଦ୍ରିକ ଭାବ ଚେତନା ରୂପ ଲାଭ କରିଛି । ପାଠକ କବିତା ଗୁଡ଼ିକ ଭିତରେ ଜଣେ କବିଙ୍କର ଜୀବନର ସୁଖ-ଦୁଃଖ, ଆଶା-ନିରାଶାର ବିଳିଷ୍ଟ ପ୍ରକାଶଭଙ୍ଗୀ ଓ ଭାବସତ୍ତା ଉପଭୋଗ କରିବାର

ସୁଯୋଗ ପାଏ । 'ମୋ ମା' ପ୍ରତି' 'ନିଜସ୍ୱ ପ୍ରାର୍ଥନା, 'ସନ୍ୟାସ ଓ ନିରୁଦ୍ଦିଷ୍ଟ ବ୍ୟକ୍ତି ସଂପର୍କରେ' ଆଦି କବିତା ଗୁଡ଼ିକ ଏ ଗ୍ରନ୍ଥର ଶ୍ରେଷ୍ଠ କୃତି ବୋଲି କୁହାଯାଇ ପାରିବ ।

× × ×

କବି ଶ୍ରୀ ଲେଙ୍କାଙ୍କ ପ୍ରକାଶଭଙ୍ଗୀ ତଥା ସମୃଦ୍ଧ ଶବ୍ଦଭଣ୍ଡାର ତାଙ୍କ କବି ପ୍ରତିଭାର ପରିଚୟ ବହନ କରେ । ସ୍ଥାନେସ୍ଥାନେ ସାଂଗୀତିକତାର ଅନୁରୋଧରେ କବି ଭାବ କେନ୍ଦ୍ରରୁ ଦୂରକୁ ଚାଲିଯାଇଛନ୍ତି । ଏ ଗ୍ରନ୍ଥ ବିଷୟରେ କିଛି କହିବାର ଥିଲେ ବି ଏବଂ କେତେକ ତ୍ରୁଟି ସତ୍ତ୍ୱେ ଏହି ସଂକଳନ ଯେ ଆଧୁନିକ କବିତାର ଏକ ପ୍ରତିନିଧି ସ୍ଥାନୀୟ ସଂକଳନ ଏହା ଅସ୍ୱୀକାର କରିହେବ ନାହିଁ ।

## ସ୍ମରଣ ବିସ୍ମରଣ

['ଝଂକାର' ୨୭ଶ ବର୍ଷ, ୪ର୍ଥ ସଂଖ୍ୟା—୧୯୭୪ ]

'ସୁନା ଫସଲ', ପ୍ରୀତି ଓ ପ୍ରତୀତି' ଓ 'ଉତ୍ତରଣ' ପରେ— ସ୍ମରଣ ବିସ୍ମରଣ'— କବି କମଳାକାନ୍ତ ଲେଙ୍କାଙ୍କର— ଚତୁର୍ଥ କବିତା ସଂକଳନ ।

ପ୍ରୟୋଗବାଦିତାରେ ସମୃଦ୍ଧ କବି ଶ୍ରୀ ଲେଙ୍କା ପାଠକ ମହଲରେ ବହୁତ ଆଗରୁ ପରିଚିତ । ତାଙ୍କର ସ୍ୱରରେ ଓ ସ୍ଫୁରଣରେ କୌଣସି ନିର୍ଦ୍ଦିଷ୍ଟ କାବ୍ୟ ଦର୍ଶନ, ବା ସମାଜ ଦର୍ଶନର ସୁର ଖୋଜିଲେ ମିଳେନା । କିନ୍ତୁ ଜୀବନ ପାଇଁ ଗୋଟିଏ ଦର୍ଶନର ଅନୁସନ୍ଧାନରେ ସେ ଯେ ସଚେତ ଓ ବ୍ୟସ୍ତ ଏହା ସ୍ପଷ୍ଟ ବୁଝିହୁଏ । ସେଥିପାଇଁ ବୋଧେ ପରୀକ୍ଷାତ୍ମକତା ତାଙ୍କର ଅନୁସୃତ କାବ୍ୟ ପନ୍ଥା । ଏହାହିଁ ତାଙ୍କ କବି ମାନସର ଆଧୁନିକତାର ପ୍ରମାଣ ।

ଆଲୋଚ୍ୟ ସଂକଳନଟିରେ ଅଛି ବିଭିନ୍ନ ସମୟରେ ରଚିତ ୫୨ଟି କବିତା । ରଚନାର ସମୟ ଓ ସ୍ଥାନ ବିଷୟରେ କବି ଗୋପନୀୟତା ରକ୍ଷା କରିଛନ୍ତି । କିନ୍ତୁ କାହିଁକି ? କବିତା ଦେଶ-କାଳାତୀତ ନହେଲେ ବି ସମାଲୋଚକ ଦେଶ ଓ କାଳ ଖୋଜେ । କିନ୍ତୁ, ସମାଲୋଚକଙ୍କ ଦୃଷ୍ଟି ନ୍ୟୂନ ହେବା ଆଉ ଏ ଶତାବ୍ଦୀରେ ଶୋଭା ପାଏନା । ପାଠକଙ୍କୁ ବରଂ ଅଧିକ ଟିକିଏ, ବୁଝାମଣା ଦିଗରେ, ସୁବିଧା ହୋଇଥାନ୍ତା ।

'ସ୍ମରଣ ବିସ୍ମରଣ' ଓଡ଼ିଶାର ଅନ୍ୟତମ ବରେଣ୍ୟ ସ୍ରଷ୍ଟା ଶ୍ରୀ ଚିନ୍ତାମଣି ବେହେରାଙ୍କୁ ଉତ୍ସର୍ଗୀକୃତ । କବିଙ୍କ ତରଫରୁ କେତେକଙ୍କ ନାମ ସ୍ମରଣ ବ୍ୟତୀତ ଆଉକିଛି ଦେୟ ଭାଷଣ ନାହିଁ । ମାତ୍ର, ଅଗ୍ରଲେଖ ରୂପେ ସଂଯୋଜିତ ହୋଇଛି ଜ୍ୟୋତିଷ୍ମାନ ତରୁଣ କବି ଶ୍ରୀ ଧୀରେନ୍ ଆଚାର୍ଯ୍ୟଙ୍କର ଅଭିମତ, ଅବଶ୍ୟ ସୁଚିନ୍ତିତ ଓ ନାତିଦୀର୍ଘ । କବି ଶ୍ରୀ ଲେଙ୍କାଙ୍କ ଶାନ୍ତିନିକେତନୀ ବନ୍ଧୁ ଶ୍ରୀଯୁକ୍ତ ଅଭିରାମ ସାହୁଙ୍କ ପ୍ରଚ୍ଛଦ ଅଙ୍କନ ବହିଟିର ଅଙ୍ଗକୁ ସୁଦୃଶ୍ୟ ଓ ସଂକେତ-ପୂର୍ଣ୍ଣ କରିଛି । ଯେଉଁ ଅପାଶୋରା ମୁହଁଗୁଡ଼ିକର ସ୍ମୃତିରେ କବିଙ୍କ ରୂପ ବ୍ୟଥା ଏତେ ଚିନ୍ମୟ ଅଭିରାମ ବାବୁ ସେମାନଙ୍କୁ ରଙ୍ଗ ରେଖାରେ ଫୁଟାଇ ପାଠକଙ୍କ ଚିତ୍ତରେ କବିଙ୍କ ପାଇଁ ସହାନୁଭବତାର ପରିବେଶ ପ୍ରଥମରୁ ସୃଷ୍ଟି କରିଛନ୍ତି ।

କବିଙ୍କ ଅନୁଭୂତିର ଜଗତ ପ୍ରଶସ୍ତ । ପୁଣି, ସେଇ ପ୍ରଶସ୍ତତା ଏକ ନିର୍ଦ୍ଦିଷ୍ଟ ସୀମାରେ ସୀମିତ । କବି ସେ ବିଷୟରେ ମଧ୍ୟ ସଚେତନ ଥିବା ପରିଲକ୍ଷିତ ହୁଏ । ତାଙ୍କର ହସ-କାନ୍ଦର; ସୁଖ-ଦୁଃଖର ପୃଥିବୀ ଓ ତାଙ୍କର ଆବେଗ-ଉଦ୍‌ବେଗର ବିଶ୍ୱର ପରିଚୟ ସୃଷ୍ଟିରେ ଉତ୍କଣ୍ଠୀ । ସେ ଖୋଜୁଛନ୍ତି ରୂପ ଭିତରେ, ପ୍ରେମ ଭିତରେ, ଅଶ୍ରୁ ଭିତରେ ଓ କାମନାନ୍ଧ ଦେହ ଭିତରେ । କ'ଣ ସେ ଖୋଜୁଛନ୍ତି ? କହିହେବ ନାହିଁ । ସେଇ ଖୋଜିବାହିଁ ତାଙ୍କର କବିତା । କିନ୍ତୁ, ଯାହା ସେ ପାଇଛନ୍ତି, ଯାହା ପାଇ ପୁଣି ହରାଇ ବସିଛନ୍ତି — କବିତା ଗୁଡ଼ିକର ଅନ୍ତର ଭିତରେ ରହିଛି ତାହାର ଇଙ୍ଗିତ । ତାହାହିଁ କବି କମଳାକାନ୍ତଙ୍କ ଭଳି ଜଣେ ରୂପ ପିପାସୁ, ଦେହ-ପ୍ରବଣ କବିଙ୍କର ଜୀବନ-ସାଧନାର ସଙ୍କେତ ।

|| କବି କମଳାକାନ୍ତ

ସଂକଳନର ଆରମ୍ଭ 'ଏଠି ସବୁ ଧାନ ବଲ'ରୁ— ଓଡ଼ିଆ କବି ଜୀବନର ଧାନ ବିଲକୁ ଅଲଗା କରି ଦେଖିବାର ଚିତ୍ର ଯାନ୍ତ୍ରିକ-କାଳ ଏବେ ବି ଆସିନାହିଁ । କବି କମଳାକାନ୍ତଙ୍କର ଜୀବନ ଗଠନର ମୂଳ ଭୂମି ହେଉଛି ଗ୍ରାମ । 'ଶରତର ସବୁଜ ଚଉଁର', 'ଅଖି ଅପହଞ୍ଚ ପଠା' ଓ 'ପାଣି ଆଜି କାଦୁଅର ଛଟା,' ଶିଶିରର ଝିଙ୍କାରୀତ କ୍ଷେତେ କ୍ଷେତେ...' ପ୍ରଭୃତି ଦେହ ଭିତରେ ସେହି ଗାଁର ଶସ୍ୟପଟ୍ଟ ନିର୍ମିତ । ଏମିତି ଯେମିତି ଟାଁ ସେଇକି ନୁହେଁ । ତାଙ୍କର ଗ୍ରାମାନୁଭୂତିର ଆବେଦନମୟ ରୂପଟି ଜୀବନ୍ତ ଓ ଗୀତିମୟ । ଜୀବନ ସେଠି 'ସଫେଦ ଆକାଶ' ପରି 'ତରଳିଗେ ଚଇନ୍ଦୁଳ' । 'ଦାଅ ଅଉ କୋଦାଳର ଗାନ' ସେଠି ଶୁଣାଯାଏ । କବିଙ୍କୁ ଆତ୍ମହରା କରିବାର ପ୍ରମାଣ—

'ମୋ ମନଟା ବୁଡ଼ିଗଲା
ଫସଲର ଢେଉକୁ ଆଡେ଼ଇ
ଏଠି ସବୁ ଧାନ ବିଲ
ଗୀତ ଗାଏ ମନର ଚଢେଇ ।"

ପ୍ରଭୃତି ନିକଟକୁ ଫେରିଯିବା ପାଇଁ ଏ ଯେମିତି କବିଙ୍କ ଚିତ୍ତ ପକ୍ଷୀର ଏକ ଦୁରନ୍ତ ଅହ୍ୱାନ । 'ସୁନା ଫସଲ'ର କବିଙ୍କ ପ୍ରାଣରେ ଗ୍ରାମର ଏ ସ୍ନେହ ଡାକରା, ଯେମିତିକି ନାନା ଆବର୍ଜନା ଭିତରେ ଧନ୍ଦାହୋଇ ସଢୁଥିବା ଜନପଟୀ-ମଣିଷକୁ ଡାକୁଛି ନିର୍ମଳତା, ସରଳତା ଓ ନିଷ୍କପଟତା ।

କିନ୍ତୁ ଆଧୁନିକ ଓଡ଼ିଆ ସହର ଓ ଗ୍ରାମ ଉଭୟ ପ୍ରତି ଆସକ୍ତ; ସହରର ଆବର୍ଜନା, ଛଳନା, ଅଶୁଦ୍ଧି ଓ ଅନ୍ଧକାର— ସବୁ କିଛି ଆଜି ତା' ଜୀବନ ଓ ଜୀବିକାର ଅଙ୍ଗ । ଭକ୍ତ କବି ମଧୁସୂଦନ ରାଓଙ୍କର 'ଗୁଡ଼ ବନ୍ଧୁ ନଗର ତହଳ, ଚାଲିଯିବା...'(ଗ୍ରାମକୁ) ସଦୃଶ ଅବାନ୍ତର ଓ ଅବାଞ୍ଛିତ ଆହ୍ୱାନ ଦେବାକୁ କବି ଆଜି ଅଶୋଭନୀୟ ବୋଲି ମନେକରେ । ସାହରିକତା, ହୁଏତ ଏକ ରୋଗ; କିନ୍ତୁ ଗ୍ରାମକୁ ଫେରିଯିବା ସେ ରୋଗର ଔଷଧ ନୁହେଁ ।

ତା' ବୋଲି ଆଧୁନିକ ଓଡ଼ିଆର ପ୍ରାଣରେ ଯେ ଗ୍ରାମ ପ୍ରତି ମୋହ ମତ ଅଭିମତ ଭିନ୍ନମତ ॥

ନାହିଁ, ଏକଥା କହିହେବ ନାହିଁ । ବରଂ ସେ ଗ୍ରାମର ସ୍ମୃତିପ୍ରତି ଆବେଗ ପ୍ରବଣ । ଆଧୁନିକ କବିଠାରେ ଅଛି ସେଇ ବ୍ୟଥାର ସଙ୍କେତ । ସ୍ମୃତିରେ ଜର୍ଜରିତ ନିବେଳା ମୁହୂର୍ତ୍ତରେ ତାଙ୍କର ବ୍ୟାପ୍ତ ହୋଇଯାଇଛି ଗ୍ରାମ ପଲ୍ଲୀର ସବୁଜିମାରେ ଉଜ୍ଜ୍ୱଳ ଧାନକ୍ଷେତ । କମଳାକାନ୍ତ ଲେଙ୍କାଙ୍କର ସେଇ ଗୋଟିଏ ମୁହିଁ ଆଉର ଅନେକ କବିତାର ଅଙ୍ଗ ଓ ଆତ୍ମା ମଧ୍ୟକୁ ଆସିଚି ଗ୍ରାମ— ଯାହାର ନିଜସ୍ୱ ରୂପ ଲାବଣ୍ୟ ଓ ନିଜସ୍ୱ ଭକ୍ତି-ମଧୁର ଘଟଣା ଦେଇ ।

‘ଥିରଥିର ପବନର କାନ୍ଦଣା ଓ
ଆମ୍ବ ତୋଟା ଗହଳରେ ଶଗଡ଼ର ଚକ ତଳେ
ଶିଜୁଥିବା ଗାଁ ର ଶରଧା ।’ (ଆଗି)

ବା

‘ଆମ ଗାଁ ଦୋଣ୍ଡା ନାଚ ଗୀତରେ ବଢୁଛି
ମୁଇଁ ହେଲି ମେଘର ଫୁଲିଲି ମୁହିଁ··· ।’

ବିଶେଷ ଉଦାହରଣର ପ୍ରୟୋଜନ ନାହିଁ ।

ଗ୍ରାମର ନିର୍ମଳତା ପ୍ରତି କୌଣସି ମୁହୂର୍ତ୍ତଗତ ଦୁର୍ବଳତା ରହିଥିଲେ ବି କମଳାକାନ୍ତଙ୍କ ପ୍ରେମରେ ଓ ପ୍ରେମିକା ପ୍ରତି ଆନୁଗତ୍ୟରେ ଗ୍ରାମ ସରଳତାର ସ୍ପର୍ଶନାହିଁ । ପ୍ରେମାତୁରତା ମଧ୍ୟରେ ସେ ସର୍ବଦା ନିଜପଥକୁ ଜଗି ଚାଲିଛନ୍ତି । କିନ୍ତୁ ଯେତେ ଜଗି ଚାଲିଲେ ମଧ୍ୟ ମଣିଷ ବେଳେବେଳେ ହୁଏ ବ୍ୟର୍ଥ । ବ୍ୟର୍ଥତା ପାଇଁ ଅନୁଶୋଚନା କରେ, ମୁଣ୍ଡ ଗଡ଼ାଏ । ସେଇ ହା-ହା-କାରର ଧ୍ୱନି କବି ଲେଙ୍କାଙ୍କ ରଚନାରେ ସ୍ପଷ୍ଟ । ତାଂକର ବାଂଧଣା— ମୁହୂର୍ତ୍ତର ଇଚ୍ଛା । ସଚଞ୍ଚଳ ଇଚ୍ଛାର ସପନ ।’ ଏବଂ ଯେମାନେ ପୁଣି । ତରଙ୍ଗିତ ଇଚ୍ଛାର ରୋମାଞ୍ଚ— (ପୃ ୧୦୦) । ପ୍ରେମିକା ସମ୍ବନ୍ଧିତ କବିଙ୍କର ସଂପର୍କରେ ସ୍ଥିରତା ନାହିଁ, ପାରଂପରିକ ପ୍ରେମବୋଧ ନାହିଁ । ପୁଣି ଅଶ୍ରୁ, ପୁଲକ ବ୍ୟଥାବିଦ୍ଧ ଆଜିର ପ୍ରେମିକାଠାରେ ବି ବିରଳ ଏବଂ ତା’ର ଗୋପନ ମନର ଅକ୍ଷାଂସ ଦ୍ରାଘିମା ସଂପର୍କରେ କବି ମଧ୍ୟ ସଚେତନ ଓ ଏ ଦିଗରେ ମନୋବିଜ୍ଞାନ ତାଙ୍କର

ମହାପୃକ । ପ୍ରେମିକା (ପ୍ରେମିକ ପତ୍ର) ଆଜି ବାସ୍ତବିକ ଦୁର୍ବୋଧ୍ୟ । କବି କମଳାକାନ୍ତ ସମସ୍ତ ବିଶେଷରେ ସେଇ ବାନ୍ଧବୀମାନଙ୍କ ଠାରେ ଅନୁଭବ କରିଛନ୍ତି । 'ମର୍ମଗତ ପ୍ରୀତିର ଛନ୍ଦ', ଯାହାର ପ୍ରଭାବରେ 'ବିଖଣ୍ଡିତ' ହୋଇଛି ତାଙ୍କର ଚେତନା । କେତେବେଳେ ସେ ସମର୍ପିତ ପ୍ରାଣ । କିନ୍ତୁ ମୋଟ ଉପରେ କହିଲେ; କବିଙ୍କର ବାନ୍ଧବୀମାନଙ୍କୁ ପାରଂପରିକ କାବ୍ୟ-କଳାରେ ସିଦ୍ଧ ପ୍ରେମିକା ରୂପେ ଗ୍ରହଣ କରିହେବ ନାହିଁ । ସେମାନଙ୍କର ଦେହ ଦର୍ଶନ, ଜୀବନ ଦର୍ଶନ ଓ ପ୍ରେମ ଦର୍ଶନ ସବୁ ଗୋଳିଆମିଶା । କବି ନିଜେ ବି ବୁଝି ପାରିନାହାନ୍ତି ସେମାନଙ୍କୁ । ଏବଂ ସେଥିପାଇଁ 'ହେ ମୋର ବାଂଧବୀମାନେ'— ଏକ ଅବୁଝାମଣାର କବିତା କବି ନିଜେ ସନ୍ଦିଗ୍ଧ ହୋଇ କହିଛନ୍ତି ଯଥା—

'ହେ ମୋର ବାଂଧବୀମାନେ !
କପୋତୀର ରକ୍ତାକ୍ତ ପତନ,
ତୁମେ କି ମୋ ଦରଭୁଲ୍ କାହାଣୀର
ଆଧୁନିକ ସ୍ୱରର ଗୁଂଫନ !
ତୁମେ ସବୁ ଜହ୍ନବୁଡ଼ା ପାଣିଚିଆ ଅଂଧାରର
ଢିକ୍ ଢିକ୍ ତାରା,
ତୁମେ ସବୁ ଶୂନ୍‌ଶାନ୍ ସମୟର
କୁହୁକୁହୁ ପକ୍ଷୀର ଡାକରା ।'

କବିଙ୍କ ଠାରେ ନାରୀମାନଙ୍କ ପ୍ରତି ପ୍ରଚଣ୍ଡ ଘୃଣା, ଅଥବା କ୍ରୋଧ, ଅଥବା ଅବାରିତ ସ୍ନେହ ନାହିଁ । ଦେବା-ନେବାର ସଂପର୍କ ଜଟିଳତାରେ ଲିପ୍ତ । କବିଙ୍କର 'ଆଖି' ଏବଂ ସ୍ୱତନ୍ତ୍ର ମାନସିକତାର କବିତା । ତାଙ୍କର 'ଟଲ ଟଲ ଆଖି'ର ଆବର୍ତ୍ତ ମଧ୍ୟରେ କବି ଉପଲବ୍ଧି କରିଛନ୍ତି— ଈଶ୍ୱରଙ୍କର ଚକ୍ଷୁ ଯଥା—

'ହେ ପ୍ରଭୁ ! ତୁମର ସେ ଚଢ଼ା ଚଢ଼ା ଆଖି'

× × ×

ବା

'ଚେଣ୍ଠ ଆଖି ଧନ୍ୟ ପ୍ରଭୁ ।'

ଅଧିକାଂଶ ରୋମାଣ୍ଟିକ କବିଙ୍କ ପରି ଶ୍ରୀ ଲେଙ୍କା ବ୍ୟକ୍ତିଗତ ଯନ୍ତ୍ରଣାକୁ ବଡ଼କରି ଦେଖିଛନ୍ତି । କେତେବେଳେ ସେ ଅନୁଭବ କରିଛନ୍ତି ଶୂନ୍ୟତା । ଅଥଚ ସେଇ ଶୂନ୍ୟତା ମଧ୍ୟରେ ନିଜର ମୂଲ୍ୟ ନିର୍ଦ୍ଧାରଣ କରିବାକୁ ସେ ଆକାଂକ୍ଷିତ ।

'ସବୁ ଲାଗେ ଶୂନ୍‌ଶାନ୍
ଏ ରାତିର ହସ କେଉଁ କେଉଁ
ମୋ ହସରେ ମିଶେ ଏବଂ ମୁଁ ମିଶାଏ
ମୋହର ହସକୁ ।(ପୃ—୧୩)

କବିଙ୍କର ସମସ୍ତ ବାତୁଳତା ଓ କଳାପ୍ରତି ଆନ୍ତରିକତା ମଧ୍ୟରେ ତାଙ୍କର ସ୍ୱକୀୟ ଉପଲବ୍‌ଧି ପ୍ରକାଶ ପାଇଥାଏ । ଉଗ୍ରଙ୍ଗ କବିତାର ତାହାହିଁ ପ୍ରଧାନ ଗୁଣ । ସେତିକି ନଥିଲେ ବ୍ୟକ୍ତିଗତ କବିତା ସାଧାରଣ ପକ୍ଷରେ ଗ୍ରହଣୀୟ ହୁଅନ୍ତା ନାହିଁ । ଯେତେବେଳେ କବି କମଳାକାନ୍ତ କହୁଛନ୍ତି—

'... ଏବଂ ଝିଅଙ୍କର ଦୁଃଖ ଦେଖି ମନେ ପଡ଼େ ସେମାନଙ୍କୁ ଲେଉଡ଼ିବାର ସମଗ୍ର କାରଣ । ଅଥଚ କାରଣ ମିଥ୍ୟା । ନିଜକୁ ମୁଁ ଫାଙ୍କିବାର ସ୍ନେହ ଭିଡ଼ ଧରେ ସେମାନଙ୍କୁ । ମୃତ୍ୟୁର ବେଣୀକୁ ।' କବି ସମ୍ଭବତଃ 'ଏକ ଅର୍ଥହୀନ ଗୀତ' ରୂପରେ କଳା ସୃଷ୍ଟିକୁ ଗ୍ରହଣ କରିଛନ୍ତି ।

ନାନା ପ୍ରତୀକ, ଚିତ୍ରକଳ୍ପ ଓ ଉପମା ଜରିଆରେ କବି ପ୍ରକାଶ କ୍ଷମ । ଫେଣ୍ଟିବା, ଆଉଟିବା, ଖୋଲମାରିବା ଓ 'ଚାକୁଡ଼ି' ପ୍ରଭୃତି କ୍ରିୟାପଦ ଓ ଶବ୍ଦ ଗୁଡ଼ିକ ପ୍ରତି କବିଙ୍କର ସ୍ନେହ ସ୍ପଷ୍ଟ । କବିଙ୍କର ଅନେକ କବିତାରେ ସହରି ଜୀବନର ଚିତ୍ର ଫୁଟିଚି, ଚିତ୍ରକଳ୍ପ ଗୁଡ଼ିକ ଭିତରେ ଯଥା— 'ଓ ସେମାନେ ପ୍ରାଇଭେଟ୍ ବସ୍ ପାଖେ ପେଟ୍ରୋଲର ଗଂଧ ବାଣ୍ଟୁଛନ୍ତି ।' (ପୃ ୧୮)

× × ×

|| କବି କମଳାକାନ୍ତ

'ମୋତେ ଯେ କରୁଚ କୋଳ ।
ଫୁଲଟବ୍, ଘାସପେଟ୍
ସିନେମା ଓ ଟି ପାର୍ଟି, ଦେକଧାବାଂଳ, ପାନବାଲ,
କ୍ୟାଣ୍ଟିନ୍ ଓ ଲଜିଂ ହାଉସ'— (ପୃ. ୧୬)

ଅଥବା

ବର୍ତ୍ତମାନ ଦରକାର ଏକ ଫ୍ରେଞ୍ଚ
ପଣ୍ଡସନିମ, ହେୟାରହମ, ଗଗଲସ ଓ ପ୍ରେସର କୁକର ।
ବହେଲନ, ଲୁମ୍ ଏବଂ ଭି କଟ୍ ବ୍ଲାଉଜ ଦୁଇ ଯୋଡ଼ା ।
ଗ୍ଲେଟ ଏକ ଟ୍ରାଂଜିଷ୍ଟର, ଫ୍ଲାସ୍କ ଓ ସ୍କୁଟର, ଲିପ୍ଷ୍ଟିକ୍, ପାକେ
ଯୋଧା...ବ୍ରେସିୟାର ।' (ପୃ. ୧୪)

ଯୌନ ସଂଘର୍ଷ, ଅନୁଶତ ବିରହଜ୍ୱାଳା ଓ ପ୍ରେମାତୁରତା ମଧ୍ୟରେ କବିଙ୍କର ଦେହ ଲିପ୍ତତା ପ୍ରକଟିତ । ଏ ସମସ୍ତ ଦର୍ଶନ ଏକତ୍ରିତ ତାଙ୍କର 'ସ୍ତନ' କବିତାରେ, ଯେଉଁ ମୁହୂର୍ତ୍ତ ବିଶେଷରେ କବି 'ସ୍ତନ୍ୟ' କଥା ଓ ମାତୃ କଲ୍ୟାଣ ଓ ଅକପଟ ମାତୃ ସ୍ନେହ କଥା ଭୁଲି ଯାଇଛନ୍ତି ।

ଏହି ସଂକଳନଟିରେ ମନେ ରଖିଲା ଭଳି ଅନେକ ପଦ ରହିଛି । ସ୍ପର୍ଶାତୁର କଲାଭଳି ଅନେକ ଶବ୍ଦ ରହିଛି । ଭାବାନ୍ତର ସୃଷ୍ଟି କଲାଭଳି ଅନେକ ଉପାଦାନ ରହିଛି ।

ଏହା ବ୍ୟତୀତ— 'ଶତ୍ରୁ ଖାଇ ନଦ'; 'କାନ୍ଦୁରୀ ଆକାଶ', 'ସ୍ଖଳିତ ଈଷ୍ଟର ଦୁଷ୍ଟ ନଈବତି' କବିଙ୍କର ସ୍ୱଗଠିତ ସଂଭ୍ରାନ୍ତ ଶବ୍ଦ ।

ପୁସ୍ତକଟି ସୁମୁଦ୍ରିତ । ପ୍ରସାର କାମନା କରୁଛି ।
ବହିର ମୂଲ୍ୟ ୫-୦୦ । ପ୍ରକାଶକଙ୍କୁ ସାଧୁବାଦ ।

**ଡକ୍ଟର ପ୍ରସନ୍ନ କୁମାର ମିଶ୍ର**

ମତ ଅଭିମତ ଭିନ୍ନମତ ।।

# ଅଂତତଃ ନିଷ୍ଟୁପ

[ 'ଝଙ୍କାର' ୨୮ଶ ବର୍ଷ ୯ମ ସଂଖ୍ୟା— ୧୯୭୬ ]

ଏହି କାବ୍ୟ-ସଂକଳନଟିରେ ଶ୍ରୀ ଲେଙ୍କାଙ୍କର ଛପ୍‌ନଶଟି କବିତା ସ୍ଥାନ ଲଭ କରିଛି । ପରିଚିତ, ଅପରିଚିତ, ସୁପରିଚିତ ଓ ନାତି ପରିଚିତ ବିଭିନ୍ନ ଓଡ଼ିଆ ପତ୍ରିକାମାନଙ୍କରେ ପ୍ରାୟ ସମସ୍ତ କବିତା ପୂର୍ବରୁ ପ୍ରକାଶ ପାଇଥିଲ । ୧୯୭୨ର ଉତ୍ତରାର୍ଦ୍ଧ ଠାରୁ ୧୯୭୫ର ଶେଷକାଳର ମଧ୍ୟବର୍ତ୍ତୀ ସାଢେ ତିନ ବର୍ଷ ସମୟ ମଧ୍ୟରେ ଏଗୁଡ଼ିକ ପ୍ରକାଶିତ । ସମ୍ଭବତଃ ଏହାହିଁ ଏଗୁଡ଼ିକର ରଚନାକାଳ ।

'ଅନ୍ତଂତଃ ନିଷ୍ଟୁପ'ର ମୁଖ୍ୟ କାବ୍ୟସ୍ୱରକୁ ଆଧ୍ୟାତ୍ମିକ କୁହାଗଲେ ଅତ୍ୟୁକ୍ତି ହେବନାହିଁ । ନୂତନ ଓଡ଼ିଆ କାବ୍ୟଧାରା ବିରୁଦ୍ଧରେ ଏକ ପ୍ରଧାନ ଅଭିଯୋଗ ଯେ ତାହା ଆମ କୃଷ୍ଟି ବା ପରଂପରା ସହିତ ସମନ୍ୱୟ ସ୍ଥାପନ କରିପାରୁନାହିଁ । କିନ୍ତୁ ଏ କାବ୍ୟଧାରାର ଅନ୍ୟ ଯାବତୀୟ ଲକ୍ଷଣ ସତ୍ତ୍ୱେ ଏ ଅଭିଯୋଗଟି ସମୁଚିତ ନୁହେଁ ବୋଲି ସ୍ୱୀକାର କରିବାକୁ ହେବ ।

ଆଜି ବୌଦ୍ଧ ଧର୍ମର ଦୁଃଖବାଦ କବିଙ୍କ ଉପରେ ଗଭୀର ପ୍ରଭାବ ପକାଇଛି । ସାଂପ୍ରତିକ ଜୀବନର ଜଟିଳତାର ପୃଷ୍ଠଭୂମିରେ କବି ଏହି ଦୁଃଖ-ବାଦର ଧାରାଟିକୁ ରସୋତ୍ତୀର୍ଣ୍ଣ ଭାବରେ କାବ୍ୟୋତ୍ତୀର୍ଣ୍ଣ କରିଛନ୍ତି । ପ୍ରତୀକଧର୍ମୀ ଶବ୍ଦ ସଂଯୋଜନା ମାଧ୍ୟମରେ 'ଦୁଃଖ' (ପୃ ୭୦) କବିତାରେ ଏହାର ପ୍ରତିଫଳନ ଘଟିଥିଲେ ହେଁ, ଅନ୍ୟ ଏକାଧିକ କବିତାରେ ଏହି ସ୍ୱର ସ୍ପଷ୍ଟତର । 'ରୂପାନ୍ତର, 'ଅଧିକାର', 'ମହାଯାତ୍ରା,' 'ଗୋଟିଏ ପ୍ରତୀତି,' 'ବର୍ତ୍ତମାନର ଆର୍ଶିରେ' ଓ 'ବିମୂର୍ତ୍ତି ଶୋକ' ପ୍ରଭୃତି କବିତାକୁ ଏହାର ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । କିନ୍ତୁ ସହାନୁଭୂତିର ସକଳ ପ୍ରତିଶ୍ରୁତି ଭିତରେ ମଣିଷ ଯେ ଦୁଃଖକୁ ବିସ୍ମରି ଯାଇପାରେ, ସେ କଥା ଦୁନିଆ ବୁଝେନାହିଁ ।

॥ କବି କମଳାକାନ୍ତ

ମଣିଷର ଦୁଃଖକୁ ବୁଝିବା ଲାଗି କେହି ଜଣେ ହେଲେ ଆଗେଇ ଆସେନାହିଁ । ଆମର ଦୈନନ୍ଦିନ ଜୀବନର ଏହି ବାସ୍ତବ ତିକ୍ତ ଅନୁଭୂତିକୁ 'ଗୋଟିଏ ପ୍ରଗୀତ' କବିତାରେ କବି ଏହିପରି ଭାବରେ ରୂପ ଦେଇଛନ୍ତି ।

ଏହି ଦୁଃଖବାଦର ଚରମ ସୀମାକୁ ଉଠି କବି, ମାୟାବାଦର ସମ୍ମୁଖୀନ ହୋଇଥିବା ପରି ମନେହୁଏ । ମଣିଷ ସତ୍ୟର ଯଥାର୍ଥ ସାକ୍ଷାତ୍କାର ଲାଭ କରିପାରୁଥିଲେ, ବୋଧହୁଏ ଏପରି ବିଭ୍ରାନ୍ତ ହୁଅନ୍ତା ନାହିଁ । ଏହି ପ୍ରଭାବରେ ପ୍ରଭାବିତ ହୋଇ ସେ ସତ୍ୟ ଠାରୁ ଦୂରକୁ ଦୂରକୁ ଚାଲିଯାଉଛି ଏବଂ ମିଛର ପ୍ରାଚୀର ସୃଷ୍ଟି କରି ସେଥିରେ ଗଡ଼ୁଛି କେତେ କ'ଣ ବଡ଼ ଛୋଟ ଓ ଅଭିଜାତ୍ୟର କାଦୁଅର ଜଗତମୟ ଏ ଯେପରି କି ଗୋଟାଏ ଯାଦୁ ଖେଳ ଚାଲିଛି ! ତା'ର ଚିତ୍ର କବିଙ୍କର 'ମହାଯାତ୍ରା (ପୃ. ୧୯)ରେ ରହିଛି ।

'ମୋର ସମସ୍ତ ଦୃଶ୍ୟ ଓ ଅଦୃଶ୍ୟ ଫୁଲ ବଣକୁ<br>
ମୋର ସମସ୍ତ ଘୃଣ୍ୟ ଓ ନମସ୍ୟ ଦୈବିକ କ୍ଷମାକୁ<br>
ମୋର ସମସ୍ତ ଚିନ୍ତ୍ୟ ଓ ପ୍ରାପ୍ୟ ପୁରସ୍କାରର ଯୌବନକୁ<br>
ନିଶ୍ଚିହ୍ନ କରିଦେବ ମାତ୍ର ଗୋଟିଏ ଫୁତ୍କାରରେ<br>
ମାତ୍ର ଗୋଟିଏ ସିଦ୍ଧି ମୁହୂର୍ତ୍ତର ଆତସବାଜିରେ,<br>
ସବୁ ତ ନିଶ୍ଚିହ୍ନ ହବ, ଧରିବନ୍ଧା ସୂଅର ଧକ୍‌କାରେ—<br>
ମାତ୍ର ଗୋଟିଏ ସିଦ୍ଧ ମୁହୂର୍ତ୍ତର ଆତସବାଜିରେ ।

[ ମହାଯାତ୍ରା- ପୃ. ୨୦-୨୧ ]

ଏହି 'ଧରିବନ୍ଧା ସୂଅ' ଓ 'ସିଦ୍ଧ ମୁହୂର୍ତ୍ତ' ମୃତ୍ୟୁ ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ଜନ୍ମ, ମୃତ୍ୟୁ, ଦୁଃଖ, ମାୟା ପ୍ରଭୃତି ସହିତ କାଳ ବା ସମୟ ଏକାନ୍ତ ଭାବରେ ଜଡ଼ିତ । ତେଣୁ ଅପରିହାର୍ଯ୍ୟ ଭାବେ 'ସମୟ'ର ଚେତନା ତାଙ୍କ କବିତାମାନଙ୍କରେ ବହୁଳ ପ୍ରକାଶିତ ହୋଇପଡ଼ିଛି । 'ଉପହାସ,' 'ଅଧିକାର,' 'ଆତ୍ମସ୍ଥ ମୁହୂର୍ତ୍ତର ସ୍କେଚ୍,' 'ଅଧାର', 'ମାନଚିତ୍ର', 'ମୁଁ ଓ ସମୟ', 'ସମୟ ପ୍ରତୀକ୍ଷମାଣ', 'ମୁହୂର୍ତ୍ତ', 'ନିରୁତ୍ତର' ପ୍ରଭୃତି ବହୁ କବିତାରେ ଆମେ ଏଇ ଚେତନାର ସମ୍ମୁଖୀନ ହେବା ।

ମତ ଅଭିମତ ଭିନ୍ନମତ ।।

ସମୟର ଏହି ଦୁର୍ଲଙ୍ଘ୍ୟମୟ ପ୍ରଭାବର ରାଜ୍ୟ ଭିତରେ 'ଶବ୍' ଓ 'ଭୂଲ୍'ଭଳି କେତେକ ପ୍ରସଙ୍ଗର ବାସ୍ତବତାକୁ କବି ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ପରିବେଶର ପ୍ରଭାବ ମଣିଷକୁ ବହୁ ଭୂଲ୍‌ର ଦ୍ୱାରସ୍ଥ କରୁଛି । ଏହି ପରିବେଶର ରୂପକୁ ସ୍ୱୀକାର ନକରି ମଣିଷକୁ ସବୁବେଳେ ଭୂଲ୍ ବୁଝିବା ତେଣୁ ଅନୁଚିତ । ପାରଂପରିକ ଅର୍ଥରେ ଯାହା ଅଦୃଷ୍ଟ ବା ଭାଗ୍ୟ, କବି ତାହାକୁ ସ୍ୱୀକାର କରୁଥିବା ଭଳି ମନେ ହୁଏନାହିଁ । ଅନ୍ୟ ପକ୍ଷରେ ଏହି ପରିବେଶକୁ ହିଁ ସେ ଏହି ସ୍ତରରେ ରଖି ମଣିଷ ପ୍ରତି ଯେ ତାଙ୍କର ଉଦାର ମାନବବାଦୀ ଦୃଷ୍ଟିକୁ ସଂପ୍ରସାରିତ କରିଛନ୍ତି । ପ୍ରଥମ କବିତା 'ରୂପାନ୍ତର'ରେ ଏ ସଂପର୍କୀୟ ପ୍ରଶ୍ନର ସମ୍ମୁଖୀନ ହୋଇ ସେ ପ୍ରକାଶ କରିଛନ୍ତି—

'ଭାଙ୍ଗି ପଡ଼େ ବୃକ୍ଷ ଶାଖା, ଆକାଶ ଓ ସବୁଜ ଅରଣ୍ୟ ।
ଇତସ୍ତତଃ ପୋରଷ ଫୁଲର ଅଦୃଶ୍ୟ ସାମ୍ରାଜ୍ୟ ।
କନ୍ଦାକଟା ଦୃଶ୍ୟ କେଉଁ ଗ୍ରାମ୍ୟ ଶବାଧାର
ପଖେ ପାଖେ ଟଗର ଓ ମଲ୍ଲୀର ଆଧାର ।
ନଇବା କାହାକୁ ତେବେ ?
ଉଡ଼ନ୍ତ ପକ୍ଷୀକୁ, ନା ତାର ଛିନ୍ନ ଡେଣା
ଥୋପା ଥୋପା ରକ୍ତ ପ୍ରାର୍ଥନାର ?'

(ପୃ. ୧)

ଏଇ ପୃଷ୍ଠଭୂମିରେ ଜାଗତିକ ଜୀବନର ଯାବତୀୟ ସଂକଟ ଓ ଗୂଢ଼ତା ସତ୍ତ୍ୱେ ମର୍ତ୍ତ୍ୟକୁ ସେ ନିଜର ପ୍ରୀତି-ଅର୍ଘ୍ୟ ଅର୍ପଣ କରିଛନ୍ତି ଏବଂ ମମତ୍ୱର ଧାରରେ ବର୍ତ୍ତମାନକୁ ଅଂଗୀକାର କରିନେବାର ଆଗ୍ରହକୁ ଉଚିତ ବିଚାରିଛନ୍ତି । ଏହି ଭାବଧାରାର ବିସ୍ତାରଣରେ ଯଥାକ୍ରମେ 'ଆଲିଙ୍ଗନ' (ପୃ. ୫୬) ଓ 'ବର୍ତ୍ତମାନ' (ପୃ. ୩୮) କବିତା ଦ୍ୱୟ ରୂପଲାଭ କରିଅଛନ୍ତି ।

ଜାଗତିକ ଜୀବନର ଏକ ସ୍ୱୀକୃତ ସତ୍ତ୍ୱେ ସତ୍ତାର ସମ୍ୟକ ଉପଲବ୍ଧି କବିଙ୍କୁ ନିଃସମୟର ସ୍ଥିର-ନୀଳ-ସ୍ଥୈର୍ଯ୍ୟ ଭିତରେ ଅନୁଭବ୍ୟ ପ୍ରଶାନ୍ତ ଅନୁଭୂତିର ସ୍ତରକୁ ନେଇ ଯାଇପାରିଛି ଏବଂ ରହସ୍ୟମୟତାର କଂଟକ

ଅଭିବ୍ୟକ୍ତ ଭିତରେ ପରମାତ୍ମୀୟ ଚେତନାର ଚମତ୍କାର ପ୍ରକାଶ ଘଟିଛି କେତୋଟି କବିତାରେ । 'ଅମୃତସ୍ପୃଷ୍ଟ ମୁହୂର୍ତ୍ତର ଷ୍ଟେର୍', 'ପ୍ରତିଧ୍ୱନି,' 'ମଞ୍ଜ', 'ଶୂନ୍ୟବାଣୀ,' 'ସମର୍ପଣ', 'ଜଣାଣ', 'ଦେହାତୀତ', 'ଆଧାର', 'ସାର୍ଥକ', 'ଶାନଗ୍ରାମ', 'ମୁହୂର୍ତ୍ତ' ଓ 'ନିରୁତ୍ତର' ପ୍ରଭୃତି କବିତା ଗୁଡ଼ିକୁ ଏ ଦୃଷ୍ଟିରୁ ଅନୁଶୀଳନ କରାଯାଇପାରେ ।

'ଅନ୍ତତଃ ନିଷ୍ଠୁର'ରେ ଏହାହିଁ ମୁଖ୍ୟ ଭାବଧାରା ବିକାଶର ଏକ ସୂଚନାତ୍ମକ କ୍ରମ । ଏହି ମୁଖ୍ୟ ଭାବଧାରା ଠାରୁ ବିଚ୍ଛିନ୍ନ କେତୋଟି କବିତା ଏ କାବ୍ୟ ଗ୍ରନ୍ଥରେ ସ୍ଥାନ ପାଇଥିଲେ ମଧ୍ୟ ଏହା ନିକଟରେ ଏକାନ୍ତ ନିଷ୍ପ୍ରଭ ହୋଇ ପଡ଼ିଛନ୍ତି ।

'ଅନ୍ତତଃ ନିଷ୍ଠୁର'ର ଏହି ଭାବ ବା ଚିନ୍ତା ମାନସର ପରିଚୟ ଲାଭ କଲାପରେ, ତାର ଶିଳ୍ପ ମାନସ ପ୍ରତି ସାମାନ୍ୟ ଦୃଷ୍ଟିପାତ କରାଯାଇପାରେ । ଏ ଦୃଷ୍ଟିରୁ ସାହିତ୍ୟର ପ୍ରାଥମିକ ମୂଲ୍ୟବୋଧ ପ୍ରତି ଶ୍ରୀଯୁକ୍ତ ଲେଙ୍କା କ୍ରମଶଃ ସଚେତନ ହେଉଥିବା ଉପଲବ୍ଧି କରାଯିବ । ଚିତ୍ରକଳ୍ପ ପ୍ରଧାନ ଓଡ଼ିଆ କାବ୍ୟଧାରା କ୍ରମଶଃ ପାଠକମାନଙ୍କ ଠାରୁ ଦୂରେଇ ଯାଉଥିବା ଲକ୍ଷ୍ୟକରି ଧମ୍ଭବତଃ ସେ ତା'ର ପ୍ରତିକାର ପାଇଁ ଚେଷ୍ଟା କରିଛନ୍ତି । ତାଙ୍କ କବିତା ବହୁ ପରିମାଣରେ ସରଳତା ପ୍ରତି ଉନ୍ମୁଖ ହୋଇ ଉଠିଛି । ସାହିତ୍ୟର ଇତିହାସ ପ୍ରତି ଦୃଷ୍ଟିପାତ କଲେ; ରସବାଦ ଓ ରୀତିବାଦର ତାହା ଏକ ଲୁଚକାଳି ଖେଳ ବୋଲି କହିହେବ । ଚିତ୍ରକଳ୍ପ ପ୍ରଧାନ କାବ୍ୟଧାରା ମୁଖ୍ୟତଃ ଏକ ରୀତିବାଦୀ କାବ୍ୟଧାରା । ସଂପ୍ରତି ଓଡ଼ିଆ ସାହିତ୍ୟରେ ଏହି ରୀତିବାଦୀ କାବ୍ୟ-ଧାରାର ବିଳୟ ଘଟି ପୁନଶ୍ଚ ରସବାଦୀ କାବ୍ୟଧାରା ପ୍ରତିଷ୍ଠିତ ହେବାକୁ ଯାଉଛି । ପୂର୍ବ କଥିତ ମତେ ଶ୍ରୀଯୁକ୍ତ ଲେଙ୍କା ଚିତ୍ରକଳ୍ପ ପ୍ରଧାନ କାବ୍ୟଧାରାର ଅନୁବର୍ତ୍ତୀ ହେଲେ ହେଁ, ଓଡ଼ିଆ କବିତାର ଏହି ରୁଚି ପରିବର୍ତ୍ତନ କାଳରେ ରସବାଦୀ ଧାରାର ପ୍ରଭାବ ମଧ୍ୟ ଏଠି ଲକ୍ଷ୍ୟଣୀୟ । 'ଅନ୍ତତଃ ନିଷ୍ଠୁର'ରେ ଚିତ୍ରକଳ୍ପ ପ୍ରୟୋଗରେ କବିଙ୍କ ସାମର୍ଥ୍ୟକୁ ସ୍ୱୀକାର କରିବାକୁ ହୁଏ । କିନ୍ତୁ ଅନ୍ୟ ଅନେକଙ୍କ କବିତା ପରି ତାହା ଏକାନ୍ତ ବ୍ୟକ୍ତିଗତ ସ୍ତରକୁ ଚାଲିଯାଇ-

ନାହିଁ । ଓଡ଼ିଆ କବିତାର ଭବିଷ୍ୟତ ପ୍ରବୃତ୍ତି ଦୃଷ୍ଟିରୁ ଏଥିପାଇଁ କବି ଅଭିନନ୍ଦିତ ହୋଇପାରନ୍ତି ।

ଶେଷତଃ ଏ କାବ୍ୟ ଗ୍ରନ୍ଥର କେତୋଟି ତ୍ରୁଟି ପ୍ରତି ଲକ୍ଷ୍ୟ କରାଯାଇ-ପାରେ । କବିଙ୍କ କାବ୍ୟ ଆଭିମୁଖ୍ୟ ଦୃଷ୍ଟିରୁ ଓ ଏ ଗ୍ରନ୍ଥର ବିଷୟଧାରା ଦୃଷ୍ଟିରୁ ଏଥିରେ ମିଥ୍ ବା ପୁରାବୃତ୍ତର ସମଧିକ ପ୍ରୟୋଗର ଆବଶ୍ୟକତା ଥିଲା । ଏଠି ତାର ଅନୁପସ୍ଥିତି ସଚେତନ ପାଠକଙ୍କୁ ନିରାଶ କରେ । ଏଠି କବି କେବେ-କେବେ ଭାଷା ପ୍ରତି ମୋହଗ୍ରସ୍ତ ହୋଇ ପଡ଼ିଥିବା ଲକ୍ଷ୍ୟ କରାଯାଏ । ଆଧୁନିକ କବିତା, ଯେଉଁଠି ଭାଷା ପ୍ରୟୋଗରେ 'ରନ୍ଧ୍ର-ବନ୍ଧ-କାଠିନ୍ୟ' ଅବଲମ୍ବନୀୟ 'ଅଂତତଃ ନିଷ୍କୃପ'ରେ ତା'ର କିଛି ଅଭାବ ଲକ୍ଷ୍ୟ କରାଯାଏ । ଓଡ଼ିଆ କାବ୍ୟ-ଧାରାର ପ୍ରବାହରେ ଯେଉଁ ସବୁ ଶବ୍ଦମାନଙ୍କ ପ୍ରତି ପାଠକଙ୍କର ଦୁର୍ବଳତା ସୃଷ୍ଟି ହୋଇଯାଇଛି, କେବେକେବେ କବି ତା'ର ସୁଯୋଗ ନେଇ ଏକ ଅସ୍ପଷ୍ଟ ପରିବେଶର ଶିବିରରେ ଆତ୍ମଗୋପନ କରିବା ପାଇଁ ଚେଷ୍ଟା କରିଛନ୍ତି । 'ଶୂନ୍ୟବାଣୀ' କବିତାଟି ଏ ଦୃଷ୍ଟିରୁ ବିଚାର୍ଯ୍ୟ ।

ଏତଦ୍ ସତ୍ତ୍ୱେ ଚିନ୍ତା ମାନସ ଓ ଶିଳ୍ପ ମାନସ ଉଭୟ ଦିଗରୁ ଶ୍ରୀ ଲେଙ୍କା ଏ କାବ୍ୟ ଗ୍ରନ୍ଥରେ ଯେ ଉଲ୍ଲେଖଯୋଗ୍ୟ ଉଚ୍ଚତା ହାସଲ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଏହି କ୍ରମବର୍ଦ୍ଧିଷ୍ଣୁ ପ୍ରତିଭାର ଅବିଚ୍ଛିନ୍ନ ଉତ୍ତରଣ ଆମେ କାମନା କରୁଛୁ ।

ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀ
କୁମୁଦ ଚନ୍ଦ୍ର ଦାଶ

## କବି କମଳାକାନ୍ତ ଲେଙ୍କାଙ୍କ

# 'ଦୁଃଖ ସହ କଥାବାର୍ତ୍ତା' : ସୀମା ଓ ସମୀକ୍ଷା

[ ଇସ୍ତାହାର—୧୯୮୯-ଅକ୍ଟୋବର-ଡ଼ିସେମ୍ବର- ଦୁର୍ଗା ପୂଜା ଓ କାଳୀ ପୂଜା ବିଶେଷାଙ୍କ ]

କବିତା ବ୍ୟକ୍ତିସତ୍ତାର ଆବେଗିକ ଉଚ୍ଛ୍ୱାସର ସ୍ଫୁରଣ । କବିର ଆତ୍ମସତ୍ତାରେ ଯେଉଁ ଆବେଗର ସଂଚରଣ ଘଟେ; ତାର ଅନୁଭୂତିକୁ ଉଦ୍‌ବେଳିତ କରି ପକାଏ । ମାନସ ରାଜ୍ୟରେ ତା'ର ଏକ ସୂକ୍ଷ୍ମ ଆବେଗିକ ସୀତ୍କାର ଖେଳିଯାଏ । ପଥ ଖୋଜେ ପ୍ରକଟିତ ହେବାକୁ ଏବଂ ଏହା ପରିପ୍ରକାଶ ଲଭେ କବିତାରେ— ଶବ୍ଦର ଗୀତେ ଅଥଚ ପ୍ରାଣ ସ୍ପନ୍ଦିତ ଧ୍ୱନିମାଳାରେ । ଜୀବନ ପାଇଁ ଏବଂ ଜୀବନକୁ ଅଙ୍ଗେ ଲିଭେଇବାର ମାନସିକତା ପାଇଁ କବି ସମାଜକୁ ନୂତନ ଦିଗ୍‌ଦର୍ଶନ ଦିଏ । ନୂତନ ବାର୍ତ୍ତା ଓ ଅଭିନବ ଦୃଷ୍ଟିଭଙ୍ଗୀର ଦିଶାରୀ ସାଜେ । କବିତା ହୋଇଯାଏ ସାବଜନୀନ ବ୍ୟକ୍ତି ହୃଦୟର ସାରସ୍ୱତ ବାଙ୍ଗ୍‌ମୟ ଆଲେଖ୍ୟ । ପ୍ରତି ମୁହୂର୍ତ୍ତରେ ଜୀବନର ଯେଉଁ ବାସ୍ତବ ରୂପକୁ କବି ଦେଖେ, ତାକୁ ଆପଣାର ଦୃଷ୍ଟିଭଙ୍ଗୀରେ ଉପାଣିତ କରେ । ଜୀବନର ସୁଖ-ଦୁଃଖ, ହସ-କାନ୍ଦ, ଉତ୍‌ଥାନ-ପତନ ଆଦିକୁ କବିର ଅନୁଭୂତି ବେଶି ଭାବରେ ଗ୍ରହଣ କରେ । ସାଧାରଣ ମଣିଷର ଅନୁଭୂତି ଅପେକ୍ଷା କବିର ଅନୁଭୂତି ନିଆରା । ଦୁଃଖ-ଯନ୍ତ୍ରଣାକ୍ଲିଷ୍ଟ କବିର ବ୍ୟକ୍ତିସତ୍ତା ଦୁଃଖରେ ବି ପ୍ରାଣଖୋଲା ହସ ହସେ । ନିଜ ସୁଖପାଇଁ ତା'ର ଭ୍ରୂକ୍ଷେପ ନାହିଁ । କବି ନିଜେ ଜଳେ ଦୁଃଖ ଜର୍ଜରିତ ନରକର ପଞ୍ଜୁରୀ ଭିତରେ । ମାତ୍ର ଧର୍ମ ତା'ର ଅନ୍ୟର ଆନନ୍ଦ ବିଧାନ । ଏହିଭଳି ଜଣେ ସୃଷ୍ଟିଶୀଳ ମାନବତାବାଦୀ ସମ୍ବେଦନଶୀଳ କାବ୍ୟ-ପୁରୁଷ କବି କମଳାକାନ୍ତ ଲେଙ୍କାଙ୍କ ସଦ୍ୟ ପ୍ରକାଶିତ 'ଦୁଃଖସହ କଥାବାର୍ତ୍ତା' କବିତା ସଂକଳନ ସାର୍ବିକ ଭାବରେ ଜୀବନକୁ ଅଙ୍ଗେ ଲିଭେଇବାର ଝଲକ ଅନୁଭୂତି ଓ ଅଶ୍ରୁସଜଳ ଆବେଗ କଂପିତ ଚେତନାକୁ ପରିପ୍ରକାଶ କରିଛି ।

ମତ ଅଭିମତ ଭିନ୍ନମତ ।।

'ଦୁଃଖ' ଜୀବନରେ ଏକ ଅନନ୍ୟ ସତ୍ୟ । ଦୁଃଖର ଆରମ୍ଭ ଅଛି, ଅନ୍ତ ନାହିଁ । ସୀମାହୀନ ଏହାର ବ୍ୟାପ୍ତି । ଅଭିବ୍ୟକ୍ତି ବି ଅସୀମ । ଦୁଃଖର ମଧ୍ୟ କାରଣ ଅଛି । କେବେ କେବେ ଅକାରଣରେ ବି ଦୁଃଖ ଆସେ । ବୋଧିସତ୍ତ୍ୱ ସେଦିନ ସ୍ପଷ୍ଟ କହିଥିଲେ— କାମନା ଦୁଃଖର କାରଣ । କାମନାର ବିନାଶରେ ଦୁଃଖର ବିନାଶ କିନ୍ତୁ ସଂପ୍ରତି ଏହି କାମନା ବେଶି ଭାବରେ ମଣିଷକୁ କବଳିତ କରିଛି । କାମନାର ଉଦଗ୍ର ଲାଳସା ତା'ର ଅଚରିତାର୍ଥତା । ସେଥିରୁ ମଣିଷର ନିସ୍ତୃତି ନାହିଁ । ତେଣୁ ଆଧୁନିକ ମଣିଷ ଦୁଃଖ-ଯଂତ୍ରଣାର ଦାବଦହନରେ ସତତ ଜ୍ୱଳମାନ । ବ୍ୟକ୍ତିସତ୍ତା ତା'ର ବହୁଧା ବିଭକ୍ତ । ନିହାତି ବିଭଙ୍ଗ ତା'ର ସ୍ୱର । ପ୍ରତ୍ୟେକ ଜୀବନରେ ନିଶ୍ଚିତ ଦୁଃଖ ଅଛି । ସେ ଦୁଃଖ ମାନସିକ ଅଥବା ଦେହକେନ୍ଦ୍ରିକ ହୋଇପାରେ । କବି ଶ୍ରୀଯୁକ୍ତ ଲେଙ୍କା ଆଧୁନିକ ମଣିଷର ଦୁଃଖକୁ ଏକ Subject ଭାବରେ ଗ୍ରହଣ କରି ତା' ସହିତ ଏକାନ୍ତ ଗୋପନରେ କଥାବାର୍ତ୍ତା କରିଛନ୍ତି । ଶ୍ରୀଯୁକ୍ତ ଲେଙ୍କା ପ୍ରାୟ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ ହେବ, ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ଜଣେ ନିରବଚ୍ଛିନ୍ନ ସ୍ରଷ୍ଟା ଭାବରେ ନାନା ପରୀକ୍ଷା ନିରୀକ୍ଷା ମଧ୍ୟ ଦେଇ ତାଙ୍କର କାବ୍ୟ ପୁରୁଷକୁ ସତତ ଉତ୍ତରଣ ପଥରେ ଅଗ୍ରସର କରାଇପାରିଛନ୍ତି । ଆଧୁନିକ ଯନ୍ତ୍ରିତ ଜୀବନର ସେ ହେଉଛନ୍ତି ଜଣେ ଏକନିଷ୍ଠ ଭାଷ୍ୟକାର । ଜୀବନର ଯାଵତ୍ ଅନୁଭୂତି ସମକାଳୀନ ମାନସିକ ଅବାଧବୋଧ ଓ ସଙ୍କଟର ଚିତ୍ର ତାଙ୍କ ସୃଷ୍ଟି ସମ୍ଭାରରେ ବେଶ୍ ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇପାରିଛି । 'ଜୀବନ ପାଏନି ତାଙ୍କର ଶୂନ୍ୟ କୁ ପୃଷ୍ଠା; ଏହାର ପରୀକ୍ଷା ପାଇଁ ହିଁ ତାଙ୍କର ଜୀବନ ବ୍ୟାପୀ ସାଧନା ' ଜୀବନ ଜିଜ୍ଞାସାରେ କବି କମଳାକାନ୍ତ- ଉକ୍ତିର ମଥୁରା ନାଥ ହୋତା ] ତେବେ ଉତ୍ତର ଷାଠିଏ କାଳରେ ତାଙ୍କର ଲେଖନୀ ଖୁବ୍ ଶକ୍ତିଶାଳୀ ଓ ବହୁ ପ୍ରାଜ୍ଞ ହୋଇ ଉଠିଛି । ପ୍ରାୟ ୧୯୫୮ ମସିହାରୁ ତାଙ୍କ କବି ପ୍ରତିଭାର ଉନ୍ମେଷ ଓ ଉତ୍ତରଣ ଘଟିଛି । ଶ୍ରୀଯୁକ୍ତ ଲେଙ୍କାଙ୍କ ସଂକଳନଗୁଡ଼ିକ ମଧ୍ୟରେ ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରଶସ୍ତି (୧୯୬୩), ଉତ୍ତରଣ (୧୯୬୭), ସ୍ମରଣ ବିସ୍ମରଣ (୧୯୬୩), କବିତାର ମୁହଁ (୧୯୭୪), ଅନ୍ତତଃ ନିସ୍ତୃପ (୧୯୬୫), ନିଜସହ ଗୋଟେ ସାକ୍ଷାତକାର (୧୯୬୮), ନିତ୍ୟ ନିଯୁମିତ (୧୯୬୮), ସ୍ରୋତର ନାମ ଋତ (୧୯୬୮), କମଳାକାନ୍ତଙ୍କ ଶ୍ରେଷ୍ଠ କବିତା (୧୯୬୯) ଲେଖିବାର ବେଳ

(୧୯୮୦), ଗୀତ ତା' ନାରେ ପକ୍ଷୀ (୧୯୮୨) ଇତ୍ୟାଦି ବେଶ୍ ପ୍ରଭାବଶାଳୀ ମନେ ହୁଅନ୍ତି । ତେବେ ୧୯୮୨ ପରେ ଶ୍ରୀଯୁକ୍ତ ଲେଙ୍କାଙ୍କ ସର୍ବୋତ୍ତମ କବିତା ଗୁଡ଼ିକ ହେଲା-ଚିନ୍ତା ଅଙ୍କା କାନ୍ଥର ଛବି ପରିଧି ବାହାରେ ଅପେକ୍ଷାରତ ମୁହଁମାନ ଓ ଦୁଃଖସହ କଥାବାର୍ତ୍ତା । ତାଙ୍କର 'ଦୁଃଖସହ କଥାବାର୍ତ୍ତା' କବିତା ଗ୍ରନ୍ଥଟି ଏକ ଅନନ୍ୟ ସୃଷ୍ଟି । ଏହାର ଭାଷା ଶାଣିତ, ତୀକ୍ଷ୍ଣ ଓ ଆବେଗ କମ୍ପିତ । ବକ୍ତବ୍ୟ ବିସ୍ତାରିତ ନୁହେଁ, ସଂଯତ ଓ ସଂକ୍ଷିପ୍ତ ।

'ଦୁଃଖ ସହ କଥାବାର୍ତ୍ତା' କବିତା ଗ୍ରନ୍ଥରେ କାବ୍ୟ ପୁରୁଷ ଦୁଃଖକୁ ଏକାନ୍ତ ଅନ୍ତରଙ୍ଗ ଭାବରେ ଦେଖିଛନ୍ତି । ସେ ଦୁଃଖକୁ ବନୋଦିଆ କାଳିଆ ଠାକୁର କହି ତା' ସହିତ ଆଳାପ ଆଲୋଚନା କରିଛନ୍ତି । ସ୍ୱୟଂ ଦୈବ ପୁରୁଷ ଏଠାରେ ଦୁଃଖକୁ ପ୍ରଶ୍ନକିତ କରୁଛନ୍ତି । ଏକ ଆଧ୍ୟାତ୍ମିକ ଉଦ୍ଦୀପିତ ଅସ୍ପୃହା ମଧ୍ୟରେ କାବ୍ୟ ପୁରୁଷ ସକଳ ଦୁଃଖ ସହିତ ଏକାତ୍ମ ହେବାକୁ ସାହସ ବାନ୍ଧିଛନ୍ତି । ସବୁ ଘାତ ପ୍ରତିଘାତ, ହାନିଲାଭ, ଦୁଃଖ-ଦୁର୍ଦ୍ଦଶା ଭିତରେ କବି ଉତ୍ତରଣ ଆଡ଼କୁ ବେଶ୍ ଭାବରେ ଆକୃଷ୍ଟ ହେବା'ର ମନେହୁଏ ।

କାବ୍ୟର ଆରମ୍ଭରେ ଦୁଃଖ ନିକଟରେ ଏକାନ୍ତ ଆନୁଗତ୍ୟ ପ୍ରକାଶ କରି 'ମୁଁ' କୁ ଅତିକ୍ରମି ଯାଉଥିବା ଗୋଟିଏ ମୁହୂର୍ତ୍ତର ମୂର୍ତ୍ତିମାନ ରୂପକୁ କବି ଶାଣିତ ଦୃଷ୍ଟିଭଙ୍ଗୀରେ ପ୍ରକାଶ କରିଛନ୍ତି—

'ସତ୍ୟର ଦେହେବା
ଆପଣାର ଅନୁଭୂତି ଭଳି
କବିତା : ସମୟର
ଝାଂଜି ଧାରିଆ ନାକ ପରି ।
ଦୁଃଖସହ କଥାବାର୍ତ୍ତା ବେଳେ
ପାଖରେ ଯେ ଥାଏ — ସେ
ମୋ ହାନି-ଲାଭ, ଭଲ-ମନ୍ଦ

ମୁଁଠ ଅଭିମତ ଭିନ୍ନମତ ।।

ହସ-ଖୁସିର ବେଳ ଅବେଳ
ସମଗ୍ର ଭାବେ ମୁଁ, ଏକାଗ୍ର ଭାବେ
'ମୁଁ'କୁ ଅନ୍ତରମି ପାଉଥିବା
ଗୋଟେ ବିମୂର୍ତ୍ତ
ଅଥଚ, ମୂର୍ତ୍ତିମାନ ବିବଶତା ।'

'ଦୁଃଖସୁନ୍ଦ କଥାବାର୍ତ୍ତା ।' କବିତା ସଂକଳନଟି ସର୍ବମୋଟ ୩୦ଗୋଟି ସଫଳ କବିତାର ଏକ ମନୋଜ୍ଞ ସମାହାର । କବିତା ଗୁଡ଼ିକରେ ଜୀବନର ହଜୁ ଅଭାବିତ ମାନସିକତା ଭିତରେ କାବ୍ୟିକ ସୂକ୍ଷ୍ମ ଉତ୍ତରଣର ପଥ ଖୋଜିଛନ୍ତି । କବି ସେହି 'କରି କରାଉଥିବା' ଭାବ ବିନୋଦିଆକୁ ଧିକ୍କାର କରି ନିଜେ କ୍ଷୋଭ ପ୍ରକାଶ କରିଛନ୍ତି । ତଥାପି କବିତାର ସୀମା ତାଙ୍କୁ ଟପି ଯାଇପାରି-ନାହିଁ ।

'କେଉଁ ଭାବରେ ଥାଅ ହେ ଭାବ ବିନୋଦିଆ ?/ କେଉଁ ଅଭାବରେ ତୁମେ ନାଚୁଥାଅ, ହସୁଥାଅ/କାନ୍ଦାଇ କାନ୍ଦାଇ ମାରୁଥାଅ,/ସାରା ଦିନ ସାରା ରାତି/ଠିଆଠିଆ ଉଜାଗରେ ବିତିଯାଏ/ଭାବଟିଏ ଖୋଜୁଥାଏ, ଅଭାବରେ ଅସନ୍ଥାକ/ଗଢ଼ିବା ତୁମର ମୂର୍ତ୍ତି ଶୂନ୍ୟତାରେ/ଭାଙ୍ଗିବା ତୁମର ଭ୍ରମ ନ୍ଲୋକ ଗହଳରେ/ଢିଅ ଘାପ ଚୋକ ଦେବା ଖରଶ୍ରୋତୀ ପବନର/କପଟ ବେଗରେ ।'

କବି ଜାଣିବାକୁ ଚାହାଁନ୍ତି କେଉଁ ଭାବରେ ବିନୋଦିଆ ତୃପ୍ତ ହୁଅନ୍ତି । ପୁଣି କେଉଁ ଅଭାବର ଫୁଲ ଗୁଙ୍ଗୁଡ଼ି ଭିତରେ ଅଦୃଶ୍ୟ କୀଟଟିଏ ହୋଇ ମଣିଷକୁ ଚେତନାର ଚୁକୁକ୍ ମାରନ୍ତି ? କବି ନିଜେ ପ୍ରଶ୍ନ କରି ନିଜେ ତାହାର ଉତ୍ତର ଦେଇଛନ୍ତି । ମଣିଷ ଆଜି ନା ଭାବରେ ନା ଅଭାବରେ । ସୁତରାଂ ନିଜ ଅଭାବର ଫୁଲ ଗୁଙ୍ଗୁଡ଼ିର ମୂଲ ତାଙ୍କ ପାଇଁ ଅଳୀକ ଓ ଅର୍ଥହୀନ । ପୁଣି କବି କ୍ଷୋଭର ସହିତ କହିଛନ୍ତି—

''ଆଜି ମୋର ଭାବନାକୁ ଅଭାବ ସାରା ସଂସାର,/ଆଜି ମୋର

ଦରଚ୍ଛିଡ଼ା ଗୀତର ଶେଷ ଧାଡ଼ିରେ/କୁଆ ମଇଡା ପରି ଝୁଲି ରହିଥିବା ମୁହୂର୍ତ୍ତର ଈଶ୍ବର,/ତୁମେ କ'ଣ ଜାଣି ପାରନାଇଁ ମୁଁ କି ଭଳି/ହୁମୁ ହୁମୁ, ଦୁମୁ ଦୁମୁ, ରୁଣ୍ଟୁ ଝୁଣ୍ଟୁ ହୋଇ ନହସି ଚଉଚ ।''

କବି ସାରା ଜୀବନ ଦୁଃଖ ଚାଇବାକୁ ଓ କଷ୍ଟ ସହିବାକୁ ପ୍ରସ୍ତୁତ ଅଛନ୍ତି; କିନ୍ତୁ ପାଖରେ ସେହି ଦୁଃଖହାଗର ଉପସ୍ଥିତି ତାଙ୍କ ପାଇଁ ଅସହ୍ୟ ହୋଇପଡ଼ୁଛି । ଅନ୍ଧକାର ଓ ଦୁଃସ୍ୱପ୍ନକୁ ସେ କେବେହେଲେ ବାସ୍ତବତାର ସମ୍ପୂର୍ଣ୍ଣ ଆଲୋକରେ ଉଦ୍‌ଭାସିତ ହେବାକୁ ଦେବେନି । ଆପେ ଜଳି ଜଳି ସେହି ଆଲୋକର ଅନ୍ୱେଷଣ କରିବାରେ କି ଲାଭ ? ଏ ପ୍ରଶ୍ନ କବିଙ୍କୁ ବିଚଳିତ କରିଛି । ପୁଣି ଅନ୍ୟତ୍ର କବି ଲେଖିଛନ୍ତି—

'ମୁଁ ଜାଣେ : କାନ୍ଦସବୁ ଅବୁଝା କୋହର
ପିଲାଙ୍କ ଦୁଷ୍ଟାମୀ, ଓ ନିଷ୍ଠା ସବୁ
ଅନାକାଂକ୍ଷିତ, ଅନିଶ୍ଚିତ ମୁହୂର୍ତ୍ତର ସ୍ୱପ୍ନାସ୍ୱର
ଯାହା ଅର୍ଥହୀନ ଶବ୍ଦ ପରି ଚଢ଼ୁଥାଏ
ପାହାଚରେ, ଢେଉପରେ ମଥାପିଟି, ବାହାଗ୍ରନ୍ଥି
ରଜୁଥାଏ ନିଭୃତରେ, ଅଂଧ ମୂଳକରେ ।'

ମଣିଷ ଗୋଟିଏ ଶୂନ୍ୟତାକୁ ଛାଡ଼ି ଅନ୍ୟଟିକୁ ଗ୍ରହଣ କରୁଥିବା ଯୋଗୁଁ ଯେଉଁ ମାନସିକ ସ୍ଥିତି ହଜିଯାଏ, ଏବଂ ଏହି ପରିବର୍ତ୍ତନକୁ ସେ ଅନ୍ତରରେ ସ୍ୱୀକୃତି ନଦେଇ ପାରିବାରୁ ଦୁଃଖ ଓ ଯନ୍ତ୍ରଣା ଭୋଗିବାକୁ ବାଧ୍ୟ ହୁଏ । 'ଦୁଃଖ କରିବାର କିଛିନାଇଁ' କବିତାରେ ଏହି ଭାବ ଚମତ୍କାର ଭାବରେ ପ୍ରତିଫଳିତ ହୋଇଛି ।

'ମୋ ମୁହଁ ଫେରାଇ ଦିଏ/ଯେଉଁ ଦୃଶ୍ୟ, ତା'ଭଙ୍ଗା ଦର୍ପଣ । ମୋ ପରିଭବର ଉଦ୍ଗ୍ରୁକତା/ଗୋଟାଇ ଆଣେ/ମୋ ଚିହ୍ନ ଦ୍ୱୀପର ପ୍ରବାଳ/ତା ଝରି ପଡୁଥିବା ଆଶ୍ୱାସନାର ପୁରୁଣା ବକଳ ।' ଭଙ୍ଗା ଦର୍ପଣରେ ମୁଖର ପ୍ରତିବିମ୍ବ ନିଖୁଣ ନୁହେଁ । ମଣିଷର ଭାବନା ମଧ୍ୟ ସେହିପରି ନିଖୁଣ ହୋଇପାରେନା ।

ଖାଲି ପରାଜୟ ଓ ଅଶ୍ରୁକ ମଧ୍ୟରେ ସେ ବଂଚେ । ମାତ୍ର ସବୁ ମଣିଷ ଏ କଥାଟି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । କାରଣ ତା'ର ସ୍ୱାର୍ଥପରତା ବାସ୍ତବତା ପ୍ରତି ଧ୍ୟାନ ଦେଇ ନପାରୁଥିବା ବିଫଳତାକୁ ଘୋଡ଼ାଇବାର ଅସଫଳ ଉଦ୍ୟମ । ତେବେ ମଣିଷର ଅସଲ ସ୍ୱାର୍ଥ କ'ଣ ? ଧନ ସଂପତ୍ତି ପ୍ରାପ୍ତି ନା ଅମୃତ ଓ ଅନ୍ତଃ ଚେତନାର ଉନ୍ନତିରେ ସ୍ୱାର୍ଥ ନିହିତ ଥାଏ । ଏକଥା କହିବା ମୁସ୍କିଲ୍ । ତେଣୁ ଆଧୁନିକ ମଣିଷ ବର୍ତ୍ତମାନ ରଡ଼ନିଆଁ ପରି କେବଳ ଜଳୁଛି ଆଉ ଜଳୁଛି ।

'ଅବକା ମୁଁ ଜଳୁଛି ରଡ଼ନିଆଁ ପରି ।'/କହୁକହୁଛି ଅବଶିଷ୍ଟ ଆୟୁଷ ପରି/ନଗଣ୍ୟ ସ୍ଥିତିପରି ପ୍ରବାସରେ ।/ତୁମେ ଯେଉଁଠି ଥାଅ ପ୍ରତିଶ୍ରୁତିଙ୍କ/ଅନ୍ୟମନସ୍କତା,/ହେ ମା' ହେଉ,/ଦୁଃଖ ହେଉ,/ବା ସମୟର କୋଳାହଳ ଗତି ହେଉ ।'

'ସଂପର୍କ; ପୂଜା-୧୯୭୯' କବିତାରେ କବି ବୈପ୍ଳବିକ ଆହ୍ୱାନ ଦେଇଛନ୍ତି । ଯୌନତା ଓ ଅଧାର୍ମିକତାକୁ ଗୋଟାଏ ସ୍ଥାନରେ ରଖି ତାହାର ଗୋପିତ ରହସ୍ୟ ଅନୁଭବ କରିବାକୁ କବି ପ୍ରୟାସୀ ହୋଇଛନ୍ତି । ଜଗନ୍ନାଥଙ୍କ ଗୁଇଗୁଇକା ଜହ୍ନର ଚିତ୍ରପଟରେ ନଜର ତଥା ପୃଥିବୀର ପୋଡ଼ାଜଳାର ଦୃଶ୍ୟ ଦେଖିବା ବାସ୍ତବିକ ଏକ ଅଭିନବ ପ୍ରୟାସ ।

'ଏତେବେଳେ ମୁଁ କ'ଣ ଥାଏ/ନିଜ ଠାରେ ? ମୁଁ କ'ଣ ଉଦ୍‌ଭ୍ରାନ୍ତ ପାଖୁଡ଼ା ପରି/ଉଡୁଥାଏ ପବନରେ ? ଅଥବା ସମସ୍ତ ଦୃଶ୍ୟ/ମୋ' ନିଜର ତୁମ ଠାରେ ହୁଏ ଏକାକାର ।/ଯେପରି କି ପୋଡ଼ାଜଳା ତୁମ ଦୃଶ୍ୟପଟ/ମୋ ନିଜର ଦୃଶ୍ୟାଙ୍କିତ, ଭୟାବହ ରାଜ୍ୟର ଖବର !!'

ଇଲିଅଟ୍‌ଙ୍କ ଓ୍ୱେଷ୍ଟଲ୍ୟାଣ୍ଡୀୟ ଚିନ୍ତାଠାରୁ ଏହା ଅଧିକ ବୈପ୍ଳବିକ ଓ ଭବ ଉଦ୍‌ବୋଧକ ! ଶେଷରେ 'ବାଟୋଇ' କବିତାରେ କବି ସମସ୍ତ ଦୁଃଖ ଯନ୍ତ୍ରଣାକୁ କୁଣ୍ଠିତ କରି ଅନନ୍ତ ପଥରେ ଆଗେଇ ଯିବାକୁ ନିର୍ଦ୍ଦେଶ ଦେଇଛନ୍ତି—

|| କବି କମଳାକାନ୍ତ

'ଏଣିକି କୌଣସି ବାଟ ନଥିବ/ଯିବା ପାଇଁ । ନିଜେ ଯେମିତି ବାଟଟିଏ ହୋଇଗଲେ କଥା ଶେଷ ! ଯା ଯେଉଁଠିକି ପାରୁ/ଯେତେ ବାଟପାରୁ ଚାଲିଯା ; ଦେଖି·· ଏକ···ଦୁଇ···ତିନି···ନ୍ ।'

କବି ନିଜେ ସମଗ୍ର କାବ୍ୟର ନାୟକ ସାଜିଛନ୍ତି । ଦୁଃଖରେ କବି ବିଂଷ୍ଟ ବିବ୍ରତ ହୋଇପଡି ନାହାନ୍ତି । ବରଂ ଦୁଃଖକୁ ଏକାନ୍ତ ଆପଣାର କରି-ପାରିଛନ୍ତି । ଜୀବନ ପ୍ରତି ବିମୁଖତାକୁ କବି ସ୍ୱୀକାର କରିଛନ୍ତି । ତାଙ୍କ ଦୃଷ୍ଟିରେ ମଣିଷର ବୁଦ୍ଧିଗତ ସଂକଟ ଅପେକ୍ଷା ଆବେଗିକ ସଂକଟ ଅଧିକ ପୀଡ଼ା-ଦାୟକ । ଶ୍ରୀଯୁକ୍ତ ଲେଙ୍କା ସ୍ୱାଧୀନତାର ପକ୍ଷପାତୀ । ମୁକ୍ତ ଓ ବିସ୍ତାରଶୀଳ ଜୀବନଚର୍ଯ୍ୟାରେ ବିଶ୍ୱାସୀ ମଣିଷଟିଏ । 'ଦୁଃଖ ସହ କଥାବାର୍ତ୍ତା' କବିତା ଗ୍ରନ୍ଥଟି ଆଜିର ମଣିଷର ସ୍ଥିତିକୁ ଆବିଷ୍କାର କରିବାକୁ ପ୍ରୟାସ କରିଛି । ସେ ଚିରାଚରିତ ଜୀବନବୋଧକୁ କରୁଣ । କିନ୍ତୁ ନିର୍ବିଘ୍ନରେ ସ୍ୱୀକାର କରିବା ତା' ପକ୍ଷରେ ଅସମ୍ଭବ । ତେବେ ଶ୍ରୀଯୁକ୍ତ ଲେଙ୍କା ଏହି ସଂକଳନର କବିତା ଗୁଡ଼ିକରେ ଜୀବନ ମରୁରେ ସୁନ୍ଦର ମରୁଦ୍ୟାନଟିଏ ରଚିବାକୁ ପ୍ରୟାସ କରିଛନ୍ତି । ବର୍ତ୍ତମାନର ଏକାକୀ ମଣିଷ ପାଇଁ ଏବଂ ସ୍ୱୟଂ କାବ୍ୟ ପୁରୁଷଙ୍କ ପାଇଁ ଏକ ଆଶ୍ୱାସନାର ବାଣୀ ଶୁଣାଇଛନ୍ତି । ସର୍ବୋପରି କବି ଶ୍ରୀଯୁକ୍ତ ଲେଙ୍କାଙ୍କ ସଦ୍ୟତମ ପ୍ରକାଶନ 'ଦୁଃଖ ସହ କଥାବାର୍ତ୍ତା' ଗ୍ରନ୍ଥଟି ଉଭୟ ଭାଷା ଓ ଭାବ, ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ ଏକ ଉଚ୍ଚକୋଟୀର ସାରସ୍ୱତ ଅର୍ଘ୍ୟ । କବିତା ମଣିଷର ସୁଖ ଦୁଃଖ ସହ ଅତି ନିବିଡ଼ ଭାବରେ ଜଡ଼ିତ । କିନ୍ତୁ ସାଧାରଣ ମଣିଷ ପାଖରେ ଜୀବନର ସତ୍ୟ ଢାଙ୍କି ହୋଇ ପଡ଼ିଥାଏ । କବିର ଦାୟିତ୍ୱ ସେ ଆବରଣକୁ ଖୋଲିଦେବା । କବି କମଳାକାନ୍ତ ଲେଙ୍କା ସେ ଆବରଣକୁ ଖୋଲି ଦେଇଛନ୍ତି ଏବଂ ଜୀବନକୁ ସତ୍ୟର ଅଧିକ ନିକଟବର୍ତ୍ତୀ କରାଇଛନ୍ତି । ସତ୍ୟର ମୁଖା ଖୋଲିବାକୁ କବିଙ୍କ ଲେଖନୀ ଆହୁରି ମୁଖର ହେଉ ବୋଲି ଆଶା ପୋଷଣ କରୁଛି ।

**କୁଳମଣି ଓଝା**
ବାଣୀବିହାର, ଭୁବନେଶ୍ୱର

# ଖସିବାର ବେଳ

## କମଳାକାନ୍ତୀୟ ଜୀବନ ଚିନ୍ତା

ସଚେତନ କବି ମାନେ ଚାହେଁ ନା ଚାହେଁ, କେବେ ନା କେବେ ସତର୍କ ବା ଅସତର୍କ ମୁହୂର୍ତ୍ତରେ ଜନ୍ମ, ଜୀବନ, ରହଣି, ଯିବା, ଆସିବା ଓ ପୁନଃ ଯିବା-ଆସିବା ସଂପର୍କରେ ଅବଶ୍ୟ କୌତୁହଳୀ, ପ୍ରଶ୍ନିଳ ଅଥବା ସନ୍ଧାନୀ ହୋଇଥିବା ଲକ୍ଷ୍ୟ କରାଯାଏ । ସାର୍ଦ୍ଧ ତିରିଶ ବର୍ଷ ଧରି କମଳାକାନ୍ତ କାବ୍ୟ-ରତ । ଏହି ସମସ୍ତ କାଳ ତାଙ୍କର କୈଶୋର, ତାରୁଣ୍ୟ ଓ ପ୍ରୌଢ଼ତ୍ୱର ସ୍ପର୍ଶରେ ଅନୁଭୂତି-ଘନ । ଜୀବନର ରହସ୍ୟଘନ ଯିବା ଆସିବାର, ସ୍ଥିତି-ଅସ୍ଥିତିର ସଂପର୍କରେ ଏହି ସାର୍ଦ୍ଧକାଳ ମଧ୍ୟରେ ସମସ୍ତ ବିଶେଷରେ କବିମନ ପ୍ରଶ୍ନିଳ ହୋଇଉଠିଥିବା ସ୍ୱାଭାବିକ ଏବଂ ଏ ପ୍ରଶ୍ନ ସମସ୍ତ ସମୟରେ ଉତ୍ତରର କୂଳ ଛୁଇଁଛୁଇଁ ଯାଇଥିବା ମଧ୍ୟ ସ୍ୱାଭାବିକ । ଏ ଦୃଷ୍ଟିରୁ କବିଙ୍କର 'ଖସିବାର ବେଳ' ସଂକଳନର କବିତା ଗୁଡ଼ିକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ ସଂକଳନରେ କବିଙ୍କର ଜନ୍ମ, ଜୀବନ, ମୃତ୍ୟୁ ଇତ୍ୟାଦି ସଂପର୍କିତ ରହସ୍ୟ କୁହୁଡ଼ିଘେରା ଧାରଣା ରୂପ ପରିଗ୍ରହ କରିଛି ।

'ଖସିବାର ବେଳ' କମଳାକାନ୍ତଙ୍କର ପରିଣତ ବୟସର ସୃଷ୍ଟି । ଏଥିରେ କବିଙ୍କର ଚିନ୍ତା ବାଟ ଖୋଜି ନ ପାଇବାର, ଧସାଇ ପଶିବାର, ଅଥବା ଯୌବନର ଦୁଃସାହସରେ ଦୁଃସାହସୀ ହୋଇ ଅମଡ଼ା ମାଡ଼ିଯିବାର ଚିନ୍ତା ଗୁଡ଼ିକ ସ୍ଥିର ପଥର ଯାତ୍ରୀ । ଏଥି ପୂର୍ବ ସୃଷ୍ଟି କବିତାମାନଙ୍କର ଅକାରଣ ଭାରାକ୍ରାନ୍ତ ବୌଦ୍ଧିକତା, ଅସତର୍କ ଅକାରଣ ଶବ୍ଦ ମୋହ, ଫଳତଃ ଦୁର୍ବୋଧତା ଓ ଅବୋଧତା ଏବଂ ଚିନ୍ତାର ଅସଂହତ ଆବେଗ ଇତ୍ୟାଦିକୁ ପରିହାର କରି କବି ଏଥିରେ ପୂର୍ବାପେକ୍ଷା ସଂହତ, ସମାହିତ ଓ ଦର୍ଶନମୟ ।

ମୁଁ ନିଜେ ଜାଣେନା କିଏ ?
କେଉଁଠାରୁ ଆସି ପୁଣି ଫେରିଯିବି

॥ କବି କମଳାକାନ୍ତ

କେଉଁଠାକୁ ? କଂଟାଝଟା, ମାଟିଗୋଡ଼
କାଦୁଅର ଫୁଲବଣ ଡ଼େଇଁ । (୧)

ଏ ଚିନ୍ତାରେ ସଂଶୟ ମଧ୍ୟରେ ଜୀବନ ବଂଚିବାରେ ଏକ ପ୍ରକାର ସନ୍ତୋଷବୋଧ ସ୍ପଷ୍ଟ । ତେଣୁ କଣ୍ଟାଝଟା, ମାଟିଗୋଡ଼, କାଦୁଅ ସବୁ 'ଫୁଲବଣ' ପ୍ରାୟ ବୋଧ ହେଉଛି । 'ଦୁଃଖ' ହିଁ ମନେ ହେଉଛି ବଂଚିବାର ଗୁଡ଼ାକାଠି । ସ୍ମରଣ ବିସ୍ମରଣ ଭିତରେ ଚର୍ଚ୍ଚିତ ବାଲ୍ୟକାଳ ଓ ବୋଉର ଜୀବନ-ଜୀଇଁବାର ସୂତ୍ର ପରିଣତ ବୟସରେ ଜୀବନ୍ତ ହୋଇ ଉଠୁଛି । ବୋଉ କହୁଥିଲା— 'ଦୁଃଖହିଁ ଜୀବନ ଜୀଇଁ ଯିବାର ଦେବତା । ବସ୍ତୁତଃ ଦୁଃଖ ଯେ ଯାହାର ବ୍ୟକ୍ତିଗତ । ଜଣକର ଦୁଃଖକୁ ଅପର କେହି ସହଜରେ ଦେଖିପାରିବା ସମ୍ଭବ ହୁଏ ନା । ବେଳେ ଅଧେ ହୃଦୟର 'ଅଧାବୁଜା ମଳି ଘର ଦରଜା କବାଟ ଦେଇ' ସେ ବସିଯାଏ ସିନା ! ଏବଂ ବାଲ୍ୟରେ ବୋଉ ପରିଚୟ କରାଇ ଦେଇଥିଲା— ଯେଇହିଁ ଜୀବନର ରାଜା :

କହୁଥିଲ୍ : ସେ, ମୋ ରାଜା । ମୁଁ ଜୀଇଚି, ଜୀଇଚି ଜୀବନ ।
'ଦୁଃଖ' ବିନା ପାଟରେ କିଏ ସୋଜା ହସ, ଖୋଲାମନ
ଆକାଶର ଦପ୍ ଦପ୍ ତରାଙ୍କୁରେ ଟେଣି !! (୨)

ବିଚିତ୍ର ଏ ଜୀବନ ଓ ସଂଭାବନା ପୂର୍ଣ୍ଣ ଏ ଜୀଇଁ ରହିବା । ଆଉର ବିଚିତ୍ର ଏ ସୃଷ୍ଟିର ରହସ୍ୟମୟ ନିୟମାବଳୀ । 'ଏଠି ଆଲୁଅକୁ ଜାଗା ଦେଇ 'ଅଂଧାର' ଘୁଂଚି ବସେ । 'ମିଛ' ପାଖରେ ହମୋରୁତ ହୁଏ 'ଅମିଛ' ! ଜନ୍ମସହ ମରଣର 'ନିତ୍ୟ ଶୃଂଗାର' ଏଠି । କିଏ ଭେଦ କରିପାରେ ବିଶ୍ବର ଏ ବିଚିତ୍ର ରହସ୍ୟକୁ । ବୈବିଧ୍ୟ ଓ ବୈଚିତ୍ର୍ୟ ମଧ୍ୟରେ ଜୀବନ ଉଦ୍ଭାସିତ । ପୃଥିବୀ ଆନନ୍ଦରେ ଆତ୍ମଯାତ । ଆଣ ତାର 'ଅଜ୍ଞାତ'ର ମହାସମୁଦ୍ର ଭିତରେ ଆଲୁଅ ଅଂଧାର, ମିଛ ଅମିଛ, ଜୀଇଁବା ମରିବା ନିୟତ ନିୟୁଣୀଳ ଏବଂ ଏହାର ମଧ୍ୟରେ ସଂତୋଷରେ ସୁଖ ସାଉଁଟି ସାଉଁଟି ଜୀଇଁରହେ ବର୍ଷିୟସୀ ପୃଥ୍ବୀ .

ମୁଁ ବି ବୁଝେନା ମାଟି
କେଉଁପରି ଘୂଷୁରି ଘୂଷୁରି

ମତ ଅଭିମତ ଭିନ୍ନମତ ।।

କର୍ଷପୁରୀ ବୁଢ଼ୀପର
ସାଉଁଠେଇ ସୁଖର ଗୋବର ! (୩)

ଏହାରି ମଧ୍ୟରେ ମଧ୍ୟ ଜୀବନ ଗୃଳଥାଏ ତା’ ବାଟରେ । ‘ଯେଉଁ ଯଂତ୍ରଣା ଟିକକାଟେକାଉ ଖାଉଥାଏ ଆକୁଳ ଜିଜ୍ଞାସାକୁ/ତା’ ବଂଚିବାର ସାବ୍ୟସ୍ତ ଅଧିକାର । କେଉଁ ଶବ୍‌ଦର ଅତ୍ୟାଗ୍ରହରେ/ଷତାକ୍ତ ହୁଏ ମରବତା/ତାହାଙ୍କ ଦ୍ରୁଷ୍ଟାକ୍ଷାର/ଅନ୍ୟନାମ ।’ ଜ ଣି କେଉଁ ‘ଅବପଷାର’ ବାଟ ଗୃହ୍ମିଁଗୃହ୍ମିଁ ବଂଚିରହେ ମଣିଷ । ଅଥବା ଆଗେଇ ଯାଏ ଅକ୍ରମ ବଗରେ ଅବିରାମ । ଯଦିଓ ସେ ଜାଣେ ଏଠି ବଂଚ ରହିବାଟା ଗ୍ରୁଇଗ୍ରୁଇକା, ଅସ୍ପଷ୍ଟ । ଏଠି କେଉଁଥିରେ ଏମିତି କଣ୍ଟି ସ୍ଥିରତା ନାହିଁ ଯେ କହିହେବ— ‘ଗଜଉଥିବା ଘାଜ ପଦ ମେଳାବ, ଲୁନିଲୁନି ଚଟେଇଙ୍କ ଗୀତରେ ଉଦ୍‌ଭାସିତ ହବ ମତ୍ସ୍ୟ ନଅର ।’ ଏଠି ସ୍ଥିରତା ନାଇଁ ଜଭର । ପଦେ ପଦେକେ ହାର୍ । କଥା କଥାକେ ଜିଦ୍ । ମୁହୂର୍ତ୍ତକୁ/ ମୁହୂର୍ତ୍ତ କଥାରେ ନଥା । ଚଣ୍ଡି ପଡ଼ଯାଏ/ ସବୁଥିରେ । ‘ଭକୁଆ ହୋଇ ଗୃହେଁ/ ଆକାଶ, ବୋକା ବନିଯାଏ ଦୁନିଆ ଗୋଟାର ପଶା ଖେଳ ।’ ଏଠି ସବୁ ଅସ୍ଥାୟୀ, ଅଚିର, ସାହାଧର କାନ୍ଦୁଥିବା ଅହଂକା କଂକ ପରି ଉଡ଼ିଯାଏ ମୁହୂର୍ତ୍ତକେ ।’ ପ୍ରତିଶ୍ରୁତିର ଅନ୍ଧର୍ଭର ଶୃଂଗାର’ରେ ବଂଚିରହେ ବର୍ତ୍ତମାନ । (୪) ସଂରକ୍ଷିତ ଶୋକ ମଧ୍ୟରେ ଦେଦୀପ୍ୟମାନ ହୁଏ ଆଗାମୀ ସକାଳ । ‘ପୁରାତନ ବଂଧୁତ୍ୱ ପରି ଦୁଃଖ’ ମଧ୍ୟରେ ବିଶ୍ୱାସରେ ଜୀଇରହେ ଜୀବନ । ଏଇ ଜୀଇଁ-ରହିବାଇଁ ‘ମଂହସିଦ୍ଧ ଯଂହଣାର ପୁରୁଷାର୍ଥ’ । (୫) ପୁରୁଷାର୍ଥର ଏଇ ସିଦ୍ଧି ‘ଅକୃତଜ୍ଞ ଈଶ୍ୱରଙ୍କୁ’ ମଧ୍ୟ କ୍ଷମା ଦେବାର ପ୍ରତିଶ୍ରୁତି ବହନ କରିଥାଏ । ‘ଈଶ୍ୱର ପ୍ରତାରଣାର ଭିନ୍ନନାମ ଜାଣି ସୁଦ୍ଧା ତାଙ୍କୁ କ୍ଷମା ଦେବାର, ଜୀବନ ବିଫଳତାର ନାମାନ୍ତର ଜାଣି ସୁଦ୍ଧା ତାକୁ ସହି ନେବାର ଦୁଃସାହସ ହିଁ ବଂଚ ରହିବାର ସଫଳମନ୍ତ୍ର । ଏ ଯେପରି ପଙ୍କରେ ରହି ପଙ୍କସହ ଲିପ୍ତ ନହେବାର ନୈସର୍ଗିକତା !

ନାନାନୁବୈଚିତ୍ର୍ୟରେ ଭରପୁର ବଂଚ ରହିବାର ଅନୁଭୂତି । ବାଲ୍ୟ, କୈଶୋରର ଅଂଚେନଦ୍ଭ ଅନୁଭୂତି, ଯୌବନର ଖୋଲା ପଡ଼ିଆରେ ସ୍ମରଣ ବିସ୍ମରଣ ମଧ୍ୟରେ ଛୁଇଛୁଇକା ଯୌବନର ଦୁର୍ଦ୍ଦାନ୍ତ ଚେତହେବା, ଲେଭିଲ

ଦାମ୍ଭିକତାକୁ' ସ୍ପଷ୍ଟ ରୂପେ ବାରି ହେଉନାହିଁ ପଚିଶ ବର୍ଷର 'ଦୁର୍ବାର' 'ସଂସ୍ପୃକ୍ତ ପବସନ୍ତାରେ' । ପଚିଶତି ବୟସର ଦୋସରରେ ଯୌବନର ଉଦ୍ଦାମତା ଯେପରି ଅସ୍ପଷ୍ଟ; ଅସ୍ପଷ୍ଟ ହେଲେବି ଗ୍ଲାଇଗ୍ଲାଇକା ଭବିଷ୍ୟତର ଅନିବାର ପରିଣତିର ରୂପ । ସାପ ଲୁଡୁର ସିଡିକୁ ଡେଇଁ ଡେଇଁ ଖସି-ପଡ଼ିବାର ଦୃଶ୍ୟ, ଅଣଚୂଷଠି ବର୍ଣ୍ଣମାଳାର କୋଟକଇକରେ' ନିର୍ଣ୍ଣିତ ହୋଇଯିବ ଯେବେ ସବୁ ସମ୍ପର୍କ, ସବୁ ନୈକଟ୍ୟ, ସବୁ ଜାଗି ରହିବା; ଓ ସବୁ ଜୀବନ । ତଥାପି 'ଅଂଧ ପର୍ଦ୍ଦ ରୁଚି ଅଂଧାରର ନକ୍ସ ।' ମର ମଣିଷ ଜୀଇଁ ଚାଲିଛି ମରଣ-ଶୀଳ ଜୀବନ କଠିନ ଲୁହର ତପସ୍ୟାରେ । କାଳ କରାଳ ବୁଝେନା । କେଉଁ ଅଶୁଭକ ମୁହୂର୍ତ୍ତରେ କେହି ଜଣେ ପାଖକୁ ଆସି କହିବ : 'ସମସ୍ତ ଆଂଟରେ' ଆପଣାର ଦ୍ୱିଧାଗ୍ରସ୍ତ ବ୍ୟକ୍ତିତ୍ୱକୁ ଭଲକରି ଚିହ୍ନିବା ଆଗରୁ 'ସମସ୍ତ' ହୋଇଯିବ । କେହି କାହାକୁ ଅପେକ୍ଷା କରି ଅଟକି ରହିବ ନାହିଁ । ସମସ୍ତ ହୋଇଯିବ । 'ଅଂଧ ପିଲା ଭଲ ନାଚୁଛି' ହାମ୍ଭାରେ ଠିଆ ହୋଇଯିବ । ସ୍ନେହ, ସୌହାର୍ଦ୍ଦ୍ୟ; ସଂପର୍କର ଗାଁ ଅନେକ ଦୂରରୁ ଦିଶିବ ତରୁଣ ଅପରାହ୍ନର ଶୀତୁଆ ସ୍ୱପ୍ନ ପରି । ତା'ପରେ ଯିବାକୁ ହେବ ଅନିବାର୍ଯ୍ୟ ଭାବେ, ଯିବାକୁ ପଡ଼ିବ ।

ତଲେ କ'ଣ ଫେରି ହେବ ? ଏଯାବତ୍ କେହି ଫେରିଛି ? 'କେହି ଫେରିପାରିନାହିଁ/ଅଜ୍ଞାତ ଦେଦଳୀର ଅଂଧାରରୁ/ଉଜ୍ଜ୍ୱଳ ଶୋକର ନଈରକୁ/ ଚଲ ବାଟର ଟେରୁଆ ଗୋଧୂଳି/ବନ୍ଧିହେଇ ତ୍ରାଂକଦିଏ ବୁଦବୁଦକିଆ ଇଚ୍ଛାଙ୍କ ଗଛକୁ/ ସାଂଗସାଥୀହୀନ, ଜଗୃଟ ଗୀତର ଜଳା ପାହାଡକୁ ।(୭)

ପରିଣତରେ, ଏବଂ ବୋଧ ଅନିବାର୍ଯ୍ୟତା ସତ୍ତ୍ୱେ କମଳାକାନ୍ତୀୟ କାବ୍ୟ ଚିନ୍ତା ଏକ ଅସ୍ତିଧର୍ମୀ ମୁଦ୍ରାରେ ଉଜ୍ଜ୍ୱଳ । ଯିବାର ଅନିବାର୍ଯ୍ୟତା ମଧ୍ୟରେ ଫେରିବାର ସମ୍ଭାବନା ଝଲମଲ :

ହୁଏତ କେଉ ଜଣେ ପାଖକୁ
ଆସି କହିବ : ଖୋଲିଦିଅ ବଂଦ ଝର୍କା.
ମୁଦା ବାକ୍ସ, ପେଡ଼ି । ତା' ଭିତରେ ଯା' ଅଛି

ଫିଙ୍ଗି ଦିଅ ସମୁଦ୍ରକୁ । ସମୁଦ୍ରରୁ ପୁନଶ୍ଚ ଆସିବ
ବର୍ଷା ଟୁପ୍‌ଟୁପ୍ ତାଙ୍କର ମାଟିକୁ ।
ମୁଁ ଯଦି ବିଦାୟ ନଏ : ତିଳେ ହେଲେ
କାନ୍ଦ ନାହିଁ, ଅନୁରୋଧ—ପ୍ରେମମୟ
ଦଗ୍‌ଧ ଧରିତ୍ରୀକୁ । (୭)

ଡକ୍‌ଟର ଗିରିବାଳା ମହାନ୍ତି
ଅଧ୍ୟାପିକା, ଏଫ୍. ଏମ୍. କଲେଜ, ବାଲେଶ୍ୱର

● ଝରିବାର ବେଳ, କମଳାକାନ୍ତ ଲେଙ୍କା, ୧୯୮୦, ଓଡ଼ିଶା ବୁକ୍‌ଷ୍ଟୋର କଟକ । ଆଲୋଚନାରେ ପ୍ରଦତ୍ତ ସମସ୍ତ ଉଦ୍ଧୃତ ଉକ୍ତ ସଂକଳନରୁ ଗୃହୀତ ।

୧ । ଅଜ୍ଞାତ, ପୃ-୫ ୨ । ରାଜା, ପୃ-୨ ୩- ଅଜ୍ଞାତ, ପୃ-୫
୪ । ଗୁଇଗୁଇକା, ପୃ-୧୦ ୫ । ଏକକ, ପୃ-୧୩ ୬ । ଏ ଯାବତ୍, ପୃ-୧୪ ୭ । ଯୁ' ପରେ ହୁଏତ, ପୃ· ୫୩ ।

## ନୀଳ ଲଫାଫାରୁ ନୀଳ ଶୈଳ...ଦୁଃଖସ୍ନାତ କଥାବାର୍ତ୍ତା

[ ସୌଜନ୍ୟ : ବିଶେଷ ଖବର- ୭ । ୩ । ୯୧, ଭଦ୍ରକ ]

ନୀଳ ସମୁଦ୍ର, ନୀଳ ଆକାଶ ଓ ନୀଳ କନ୍ଦରର ମଝି ଥାନରେ ଠିଆ ହୋଇ କେହିଜଣେ ଅସହାୟ ଭାବରେ ସ୍ମୃତିଦିଗକୁ ଚାହିଁ ଥାଏ । ସବୁ ଦିଗହଜା, ଅସୀମ । ସେଠାରେ ସବୁ ହଜିଗଲା ପରେ ମଣିଷ ଏକଦମ୍ ଏକାକୀ । ତା'ପରେ ଶବ୍ଦର ସମୁଦ୍ର ' ଦୁଃଖର ଅନବରତ ଲହରିମାଳା । ସତେ ଯେମିତି ସୃଷ୍ଟି-ବିଳୟ, ପାର୍ଥିବ-ଅପାର୍ଥିବ ସବୁ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ବିଲୀନ ହୋଇ

ଯାଇଛନ୍ତି । ତା'ପରେ ଶବ୍ଦର ସମୁଦ୍ରକୁ କେହି ଜଣେ ଲମ୍ଫ ଦିଏ । କାରଣ ମାତ୍ରା ହୁଏ ମର୍ମ ଶବ୍ଦର ଯାତନାର ପଙ୍କ ଭିତରେ । ସେଇଠିକ୍ଷ ପଦ୍ମରୁ ପଦ୍ମରୁ ପା'ଏ ନାମ ଗର୍ଣ୍ଡି ହାଏ । ଆଶ୍ରାକର କୁଣ୍ଢାଇ ଧରେ । ତାକୁ ଡୋହରେଇ ଡୋହରେଇ ପଚାରେ, "ତୁ କିଏ ? ତୁ କିଏ ?" ନାମଗର୍ଣ୍ଡି ଚରାଚରର ସ୍ୱରରେ ଉତ୍ତର ଦିଏ—ମୁଁ ଦୁଃଖ । ଦୁଃଖ ଛଡ଼ା ମୁଁ କିଛି ନୁହେଁ !

ତା'ପରେ ସେ ମଣିଷ ଆଖିରୁ ଖସିପଡ଼େ ବହୁ ଦିନରୁ ପିନ୍ଧିଥିବା ନୀଳ ଚଷମା । ଧୋତି କାନିରେ ପୋଛେ ଆଖିର ଲୁହ । ସେହି ଲୁହ, ଆବେଗ ଓ ଏକ ଗୃହାଗ୍ରହରର ସମଷ୍ଟିରେ ସୃଷ୍ଟି କବିତା ସଂକଳନ "ଦୁଃଖ ସହ କଥାବାର୍ତ୍ତା" ।

କବି କମଳାକାନ୍ତ ଏହି ସଂକଳନଟିରେ ବହୁ କଥା ସ୍ପଷ୍ଟଭାବେ କହିଦେବାକୁ ଯାଇ ଲେଖିଛନ୍ତି—ତୁ ଦୁଃଖ ହେଲେ ମୋର ଡର ନାହିଁ । ତୁ ସୁଖ ହେଲେ ମୋର ଖୁସି ନାହିଁ । ତୋ ଭିତରେ ତ ନିଜକୁ ସମର୍ପି ଦେଇଛି । ତୋ ବଡ଼ଦାଣ୍ଡର ଉଚ ଉଚ ବାଲିରେ, ତୋ ସମୁଦ୍ର କୂଳର ଜହ୍ନଉଠା ଖାଁ ଖାଁ ଆକାଶରେ, ଚନ୍ଦୁଫାଳ ଅବଢ଼ାଦାଣ୍ଡିରେ, ମୃତବତ୍ ପଇଡ଼ ଖୋଳରେ ଶ୍ୱେତାଙ୍ଗ ମାର ଉଛିତ ଠାଣିରେ । ସବୁଥିରେ ।

ଜଣେ ଜୀବନବାଦୀ କବି ଭାବରେ ସାର୍ଦ୍ଧଦିନ ଧରି ଓଡ଼ିଆ କାବ୍ୟ ଜଗତରେ ନିଜକୁ ପ୍ରତିଷ୍ଠିତ କରାଇଥିବା କବି କମଳାକାନ୍ତଙ୍କର କାବ୍ୟ ସଂକଳନ 'ଦୁଃଖ ସହ କଥାବାର୍ତ୍ତା' ଏକ ଆବେଗଧର୍ମୀ ପରିପ୍ରକାଶ । ସଂପୂର୍ଣ୍ଣ ପୁସ୍ତକରେ ସନ୍ନିବେଶିତ ୩୪ଟି କବିତା ମଧ୍ୟରୁ ବହୁ କବିତା ମହାପ୍ରଭୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପିତ । ଅଧ୍ୟାପକ ଜୀବନରେ ପୁରୀ ବଡ଼ଦାଣ୍ଡରେ ଲୁଙ୍ଗି ଓ ପଞ୍ଜାବୀ ପିନ୍ଧି ଗୋଟେ ଖୋଲା ମିଜାଜ୍‌ରେ ନିଜକୁ ଖୁବ୍ ସିରିୟସ୍ ଭାବେ ନିହିନି ନେଇଥିବା ମୁହୂର୍ତ୍ତରେ ଏହି କବିତାଗୁଡ଼ିକର ସମ୍ଭାବ୍ୟ ଉତ୍ତରଣ ।

କବିଙ୍କର ପ୍ରଥମ କବିତାର ପ୍ରଥମ ଧାଡ଼ି 'ସ୍ତବକୁ ନିକଟ ଅସ୍ତବକୁ

ମତ ଅଭିମତ ଭିନ୍ନମତ ॥

ଦୂର୍’ କବିଙ୍କର ସମର୍ପଣ ଭାବର ଏକ ଜୀବନ୍ତ ଉଦ୍ଭାସ । ଜଗନ୍ନାଥଙ୍କର ଖଟଡ଼ଗୁଳା ଆଖି ସତେ ଯେମିତି ମହାକାଳର ଆହ୍ୱାନ । ସେହି ଆଖି ଦୁଇଟିହିଁ ଭଙ୍ଗି ଦେଉଛନ୍ତି ବାରବାର କବିର ରକ୍ତ ମାଉଁସର କଳିଜାକୁ । ବାସ୍ । କବିହିଁ ହେଉଥିବେ ଆନନ୍ଦିତ । କେଉଁ ମୃତ୍ୟୁ ଚେତନାର ଅର୍ଗଳରେ କବି ବାନ୍ଧି ହୋଇଯିବାର ଡର ନାହିଁ । ସେଥିଯୋଗୁଁ ମୃତ୍ୟୁ ଚେତନାହିଁ ତା’ପାଇଁ ଏକ ଅଦୃଶ୍ୟ ନିର୍ବାଣ-କବିତାର ଚନ୍ଦନ ବନରେ ।

‘ଦୁଃଖ ମନ୍ଦ କଥାବାର୍ତ୍ତା’ ବାସ୍ତବରେ ଏକ ମନୋଲଗ୍ । ସେଥିପାଇଁ ବେଳେବେଳେ ଯବନ ସାଲବେଗ କିମ୍ବା ପ୍ରାଚୀନ କବି ଚଣ୍ଡୀ ଦାସ ପରି ଜଗନ୍ନାଥଙ୍କ ନିକଟରେ ବନ୍ଧୁ ଭାବେ ଆତ୍ମ ପ୍ରକାଶ କରିଛନ୍ତି । ଶାବ୍ଦିକ ଯନ୍ତ୍ରଣା ମଧ୍ୟ ରହିଛି । ବେଶ୍ ମାର୍ଚୁପ୍ । ଯେମିତି ଏକ ଶାଣିତ ଅଭିମାନିଆ ବେହେଲର ସୁର୍ ପରି । କବିତା ଶୀର୍ଷକ ‘ସ୍ୱର୍ଗକୁ ଗୋଟିଏ ରାସ୍ତା’ରେ ସେ କହିଛନ୍ତି, ‘ଏବେ ଚନ୍ଦ୍ରହାସ ତୋ ବାହୁ ବନ୍ଧରେ/ଏବେ ମୋ ବାହୁ ବନ୍ଧରେ/ ସାତ ସାହାର ସାତତାଳ ପଙ୍କ ।’

ତେବେ ‘ମା’ ମୋର ବର ଦୁଃଖିନୀ’ ଭଳି ଭିନ୍ନ ସ୍ୱରର କବିତା ସାଂପ୍ରତିକ ଭାରତ ବର୍ଷର ପରିସ୍ଥିତି ପାଇଁ ଏକ ନିଖୁଣ ଚିତ୍ର । ଶେଷ କବିତା ‘ବାଟୋଇ’ ବୋଧେ କବିହିଁ ନିଜେ । ଅଧ୍ୟାପନା ବୃତ୍ତି ବଜି ତାଙ୍କରୁ ହଜିଯାଇ-ପାରେ । ପୃଥିବୀର କୌଣସି କୋଣରୁ ନାସ୍ତିକ ସତ୍ତାଟି ହଜିଯାଇପାରେ । କିନ୍ତୁ ବେଳେବେଳେ ବଂଶ ନରହିବା ପାଇଁ ଆତ୍ମ ଅଭିମାନ ଜାଗିଉଠେ । ସେଥିପାଇଁ ତାଙ୍କ କବିତାର ଧାଡ଼ି ହେଲା— ଯା’ ଯେଉଁଠିକୁ ଯାଉ/ଯେତେ ବାଟ ପାରୁ ଚାଲିଯା ।

‘ଦୁଃଖମନ୍ଦ କଥାବାର୍ତ୍ତା’ରେ କବି ପୁନଶ୍ଚ ଜିଆପର ଏକ ଦଗ୍ଧେ ଖାଟରେ ମାନବିକତାର ଦେଇଛନ୍ତି ଗୋଟିଏ ରଙ୍ଗ । ପରଂପରାର ଧୂମ କୁଣ୍ଡଳୀରୁ ଅବୋଗନ୍ତ ମୁକ୍ତିପ୍ରୟାସୀ କବିଟି ସଦାବେଳେ ନିଜ ଜିଜ୍ଞାସାରେ, ନିଜ ଶୈଳୀରେ ଆଜି ଗୋଟେ ସାହିତ୍ୟର ମାଡ଼ ସୃଷ୍ଟି କରିବାରେ ଉଦ୍ୟମୀ ।

।। କବି କମଳାକାନ୍ତ

ଏହି ସଂକଳନଟିର ଆଉ ଏକ ବୈଶିଷ୍ଟ୍ୟ ହେଲା— ବହୁ ଗ୍ରାମିଣ କଥିତ ଭାଷାକୁ ନେଇ କବିତା ଗୁଡ଼ିକରେ ଠିକ୍ ଭାବେ ଉପଯୋଗ କରିବା । ସେହି ଶବ୍ଦ ଗୁଡ଼ିକ ହେଲା— ମଶ୍ରିଣ, ସଂପୁଥିବ, ଆଃଷ୍ଟେପ୍ରଣ, ଖଲେଇ ଖଲେଇ, କରଞ୍ଜି ଫୁଲ, ଭଲୁଆ, ଅବତା, ସାହାଡମେଲ, ଅନାଥିମା ମାଟିର ବଣମଲ୍ଲୀର କାନ୍ଦ୍ରା ମସ୍ତକ, ମେଘଭସା ଉଜୁଡ଼ା କ୍ଷେତ' ଇତ୍ୟାଦି ଇତ୍ୟାଦି ।

ସଂକଳନଟିରେ ସନ୍ନିବେଶିତ 'ବନୋଇଆ', 'ସଂଟର୍କ ପୁଷ୍ପ-୧୯୭୯', 'କପଟ କଲ ଯାହା', 'ବହୁତ ଡେରିରେ ହେଲେ ବି', 'ଆଉ ପୁଣି କ ଗୋପମୋପୁତା'; ଗୁହ୍ୱିଁଣ୍ଟା ତ 'ଗୁହ୍ୱିଁଣ୍ଟା', ଇତ୍ୟାଦି କବିତାର ଗଣିଣା ନିକଟରେ 'ସବୁବେଳେ ପାଖେ ପାଖେ', 'ଠାକୁର ଘରେ କଏ,' 'ଯେଉଁସବୁ ବର୍ଷସୂତରେ' ଭଳି କେତୋଟି କବିତାର ଉପସ୍ଥିତି କେତେକାଂଶରେ ସଂକଳନଟିର ମାଧୁର୍ଯ୍ୟ ନଷ୍ଟ କରେ । ତଥାପି ଶବ୍ଦଙ୍କ ମିତ-ବ୍ୟୟିତା ଯୋଗୁଁ ଏକ ପରିବ୍ୟାପ୍ତ ଚିନ୍ତା-ଚେତନାକୁ ସେହି ସୀମାବଦ୍ଧତାରେ ରୂପରେଖ ଦେବାରେ କବି ଶ୍ରୀ ଲେଙ୍କା ଯଥେଷ୍ଟ ସଫଳ ହୋଇଛନ୍ତି । ଚିତ୍ରବାଚକ ଶବ୍ଦକୁ ଦେବା ବୋଧେ ଏହି ସଂକଳନର ଅନ୍ୟ ଏକ ତାତ୍ପର୍ଯ୍ୟ । ଯଥା— ଡାଳିଆ ବାଲିରେ ଛୁଟେ, ପ୍ରତିଟି ବୁଢ଼ା ଲୋକଙ୍କ ଧକଉଥିବା ଏକାକୀ ନଜନଭୁ, ଖଲେଇ ଖଲେଇ ଝପ୍ଟି ଆସୁଥିବା ଭୂଆ ବଟଲିଇର ଲୋମଶ ଲାଞ୍ଜକୁ··· ଇତ୍ୟାଦି କବିତା ଧାଡ଼ି ଖୁବ୍ ପ୍ରାଣସ୍ପର୍ଶୀ । ଅନେକ କବିତାରେ ପୁଷ୍ପ ବଡ଼ ଦାଣ୍ଡ, ଜଗନ୍ନାଥ ସଂସ୍କୃତି ଓ ସମୁଦ୍ର ସଂପର୍କିତ ଶବ୍ଦଙ୍କୁ ଓ ଅଳଙ୍କାର ସଂଯୋଗ କରାଯାଇଥିବାରୁ ତାହା ଖୁବ୍ ଅନନ୍ୟ ଜଣାପଡ଼େ । ( ଷାଠଏ ପଇଠ, ଜାଲି ବୁଣା କ୍ଲାନ୍ତି ଇତ୍ୟାଦି ଇତ୍ୟାଦି )

କବିକୁ ଯେତେ ଧମକ ଦେଲେ, ଯେତେ ଗୁଳୁକ ମାରଲେ, ଯେତେ ଗୋଇଠା ମାରଲେ ତାର ଆଦରିଲା ସମାଜ, କବି ସେତେ ନିଜ ରକ୍ତରେ, ଲୁହରେ, ଭବାବେଶରେ ଆଙ୍କିବ ଏଠ ଫର୍ଦ୍ଦ ଫର୍ଦ୍ଦ କବିତା । କବିତାଙ୍କୁ ତା'ର ସବ ଶ୍ରେଷ୍ଠ ସ୍ୱୀକାରେଶକ୍ତି । ସମ୍ରାଟ୍ ମଟରଙ୍କ ଖଣ୍ଡା ବାଦନର ସ୍ୱରଠୁଁ 'ବୁଦ୍ଧଂ ଶରଣଂ ଗଚ୍ଛାମି' ଯାଏ ବହୁ ପରୀକ୍ଷା ନିରୀକ୍ଷା ଦେଇ ଗତି କରିଥିବା

ମତ ଅଭିମତ ଭିନ୍ନମତ ॥

ମଣିଷର ମନ ପାଇଁ ବ "ଦାସ୍ କ୍ୟାପିଟାଲ୍" ଗୋଟେ ମିଥ୍ ପାଲଟିଯାଏ । ଦୁଃଖ ତା'ପାଇଁ କଣ ? ଉତ୍ତରର ଲଙ୍ଗଳା ହାତଠାରୁ ଦେବଦାସର ମଢୁଆ ଲ ଆଖି ପର୍ଯ୍ୟନ୍ତ ମଣିଷ କଲିଜା ତଳେ ବଡୁର ରହିଥିବା ଗୋଟିଏ କନମାଛିଆ ଆବେଗର ଅନ୍ତରଣରେ ନାମ ହେଲ ଦୁଃଖ । ଟିପ ଛୁଇଁଦେଲେ ଯେଉଁଠି ଫୁଲଟିଏ ବ ଝରିପଡ଼େ । ଶବ୍ଦମାନେ ବ ସେଇଠି ଉଜୁଡ଼ି ପଡ଼ନ୍ତି । ଶୁଖିଲା ନଈରେ କାଠ ମାଛ ଗୀତ ଗାଉଥିବା ନାଉରିର ହାଃହଙ୍କ ଛବ କଲଜାରେ ଆଙ୍କି ହୋଇଯାଏ କେମିତ । ସେଥିପାଇଁ ସେ ନାଉରୀଟି ବଧିର । ସ୍ୱାର୍ଥର ଚର୍ମ, ମାଂସର ଆବରଣ ତଳେ ଯେମିତ ବଞ୍ଚନା କୈବର୍ତ୍ତ । କବଟିଏ ଠିକ ସେଇମିତ । ନିଜକୁ ନିଜେ ହିଁ ପାଲଟି ଯାଏ କେଉଁ ଦୂର ପାନ୍ଥ ଶାଳର ଏକଲା ଗଛଟିଏ ।

ବାସ୍ତବରେ ଏହିଭଳି ଏକ ପେଣ୍ଡୁ ପେଣ୍ଡିର କ୍ୟାନ୍‌ଭାସର ଚିତ୍ର 'ଦୁଃଖ ସହ କଥାବାର୍ତ୍ତା' । ଅସିତ୍ ମୁଖାର୍ଜୀଙ୍କ ପ୍ରଚ୍ଛଦପଟ ଯଥେଷ୍ଟ ମନଛୁଆଁ ମଧ୍ୟ ହୋଇଛି ।

**ବିଷ୍ଣୁ ସେଠୀ**
ସହ-ସଂପାଦକ 'ବିଶେଷ ଖବର'

## ଉନ୍ମୋଚନ

[ ବିଶେଷ ଖବର — ବୁଧବାର ୩ । ୭ । ୯୧ ]

'ସୁନା ଫସଲ'ଠାରୁ 'ଉନ୍ମୋଚନ' ପର୍ଯ୍ୟନ୍ତ ଦୀର୍ଘ ୩୪ ବର୍ଷର ଯାତ୍ରା । ଏହି ସମୟ ଭିତରେ କବି କମଳାକାନ୍ତ ଉପହାର ଦେଇଛନ୍ତି ଓଡ଼ିଆ କବିତା ଜଗତକୁ ୧୬ ଖଣ୍ଡ କବିତା ପୁସ୍ତକ । 'ଏଠି ସବୁ ଧାନବିଲ ତାଆ

॥ କବି କମଳାକାନ୍ତ

ଆଉ ନୋଡାଳର ଗାନ/ରକ୍ତର ଚୋବାଣି ଫେଣି ଚୋକ ଗିଳେ ମୁମୂର୍ଷୁ ଜୀବନ ।' ପାଖରୁ କବିଙ୍କର ଦୃଷ୍ଟି ଖସିଯାଇଛି 'ସମସ୍ତ ପାପର ବିନିମୟରେ ଜୀବନଟା ଯଦି ଗୋଟେ ସାର୍ଥକ କବିତା ହୋଇଯାଏ/ତେବେ ଈଶ୍ୱର କହନ୍ତେ : ସଂସାର ଏକ ପବିତ୍ର ନର୍କ ପାରିଲେ ଓହ୍ଲାଇ ଆସ ସିଂହାସନରୁ' ପର୍ଯ୍ୟନ୍ତ ।

ଏହି ୩୪ ବର୍ଷର ଯାତ୍ରା ଭିତରେ କବି ଯାହା କହିପାରି ନଥିଲେ ୧୭ ଖଣ୍ଡ କବିତା ପୁସ୍ତକ ଭିତରେ, ସେ ସବୁକୁ ସମ୍ଭବତଃ ସେ ସାଇତି ରଖିଥିଲେ ସମୟ ଓ ସୁଯୋଗ ଦେଖି ପ୍ରକାଶ କରିବାପାଇଁ । ଫଳରେ ତାଙ୍କର ସେହି ବକ୍ତବ୍ୟ ହୁଏତ ସାଧାରଣ ଭାବରେ ପ୍ରକାଶିତ ନହୋଇ ଏବେ 'ଉନ୍ମୋଚିତ' ହେଲା । ଏହି ଉନ୍ମୋଚନ ପର୍ବର ପ୍ରଥମ ଦୃଶ୍ୟରେ ରସଗ୍ରାହୀ ପାଠକମାନେ ଦେଖିଲେ କମଳାକାନ୍ତଙ୍କର 'ସୁନାଫସଲ'ର ବେଦେହରେ ଅନେକ ଆଙ୍ଗିକ ପରିବର୍ତ୍ତନ ଓ.ସେ ଅମୃତ ହୋଇଲାରୁ ସ୍ଥିତପ୍ରଜ୍ଞ ଆସନରେ ଉପବିଷ୍ଟ ହୋଇ ଉଚ୍ଚାରଣ କରୁଛନ୍ତି—"ଜ୍ଞାନୀ ଓ ବିବେକୀ ପାଖରେ ଯେମିତି ଚମ୍ବର/ଜଣେ ପଣ୍ଡିତଙ୍କ ହାତରେ ଯେମିତି ଶବ୍ଦ-କୋଷ" ।

ବସ୍ତୁତଃ ଏ ସଂକଳନରେ କବି କମଳାକାନ୍ତ ପଟନାୟକ ନୁହନ୍ତି, ସ୍ଥିତପ୍ରଜ୍ଞ । ମୋଟା ଲ୍ୟାନ୍ସର ଚଷମାତଳୁ ନୁହେଁ, ନିଜର ବୁଦ୍ଧିଦୀପ୍ତ ଅନ୍ତଙ୍କ ଚକ୍ଷୁରେ ସେ ନିରୀକ୍ଷଣ କରିଛନ୍ତି ବିଶ୍ୱକୁ । ଏଠି ନିଃଶବ୍ଦରେ ଜୀବନ ସ୍ରୋତ ପ୍ରତିଟି ଲତା-ବଲ୍ଲରୀର ସ୍ପନ୍ଦନକୁ କଲମ ମୁନରେ ରୂପ ଦେବାକୁ ପ୍ରାଣମୁର୍ଚ୍ଛା ଉଦ୍ୟମ କରିଛନ୍ତି କବି । ବିମୁଗ୍ଧ, ବିମୋହିତ ହୋଇଛନ୍ତି ଜୀବନର ପ୍ରତିଟି କ୍ଷଣର ସ୍ପର୍ଶରେ । ହେଲେ, ଅନୁଭବିଛନ୍ତି ଶବ୍ଦ ବି ଯାଉଁବେଳେ ସମର୍ଥ ନୁହେଁ ସକଳ ପ୍ରକାର ଅନୁଭୂତିକୁ ଭାଷାର ପୋଷାକ ପିନ୍ଧାଇବାରେ । ତଥାପି ଯେଉଁଠି ସେ ସମର୍ଥ ହୋଇଛନ୍ତି ସେସବୁ ଅନୁଭୂତିକୁ କେବଳ ଭାଷାର ପୋଷାକ ନୁହେଁ, ଗହଣା ପିନ୍ଧାଇ ଓ କସ୍‌ମେଟିକ୍‌ସର ପ୍ରଲେପ ଦେଇ ମଧ୍ୟ ଉଭା କରାଇଛନ୍ତି ପାଠକ ମାନଙ୍କ ସାମ୍ନାରେ । ଯଥା— ଅଷାଢ଼ ଫେରେଇ ଦିଏ/ବଗିଚାକୁ ନିଜ ସଂବୋଧନ । ମେଘଙ୍କର ଗୁଡ଼ଗୁଡ଼ିରେ/ଗୁପ୍ତରେ ବଜୁଳି ଓ ପବନର ଝୁଲଣାରେ ଛୁଇଁ ଝୁଣ୍ଟି/ସ୍ମୃତି ଝୁଲ ଉଦାସ ଲଗନ ।"

ମତ ଅଭିମତ ଭିନ୍ନମତ ॥

ତମାମ ଜୀବନ 'ଦୁଃଖ ସହ କଥାବାର୍ତ୍ତା' କରୁଥିବା କବି କମଳାକାନ୍ତ ଏଠି ମଧ୍ୟ ଦୁଃଖଙ୍କୁ ପ୍ରିୟତମ ବୋଲି ସମ୍ବୋଧନ କରିଛନ୍ତି— 'ହେ ପ୍ରିୟତମ ଦୁଃଖ, ଧବଳ ଦୁଗ୍ଧ ରକ୍ତରେ । ଉଜ୍ଜ୍ୱଳତର କପଟତାକୁ/ସୂର୍ଯ୍ୟମୁଖୀର ବୃନ୍ତରେ । ସାନ୍ତ୍ୱନା ଦିଅ ମୃତ୍ୟୁକୁ/ଜୀବନ୍ୟାସ ଦିଅ ଭୂତଙ୍କୁ/ସ୍ଫଟିକ ମେଘଙ୍କ ସ୍ପର୍ଶରେ ।'

ହଗୁ ହମନ୍ତରେ କମଳାକାନ୍ତଙ୍କର ପ୍ରଚଣ୍ଡ ଦୁର୍ବଳତା ରହିଛି ସୁସ୍ପଷ୍ଟ । ତେଣୁ ଅନ୍ୟ ସମୟରେ ସେ ପୁରୀ ଓ ଜଗନ୍ନାଥଙ୍କ ସଂପର୍କରେ ଯାହା କହିଥିଲେ ମଧ୍ୟ, ଏଠି କହିଛନ୍ତି— 'ଠିକ୍ ଓଡ଼ିଶାର ନୁହଁ/ସାରା ଦୁନିଆର/ନଅଁ ଟିଆ ମଣିଷ ପାଇଁ ଗୋଟେ ସଠିକ୍ ନିବିଦପତ୍ତର/ଖୋଲା ପବନ ମୁଦା ମନର/ସମୁଦ୍ର କୂଳିଆ ଭୂଇଁଟିଏ ଅଛି । ଯାହାକୁ ମୁଁ କହେ ପୁରୀ ।/ତମେ କୁହ କ୍ଷେତ୍ର ଓ ଦୃଶ୍ୟ-କାଙ୍ଗାଳ ପର୍ଯ୍ୟଟକ କହନ୍ତି— ସ୍ୱର୍ଗ ।' ସେମିତି ଜୀବନ ସମ୍ପର୍କରେ ସେ କହିଛନ୍ତି 'ରଙ୍ଗ ମାନେଇ ଅସ୍ଥିର ! ରୂପ ମାନେଇ ସମ୍ମୋହନ । ରସ ମାନେଇ ଜୀବନ ।' ଓ 'ଯେଉଁ ରାଜ୍ୟରେ ଗୁଣ୍ଡୁଚି ଭଳି ଧୂଳିରେ ଗଡ଼େ ଦୁଃଖ/ଗଞ୍ଜେଇ ଧୂଆଁ ଭଳି ଶୂନ୍ୟକୁ/ଢୋଡ଼େଇ ରଖେ ଆଶ୍ୱାସନା/ ସେଠି ନିଶାଖୋରମାନେ ମରନ୍ତି, ତରନ୍ତି ସଂକୀର୍ତ୍ତନରେ ।' ବୋଲି ଉଚ୍ଚାରୁଥିବା କମଳାକାନ୍ତ ଜେହାଦ ଘୋଷଣା କରି କହନ୍ତି— ଷଣ୍ଢାର ଦିଅ/ଚିରିଦିଅ/ଛିନ୍ନଭିନ୍ନ କରିଦିଅ ବୁଢା ସୂର୍ଯ୍ୟକୁ/ଓ ତାର ଗଳିତ ଚମ ଏବଂ ରକ୍ତରେ/ଫୁଟାଇଦିଅ ସଫେଦ ପଦ୍ମର କଢ଼ି

ସଂକଳନସ୍ଥିତ ୫୮ ଗୋଟି କବିତାର ପ୍ରତିଟି ଛନ୍ଦେ ଛନ୍ଦେ କମଳାକାନ୍ତ ଉନ୍ମୋଚିତ କରିଛନ୍ତି କିଛି ତଥ୍ୟ, କିଛି ସତ୍ୟ— ଯାହା ସୂଚେଇଦିଏ କବି ଜଣେ ପ୍ରାଜ୍ଞ; ଆମ ସମୟର ଜଣେ ଦାର୍ଶନିକ, ଯିଏ ଜୀବନର ଗୂଢ଼ତତ୍ତ୍ୱ ଖୋଜି ଖୋଜି କବିତାକୁ ଭୁଲିନାହାନ୍ତି କବିତାର ମହୁଲି ନିଶାରେ ତନ୍ଦ୍ରାଚ୍ଛନ୍ନ ହେବା ସମୟରେ ବି ଜୀବନକୁ, ମାଟିକୁ, ପାଣିକୁ, ପବନକୁ ଏଡ଼େଇଦେଇ କଳ୍ପଲୋକରେ ଭାସିଯାଇ ନାହାନ୍ତି । ତେଣୁ ସେ ଦୃଢ଼ ଭାବରେ ଉଚ୍ଚାରଣ କରିଛନ୍ତି— ଆୟୁତ୍ତରେ ଥିଲାବେଳେ ବୁଝାପଡ଼େ/କବିତାଟି ଖୋଲି ସଜା ଜୀବନର ବହିଟିଏ/ ପ୍ରତିପୃଷ୍ଠା ଜନ୍ମ ରାତି/ପ୍ରତି ଶବ୍ଦ ନୂଆ ଡାକ/ପ୍ରତିଟି/ଅକ୍ଷର/ଆପଣାକୁ ଅନ୍ତର୍ନିମି ଯିବାର ଗୋପନ ଇଚ୍ଛା/ଅନ୍ତରଙ୍ଗ ଖେଳ ।'

ସମୀକ୍ଷା— **ଚିନ୍ତାମଣି ସାହୁ**

## ଉନ୍ମୋଚନ

କମଳାକାନ୍ତ ଲେଙ୍କା
ପ୍ରକାଶକ : ଗ୍ରନ୍ଥ ମନ୍ଦିର, କଟକ
ପ୍ରଥମ ପ୍ରକାଶ : ୧୯୯୧
ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ
ମୂଲ୍ୟ : କୋଡ଼ିଏ ଟଙ୍କା
[ ଅଗଷ୍ଟ ୧୯୯୧ ସଂଖ୍ୟା— ନବଲିପି ]

କବି କମଳାକାନ୍ତ ଲେଙ୍କାଙ୍କ ଦ୍ୱିତୀୟତମ ପ୍ରକାଶିତ କବିତା ସଂକଳନ 'ଉନ୍ମୋଚନ', ଯେଉଁଥିରେ ୫୮ଟି କବିତା ସଂଯୋଜିତ । ପ୍ରତ୍ୟେକଟି କବିତା ବେଶ ସଂକ୍ଷିପ୍ତ, ଅଥଚ ଅତ୍ୟନ୍ତ ମନଛୁଆଁ ଓ ଭାବୋଦ୍ଦୀପକ । କବିତା ଗୁଡ଼ିକୁ ପାଠକଲାବେଳେ କବିଙ୍କର ଅନୁଭବ ଓ ଆନ୍ତରିକତାର ସ୍ୱର ବାରି ହୋଇଯାଏ ।

ସଂକଳନ ସଂପର୍କରେ କବିଙ୍କ ସ୍ୱ-ବକ୍ତବ୍ୟ ହେଉଛି— 'ଏହି ସଂକଳନରେ ସଂଯୋଜିତ କବିତା ଗୁଡ଼ିକ ଜୀବନ ସତ୍ୟ ଓ କାବ୍ୟିକ ସତ୍ୟର ସୌନ୍ଦର୍ଯ୍ୟବୋଧ ସହିତ ମୋ କବି ସତ୍ତାର ଆତ୍ମୀୟ ତଲ୍ଲୀନତା ଏହାର ବୈଶିଷ୍ଟ୍ୟ ।' ସଂକଳନର ପ୍ରଥମ କବିତା 'ଅଭିଧାନ' । ଯେଉଁଥିରେ କୁହା-ଯାଇଛି କବି ଓ କବିତା ସଂପର୍କରେ—

କବିଟି ପାଖରେ
ଆନ୍ତରିକତା ଅନୁଭବର
ନବେଦ୍ୟ ସମର୍ପଣ
...ଯେମିତି କବିତା ।

ଅନ୍ୟ ଏକ କବିତା 'କଥାବାର୍ତ୍ତା'ରେ କବି ମଣିଷକୁ ସତର୍କ କରେଇ ଦେଇଛନ୍ତି, ତା'ର ଖିଆଲରୁ ନିବୃତ୍ତ ହେବାଲାଗି । ନିଜର ସୁଖ

ସମ୍ଭୋଗ ଲାଗି ଅନ୍ୟକୁ ଲାଞ୍ଛିତ, ଅବହେଳିତ, ଲୁଣ୍ଠିତ କରିବା ଅନୁଚିତ ବୋଲି ପରାମର୍ଶ ଦେଇଛନ୍ତି ସେ । ଯେମିତି—

ଘାସ ଗଛରୁ
ଫୁଲଟିଏ ଛିଡ଼ାଅ ନା,
ପବନ ବାହୁନିବ ।
ଅଝଟ ସ୍ୱପ୍ନଙ୍କ
ହାତରୁ
ଖେଳଣାଟି ଆଣନାହିଁ,
ଦୁଃଖ ଉଭୟଙ୍କ ଅଧୀଶ୍ୱର ।

ସଂକଳନରେ ଅଧିକାଂଶ କବିତା ଜୀବନଧର୍ମୀ । ଜୀବନ ଯାପନର ସୂକ୍ଷ୍ମ ଅନୁଭବର ଚିତ୍ର କବିତା ଗୁଡ଼ିକର ଭାବଧାରା । ଏହା ସାଙ୍ଗକୁ ପାରିପାର୍ଶ୍ୱିକ ପରିବେଶ ଓ ଆତ୍ମ ଅନ୍ୱେଷଣ-ମନୋବୃତ୍ତି ପାଠକ ମନରେ କବିତା ପ୍ରତି ଆଗ୍ରହ ସୃଷ୍ଟି କରାଇଥାଏ । 'ବରଗଛ' ସେମିତି ଏକ କବିତା—

ଶାଖା ପ୍ରଶାଖା ମେଲେଇ
ଯୋଗୀଟି ପରି ଉଦାସୀ
ପଡ଼ିଆ ମୁଣ୍ଡର ଗଛକୁ ଦେଖିଲେ
ମନେହେବ : ଚଢ଼େଇର କୋଠରୀ
ଭିତରେ
ଚଢ଼େଇଙ୍କ ଲୁଚକାଳି, ଯେମିତି ନଆଁଶ୍ରୀ
ବାଟ ଭିକାରୀଙ୍କ ଗ୍ରୀଷ୍ମ ନିବାସ ।

'ପୁରୀ' ଓ 'ସମୁଦ୍ର' ସଂକଳନର ୨ଟି ବିଶେଷ କବିତା । ଯେଉଁଥିରେ କବି ହୃଦୟର ବିଶେଷ ଆନ୍ତରିକତା ଓ ନାଟକ ସତ୍ୟର ଚିତ୍ର ଚିତ୍ରିତ । 'ପୁରୀ' କବିତାରେ ପୁରୀର ମାହାତ୍ମ୍ୟ ବର୍ଣ୍ଣିତ ।

ପୁରୀ ଯେ ଆସେ ସେ ସହଜରେ
ଫେରେ ନାହିଁ । ପାପର

ପ୍ରଲୋଭନକୁ
ଫାଂକିଦିଏ ଯେଉଁ ଜଗଦ୍‌ଗୁରୁ
ତା' ମୂର୍ତ୍ତିକୁ ପରମ ଶ୍ରଦ୍ଧାରେ
ତୋଳିଧରେ ପୁଷ୍ପ ।

ସଂକଳନର ଅନ୍ୟାନ୍ୟ କବିତା ଗୁଡ଼ିକ ମଧ୍ୟ ଅନୁରୂପ ଭାବେ ପାଠକ ମନକୁ ସହଜରେ ସ୍ପର୍ଶକରେ । କମଳାକାନ୍ତଙ୍କ ଅନ୍ୟବୁ କବିତା ବହି ଅପେକ୍ଷା ଏହି ବହିଟି ଅଧିକ ଭାବେ ଆଦୃତ ହେବ । କାରଣ ଏଥିରେ ସଂଯୋଜିତ ସବୁ କବିତା ଗୁଡ଼ିକ ବେଶ୍ ସଂକ୍ଷିପ୍ତ ଓ ସାଧାରଣ ପାଠକ ବୁଝିବାରେ କୌଣସି ବିଶେଷ ପ୍ରତିବନ୍ଧକ ନାହିଁ ।

ପ୍ରସ୍ତୁତି— ନିରାକାର ସାହୁ

## ଉନ୍ମୋଚନ

[ ପ୍ରଜାତନ୍ତ୍ର : ରବିବାର - ୨୯ । ୯ । ୯୧ ]

କବି, ଅଧ୍ୟାପକ କମଳାକାନ୍ତ ଲେଙ୍କାଙ୍କ ଏ ବର୍ଷର ପ୍ରଥମ କବିତା ସଂକଳନ 'ଉନ୍ମୋଚନ' । ଏଥିରେ ରହିଛି ୫୮ଟି କବିତା । କବିତା ଗୁଡ଼ିକ ବେଶ୍ ସଂକ୍ଷିପ୍ତ । ଏ ସଂପର୍କରେ କବିଙ୍କର ସୁବକ୍ତବ୍ୟ ହେଉଛି— 'ଭାବରେ, ଅନୁଭବରେ ଓ ଉପଲବ୍‌ଧିର ଗଭୀରତାରେ କିନ୍ତୁ ଆନ୍ତରିକ, ନିବିଡ଼ ଓ ପରିଚ୍ଛନ୍ନ । ଜୀବନ ସତ୍ୟ ଓ କାବ୍ୟିକ ସତ୍ୟର ସୌନ୍ଦର୍ଯ୍ୟବୋଧ ସହିତ ମୋ କାବ୍ୟ ସାଧନା ଓ ବାଣୀ ଆରାଧନାର ଏହା ଏକ ବିନୀତ ସାରସ୍ୱତ ଅର୍ଘ୍ୟ ।'

'ଅଭିଧାନ' ସଂକଳନର ପ୍ରଥମ କବିତା । ଏଠି ଅଭିଧାନର

ଆବଶ୍ୟକତା କେଉଁ ଜଟିଳ ଶବ୍ଦର ଅର୍ଥ ଜାଣିବା ପାଇଁ ନୁହେଁ, ଭଲ ପାଇବାର ଏକ ଅମୋଘ ଆକର୍ଷଣରେ କଥା ଏଠାରେ ଉପସ୍ଥାପିତ, ଯେମିତି—

× × ×

ଜଣେ ପ୍ରେମିକର
ହୃଦୟ ପାଗଳାମିରେ
ଯେମିତି ଖୋଜିଲା ଘେର
ପର ନାସ୍ତି : ଜୀବନକୁ
ଜଟିଳ ମାନଦାଂଡକୁ
ସରଳ ସତ୍ୟର ମଧୁକୋଷ;
ସଂସାର ଅଭିଧାନ ।

'ଘର' ଏକ ମନୋଜ୍ଞ କବିତା । ଘର ପ୍ରତ୍ୟେକଙ୍କ ପାଇଁ ନିର୍ଭରତା ଓ ସୁଖର ପରିବେଷ୍ଟନୀ । ଏଠାରେ ଘର ଓ ଘରୁ ପଦାକୁ ଚାଲିଆସିବା ପରେ ଏକ ନିଚ୍ଛକ ଅନୁଭବର ଶବ୍ଦ ଅବତାରଣା କରାଯାଇଛି—

ଯେଉଁ ଭିତରୁ ବାହାରି
ଆସିଲି ମାତ୍ରେ
ଖାଇ ଗୋଡ଼ାଏ
ବୁଢ଼ୀମାଙ୍କର ପ୍ରଭୃତି ।

'ପୁଷ୍ପ ଓ 'ସମୁଦ୍ର' କବିତା ଦୁଇଟି ବେଶ୍ ମନଛୁଆଁ ଓ ଭାବ-ଗର୍ଭକ । ଏହା ବ୍ୟତିରେକେ ଅନ୍ୟାନ୍ୟ କବିତା ଗୁଡ଼ିକ ଅନୁରୂପ ଭାବେ ପାଠକଙ୍କୁ ଆକର୍ଷିତ କରିଥାଏ ।

ସଂକଳନର ପ୍ରକାଶକ- ଗ୍ରନ୍ଥ ମନ୍ଦିର, କଟକ ୨ । ମୂଲ୍ୟ- ୨୫ଟଙ୍କା ।

॥ କବି କମଳାକାନ୍ତ

ପ୍ରଚ୍ଛଦ ଆଙ୍କିଛନ୍ତି ଅସିତ୍ ମୁଖାର୍ଜୀ । ଶ୍ରୀ ଲେଙ୍କାଙ୍କର ଅନ୍ୟାନ୍ୟ କବିତା ବହି ଅପେକ୍ଷା ଏଇଟି ଅଧିକ ଭାବେ ପାଠକର ଚିତ୍ତ ହରଣ କରିବାରେ ସଫଳ ହେବ, ଏଥିରେ ସନ୍ଦେହ ନାହିଁ ।

## ତିରସ୍କୃତ

ଶେଷ ଖବର – ୧୫ | ୪ | ୧୯୯୨

କେଉଁଠି ଗୋଟେ ଗଳ୍ପରେ ଜଣେ ନାୟକର ଉକ୍ତି ମନେପଡେ । 'ମୁଁ ମେଷ ଝିଅକୁ ଭାବେ । ଝିଅର ବନ୍ଧୁଙ୍କ ସତରେ । ସୁନ୍ଦର । ତାକୁ କୌଣସି କବି ସାଙ୍ଗରେ ବାନ୍ଧି ହେବନି । କାରଣ ସେମାନେ ଅମର୍ଷିତ । ଅନେକ କଷ୍ଟକୁ ଠିକ୍ ଭାବରେ ମାନି ନେବାକୁ ପ୍ରସ୍ତୁତ ନୁହଁନ୍ତି ସେମାନେ ।' ପ୍ରତ୍ୟେକ ନିଜକୁ କବି ପାଇଁ ଏକଥା ପ୍ରଯୁଜ୍ୟ ହେଲେବି କବି ନିମା ଅମର୍ଷିତ ନୁହେଁ, ଜଣେ ଅସଲ ମର୍ଷିତ । ଯେଉଁଥିପାଇଁ ଏ ସଂକଳନର ଶେଷ ପୃଷ୍ଠାରେ କବି କମଳାକାନ୍ତ ଲେଙ୍କା ସ୍ୱାଗତ କରନ୍ତି ତାଙ୍କ ଜୀବନର ପ୍ରତିଟି ବିପର୍ଯ୍ୟୟକୁ ଏବଂ ଦୃଢ଼ ସ୍ୱରରେ ଉଦ୍‌ଘୋଷଣା କରନ୍ତି ଯେ ଅସହାୟତାର ପ୍ରବଳ ଆୟୋଜନ ନଥିଲେ କବିତା ହୁଏନା । କ୍ଷୋଭର ପ୍ରାଚୁର୍ଯ୍ୟ ଜରୁରୀ କବିତା ପାଇଁ, ଜରୁରୀ ବି ମାରିକତା ଓ ନିଃସଙ୍ଗତା, ଭାଗ୍ୟ ଓ ଭଗବାନଙ୍କୁ ନିଜର ସମଜ ଶତ୍ରୁ ବୋଲି ସମ୍ବୋଧୁଥିବା, ଏକା ଏକା ବାଦଶାହା ପରି କବିତାର ବଡ଼ଦାଣ୍ଡରେ ରାଜକୀୟ ଠାଣିରେ ଚାଲୁଥିବା କବି ଶ୍ରୀ ଲେଙ୍କାଙ୍କ ପାଇଁ ସତରେ ପ୍ରତିଟି ବିପର୍ଯ୍ୟୟହିଁ ବିଜୟର ଜୟମାଲ୍ୟ ।

କବିତ ବେଖାପ ଖାସ୍ ଏଇଥି ପାଇଁ ଯେ କେତେବେଳେ ସେ ଗୋଟେ ପୋଖତ ଖେଳୁଆଡ଼ ପରି ମୌନମୁଦ୍ରା · ସୈତାନ ଧାଳ କପାଳରେ ବାରହାତ ଖଣ୍ଡା ଝୁଲେଇ ଥାଏ କେବେ ପୁଣି ସେ ଏକଜନ୍ଧିଆ ହୋଇ ଅସମ୍ଭବକୁ ସମ୍ଭବ କରାଏ । ତା' ଇଚ୍ଛା ବଳରେ ଆଉ କେବେ ପୁଣି ନୂଆଣିଆ ମେଘର ଡେଣା ତଳେ ଘୁଁ ଘୁଁ ହୋଇ ଝରିପଡ଼େ— 'କବି ବେଖାପ୍ ଗୁପ୍ତ ମନ୍ତ୍ରଣାରେ ବାନ୍ଧିହୋଇଥିବା ଶବ୍ଦମାନଙ୍କ ପାଇଁ/କବି ବେଖାପ : ଖୋଲା

ହାଓ୍ୱାରେ ଫିଙ୍ଗି ଯାଉଥିବା ମୁଦା ଚିଠିର ଲେଖକ ହସା ପ୍ରସ୍ତାବନା ପାଇଁ/କବି
ବେଖାପ୍ ଛୁଆ ଅକ୍ଷରର ପେଟ ଭିତରେ ଘୁମୁରୁଥିବା ପାପମାନଙ୍କ ଘୁମୁସ
ସନ୍ତୋଷ ପାଇଁ' (କବି ବେଖାପ୍ ଖାପ୍)। ହାରିବା ନିଶ୍ଚିତ ବୋଲି ଜାଣିବା
ସତ୍ତ୍ୱେ ବି କବି କହନ୍ତି, ଯେତେବେଳେ ଆଗ୍ରହ ଥିଲି ଅତ୍ରି କମ୍ପା ସାଉଁଟୁଛି/ଶ୍ରେଷ୍ଠ
ବଞ୍ଚି ଅନୁଭୂତି ଅସଲ ଗୁମର/ସେ ସବୁକୁ ପୁଞ୍ଜି କରି ହାରିବା ନିଶ୍ଚିତ ଜାଣି
ହରଦମ୍ ମୁଷ୍ଟିବଦ୍ଧ ଶବ୍ଦଙ୍କର ପିଠିଧରେ- ଯଞ୍ଜୁରୁ ଧକାଇ- ଯେମିତିକି
ଆଉ ଜଣେ କିଏ ମଦେ-ପ୍ରାଣେମୂର୍ତ୍ତି। ଗୋଡ଼ଉଛନ୍ତି କେଉଁକାଳୁ ଈର୍ଷା
ପରଭାରେ !' କବିଙ୍କ ସମସ୍ତ ସତ୍ୟନିଷ୍ଠତା ସତ୍ତ୍ୱେ ବି କାହାକୁ ଚିହ୍ନି ନ ଚିହ୍ନି
ପାରିବାଇଁ ଆମ ସମସ୍ୟା— ବୁଝି ନ ବୁଝି ପାରିବାଇଁ ଅନ୍ୟମନସ୍କତା, ସଉକ,
(ଖିଆଲ)। ସେଥିପାଇଁ 'ମୁଁ' କବିତାରେ କବି କହନ୍ତି 'ମୁଁ ମନେ ମୁଁ
ଯାହାକୁ ଚିହ୍ନଟ କରିବା ପାଇଁ ଲୋଡ଼ା ଆତ୍ମ ପରିଚୟର ସନନ୍ଦ । କିଭି
ଆସୁଥିବା ପିଢ଼ି ତଳର ଛୁଇଁଟିପର ସୁନାମ ଦୁର୍ନାମ ଉଭୟକୁ ହଜମ କରିଦେଇ-
ପାରେ କେବଳ କବି, ନିଜ ବିରୁଦ୍ଧରେ ସେ ନିଜେ ହିଁ ଲଢ଼ିପାରେ । ନିଜକୁ
ନିଜ ବିପକ୍ଷରେ ସାକ୍ଷୀ ରଖିଥାଏ, ସେହି କେବଳ ଶ୍ରେଷ୍ଠ। ଲେଖକର ନ୍ୟାୟରେ,
ବୋକା ପିଲାଟିର କାନ୍ଦରେ ଦେଖିପାରେ ଗୋଟେ ତୋଫା ନନ୍ଦନ ବଣ, ଗୋଟେ
ମୃତ ସୂର୍ଯ୍ୟର ଉପତ୍ୟକା ।

ପୂର୍ବ ସଂକଳନ ଗୁଡ଼ିକ ତୁଳନାରେ ଏ ସଂକଳନର କବିତା ଗୁଡ଼ିକ
ଊର୍ଦ୍ଧ୍ୱମୁଖୀ। ମୃତ୍ୟୁ-ଚେତନାରେ ଆଚ୍ଛାଦିତ ଏ ସଂକଳନର ବହୁ କବିତାର
ଆତ୍ମା ସତେ ଯେମିତି ଖୋଲା ମେଲା ହୃଦପୃଷ୍ଠରେ କବି ଦୁଇ ବାହୁ ପ୍ରସାରଣ
କରି ଆହ୍ୱାନ କରୁଛନ୍ତି ମୃତ୍ୟୁକୁ । ହଠାତ୍ ପହଞ୍ଚିଗଲେ ତାଙ୍କୁ କୋଳେଇ
ନେବେ। ହାତ ମୁଠାରେ ପାଇଗଲେ ତାକୁ ଚୁମାରେ ଚୁମାରେ ଭିଜେଇ
ଦେବେ। ଅଥଚ ମୃତ୍ୟୁରିଁ ନିଜେ କବି ସୁଖଇଁ ନିଜେ ଦୁଃଖ, ଦୁଃଖଇଁ ଖଞ୍ଜଣି
ଅନ୍ଧାର-କବର, 'ମଣିଷର' (ଭଲ କବି ମନ୍ଦ କବି) ବା 'ଯାହା ମାଳଞ୍ଚି ଲଟାରୁ
ମାଳ କଇଁର ଶୋକକୁ- କନିଅର ଡାଳରୁ କେଳି କଦମ୍ବର କୋହକୁ ବାଣ୍ଟିଏ
ଛାଲ୍ସୁଥାଏ ପବନ ଭଳି ଜଗି ବସିଥାଏ ଘାଟକୁ ନାଉରିଆ ଭଳି (ଅନ୍ତ୍ୟେଷ୍ଟିକ)

॥ କବି କମଳାକାନ୍ତ

କେବଳ ମୃତ୍ୟୁ ନୁହେଁ, ସଂକଳନସ୍ଥ କବିତାରେ ଈଶ୍ୱର ସତ୍ତା ଅନ୍ୟ ଏକ ଦିଗ, ଯାହା କବିତା ଗୁଡ଼ିକୁ ଚିରନ୍ତନତା ଆଡ଼କୁ ନେଇଯାଏ । ଯେମିତି ତୁମେ ପ୍ରତିଦିନ ମୋ ନିଶ୍ୱାସରେ ଆସ ଓ ଚାଲିଯାଅ-ତୁମ ଆସିବା ଓ ଫେରି-ଯିବା ମଝିରେ ନଆଁ ହୁଳାଟିଏ ପରି ମୁଁ ଜଳୁଥାଏ-ସବୁ ପାଇବା ହରାଇବାର ମଝି ମଝିଆ ଅବସ୍ଥା ଚିହ୍ନରେ ଅଣ୍ଡାଳୁଥାଏ ତୁମକୁ ତୁମ ଅନନ୍ୟ ପ୍ରସ୍ଥାନର, ସ୍ମରଣ ବିସ୍ମରଣର ସାଧାସିଧା ନିସର୍ଗ ସୌନ୍ଦର୍ଯ୍ୟକୁ (ମୂର୍ତ୍ତିଟିଏ ଗଢ଼ିବାର ଦିନ) ଯାହାକୁ ମୁଁ ଧରି ନେଇଛି ମୋ ବିଦାୟ ଲଗ୍ନର ଏକମାତ୍ର ଏକୁଟିଆ ପକ୍ଷୀ-ମୋ ପ୍ରସ୍ତୁତି ବେଳର ନିଶ୍ଚିତ ଗୋଟେ ସ୍ତବ୍ଧ ମଧୁରତା' (ପ୍ରସ୍ତୁତି) । ପୁନଶ୍ଚ ଆମ ସମୟର ସାମ୍ପ୍ରତିକତା ସମ୍ପର୍କରେ କବି ମାନସ ଖୁବ୍ ସଚେତନ । ଉଦାହରଣ ସ୍ୱରୂପ-'ଯେତେବେଳେ କୌଣସି ସମ୍ବାଦପତ୍ରରେ ଛପାଯିବ ଏକଥା-ଆମେ ଜାଣିଶୁଣି ମୁହଁ ବୁଲେଇ ଦେବୁ ଗଣ୍ଡପତି ଆତ୍ମହତ୍ୟା କରିଥିବା, ତିନିମୁଣ୍ଡିଆ ପିଲା ଜନ୍ମିଥିବା- ପାଞ୍ଚ ହାତିଆ ଦାଢ଼ିରେ ମହୁମାଛି ବସା ବାନ୍ଧିଥିବା; ଶୂନ୍ୟରୁ ଟେକ୍କି ପଡ଼ିଥିବା ଗ୍ଲେଟ ବଡ଼ ଦି' ଧାଡ଼ିଆ ସମ୍ବାଦର ଭୌତିକତା ଆଡ଼କୁ ।' ଏପାଖ ସେପାଖ)

ପ୍ରତିଟି କବିତା ସଂକଳରେ କେଉଁଠି ନା କେଉଁଠି 'ପ୍ରେମ' ଲୁଚି ବସିଥାଏ ଭଲ କରି ଦିଶୁଥାଏ ବା ଝାପସା ଝାପସା । ସେମିତି ଏ ସଂକଳନରେ କିଛି କବିତାରେ ଯଦିଓ ପ୍ରେମ ଅଛି, ମାତ୍ର ସେ ପ୍ରେମ ଖାଲି ମାନସିକ ବା ଦୈହିକ ସ୍ତରରେ ସୀମବଦ୍ଧ ନୁହେଁ; ବରଂ ବାସ୍ତବତା ପ୍ରତି ବେଶ୍ ସଚେତନ, ଭାବ ପ୍ରବଣତା ନାହିଁ ସେଠି, ବରଂ ଅଛି ଗୁରୁ ଗମ୍ଭୀରତା । 'ଜାଣିଛ; ଗତି ପାହିଲେ ତୁମ ହାତ ମୁଠାରେ ଗଳଦ୍ ଘର୍ମ ସକାଳ ହେଲେ ତୁମ ଅସଞ୍ଜିତ ବ୍ୟସ୍ତତାର ଘର୍ଘଶ୍ୱାସରେ ଗତି । ଲୋକହସା ବାହୁନାକୁ ମୁଖସ୍ଥ କରୁଥିବା ଅଜବ ଇଚ୍ଛାମାନେ ଜାଣନ୍ତି— ସାମ୍ନା ସାମ୍ନି ହେଲେ ଆମ ଦୁର୍ଦ୍ଦଣ୍ଡ ଅଭିଳାଷର ପ୍ରୟାସ' (ସାମ୍ନାସାମ୍ନି ହେଲେ) ବା 'ତୁମେ ଯେ ପର୍ଯ୍ୟନ୍ତ ହାତରେ ହାତ ରଖିବ-ମଞ୍ଜି ଆଡ଼ ବାଡ଼ରେ ଜହ୍ନଗଛର ଲୋଟଣୀ ଓ ମୁଁ ଯେବେ ହାତରୁ ହାତ ଖସେଇ ଆଣେ ତୁମେ ସମୁଦ୍ର ପରି ଜାଙ୍ଗଲିକ, ଆକାଶ ପରି ଉଲଗ୍ନ ଓ ପୃଥିବୀପରି ବର୍ଷା ପାଗଳ, ଫସଲ ଉନ୍ମତ୍ତ ।' (ହାତ ବଢେଇଲେ ତୁମେ)

ଶବ୍ଦର କମିଆ ସୃଷ୍ଟି କରିବାରେ, ଶବ୍ଦମାନଙ୍କୁ ଆର୍କେଷ୍ଟ୍ରା-ମାଷ୍ଟର ପରି ନିଜ ନିର୍ଦ୍ଦେଶରେ ଆନ୍ଦୋଳିତ କରାଇବାରେ କବି କମଳାକାନ୍ତ ଯେମିତି ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ ଓଡ଼ିଆ କବିତାର ସାମ୍ରାଜ୍ୟରେ, ସେମିତି ବି ଜଣେ ମୌଳିକ ସ୍ରଷ୍ଟା କବିତାରେ ଚିତ୍ରକଳ୍ପ ପ୍ରୟୋଗରେ । ମାତ୍ର ବେଳେ-ବେଳେ ତାଙ୍କ କବିତା ମନେହୁଏ ଝରଣାର ଜଳ ପରି ସ୍ୱଚ୍ଛ, କଳକଳ ତାର ସ୍ୱର । ସ୍ୱପ୍ନରେ ଭରପୂର ତା'ର ପ୍ରାଣ । 'ଯେମିତି ଅଖିଳ ଅଖିଳ ସୁନା ସକାଳର ବତୁରା ଧାଉଁଛିଏ- ଉଳଉଳ ହୋଇ ଡୁଳେଇ ଯିବାର ଅଳସ, ଝାପିଆ ବସୁଛିଏ- ଖଳ ଖଳ ହୋଇ ଲେପଟି ଲେପଟି ଧୂଳିଧୂସର ହୋଇ ହସିହସିକା ତେଇଁତେଇଁକା ପକାଉଥିବା ଟିକି ମିରଗଛିଏ, ଲହଡ଼ିଛିଏ' (ଏଇ ଏଇ ଦେଖ ଲହଡିଛିଏ)

ପୂର୍ବବର୍ତ୍ତୀ ସମସ୍ତ ସଂକଳନ ଠାରୁ 'ଚିରସ୍ମୃତ' ସଂକଳନ ଭିନ୍ନ ତାର ଉଚ୍ଚାରଣରେ, ତା'ର ଗୁରୁ ଗମ୍ଭୀରତାରେ, ତା'ର ଚିରନ୍ତନ ମୂଲ୍ୟ-ବୋଧରେ, କବିତାର ଆତ୍ମାର ଅନ୍ୱେଷଣତାରେ । 'ଯେମିତି ମୁଁ ନିଜ ଗୃହପଟେ ଘୂରିଘୂରି ପଚାରୁଥାଏ ନିଜକୁ- ନବରଙ୍ଗ ପୃଥ୍ୱୀ ଦେଖିଚ ? ଚିହ୍ନିଚ ? ଚିରି ପୃଷ୍ଠାରେ ଚରିଯାଇଥିବା ଶ୍ୟାମଳ ଦୁଃଖକୁ ଚୁମା ଖାଇଚ ? × × ପୃଷ୍ଠା ଚିରି ଯାଉଥାଏ· ଶବ୍ଦ ଯୋଡ଼ି ଯାଇଥାଏ ସବୁ ଖେଳରେ, ସବୁ ହସ୍ତାକ୍ଷରରେ ମୁଁ ବଢୁଥାଏ- ମୁଁ ହସୁଥାଏ ମୁହଁ ମାନଙ୍କର ମେଳା ଭିତରେ ଭାଙ୍ଗି ଯାଉଥାଏ ମୁହଁର ଦର୍ପଣ ଓ ପୃଷ୍ଠାଟିଏ ଚିରି ଯାଉଥାଏ, ଯୋଡ଼ି ଯାଉଥାଏ' (ଚିରସ୍ମୃତ) ।

ବିଦ୍ୟାପୁରୀ (କଟକ) ଦ୍ୱାରା ପ୍ରକାଶିତ ଏହି ଚିରସ୍ମୃତ ବାସ୍ତବିକ ଏକ ଆକର୍ଷଣୀୟ ସଂକଳନ । ସୁନ୍ଦର କାଗଜ, ନିର୍ଭୁଲ ପରିଚ୍ଛନ୍ନ ମୁଦ୍ରଣ । ଚମତ୍କାର ପରିପାଟୀ ଓ ସୁନ୍ଦର ପ୍ରଚ୍ଛଦ ।

ଶେଷରେ କବି କମଳାକାନ୍ତଙ୍କ ସ୍ପଷ୍ଟ ଉଚ୍ଚାରଣକୁ ଅନେକ ବଧେଇ ଓ ସାଧୁବାଦ ।

ସମୀକ୍ଷା— **ପବିତ୍ର ପାଣିଗ୍ରାହୀ**

# କବି କମଳାକାନ୍ତଙ୍କ କବିତାର ଗୋଟିଏ ଶବ୍ଦ ବି : ଶବ୍ଦରାଜ ପ୍ରସଙ୍ଗ

ମୋ ଆଖି ଆଗରେ କବି କମଳାକାନ୍ତଙ୍କ ଶହ ଶହ କବିତା । କେଉଁଠାରୁ, କିପରି ପୁଣି କାହାକୁ ନିର୍ବାଚନ କରିବି ? କବି ବର୍ଣ୍ଣିତ ସହସ୍ର ଶବ୍ଦରାଶିରୁ ଗୋଟିଏ ଶବ୍ଦ ବାଛିଲି । ପ୍ରସଙ୍ଗତଃ ପ୍ରସିଦ୍ଧ କବି ଉକ୍ତି ସ୍ମରଣକୁ ଆସିଲା । * "ଜୀବନ ଯେତେ କ୍ଷୁଦ୍ର, ସାହିତ୍ୟ ସେତେ ବୃହତ୍ ।" ତେବେ ? ତଥାପି ଉପାୟ ଅଛି—

"ଏକ ଶବ୍ଦଃ ସମ୍ୟକ୍‌ଜ୍ଞାତଃ
ସୁପ୍ରଯୁକ୍ତଃ ସ୍ୱର୍ଗେଚ ଲୋକେ ଚ
କାମଧୁକ୍ ଭବତି"— ମହାଭାଷ୍ୟ ।

ଯଥାର୍ଥରେ ମହାଭାଷ୍ୟ ! ପ୍ରାଚୀନ ମନୀଷୀ ପତଞ୍ଜଳି ଦର୍ଶାଇ ଯାଇଛନ୍ତି ।

ଏକ ଶବ୍ଦ, ତାହା ପୁଣି ଶବ୍ଦ ସମ୍ରାଟ୍ । ଶବ୍ଦ ଭିତରେ ଭେଦ ନିରୂପଣ ପୂର୍ବକ, ରାଜା, ପ୍ରଜା ଚିହ୍ନଟ ପରିଚୟ କରିବା ଶକ୍ତି ମୋର ନାହିଁ । ଓଡ଼ିଶାର ବରେଣ୍ୟ ବୟୋବୃଦ୍ଧ ସାହିତ୍ୟିକ ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ସାହିତ୍ୟ କୃତିରୁ ଯେଉଁ 'ମୁଁ'କୁ + କବିଙ୍କର ( ପୂର୍ବରୁ ସରସ୍ୱତୀଙ୍କର ବି ) ପ୍ରିୟ ସହଚର ନେଇ 'ରାଜପୁତ୍ର' ବୋଲି ସମ୍ବୋଧିତ ଓ ସମ୍ମାନିତ କରିଯାଇଛି, ସେହି 'ମୁଁ'ହିଁ 'ଶବ୍ଦ ରାଜ' ବୋଲି ଆପଣାର ଯଥାର୍ଥ ହୃଦ୍‌ବୋଧ ହୁଅନ୍ତେ ତାହାହିଁ ସମୀକ୍ଷାପାଇଁ ଗୃହୀତ ଓ ନିର୍ବାଚିତ ହେଲା ।

କବି ଶ୍ରୀ ଲେଙ୍କାଙ୍କ 'ମୁଁ' (୧) କବିତା ଭିତରୁ "ମୁଁ-ଶବ୍ଦରାଜ"ଟି ସହ ପାଠକଙ୍କୁ ପରିଚିତ କରାଇବା ପୂର୍ବରୁ, ଆଲୋଚ୍ୟ କବିଙ୍କର କବିତା ପ୍ରସଙ୍ଗରେ ମୋର ଅଗ୍ରଜ ଅଧ୍ୟାପକ ଧିରେନ୍ ଆଚାର୍ଯ୍ୟଙ୍କ ଉକ୍ତିର ପୁନଃ ଉଲ୍ଲେଖ କରାଗଲା ଓ ତତ୍‌ସଙ୍ଗେ ସାହିତ୍ୟ ପତ୍ର 'ମାନସ'ର ମନ୍ତବ୍ୟ ବି— ଯାହା ଭିତରୁକ ଅଧ୍ୟାପକ

ଶ୍ରୀ ଲେଙ୍କାଙ୍କ କବି ଚେତନାର 'ମୁଁ'ର ପ୍ରଭା ଓ ପ୍ରଭାବସ୍ୱରୂପ ଲକ୍ଷ୍ୟ କରିବାରେ କଷ୍ଟକର ହେବନାହିଁ । ଯଥା— 'ଭାରତର ଜଟିଳ ଦାର୍ଶନିକ ଆତ୍ମାକୁ ସାବଲୀଳ ଭଙ୍ଗୀରେ ପରିବେଷଣ କରିବାର ଆବଶ୍ୟକତା ସମୟକ୍ରମେ ଜଗନ୍ନାଥ ଦାସ ଅନୁଭବ କଲେ ଓ ଉତ୍ତର ସାଧକଙ୍କ ପାଇଁ ଏକ ଦୃଢ଼ ଆତ୍ମ ବିଶ୍ୱାସ ଦେଇଗଲେ ଯେ ଦର୍ଶନ ହେଉ ବା ବୌଦ୍ଧିକତା ହେଉ, ଭାବ ଅବ୍ୟାହତ ରଖି ମଧ୍ୟ ତାର ପ୍ରାଞ୍ଜଳ ପରିବେଷଣ କରାଯାଇ ପାରେ । କିନ୍ତୁ ଆଜିର ଅଧିକାଂଶ କାବ୍ୟ ସାଧକ ସେ ଆତ୍ମବିଶ୍ୱାସକୁ ଗ୍ରହଣ କରିବାକୁ ଅସମର୍ଥ । ତେଣୁ ପାଠକ ନିକଟରେ ଅନେକ ସମୟରେ ଅସହ୍ୟାପ୍ୟ । 'ସ୍ମରଣ ବିସ୍ମରଣରେ ଅଧିକାଂଶ କବିତା କିନ୍ତୁ ଏ ଅଭିଯୋଗରୁ ମୁକ୍ତ ' (୨)

କବି କମଳାକାନ୍ତଙ୍କ ରସଗ୍ରାହୀ ପାଠକ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ କବିଙ୍କର 'ସ୍ମରଣ ବିସ୍ମରଣ' ସନ୍ନିବେଶିତ ୫୨ଟି କବିତା କେବଳ ନୁହେଁ, ତାଙ୍କ ଲେଖନୀ ନିସୃତ ଅଜସ୍ର କବିତାରୁ ଅଧିକାଂଶ ଜୀବନାନୁଭୂତିର, ବିଚିତ୍ର ସ୍ମୃତି ରାଶିର ମାର୍ମିକ, ସାଂଗୀତିକ ଅଭିବ୍ୟକ୍ତି । 'ଉତ୍ତରଣ', 'ସ୍ରୋତର ନାମ ରୀତି', 'ଅନ୍ତତଃ ନିଷ୍ଠୁର' ଅଥବା 'କମଳାକାନ୍ତଙ୍କ ଶ୍ରେଷ୍ଠ କବିତା' ସମେତ, ସ୍ରଷ୍ଟା ଶ୍ରୀ ଲେଙ୍କାଙ୍କ ସମସ୍ତ ସୃଷ୍ଟି ସୌନ୍ଦର୍ଯ୍ୟବୋଧର, ସତ୍ୟମୟ ନିର୍ଭୀକ ଉଚ୍ଚାରଣ ଯାହା ସମସ୍ତ ଶ୍ରେଣୀର ଶବ୍ଦ ବିନ୍ୟାସର ଅପୂର୍ବ, ସ୍ୱକୀୟ ଶୈଳୀ ଯୋଗେ ଶ୍ରୀସଂପନ୍ନ । ସଂପ୍ରତି ପ୍ରକାଶ ପାଉଥିବା ପ୍ରତିଷ୍ଠିତ ସାହିତ୍ୟ ପତ୍ରିକାର ପ୍ରାୟ ସବୁ ପୃଷ୍ଠା ଓଲଟାଇଲେ ନିୟମିତ ଭାବରେ ଶୁଭ ଶୁଭ୍ର ନାମ ମଧ୍ୟରୁ 'କମଳାକାଂତ' ନାଁ ଟି ପାଠକଙ୍କ ଦୃଷ୍ଟିକୁ ଆସେ । ଏହି କବିଙ୍କ ସଂପର୍କରେ 'ସମାସ' ସଂପାଦକ ଲେଖନ୍ତି— "ଓଡ଼ିଆ ସାହିତ୍ୟର ଚରାଭୂଇଁରେ 'କମଳାକାନ୍ତ' ନାମଧେୟ

---

* Art is long/Life is short.

* ଯେଉଁଠି ରହୁଥିଲେବି 'ମୁଁ' ସବୁବେଳେ ଗୋଟିଏ କଳ୍ପନାର ରାଜପୁତ୍ରର ରୂପ ନିଏ ।' -ଗଦ୍ୟଶ୍ରୀ- ପୃ-୧୨୯ ।

ଜାତୀୟକ ନଈଟିର ସୁସ୍ୱରୁ ପ୍ରବାହ ଓ ତାର ସ୍ଫଟିକ ପ୍ଲାବନରେ ଅନେକ କବିତାମୋଦୀ ସଂପ୍ରତି ଜଡ଼ ବୁଡ଼ ।" (୩) ଏହି ଚିତ୍ରସ୍ରୋତା କାବ୍ୟ ମୃତ ରସଧାରା ମୁଖ୍ୟତଃ ମଧୁର ହେଲେହେଁ ଆପଣାର ଗତି ପଥରେ ତିକ୍ତ, ଲବଣାକ୍ତ କାଷାୟ ଆଦି ବିଭିନ୍ନ ରସ ନିଷ୍କର୍ଷ ମଧ୍ୟ ଅଂଗୀକୃତ ହୋଇଛି ।

କବି କିଏ ? ମୁକୁଟ ବିହୀନ ସମ୍ରାଟ । ହିନେହଧାରୀ । ପୁଣି ଦ୍ୱିତୀୟ ବ୍ରହ୍ମା । ଏ ସମସ୍ତ ବିଶେଷଣ ଥାଉ ବା ନଥାଉ, ସେ ଯେ ଓଡ଼ିଶାର ଜଣେ ସୁନାମଧନ୍ୟ ସୁପ୍ରତିଷ୍ଠିତ କବି, ଏହା ପ୍ରତ୍ୟେକ ସାହିତ୍ୟପ୍ରେମୀ ଜାଣନ୍ତି । ପ୍ରକୃତ କବି ସିଏ, ଯିଏ ନିଜର ସବିଶେଷ ସତ୍ତା ଅନେ୍ୱଷଣ କରେ, ପୁଣି ସୃଷ୍ଟିର ଅନ୍ତର୍ଲୀନ ରହସ୍ୟ ତଲାସୁ ତଲାସୁ ସେଥିସହ ନିଜକୁ ସଂଯୁକ୍ତ କରିବା ପ୍ରୟାସରେ ବିଯୁକ୍ତ ହୋଇଯାଏ, ପୁଣି ସଂପୃକ୍ତ ଥାଏ । ମୁଁ କିଏ ? ଧରାଯାଉ ପ୍ରଶ୍ନଟିଏ ହେଲା । ଶ୍ରୀ କମଳାକାନ୍ତ ଲେଙ୍କା ଜଣେ ମଣିଷ । ଜଣେ କବି । ବୃତ୍ତି ଅଧ୍ୟାପନା— ରାଜେନ୍ଦ୍ର କଲେଜ, ଝଲ୍ଲିକୋଟ କଲେଜ, ପୁରୀ କଲେଜ, ଯାଜପୁର କଲେଜ, ଭଦ୍ରକ କଲେଜ —ଅବସର ପ୍ରାପ୍ତ । କେଉଁଟି ସତ୍ୟ ? ସେହି ପ୍ରଶ୍ନ ପୁଣି ୫୦ ବର୍ଷ ପରେ ବା ୫୮ ବର୍ଷ ପୂର୍ବରୁ । କିଏ ଏହାର ଉତ୍ତର ଦେବ ? କବି କମଳାକାନ୍ତ ବାସ୍ତବରେ କିଏ ? କବିଙ୍କ ବର୍ଣ୍ଣନାରେ—

"ମୁଁ ମାନେ ମୁଁ : ଯାହାକୁ
ଚିହ୍ନଟ କରିବା ପାଇଁ
ଲୋଡ଼ା—ଆତ୍ମ ପରିଚୟର ସନନ୍ଦ ।

---

୧ || 'ମାନସ'—ଷଷ୍ଠବର୍ଷ, ଦଶମ ସଂଖ୍ୟା ।
୨ || 'ସ୍ମରଣ ବିସ୍ମରଣ'—ପ୍ରକାଶ କାଳ -୧୯୭୩-ଦାସ ବ୍ରଦର୍ସ-ବ୍ରହ୍ମପୁର ।
୩ || 'ସମାସ' ଶାରଦୀୟ ଅର୍ଘ୍ୟ, ୧୯୮୧ ପୃ-୧୦

ମୁଁ ଖୋଜେ ମୁଁ ଭିକୁ ।
ଅର୍ଥାତ୍ ନିଜ ଭିତରେ ନିଜକୁ ।"
'ନିଜ ଭିତରୁ ନିଜକୁ' ଖୋଜି ପାଇଛନ୍ତି କିଏ ?
'ମୁଁ ହଜି ଯାଉଛି ମୁଁ ଭିତରେ'

× × ×

'ମୁଁ ଜଳାଇ ଦେଉଛି ମୁଁ କୁ'— ତେବେ ?

"ମୁଁ ଏକ ସବିଶେଷ ପରିଚୟର ରହସ୍ୟ'— ଯିଏକି 'ଏକ ଦୀର୍ଘ ଯାତ୍ରାରେ କ୍ଲାନ୍ତିହୀନ ଯାତ୍ରୀରୁ ଜାଗ୍ରତ ।"

କାହିଁକି ? କାହିଁକି ଏ ରୂପାନ୍ତର ? କବିଙ୍କ ବର୍ଣ୍ଣନାରେ : (୪)
"ସବୁ ଏକ ପ୍ରଶ୍ନବାଚୀ (?), ଲୀଳା ଖେଳା, ଓଲଟ କମଳ ।"

ତଥାପି ଏ ଜାଗୃତିରେ ଜିଜ୍ଞାସାର ଶେଷ ନାହିଁ ଓ କବି ଶ୍ରୀ. ଲେଙ୍କାଙ୍କ ଦୃଷ୍ଟିରେ ଜୀବନହିଁ ଜିଜ୍ଞାସାର ହେତୁ—କର୍ମ ପାଇଁ, ମୁକ୍ତି ପାଇଁ ଉଦ୍ଦିଷ୍ଟ । ନଚେତ୍ ଏହି ମୁଁ ଶରୀରର ଜନ୍ମ ମୃତ୍ୟୁ ଭିତରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ସେ କହନ୍ତି—

"କହରେ କହ, ଜୀବନଠାରୁ
ମରଣ କ'ଣ ଏମିତି ଭଲ ?" (୫)

ମୁଁ ଯେହେତୁ ସନାତନ, ଶାଶ୍ୱତ, ଆତ୍ମ ବ୍ରହ୍ମ ଓ ଅମର ଅକ୍ଷୟ-ଧର୍ମୀ ଚେତନ ସତ୍ତା, ତେଣୁ ଭୟଶୂନ୍ୟ ହୁଅ, କାରଣ ଅବିଶ୍ୱାସହିଁ ଭୟ ଓ ତାଙ୍କ କବିତା—

"ଭୟ ମାନଙ୍କର ସଂଜ୍ଞା ବିଶ୍ୱାସହୀନତା ଯେ
ତୁ ଡରିଯିବା ଦରକାର ନାହିଁ" (୬)

ସମସ୍ତ 'ମୁଁ'ର ଲକ୍ଷ୍ୟ ଶୂନ୍ୟ । ପୃଥିବୀ 'ଗୋଲକାର' ଘୂରି ଘୂରି ପୁଣି ଗୋଟିଏ ବିନ୍ଦୁରେ ସମସ୍ତ 'ମୁଁ' ସତ୍ତା ଉପନୀତ ହେବେ । ଏ ସୃଷ୍ଟିର

॥ କବି କମଳାକାନ୍ତ

ଏକ 'ଗୋଲକଧନ୍ଦା'। (୭) ତଥାପି ଖୋଜିବାକୁ ହେବ। 'Arise, awake and stop not till the goal is reached' ଉତ୍ତିଷ୍ଠତଃ, ଜାଗ୍ରତଃ······ଚରୈବେତି ଚରୈବେତି । ତେଣୁ କବିଙ୍କର ଖୋଜା ନୈହା ଅବ୍ୟାହତ । କେହିସାଥିରେ ଗ୍ଭଲୁବା ନ ଗ୍ଭଲୁ, ଏକା ଏକା ଗ୍ଭଲିବାକୁ ହେବ ।

'ଅନେକ ଦିନ ଧରି
ଏମିତି ଖୋଜୁଥିଲି, ତୁମକୁ
ଏକା ଏକା । × × ଫାଳରେ
ସୁମୁରି ବଜାଇ ନିର୍ଦ୍ଦୟ ପବନ
ନେଇଗଲା ଦେଇ ମୁଁ ଆସିଛି ।' + + (୮)

ପୁଣି କେତେବେଳେ—

'ମୁଁ ଖସି ପଡୁଛି
କାଳ ମଥାରେ ତାଳଟିଏ ପରି'

ହଠାତ୍ ! ଅକସ୍ମାତ୍ ! କି କାବ୍ୟିକ ପରିପ୍ରକାଶ । ଏହାକୁ ତ କହନ୍ତି- 'Spontaneous overflow of powerful feelings' ପୁନଶ୍ଚ-

---

୪) ଝଙ୍କାର- ୨୫ଶ ବର୍ଷ/ଦ୍ୱାଦଶ ସଂଖ୍ୟା ପୃ. ୧୧୦୯

୫) ଭିନ୍ନ ସ୍ୱାଦର କବିତା- 'ସପ୍ତର୍ଷି'- ଶାରଦୀୟ ବିଶେଷାଙ୍କ, ୪ର୍ଥ ବର୍ଷ- ୧୦ମ ସଂଖ୍ୟା ।

୬) ଅନ୍ତର୍ଭର ସ୍ୱତଃସ୍ଫୂର୍ତ୍ତର ନିର୍ଭରତା-ଡଗର-୬ଷ୍ଠ ବର୍ଷ/୧୦ମ ସଂଖ୍ୟା- ପୃ. ୧୦୯ ।

୭) 'ନୈଡ଼ା କ'ଣ ? ଖାଲି ଶୂନ୍······

+ + + + +

ଦୃଶ୍ୟ ଏବଂ ଅଦୃଶ୍ୟର ଗୋଲକ ଧନ୍ଦାରେ'-ଝଙ୍କାର- ୨୯ଶ ବର୍ଷ ଅକ୍ଟୋବର- ପୃ. ୬୩୦

ମତ ଅଭିମତ ଭିନ୍ନମତ ।।

ମୁଁ କାନ୍ଦୁ ଆସିଚି । + + +
ମୋ ଉପସ୍ଥିତିରେ
ଅନୁପସ୍ଥିତ ଦର୍ଶକ ମୁଁ ଜଣେ
ଏକା ଏକା ପର୍ଯ୍ୟଟନର
ଅଭିଜ୍ଞ ସମସ୍ତ ଭଳି ବନ୍ଧୁସ ;
ମୁଁ ଗୃଲିଲି,
ମୋତେ ଖୋଜିବା ନିରର୍ଥକ ।'

( ଖୋଜା ଲେଡ଼ା )

କବିତା ଓ କବି, 'ମୁଁ' ଓ ଶ୍ରୀ ଲେଙ୍କା ଯେପରି ଅଭିନ୍ନ ସେପରି ପୃଥକ୍ ସମସ୍ୟାନୁସାରେ । ତେଣୁ କବିଙ୍କର ଦର୍ଶନ ଓ ସ୍ୱୀକାରୋକ୍ତି—

'କେଇ ନ ଥିଲି ବେଳେ
କେଇ ପାଖରେ
ନ ଥିଲିବେଳେ
କବିତା ଟିକ୍ ଜଥା ହୁଏ । + +
\+ + +
ଓ ସୁଖର ଖବର
ବୁଝିଲିବେଳେ
ମୋ ଛଡ଼ା ଆଉ କେଇ
ପାଖରେ ନ ଥାନ୍ତି । (୯)

କବି କମଳାକାନ୍ତ, ଅଧ୍ୟାପକ କମଳାକାନ୍ତ ତଥା ସହୃଦୟ ସାମାଜିକ କମଳାକାନ୍ତ ସ୍ୱରୂପରେ ବି କବି ଆପଣାକୁ ଦର୍ଶନ ଓ ପୃଥକ ସନ୍ଧାନ କରନ୍ତି । ଯଥା—

"ତୋ ପଡ଼ଶା ଘର ଆଉ ପଠ ସାନ୍ଧ୍ୟକୁ

(୮) 'ଖୋଜାଲେଡ଼ା'—ଝଙ୍କାର-/୩୩ଶ ବର୍ଷ-୨ୟ ସଂଖ୍ୟା-ପୃ: ୧୯୮
(୯) ଦୁଇଟି କବିତା —ତରଙ୍ଗ/ପ୍ରଥମ ବର୍ଷ, ନବମ ସଂଖ୍ୟା-ପୃ. ୩୮

ଯାଉଥିଲି ଯେ ମୋ ବନ୍ଧୁ କମଳାକାନ୍ତଙ୍କ ସହ

ହଠାତ୍ ଭେଟ ହୋଇଗଲେ ।  +  +  (୧୦) ପ୍ରଭୃତିରେ କି ସୂକ୍ଷ୍ମ ପର୍ଯ୍ୟବେକ୍ଷଣ !

ମୋ ଦୃଷ୍ଟିରେ କବି କମଳାକାନ୍ତଙ୍କ ପ୍ରତିଟି କବିତା ଏହିପରି ଜଟିଳ ରହସ୍ୟର ସରଳ ତରଳ ସରସ ପ୍ରକାଶ । ଭାଷା କାଠିନ୍ୟହୀନ । ପରିବର୍ତ୍ତିତ ସମୟର ଆବଶ୍ୟକୀୟ ଶୋଭମୀୟ ଶୈଳୀରେ ରଚିତ ପ୍ରାୟ ସମସ୍ତ କବିତା ଉଚ୍ଚ ଦାର୍ଶନିକ ଭାବାପନ୍ନ । ଏଣୁ କବି ଶ୍ରୀ ନେଙ୍କାଙ୍କ କବିତା ଗବେଷଣା ସାପେକ୍ଷ ।

ସାହିତ୍ୟ । କବିତା । ଶବ୍ଦ । ଗ୍ରାହକ ଶକ୍ତି ଅଭାବରେ ମୂଲ୍ୟହୀନ । ଆମେ ଆଜି ଡ଼ିଗ୍ରୀକୁ ନେଇ ବ୍ୟବସାୟ କରୁ । ସେ ଯୁଗ ଗଲାଣି, ଯେତେବେଳେ ଏ ଦେଶର ବିଜ୍ଞ ବ୍ୟକ୍ତି 'ସା ବିଦ୍ୟା ଯା ବିମୁକ୍ତୟେ' ସଂଜ୍ଞା ନିରୂପଣ କରିଥିଲେ । ଆଜି ସା ବିଦ୍ୟା, ଯା ବିମୁକ୍ତୟେ' ମନ୍ତ୍ର ଗୃହୀତ ଓ ସମ୍ମାନିତ । ତଥାପି କବି ବ୍ୟାପାର, ଶବ୍ଦ ବ୍ୟାପାର ଓ ସର୍ବସାଧାରଣ ତାର ଅନ୍ତର୍ନିହିତ ଅର୍ଥ ହୃଦୟଙ୍ଗମ କରିବାକୁ ସମର୍ଥ ନୁହନ୍ତି । କାବ୍ୟାମୋଦୀ ଅଥବା ଚିନ୍ତାନାୟକ ବ୍ୟତୀତ କବିକୃତ ସମସ୍ତ ସୃଷ୍ଟିର ଅର୍ଥ ଭବିଷ୍ୟତ ବୁଝାଏ । ଆମେ ଏମ୍. ଏ. ଡିଗ୍ରୀ ପାଇଛୁ, କିନ୍ତୁ ଏମ୍ (M/am) ବା ମୁଁ ସହ କେତେ ଜଣ ପରିଚିତ ! ଏଠାରେ ନିଜ ଅନୁଭୂତିରୁ ନମ୍ରତାସହ ସ୍ୱୀକାର କରୁଛି— ନିଜ ନାମ ତଳେ ଥିବା ଦଶଟି ଅକ୍ଷର, ଦଶବର୍ଷ ମହାବିଦ୍ୟାଳୟ, ବିଶ୍ୱ ବିଦ୍ୟାଳୟରେ ତପସ୍ୟାର ଫଳ ସତ, ମାନ, ତଥାପି ପ୍ରଥମବର୍ଣ୍ଣ 'ମୁଁ' ନିଜ ନିକଟରେ ଅପରିଚିତ, ଅଜ୍ଞାତ, ଅବୋଧ । ଶବ୍ଦ ଶକ୍ତି, ବ୍ରହ୍ମ ଶକ୍ତି ଏତେ ସହଜଗମ୍ୟ ନୁହେଁ ।

କବି କମଳାକାନ୍ତ ଜଣେ ଦାର୍ଶନିକ କବି । କବି ରଚିତ କବିତା ସମୂହ, ଜୀବନ, ମୃତ୍ୟୁ, ପ୍ରେମ ଓ ସମୟ ପ୍ରଭୃତିର ଚିରନ୍ତନ ଜିଜ୍ଞାସା ଓ ତତ୍ତ୍ୱ ଅନୁଭୂତିର ମାର୍ମିକ ରସୋଚ୍ଛ୍ୱଳ ଅଭିବ୍ୟକ୍ତି । ଓଡ଼ିଆ ସାହିତ୍ୟର

କବିତା କ୍ଷେତ୍ରରେ ପ୍ରକୃତି ବିଶିଷ୍ଟ ଦୃଷ୍ଟିକୋଣରୁ କବି କମଳାକାନ୍ତ ଲେଙ୍କା ଏକ ସ୍ୱତନ୍ତ୍ର ଆସନ ଓ ସମ୍ମାନର ଅଧିକାରୀ । କାରଣ ସେହି ମହାନ୍ କାବ୍ୟିକ ସୃଷ୍ଟି ଓ ସ୍ୱତଃ ବିଚ୍ଛୁରିତ । କବିଙ୍କର ନିଜ ଭାଷାରେ –

୧୦ ) ଡ଼ାଏରୀ କବିତା:—'ସମାସ'-ଶାରଦୀୟ ଅର୍ଦ୍ଧ୍ୟ-୧୯୮୨, ପୃ ୧୬

"/ହାଡ଼ର ଅତଳ ତଳ<br>ଗୀତରେ ମୁଁ/ଫୁଲରେ, ପଙ୍କରେ/<br>ଝଡ଼ରେ, ସୃଷ୍ଟିରେ/ଈଶ୍ୱରଙ୍କ<br>ବେପରୱା ରାଜତ୍ୱରେ<br>ମୁଁ/" ପ୍ରଭୃତି ଉଲ୍ଲେଖଯୋଗ୍ୟ ।

କବି ସୃଷ୍ଟି କରିଯାଏ । କାରଣ ସେ ସୃଷ୍ଟି ବିଭୋର । ସୃଷ୍ଟି, ସ୍ଫୂର୍ତ୍ତିହୀନ ଜୀବନ କବି ପାଇଁ ମୂଲ୍ୟହୀନ । ସମୟ ଆସେ, କବି କର୍ମର ମୂଲ୍ୟାୟନ ହୁଏ ଓ କବି ଦୃଷ୍ଟି ଦଉ ଇଙ୍ଗିତରେ ଭବିଷ୍ୟତ ବଂଶଧର, ସମାଜ ଚାଲେ— ଏହି ସୂକ୍ତିଟି ଉକ୍ତା ଅଧିକେ ସମସ୍ତ କବି, ମହାକବିଙ୍କ କପାଳରେ ଘଟିଥାଏ । କବି କମଳାକାନ୍ତଙ୍କ ସୃଷ୍ଟି ବିପୁଳ ଅଥଚ ସରଳ, ସରସ ଓ ସାଂଗୀତିକ । ଆଲୋଚ୍ୟ କବିଙ୍କର କବିତାକୁ ଭିତ୍ତିକରି ଅଧ୍ୟୟନାତ୍ମକ ପ୍ରବନ୍ଧ ସୃଷ୍ଟି କଲେ ଏକ ବୃହତ୍ ପୁସ୍ତକ ବି ଯେତେବେଳେ ନିଅଣ୍ଟ, ସେତେବେଳେ ସୀମିତ ଏକ ପ୍ରବନ୍ଧ ଭିତରେ କବି କମଳାକାନ୍ତଙ୍କ ଗୋଟିଏ କବିତା 'ମୁଁ', ଓ ତତ୍ ସଂପର୍କିତ ପ୍ରାସଙ୍ଗିକ ମାତ୍ର କେତୋଟି କବିତାର କେତେକାଂଶହିଁ ପରିସରଭୁକ୍ତ । ନିଜ ଦୃଷ୍ଟିରୁ କବିତାର ବିଚାର କରାଯାଇଛି । ଅନ୍ୟମାନେ କିପରି ଗ୍ରହଣ କରିବେ ସେକଥା ସ୍ୱତନ୍ତ୍ର ।

**ଅଧ୍ୟାପକ ଧନଞ୍ଜୟ ସାହୁ**<br>ଆଗଲପୁର ପଞ୍ଚାୟତ ସମିତି କଲେଜ<br>ରୋଡ, ବଲାଙ୍ଗୀର

# କବି କମଳାକାନ୍ତ : ଏକ ଦୃଷ୍ଟିପାତ

କବି ଶ୍ରୀ କମଳାକାନ୍ତ ଲେଙ୍କା ଆପଣା ନିରବଚ୍ଛିନ୍ନ ସାଧନା ଯୋଗୁଁ ସୁପ୍ରତିଷ୍ଠିତ । ସାର୍ଦ୍ଧ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଧରି ତାଙ୍କ ଲେଖନୀରେ ଗଭୀର ଅନୁଭୂତି, ବାସ୍ତବ ଚିତ୍ର ଚରିତ୍ର ଓ ସମକାଳୀନ ଦ୍ୱନ୍ଦ୍ୱ ଓ ଜୀବନର ସଂକଟବୋଧ ଚିତ୍ରିତ ହୋଇ ଆସିଛି । ତାଙ୍କ ଦ୍ୱାରା ରଚିତ ବାର ତେରଟି କବିତା ପୁସ୍ତକ ମଧ୍ୟରୁ କେତୋଟି ତାଙ୍କ ସମୁଜ୍ଜ୍ୱଳ କବି ପ୍ରତିଭାର ସ୍ୱାକ୍ଷର ବହନ କରିଛନ୍ତି । ସେ ତାଙ୍କ ସୃଜନଶୀଳତାର ମୂଲ୍ୟାୟନ ପାଇଁ ଅପେକ୍ଷା ନରଖି, ଅବାରିତ ଲେଖନୀ ଚାଳନା କରିବା ଦ୍ୱାରା ବହୁବିଧ ପରୀକ୍ଷାମୂଳକ କାବ୍ୟଶୈଳୀର ଆଶ୍ରୟ ନେଇଛନ୍ତି । ବହୁ ସାରସ୍ୱତ ସାଧକ, ସାଧନା କାଳରେ ପ୍ରତିଷ୍ଠା ଲାଭ କରିବା ପରେ, ଆଉ ଲେଖନୀ ଚାଳନା ନକରି ନୀରବ ରହି-ଯାଉଥିବା ବେଳେ କବି ଶ୍ରୀ ଲେଙ୍କା କାବ୍ୟ ସାଧନାର ନିରବଚ୍ଛିନ୍ନତାକୁ ନିଜ କାବ୍ୟ ପୁରୁଷର ଅନ୍ୟତମ ବୈଶିଷ୍ଟ୍ୟ ଭାବେ ଗ୍ରହଣ କରିଛନ୍ତି । ତାଙ୍କ କବିତା ଗୁଡ଼ିକରେ ତାଙ୍କ ଜୀବନଚର୍ଯ୍ୟା ଓ ଜୀବନ ଦର୍ଶନ ଯେପରି ସ୍ପଷ୍ଟ, ସେହି ଭିତ୍ତିଭୂମିକୁ କେନ୍ଦ୍ର କରି ତାଙ୍କ ସୃଷ୍ଟି ଓ ସ୍ରଷ୍ଟା ମାନସର ସମାଲୋଚନା କରାଯାଇପାରନ୍ତା । ମାତ୍ର ସେ ସମୀକ୍ଷାର ଅଧିକାରୀ ହୋଇଥିଲା ବେଳେ, ତାଙ୍କ ସୃଷ୍ଟି ସମ୍ପର୍କରେ ସେପରି ଆଲୋଚନା ହୋଇପାରି ନାହିଁ । ଅବଶ୍ୟ ଏ କ୍ଷେତ୍ରରେ କେତେ ଜଣ ବିଦଗ୍ଧ ଆଲୋଚକ ତାଙ୍କ ସୃଷ୍ଟି ସମ୍ପର୍କରେ ସମ୍ୟକ ବିଚାର ଆଲୋଚନା କରିଛନ୍ତି । ଡକ୍ଟର ମଥୁରା ନାଥ ହୋତାଙ୍କ ରଚିତ 'ଜୀବନ ତୀର୍ଥରେ କବି କମଳାକାନ୍ତ' ଗ୍ରନ୍ଥଟି ଏହି ଦୃଷ୍ଟିରୁ ଏକ ସାର୍ଥକ ପଦକ୍ଷେପ । ଓଡ଼ିଶାରେ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଯେପରି ଗୋଷ୍ଠୀ-ଗଠନ ପ୍ରତିଦ୍ୱନ୍ଦ୍ୱିତା ଚାଲିଛି, କବି ଶ୍ରୀ ଲେଙ୍କା, ମୋର ମନେହୁଏ, ସେ ସବୁଥିରୁ ଯଥାସମ୍ଭବ ମୁକ୍ତ ରହି କାବ୍ୟ-ସାଧନାକୁ ତାଙ୍କ ସୃଜନଶୀଳତାର ଏକ ନିରଙ୍କୁଶ ଅବଲମ୍ବନ ଭାବେ ଗ୍ରହଣ କରିନେଇଛନ୍ତି ।

ସଂଘର୍ଷ ଓ ସଂଘାତ ଭିତରେ ବଢି ଚାଲିଥିବା ଏହି କବି ଜୀବନ

ଯାହାର ନାନା ପ୍ରଶ୍ନାକୁଳ ପରିବେଶରେ ଜଣେ ସଂଗ୍ରାମୀ ସାଧକର ପରିଚୟ ଦେଇଛନ୍ତି । ତାଙ୍କ ପାଇଁ ନିଚ୍ଛିଡ଼ ଦୁଃଖାନଳର ମୁହୂର୍ତ୍ତ ଗୁଡ଼ିକ ସତେ ଯେମିତି ଜୀବନର ବିଭୂତି । କବିତାହିଁ ତାଙ୍କ ଜୀବନ ଓ ଜୀବନହିଁ ଉତ୍ସର୍ଗିତ କର୍ମ-ପ୍ରବଣତା । କବିତା ଓ ଜୀବନ, ପ୍ରେମ ଓ ଯନ୍ତ୍ରଣା ଭିତରେ କୌଣସି ଭେଦକୁ ଅସ୍ୱୀକାର କରିଥିବା ଏହି କବି ତେଣୁ ସର୍ବଦା ଯୌବନ ଦୀପ୍ତ ଓ ଚିର ସତେଜ । ତାଙ୍କ କବିତା ମଧ୍ୟ ବିଭିନ୍ନ ସ୍ୱର ଓ ସ୍ୱାଦର, ଚିନ୍ତା ଓ ଚେତନାର ଅକୁଣ୍ଠ ଉଚ୍ଚାରଣ । ଜୀବନ ତାଙ୍କ ପାଇଁ ଯେତିକି ସ୍ୱାଦ୍ୟ, ତାହାଠୁଁ ଅଧିକ ବିଡ଼ମ୍ବିତ । ସବୁ ଭଲ ମନ୍ଦର ଊର୍ଦ୍ଧ୍ୱରେ ରହି ନିର୍ଲିପ୍ତ କାର୍ଯ୍ୟ ଓ ନିରବଚ୍ଛିନ୍ନ ଆତ୍ମ ପୁରୁଷର ସନ୍ଧାନ ଓ ଅନାସକ୍ତ ମନୋଭାବ ତାଙ୍କୁ କବିତା ରାଜ୍ୟରେ 'ଏକା ଏକା ବାଦଶା' କରାଇଛି । ଏହି ବିବାଦୀୟ କାବ୍ୟ ବ୍ୟକ୍ତିତ୍ୱର ପରିଚୟ ଓ ତାଙ୍କ ସାରସ୍ୱତ କୃତିତ୍ୱର ଯଥାର୍ଥ ମୂଲ୍ୟାୟନ ପାଇଁ ଏପରି ସଂକଳନର ପରିକଳ୍ପନା । ଏଥିପାଇଁ ବହୁ ବନ୍ଧୁଙ୍କର ସୁପରାମର୍ଶ ଓ ସମୟୋଚିତ ଅଭିମତ ସବୁକୁ ଆମେ ସମ୍ମାନର ସହିତ ଗ୍ରହଣ କରିଛୁ ।

କବି ଶ୍ରୀ ଲେଙ୍କାଙ୍କ କାବ୍ୟ ଜଗତ ଏତେ ବ୍ୟାପକ ଓ ଗଭୀର ଯେ ସେହି ବ୍ୟାପକତାର ପରିସୀମା କଳନା ଓ ଗଭୀରତାର ସୂକ୍ଷ୍ମତା ଚିହ୍ନଟ କରିବା ସହଜ ସାପେକ୍ଷ ନୁହେଁ । ତାଙ୍କ ଆତ୍ମ ସ୍ୱୀକାରୋକ୍ତିର ଉତ୍ସରିତ ଉଚ୍ଛ୍ୱାସ ପାଠକକୁ ଭାବାବସନ୍ନ କରିବା ଅପେକ୍ଷା ଅଧିକ ସତ୍ୟର ନିକଟବର୍ତ୍ତୀ କରାଇଛି । ନାନାବିଧ ସଂକଟ, ବେଦନାବୋଧ ଓ ଦ୍ୱନ୍ଦ୍ୱ ପୀଡ଼ିତ ଜୀବନରେ ସେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବାକୁ ବାଧ୍ୟ ହୋଇଛନ୍ତି । ହେଲେ, ସତ୍ୟର ନିର୍ଭୀକ ଉଚ୍ଚାରଣ ପ୍ରୟାସୀ କବି ଚିର ସାଧାରଣ ପାର୍ଥିବ ଜୀବନର ନୈରାଶ୍ୟ ଓ ବିଫଳତାକୁ ଜୀବନର ଜୟମାଲ୍ୟ ରୂପେ ଗ୍ରହଣ କରି ନେବାକୁ ଆଦୌ କୁଣ୍ଠିତ ନୁହଁନ୍ତି । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଭାଷାରେ ବରଂ ବିଫଳତା ତାଙ୍କ ପାଇଁ ସାନ୍ତ୍ୱନା ଓ ସଫଳତା ମହାଭ୍ରାନ୍ତିର ରୂପ ନେଇଛି । ସଂସାରର ନିଷ୍ଠୁର ବାସ୍ତବତା ଓ ନିନ୍ଦା କଠୋର ଜୀବନ ତାଙ୍କ ପକ୍ଷେ ବିପୁଳ ସ୍ନେହ ଓ ଶ୍ରଦ୍ଧାର ଗଭୀର ମମତ୍ୱବୋଧ ଓ ସହୃଦୟତାର ପୁରସ୍କାର ହୋଇପାରିଛି ।

॥ କବି କମଳାକାନ୍ତ

କବି ଶ୍ରୀ ଲେଙ୍କା ଗଭୀର ଆତ୍ମ ପ୍ରତ୍ୟୟର ସହିତ ଘୋଷଣା କରନ୍ତି—

'ମୁଁ ଅବିକା ଝୁଲିମୁଣି ଝୁଲିଢ଼ିବି
ମୋ ଗୈରିକ ଚେତନାର
ନିଷ୍ଫଳ ଖୁଣ୍ଟରେ ।'

ନିଃଶର୍ତ୍ତ ଆତ୍ମ ର, ତପସ୍ୱୀ ପ୍ରାଣ-ଦୃଷ୍ଟି ଓ ସନ୍ନ୍ୟାସବୋଧର ଏହା ଏକ ନିଖୁଣ ପ୍ରମାଣ ।

ଶ୍ରୀ ଲେଙ୍କାଙ୍କ କାବ୍ୟୋକ୍ତି ସ୍ପଷ୍ଟ ଓ ଉଚ୍ଚାରଣରେ ଦାମ୍ଭିକତା ପାଠକକୁ ମୁଗ୍ଧ କରିଥାଏ । ଭଲର ସ୍ତୁତିଗାନ ଓ ଭେଲର ନିନ୍ଦାଗାନ ତାଙ୍କ ସୃଷ୍ଟିରେ ବୈତାଳିକର ସ୍ୱର ଭଳି ଜଣାଯାଏ । ନିଚ୍ଛକ ଭାବ ସତ୍ତାର ନିଚୋଳ ମୂର୍ତ୍ତି ଟିଏ ଗଢ଼ିବା ଚେଷ୍ଟାରେ ସେ ସତତ ପ୍ରୟାସୀ ଓ ବ୍ୟାକୁଳ । ସେହି ବ୍ୟାକୁଳତା ପାଇଁ 'ଗାର୍ହସ୍ଥ୍ୟ' ବା 'ସନ୍ନ୍ୟାସ' କେବଳ ଅବଲମ୍ବନ ନୁହେଁ, ପ୍ରତି ମୁହୂର୍ତ୍ତରେ ତା'ର ପ୍ରାୟୋଗିକ ଜୀବନ୍ତ ରୂପଟିଏ ହିଁ ତାଙ୍କର ଜୀବନାନୁଷଙ୍ଗ ଓ କାବ୍ୟ-କବିତାର ସମୁଜ ଗବାକ୍ଷ । ଏହି ଧାରଣାର ବିଶୃଙ୍ଖ ସ୍ୱସଂବେଶ ପ୍ରକାଶମାନତା ତାଙ୍କ ଗତିଶୀଳ କାବ୍ୟ ଚେତନାର ପରିଚୟ ଦିଅନ୍ତି । ତେଣୁ ପାଠକ ନିର୍ଦ୍ୱନ୍ଦ୍ୱରେ ତାଙ୍କ କାବ୍ୟ ପଂକ୍ତିକୁ ସ୍ମରଣ କରେ—

"ସାବାସ୍ ସାବାସ୍ କବି
ଆଣ୍ଠୁଏ ପାଣିରେ
ବୁଡ଼ି ମର ।
ଶାମୁକାଏ ଦୁଃଖର ହ୍ରଦରେ
ଭାସୁ ତୋର ଶବ ।
ଦେଖେସା ବେହେଡ଼ା ବୁଢ଼ା
ହସୁଥାଉ ।
ଚୁଟ୍ରୁପ୍ ବସିଥାଉ ମହିଷି ପିଠିରେ ।"

ସତ୍ୟାନ୍ୱେଷଣ ତପସ୍ୱୀ ଜୀବନର ପରମ ବ୍ରତ ପରି କବି ଶ୍ରୀ ଲେଙ୍କା ସତ୍ୟର ଉପାସକ । ଏହି ଉପାସନା ନିଜ ହୃଦୟର ଅନୁଭବ ଓ ଆତ୍ମିକ

ସ୍ୱର୍ଣ୍ଣିମର ରଙ୍ଗୀନ ଭଳରର ବାସ୍ନା ଭରି ମନ୍ଦମନ୍ଦ । କଳ୍ପନା ଓ କବିତାର ସମନ୍ୱୟ ବନ୍ଧରେ ତାଙ୍କ କାବ୍ୟ ଚେତନାର ଅମୃତ ମୂର୍ତ୍ତି ଜୀବନ୍ତ ଓ ନୂଆ ନୂଆ ଅନୁଭବର ଝଲକ ଉନ୍ମୋଚନରେ ତାଙ୍କ କବିତା ସମର୍ଥ । ସବୁ ପାର୍ଥିବ ଚିନ୍ତନର ଊର୍ଦ୍ଧ୍ୱରେ କମଳାକାନ୍ତୀୟ ବାସ୍ତବବାଦୀ ଦୃଷ୍ଟିକୋଣ ମୃତ୍ୟୁର ଅନ୍ତରଙ୍ଗ ଉଷ୍ମତା ପାଇଁ ଯେତିକି ଉନ୍ମୁଖ, ଜୀବନର ଆଶା ଓ ସ୍ୱପ୍ନର ସପ୍ତରଙ୍ଗୀ ଇନ୍ଦ୍ରଧନୁ ସୃଷ୍ଟିରେ ସେତିକି ତନ୍ମୟ । ଶାରଦୀୟ ଜ୍ୟୋତ୍ସ୍ନାର ଆନନ୍ଦ ମୁଖର ପରିବେଶ, ବାସନ୍ତୀ ସନ୍ଧ୍ୟାର ମୋହମୟ ମାଦକତା ସୌନ୍ଦର୍ଯ୍ୟ ରୁଦ୍ର ବୈଶାଖର ଧୂ ଧୂ ଖରାବେଳ, ଧାରା ଶ୍ରାବଣର ନିଷ୍ପ୍ରଭ କନ୍ଦାକଟା ଓ ଜାଙ୍କୁଳୁ ଜାଙ୍କୁଳୁ ଶୀତର ପାହାନ୍ତ ପ୍ରହରର ଶାନ୍ତ ଶୀତଳ ନୀରବତା ଭିତରେ କବି ଜୀବନର ବୈଚିତ୍ର୍ୟମୟ ପ୍ରାକୃତିକ ସୁଷମାକୁ ଭବ ଓ ଭାବ ସତ୍ୟର ସତ୍ୟତମ ଅସ୍ପୃହା ଭାବେ ଗ୍ରହଣ କରି ନେଇଛନ୍ତି । କବି ଚିତ୍ତ ଖୋଜୁଛି ଗୋଟାଏ ଉନ୍ମୁକ୍ତ ଭାବାକାଶ, ଯେଉଁଠି ଘନକୃଷ୍ଣ ଅନ୍ଧକାରର ଗ୍ଲାନି ଚିରି ଟିକିଟିକି ତାରାର ସୌନ୍ଦର୍ଯ୍ୟ ଗଢିତୋଳେ ପ୍ରାଣଘନ ମୁହୂର୍ତ୍ତ । ପ୍ରତିଟି ଆବେଗ ଓ ଚେତନାର ଆସ୍ତରଣ ଭେଦି ହାଡ଼େ ହାଡ଼େ ଅନୁଭବ କରେ ଜଣେ ଭାବ ଦଗ୍ଧ ଶିଳ୍ପୀର ବକ୍ଷବିଦ୍ଧ ଓ ଆଲୋଡ଼ିତ ବିହ୍ୱଳତାକୁ । ମୁଁ ତଟସ୍ଥ ଦୃଷ୍ଟିରେ ବୁଝିଛି— କମଳାକାନ୍ତ ଲେଙ୍କା ଆମ ସମୟର ଜଣେ ସତ୍ କବି ଓ ଏହି ସତ୍ୟ ନିଷ୍ଠା ଓ ସୌନ୍ଦର୍ଯ୍ୟ ବୋଧ ତାଙ୍କ କାବ୍ୟ ଶିଳ୍ପର ପ୍ରଧାନ ବିଶେଷତ୍ୱ ।

ପ୍ରତି କ୍ଷେତ୍ରରେ ଜୀବନର ଭଙ୍ଗାଗଢ଼ା ଇତିହାସ ରହିଛି । ସେହି ଇତିହାସର ମର୍ମଗାଥା ମଣିଷର ଜୀବନଯାତ୍ରାକୁ ଚିହ୍ନିତ ଓ ପରିଚିତ କରିଥାଏ । କବି ଶ୍ରୀ ଲେଙ୍କାଙ୍କ କାବ୍ୟସ୍ୱରରେ ସେହି ପରିଚୟର ସ୍ୱାକ୍ଷର ନିହିତ । ଆତ୍ମ-ସ୍ୱୀକାରୋକ୍ତି ଓ ଆତ୍ମ-ପରିଚୟ ଜନିତ ସମପ୍ରୋପଯୋଗୀ କାବ୍ୟଚେତନା ତାଙ୍କ କଳାଭିବ୍ୟକ୍ତିର ଦୃଷ୍ଟାନ୍ତ । ବ୍ୟକ୍ତି ଜୀବନର ଦୁଃଖ ବେଦନା ଓ ଯନ୍ତ୍ରଣାବୋଧ ତାଙ୍କ ସୃଷ୍ଟିରେ ସାର୍ବଜନୀନ ଆବେଦନ ଆଡ଼କୁ ସତତ ଗତିଶୀଳ । ବ୍ୟକ୍ତି ମଧ୍ୟରେ ବ୍ୟଷ୍ଟି ଓ ସାମୂହିକତା ମଧ୍ୟରେ ଏକକ ଅନୁଭବର

ଶାଶ୍ୱତା ତେଣୁ ମହାଜନଲକ୍ଷ୍ୟ । ଗଭୀର ମମତ୍ୱବୋଧ ଓ କାରୁଣ୍ୟସିକ୍ତ ଉଚ୍ଚାରଣରେ ତାଙ୍କ ସ୍ରଷ୍ଟା ମାନସ ଉଦ୍‌ବେଳିତ ।

"ମା'ଲୋ ! ମୁଁ ତୋଅଶତ ପିଲେଙ୍କ ପେଟା ପିଲା !
ଯେ ପେଟରେ ମାରିଥିଲି, ପିଠିରେବ ମାଟିବାକୁ ଥିଲା
ଏକେଷଣି ଯନ୍ତ୍ରବେଳେ କାନ୍ଦ କାନ୍ଦ ଲାଗେ । ଓ
ଭାରି ଇଚ୍ଛା ହୁଏ ତୋର ମାଟିର ଦେହକୁ ଘାଣ୍ଟି
ଅଣ୍ଡାଳନ୍ତ ପିଲ ଭଳି ତୋଅର ଖୁଣ୍ଟିଲା ଥନ ।"

( ମୋ ମା' ଦୁଃଖ—କବିତାର ମୁହଁ )

ଭାବନିଷ୍ଠତା, ସ୍ୱକୀୟ ଭାଲମନ୍ଦର ଅବବୋଧ, ଗଭୀର ଜୀବନାନୁଭୂତିର ଅନ୍ତରଙ୍ଗ ସ୍ପନ୍ଦ ଓ ତାର ସହଜ ସରଳ କାବ୍ୟିକ ଅଭିବ୍ୟକ୍ତି, କମଳାକାନ୍ତ ଲେଙ୍କାଙ୍କ କବିତାକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଅନ୍ତି । ଜୀବନ ଓ ଜିଜ୍ଞାସାର, ଟେକ୍ ଠୋକ ବାଚନିକ ଭଙ୍ଗୀ ଓ ନିଷ୍କପଟ ଭାବେ ନିଜ ସାମାଜିକ ସ୍ଥିତିର ମୂଲ୍ୟ ନିରୂପଣରେ କମଳାକାନ୍ତଙ୍କ କୁଣ୍ଠାହୀନ ଆତ୍ମପ୍ରକାଶ ଏଇହେତୁ ଅଧିକ ମନୋଜ୍ଞ ଓ ପ୍ରାଣସ୍ପର୍ଶୀ ।

"ପିଇ ଯାଅ ଦେଶୀ ବା ବିଦେଶୀ ସୁରା
ପେଶିପାଶି ରକ୍ତର ହାଡ଼କୁ ।
କି ଘର, କି ଦ୍ୱାର—
କି ପୁଅ ଝିଅର ସଂସାର !
ନିଜ ପର ଛନପତ୍ତ କିଏ ଅଛି ?
ଦୁଃଖ ଏବଂ ସୁଖର ଉର୍ଦ୍ଧ୍ୱର ।"

( ସନ୍ନ୍ୟାସ—କବିତାର ମୁହଁ )

ଏକାନ୍ତ ନିର୍ଲିପ୍ତ ଓ ଷଗ୍ଧରଶୀଳ କାବ୍ୟଦୃଷ୍ଟି ଏବଂ ନିବିଡ଼ ଜୀବନବୋଧ କବି ଶ୍ରୀ ଲେଙ୍କାଙ୍କ କବିତାର ପ୍ରାଣବିନ୍ଦୁ । ସବୁ ସୁଖ ଓ ଦୁଃଖର ଉର୍ଦ୍ଧ୍ୱରେ ଥିବା କବିମାନସ ତେଣୁ ସବୁପର ଗନ୍ଧରେ ନିଷ୍ଠୁର

ମତ ଅଭିମତ ଭିନ୍ନମତ ।

ଜୀବନର ବାସ୍ତବ ପରିହାସକୁ ଫେଣ୍ଟି ଦିଅନ୍ତି । ସାଂସାରିକତାର ଚଉହଦୀରୁ କେନ୍ଦ୍ରରୁ ଏକ ମୋହମୁକ୍ତ କାବ୍ୟାଲୋକର ସନ୍ଧାନ କରନ୍ତି ।

ଜୀବନ ଯେମିତି ବଙ୍କା ଓ ସିଧା, ଜୀବନାନୁଭୂତି ଓ ଜୀବନ-ଆତ୍ମୀୟତା ମଧ୍ୟ ସେମିତି କଣ୍ଟା ଓ ଫୁଲ ପରି ପାରସ୍ପରିକ ବିରୋଧାଭାସରେ ବୈଚିତ୍ର୍ୟମଣ୍ଡିତ । ସନ୍ତୋଷ-ଅସନ୍ତୋଷ, ଗ୍ଲାନି ପରାଭବ ଓ ପରିପାର୍ଶ୍ୱର ବିଡ଼ମ୍ବିତ ଅନ୍ତରଙ୍ଗତାକୁ ନେଇ ଜୀବନ ଯେତିକି ପ୍ରଶ୍ନଗର୍ଭା, ତା'ର କାର୍ଯ୍ୟ-କାରଣ ସଂପର୍କର ସୂତ୍ରକୁ ଧରି ଜୀବନର ଶୂନ୍ୟତାବୋଧକୁ ବୁଝିବସିବା ସେମିତି ଆଜିର କାବ୍ୟ-ସାଧନାର ଏକ ସଫଳ ପ୍ରୟାସ । କାରଣ ଏହି ଶୂନ୍ୟତା-ବୋଧର ସଚେତନତାରୁ ଜନ୍ମ ଥାଏ କବିର ଗଭୀର ଆତ୍ମପ୍ରତ୍ୟୟ ଓ କଳାର ସୌନ୍ଦର୍ଯ୍ୟାତ୍ମକ ପରିପ୍ରକାଶ । ଶ୍ରୀ ଲେଙ୍କା ଚେଷ୍ଟି ନିଜ ଜୀବନର ନିତ୍ୟ-ସତ୍ୟ ସାମାଜିକତାର ହାତ ଧରି କଳାଚର୍ଚ୍ଚାରେ ସବୁବେଳେ ପାଠକର ପାଖେ ପାଖେ ।

ରୋମାଣ୍ଟିକ ଭାବାବେଗ ଓ ତାହା ଜରିଆରେ ଏକ ନୂତନ କାବ୍ୟ-ଚେତନାର ଅନ୍ୱେଷଣ କବି ଶ୍ରୀ ଲେଙ୍କାଙ୍କ କବିତାର ଅନ୍ୟ ଏକ ବର୍ତ୍ତୁଳ ଦିଗନ୍ତ । ରୋମାଣ୍ଟିକ କାବ୍ୟ-ପରଂପରାକୁ ପରିହାର କରିବାଦ୍ୱାରା ଆଜିର କବିତା ହୁଏତ ସାମାଜିକ-ବାସ୍ତବତାବାଦର ଆଶୀର୍ବାଦରୁ ଅଧିକ ଜୀବନାଙ୍ଗୀକାରବଦ୍ଧ ଓ ଜୀବନ୍ତ । ତେବେ କାବ୍ୟ-କବିତାର ଇତିହାସ ସବୁବେଳେ ମୁଖ୍ୟତଃ ରୋମାଣ୍ଟିକ ଓ ଧ୍ରୁପଦୀ କାବ୍ୟଚେତନାର ପରିପୂରକ । ଏ ଦୃଷ୍ଟିରୁ ଶ୍ରୀ ଲେଙ୍କାଙ୍କ କାବ୍ୟୋଚ୍ଛ୍ୱାସ ଓ କାବ୍ୟ-ସଂବେଗ ବହୁ ଚର୍ଚ୍ଚିତ ପାରଂପରିକ କାବ୍ୟଦୃଷ୍ଟିଠାରୁ ଅନେକଟା ଭିନ୍ନ । ଗୀତଧର୍ମିତା ସାଙ୍ଗକୁ ସ୍ୱଚ୍ଛନ୍ଦ ପ୍ରକାଶମାନତା ରହିଥିଲେ ବି ଆତ୍ମ-ବ୍ୟଙ୍ଗ ଓ ବିଦ୍ରୂପାତ୍ମକ କାବ୍ୟସ୍ୱର ତାଙ୍କ କବିତାକୁ ଅଧିକ ଆଦୃତ କରାଇଛି । ରସାନୁଭୂତି ଓ ଭାଷାନୁଭବ ସହିତ ସାମିଲ୍ ହୋଇ ଯାଇଛି ତାଙ୍କ ମୁକ୍ତ ଓ ସଂଧାନୀ କବି ଦୃଷ୍ଟିର ସତ୍ୟଶୀଳ ଉଚ୍ଚାରଣ । ସ୍ଥିତିଶୀଳ ମଣିଷ ପାଇଁ ବହିର୍ଜଗତର ବାସ୍ତବ ଚିତ୍ର ଯେତିକି ଦରକାରୀ, ସୌନ୍ଦର୍ଯ୍ୟପ୍ରିୟ କବି ମଣିଷ ପାଇଁ ଅନ୍ତର୍ଜଗତର ସୂକ୍ଷ୍ମ

ବାସ୍ତବତାର ମଧ୍ୟ ସେତିକି ପ୍ରୟୋଜନ । "ନୂଆ ଗୀତ" କବିତାରେ ତେଣୁ କବିଙ୍କର ଅଭିବ୍ୟକ୍ତି—

ଫୁଲ ଫୁଟି ଫୁଲ ଝଡ଼ି
ଗୀତ ଗାଉ ବସନ୍ତର ପକ୍ଷୀ ।
ଆଜିକାର ନୂଆ ଗୀତ
କାଲିପାଇଁ ନରହୁ ଗୋ ବାକି ॥

( ନୂଆ ଗୀତ—ସ୍ମରଣ ବିସ୍ମରଣ )

କମଳାକାନ୍ତ ଖାଲି କାବ୍ୟୋଚ୍ଛ୍ୱାସକୁ ନେଇ ବ୍ୟସ୍ତ ହୁଅନ୍ତି ନାହିଁ । ତା' ସାଥିରେ ସେ ଫେରି ଦିଅନ୍ତି ନିଷ୍ଠୁର ବାସ୍ତବତାକୁ, ନିତ୍ୟ ନୂତନ ସୌନ୍ଦର୍ଯ୍ୟପ୍ରିୟତାର ଅବବୋଧକୁ ଓ ତା' ସାଥିରେ ସାଂସାରିକତାର ଭକ୍ତି-ମଧୁର ଜଞ୍ଜାଳକୁ । ଏସବୁ ଏମିତି ଛନ୍ଦାଛନ୍ଦି ହୋଇ ରହିଥାନ୍ତି ଯେ ଗୋଟିକୁ ଅଲଗା କରି ରସାସ୍ୱାଦନ କରିବା ପାଇଁ କ୍ଷୀରକୁ ନୀରରୁ ଭିନ୍ନକରି କ୍ଷୀରଟିକି ପାନ କରିବା ଭଳି ହଂସ ସୁଲଭ ପାଠକୀୟତାର ଆବଶ୍ୟକତା ରହିଛି ।

"ବର୍ତ୍ତମାନ ମୁଁ ତୁମକୁ ଧୂପଦୀପ ସମର୍ପଣ କଲି,
ଓ ତୁମ ଠାରୁ ବ୍ରହ୍ମବିଦ୍ୟା ଶିକ୍ଷାର ଉତ୍ତରେ
ଉଲ୍‌କାପାତ, ପଞ୍ଚଗ୍ରହକୂଟ, ଝଡ଼ଙ୍କାଟ ଓ ପିଲାଙ୍କର
ଡ଼ିସେଣ୍ଟ୍ରି ଦାଉରୁ
ନିଜକୁ ବଞ୍ଚେଇବାର କଳା ଶିଖି
ତୁମକୁ ମୁଁ ଆଶ୍ୱାସନା ଦେଲି :

× × ×

ତୁମ ଭଳି ସତକେ ଆମ୍ଭେ ଯୋଡ଼ା,
ଆଉ ମୁଁ— ରକ୍ତରେ ଧୁଏ ଆପଣାର
କଳଙ୍କାକୁ ନିତି,

ଯାହା ଫୁଟେ ଫୁଲ ହୋଇ ମୋ ନିର୍ଲଜ କବିତାରେ,
ଯାହା ତୁମ ସ୍ମୃତି !"

(ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା— ସ୍ମରଣ ବିସ୍ମରଣ)

କମଳାକାନ୍ତଙ୍କ ପ୍ରେମ କବିତା ସବୁ ଯେତିକି ପ୍ରାଣମୟ ସେତିକି ବାସ୍ତବତାବାଦଗନ୍ଧୀ । ଯୌବନର ପ୍ରଚୁର ବୈପରୀତ୍ୟ ଭାବ ଓ ଉଦ୍ଦୀପନ କବି ଦୃଷ୍ଟି ତେଣୁ ବେଳେବେଳେ ଅମଣ୍ଡା ମାତି ଯିବାର ଦୁଃସାହସିକତା ଯୋଗୁଁ ତଥାକଥିତ ସାମାଜିକତାର ଅନ୍ତରାଳରେ ଥିବା ଜୀବନ-ସତ୍ୟକୁ କାବ୍ୟ-ସତ୍ୟରେ ରୂପାନ୍ତରିତ କରିବା ତାଙ୍କ ପକ୍ଷେ ଅନେକଟା ସ୍ୱାଭାବିକ କବି କର୍ମ ହୋଇ ପାରିଛି । ରହସ୍ୟାବୃତ୍ତ ଜୀବନ ଫରୁଆ ଉପରୁ ଢାଙ୍କୁଣିଟି ଖୋଲି ଦବାର ସାହସିକତା ତେଣୁ ତାଙ୍କ କବି କଣ୍ଠକୁ କରିପାରିଛି ଋଜୁ ଓ ନିର୍ଭୀକ । ଏହିହେତୁ ପ୍ରେମର ପାଖାପାଖି ଠିଆ ହୋଇଥିବା ବିମାତ ମୃତ୍ୟୁକୁ ସେ ଅଙ୍ଗୀକାରର ଉଷ୍ମତା ଦିଅନ୍ତି । ତାଙ୍କ ପାଇଁ ପ୍ରେମ, ମୃତ୍ୟୁ ଓ ଜୀବନ— ଦୁଃଖ ସୁଖ-ହସ-କାନ୍ଦର ଏକ ସୁନ୍ଦର କକ୍‌ଟେଲ୍ ।

କମଳାକାନ୍ତ, ଈଶ୍ୱରସ୍ପୃକ୍ତ ଚେତନାରେ ଅନେକଟା ହତବାକ୍, ଅନେକଟା ପ୍ରତିକ୍ରିୟାଶୀଳ ମଧ୍ୟ । ଆଧ୍ୟାତ୍ମିକ କବି ସୁଲଭ ଜିଜ୍ଞାସା ସାଥିକୁ ତାଙ୍କ କବିତାରେ ରହିଛି ଈଶ୍ୱରଙ୍କ ସ୍ଥିତି-ଅସ୍ଥିତିକୁ ନେଇ ମଣିଷର ଦୁଃସ୍ଥିତିର ବିସ୍ମୟ । ସତ୍ୟ, ଧର୍ମ ନ୍ୟାୟ ଓ ସତ୍‌ସତ୍ତ୍ୱର ମୂଲ୍ୟବୋଧ ଭୁଷୁଡ଼ି ପଡ଼ୁଥିବା ପୃଥିବୀରେ ତେଣୁ ତାଙ୍କ ଈଶ୍ୱର ପାଶୀ ଖଣ୍ଡରେ ଝୁଲିବାର ପ୍ରତ୍ୟାଶା ରଖନ୍ତି । ମୃତ ଶବ୍‌ଦମାନଙ୍କ ସାଥିରେ ସାମିଲ୍ ହୋଇଯାନ୍ତି । 'ବଞ୍ଚିଥିବା ଶବ୍‌ଦମାନଙ୍କ ମଝିରେ କବି' କବିତାରେ ଶ୍ରୀ ଲେଙ୍କା ତେଣୁ ଦୟା, କ୍ଷମା, ସହୃଦୟତା, ପ୍ରେମ ଓ ମାନବିକ ଗୁଣଗୁଡ଼ିକର ଅପମୃତ୍ୟୁର ଚିହ୍ନ ଦିଅନ୍ତି । 'ମହାରଜାଙ୍କୁ ଗୋଟିଏ ପ୍ରାର୍ଥନା', 'ଠାକୁର ଘରେ କିଏ' ଆଦି କବିତାରେ ମଧ୍ୟ ଈଶ୍ୱର, ମୃତ୍ୟୁ ଓ ବାସ୍ତବ ଜୀବନକୁ ଗୋଟାଏ ବିନ୍ଦୁରେ ଧରି ରଖିବାର ପ୍ରୟାସ ଲକ୍ଷ୍ୟ କରିହୁଏ । 'କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର' କବିତାରେ ତାଙ୍କ ଈଶ୍ୱର ଚୂଲିରେ ଓଦା ଜାଳେଣି ଦେଇ ଧୂଆଁ କୁହୁଳାରେ ଅସରିଏ କାନ୍ଦନ୍ତି ।

|| କବି କମଳାକାନ୍ତ

ତେବେ ସେ ଈଶ୍ୱରଙ୍କୁ ପୂରାପୂରି ଅସ୍ୱୀକାର କରନ୍ତିନାହିଁ । ବରଂ ଈଶ୍ୱରଙ୍କୁ ତାଙ୍କ ଜୀବନଯାତ୍ରାର ଅନ୍ତରଙ୍ଗ ସାଥୀ ଭାବେ ଗ୍ରହଣ କରି ତାଙ୍କୁ ବାରମ୍ବାର ପରିହାସରେ ବିଦ୍ଧ କରନ୍ତି । ମଣିଷର ଅସହାୟତାକୁ ଯଦି ଈଶ୍ୱର ମଥେଇ ନେବାକୁ ଅସମର୍ଥ, ତେବେ ମଣିଷ ନିଜ ଦାୟିତ୍ୱ ନିଜ ମଥାକୁ ନେବାରେ ତାଙ୍କର ଏତେ ଖଟଣି କାହିଁକି ? ଏହି ପ୍ରଶ୍ନବାଚୀରେ କମଳାକାନ୍ତଙ୍କ ଈଶ୍ୱରବୋଧ ଓ ସଂକଟିତ ମୂହୂର୍ତ୍ତଗୁଡ଼ିକ ଝାଳନାଳ ! ଅଧୁନିକ ମଣିଷ ପାଇଁ କମଳାକାନ୍ତଙ୍କ କବିତା ତେଣୁ ଦ୍ୱନ୍ଦ୍ୱଗ୍ରସ୍ତ ଜଟିଳ ମନର ଦ୍ୱିଧା ପୀଡ଼ିତ ଜିଜ୍ଞାସାର ଅନ୍ତଃବୋଧ । ତାହା ହେଉ ପଛେ ସେପରି ପରମ୍ପରାଛିନ୍ନ ଓ ଗତାନୁଗତିକତାର ଘୋରପନ୍ଥୀ ।

କମଳାକାନ୍ତଙ୍କ କବିତା ଅଜସ୍ର ସୁନ୍ଦର ସୁନ୍ଦର ରୂପକଳ୍ପର ଗଠଣ । ଭାବବୈଚିତ୍ର୍ୟ, ରସ ନୁଭୂତି ଓ ଚିତ୍ରକଳ୍ପର ନବୀନତା ତାଙ୍କ କବିତାକୁ ସତେଜ ଓ ପ୍ରାଣମୟ କରିଛି । ଜଣେ ଚିତ୍ରକଳ୍ପବାଦୀ କବି ଭାବରେ ସେ ଯଥେଷ୍ଟ କୃତିତ୍ୱର ଅଧିକାରୀ । ପ୍ରତୀକ ଓ ମିଥ୍‌ର ବହୁଳ ପ୍ରୟୋଗ ତାଙ୍କ କବିତାରେ ନାହିଁ ସତ, ହେଲେ ପ୍ରକୃତି ଓ ଜୀବନର ନିତ୍ୟ ଘଟଣାବଳୀକୁ କାବ୍ୟ ରସରେ ଉତ୍ତୀର୍ଣ୍ଣ କରି ବର୍ଣ୍ଣାଢ଼୍ୟ ଚିତ୍ର, ଉପଚିତ୍ର ଦ୍ୱାରା ତାହାର କଳାତ୍ମକ ଉତ୍କର୍ଷ ପ୍ରତିପାଦନ କରିବା କମଳାକାନ୍ତଙ୍କ କବିତାର ବିଶିଷ୍ଟତା । ତାଙ୍କର ଅନେକ କବିତା ରହିଛି ଯାହା ସବୁ ଦିଗରୁ ନିଖୁଣ ଓ ସର୍ବକାଳୀନ ।

ଜହ୍ନି ଫୁଲଟିଏ
ପରି ତମେ
ଦିଶୁଚ ଦୂରରୁ,
ଅସରାଏ ବର୍ଷା
ପରେ ଯେମିତି
ଆକାଶରେ
ଜହ୍ନ, କବିତାର

ପୃଥିବୀ । ଯେମିତି
ଗୁଳ ଉପରେ
ଭୂସ୍ୱର୍ଗ ॥

( କବିତା — ଚିତା ଅଙ୍କା କାନ୍ଥର ଛବି )

କବି ଶ୍ରୀ ଲେଙ୍କା ଖାଲି ଚିତ୍ରକଳ୍ପର ଯାଦୁକର ନୁହନ୍ତି । ଭାଷା ଚୟନ, ଗୁମ୍ଫନ ଓ ତା'ର ସଫଳ ପ୍ରୟୋଗରେ ମଧ୍ୟ ସେ ବେଶ୍ ନିପୁଣ ଓ କୁଶଳୀ ଶିଳ୍ପୀ । ଅତି ସାଧାରଣ କଥିତ ଶବ୍ଦ ସବୁକୁ ସହରୀ ମଣିଷର ଭାଷା ସହ ମିଶାଇ ସେ ଏକ ସୁନ୍ଦର ଶବ୍ଦ ଜଗତ ସୃଷ୍ଟି କରନ୍ତି । ଗାଉଁଲି ମଣିଷର ମୁହଁରୁ ଭାଷା ଛଡ଼ାଇ ଆଣି ତାକୁ ଆଧୁନିକ କାବ୍ୟ ମର୍ଯ୍ୟାଦା ଦେବା ତାଙ୍କର ବିଶେଷ କାବ୍ୟ-ଦକ୍ଷତା । ପଲ୍ଲୀ ଜୀବନର ସ୍ୱଚ୍ଛନ୍ଦ, ସରଳ, ନିର୍ଭେଜାଲ ପାରମ୍ପରିକତା ସହ ଆଧୁନିକ ଜୀବନର ବନ୍ଧୁ ସଂଶୟ ଓ ବୌଦ୍ଧିକ ଅବବୋଧକୁ ମିଶାଇ ସେ ଏବର ଜୀବନର ସମସ୍ୟାକୁ କାବ୍ୟ ରୂପ ଦିଅନ୍ତି । ତାଙ୍କ କାବ୍ୟ ଚେତନା ଅନ୍ତର୍ମୁଖୀ ଓ ବେଳେ ବେଳେ ଘୋର ଉଦାସୀନତାରେ ଭାରାକ୍ରାନ୍ତ ହେଲଭଳି ମନେ ହେଉଥିଲେହେଁ ତାହା ମୁଖ୍ୟତଃ ଗଭୀର ଆଶା ଓ ବିଶ୍ୱାସ ଏବଂ ପ୍ରକୃତ ଜୀବନଧର୍ମିତାରେ ମର୍ମରିତ ।

*

**ଅପୂର୍ବ ରଂଜନ ରାୟ**
ମଠ ସାହି, ଭଦ୍ରକ ।

# ବିଷାଦ ଓ ବିଦ୍ରୋହର କବି କମଳାକାନ୍ତ

"ମୁଁ ମୋ ଦୁଃଖର ରାଜ୍ୟରେ ଏକଚ୍ଛତ୍ରପତି,
ମୁଁ ମୋ ଖେଳାଘରର ତ୍ରିପାଦ ବାମନ ।
ମୁଁ ମୋ ନିଜସ୍ୱ କ୍ଷୋଭର ଅସ୍ତ୍ରାଗାରେ ଏକଲବ୍ୟ,
ମୁଁ ମୋ ନିଜଠାରେ ବନ୍ଦୀ ଏବଂ ଦୋଷମୁକ୍ତ ଅଛି ।"

(କି ଯାଏ ବଂଚେ ଅନ୍ଧ ମରେ : ଗୀତ ଗା'ନା ରେ ପକ୍ଷୀ)

ବିଷାଦ ଓ ବିଦ୍ରୋହ କମଳାକାନ୍ତଙ୍କ କବିତାର ଦୁଇଟି ମୁଖ୍ୟ ସ୍ୱର । କବିତା ତାଙ୍କର ବିଷାଦର ଇଲାକା, ବେଦନାର୍ତ୍ତ ପ୍ରାଣର ମାର୍ମିକ ଉଚ୍ଚାରଣ । ଶ୍ରୀଯୁକ୍ତ ଲେଙ୍କାଙ୍କ ବିପୁଳ କାବ୍ୟ ଜଗତର ଦେହରା ପରିକ୍ରମା କଲେ ଏକ ସୁଦୂର ପ୍ରାସାଙ୍ଗି ବିଷାଦ ଓ ବିଦ୍ରୋହ ଯେ କେନ୍ଦ୍ର ଅନାୟାସରେ ଲକ୍ଷ୍ୟ କରିପାରିବେ । କବିତା ତାଙ୍କର ଦୁଃଖସହ କଥାକାରୀ । ଅନେକାଂଶରେ ନିଜସ୍ୱ । ପ୍ରାୟତଃ ସ୍ୱୀକାରୋକ୍ତିମୂଳକ (Confessional) । ଅନେକାଂଶ କବିତାର ନାୟକ ନିଜେ କବି କମଳାକାନ୍ତ । ସୃଷ୍ଟି ଅଜସ୍ର । ଏଯାବତ୍ ତାଙ୍କର ଅନ୍ୟୁନ ପନ୍ଦରଟି କାବ୍ୟ ସଂକଳନ ପ୍ରକାଶିତ । ବକ୍ତବ୍ୟ ତାଙ୍କର ଶ୍ଳେଷଯୁକ୍ତ ଓ ଶାଣିତ । ଦୃଷ୍ଟିଭଙ୍ଗୀ ବ୍ୟଙ୍ଗାତ୍ମକ ଓ ତୀର୍ଯ୍ୟକ । ସାଂପ୍ରତିକ କବିତା ଜଗତରେ କବି କମଳାକାନ୍ତ କେବଳ ଏକ ଜଣାଶୁଣା ପରିଚିତ ନାମ ନୁହେଁ, ଏକ ସୁସ୍ଥ ଉଚ୍ଚାରଣ । ପ୍ରଥମ କାବ୍ୟ ସଂକଳନ 'ସୁନା ଫସଲ' (୧୯୫୮)ର ପ୍ରକାଶକାଳଠାରୁ ଅଦ୍ୟାବଧି ପ୍ରାୟ ତିନି ଦଶକ ଧରି ସେ ନିଷ୍ଠାର ସହ ସାଧନାରତ । ଆଧୁନିକ ଓଡ଼ିଆ କବିତା ରାଜ୍ୟକୁ ତାଙ୍କର ଦାନ ନମ୍ରତାର ସହ ସ୍ୱୀକାର୍ଯ୍ୟ । ବିଶେଷ କରି କବିତାର ଶିଳ୍ପକର୍ମ ଓ ପ୍ରକାଶ ଭଙ୍ଗୀରେ ସେ ଯେଉଁ ଚମତ୍କାରିତା ଓ ନୂତନତ୍ୱ ପ୍ରକଟ କରିଛନ୍ତି, ତାହା ଆମ ପାଇଁ କିଛି କମ୍ ଆଶ୍ୱାସନା ନୁହେଁ । ତାଙ୍କ ସ୍ୱତଃସ୍ଫୂର୍ତ୍ତ ଭାଷା ବିନ୍ୟାସ, ଅକୁଣ୍ଠିତ ଅଭିବ୍ୟକ୍ତି, ନିର୍ଭୀକ ସ୍ୱର ଏବଂ କାବ୍ୟିକ ତନ୍ମୟତା ତାଙ୍କ କବିତାର ବୈଶିଷ୍ଟ୍ୟ କେବଳ ନୁହେଁ, ତାହାହିଁ ତାଙ୍କ କବିତାର ସାର୍ଥକତା ।

ଶ୍ରୀଯୁକ୍ତ ଲେଙ୍କା ଆତ୍ମ ସଚେତନ, ନିଷ୍ଠାପର, ଜୀବନବାଦୀ ଶିଳ୍ପୀ । ସମକାଳୀନ ଜୀବନ ଓ ଜଗତ ସଂପର୍କରେ ଅଛି ତାଙ୍କର ଅଜସ୍ର ସ୍ପର୍ଶକାତର ଅନୁଭୂତି ।

ଅଛୁ ମଧ୍ୟ ବିପର୍ଯ୍ୟସ୍ତ ମୂଲ୍ୟବୋଧ ଜନିତ ପୀଡ଼ାର ସଚାପ୍ୟ ଓ ଜମା ଆଦର୍ଶ ସଂପର୍କରେ ବେଶ୍ କିଛି ଧାରଣା । ନିଜର ଅଜସ୍ର ମୂଲ୍ୟବାନ ଅନୁଭୂତିକୁ ପାଥେୟ କରି ଜୀବନର ରହସ୍ୟ ଉଦ୍‌ଘାଟନ ପାଇଁ ସେ କବିତାରେ ଅନୁସନ୍ଧିତ୍ସୁ ହୋଇଛନ୍ତି । ସେଇ କାରଣ— ତା'ର ସୁନ୍ଦର କୋମଳ ଓ କାରୁଣ୍ୟର ଚିତ୍ର ତାଙ୍କ କବିତାରେ ସମୃଦ୍ଧ ଶୋଭିତ କରିଛି । ଜୀବନକୁ ସେ କେବଳ ଭଲ ପାଆନ୍ତି ନାହିଁ । ଆମର ଏଇ ସୁନ୍ଦର ପୃଥିବୀର ନୀଳ ନେଳି ଆକାଶ, ଚଢ଼େଇର କାକଳି ମିଠିଲ ଗୀତ, କଅଁଳ ମିଠା ମିଠା ଖରା, ନରମ ଘାସ ସବୁଥିରେ ସେ ନିଜକୁ ବିଭୁକ୍ତ ଦେଖନ୍ତି । ବିପୁଳା ପୃଥ୍ୱୀର ବୈଚିତ୍ର୍ୟକୁ ସାଦରେ ଗ୍ରହଣ କରି ଆନନ୍ଦ ଓ ସୌନ୍ଦର୍ଯ୍ୟର ସନ୍ଧାନ ରଖନ୍ତି । ବେପରୁଆ ଭାବେ ମୃତ୍ୟୁକୁ ଅସ୍ୱୀକାର କରନ୍ତି । ଡାକକରି କୁହନ୍ତି—"କିହରେ କିଏ, ଜୀବନଠାରୁ ମରଣ କି'ଣ ଏମିତି ଭଲ ?/କଅଁଳ ଖରା, ନରମ ଘାସ/ନେଳି ଆକାଶ, କାହ୍ନଡ଼ା ଘାଟ/କାକଳି ମିଠିଲ ଚଢ଼େଇ ଗୀତ/ହାତରେ କିନ୍ତୁ !" (ଭିନ୍ନ ସ୍ୱାଦର କବିତା ସ୍ରୋତର ନାମ ରୂତ ।

କାବ୍ୟ ଜୀବନର ଆରମ୍ଭରେ ଏକ ରୋମାଣ୍ଟିକ କବି ଭାବରେ ଆତ୍ମପ୍ରକାଶ କରିଥିଲେହେଁ ପରବର୍ତ୍ତୀ ସଂକଳନ ଗୁଡ଼ିକରେ କମଳାକାନ୍ତଙ୍କ ସ୍ୱର ବଦଳିଛି । 'ସ୍ରୋତର ନାମ ରୂତ' (୧୯୭୮), 'ହଳଦିବସନ୍ତ ବେଳ' (୧୯୮୦)' 'ଗୀତ ଗା'ନା ରେ ପକ୍ଷୀ' (୧୯୮୨), 'ରାତି ଅଙ୍କା କାନ୍ଥର ଛବି ଓ ଚରିତ୍ର ବାହାରେ ଅପେକ୍ଷାରତ ପୃଥିବୀ' (୧୯୮୬) ପ୍ରଭୃତି କାବ୍ୟ ସଂକଳନ ଗୁଡ଼ିକରେ ତାଙ୍କ ଜୀବନର ବାର୍ତ୍ତା ସନ୍ତୁଳିତ । 'ଚୂନା ଫସଲ' (୧୯୫୮), 'ସ୍ମୃତି ଓ ପ୍ରତୀତି' (୧୯୬୬), 'ସ୍ୱପ୍ନର ବିସ୍ଫୁରଣ' (୧୯୬୭) ପ୍ରଭୃତି କାବ୍ୟ ଗ୍ରନ୍ଥରେ ତାଙ୍କ କବି ସତ୍ତାର ସ୍ୱପ୍ନିଲ ରୋମାଣ୍ଟିକ ମନଟିକୁ କିଛି ବେଶ୍ ଧରି ହୁଏ । ରୋମାଣ୍ଟିକ ଚେତନା ଦୃଷ୍ଟିରୁ କାବ୍ୟ ସଂକଳନ ଗୁଡ଼ିକର ନାମକରଣ ମଧ୍ୟ କମ୍ ତାତ୍ପର୍ଯ୍ୟପୂର୍ଣ୍ଣ ନୁହେଁ । ରୋମାଣ୍ଟିକ କାବ୍ୟ ଜୀବନରେ କବି କମଳାକାନ୍ତ ପ୍ରେମ ଓ ପ୍ରଣୟର ପ୍ରବକ୍ତା । ପ୍ରୀତି ଓ ପ୍ରକୃତିର ଉପାସକ । କିନ୍ତୁ ଏଇ ପ୍ରେମ ଓ ପ୍ରଣୟରେ ବିଷାଦ ବେଦନା କିଛି କମ୍ ନୁହେଁ । ପ୍ରେମ ରାଜ୍ୟରେ ଦହନ ଓ ସଂଘର୍ଷ ଅତି ସାଧାରଣ କଥା । ଯେଉଁଠାରେ ପ୍ରେମ, ସେଇଠାରେ ସଂଘର୍ଷ । ସଂଘର୍ଷ ବିନା ପ୍ରେମର ସ୍ଥିତି ବା କାହିଁ ? ପ୍ରେମିକ କବି କମଳାକାନ୍ତ ତେଣୁ ଯନ୍ତ୍ରଣା ଓ ବିଷାଦକୁ ଶ୍ରଦ୍ଧାରେ ସ୍ୱୀକାର କରନ୍ତି । ପ୍ରେମ ଭିତରେ ଦେଖନ୍ତି ରକ୍ତ ଓ ଲୁହ । ପ୍ରେମ ହୁଏ ତାଙ୍କପାଇଁ ମିଠା ମିଠା ଯନ୍ତ୍ରଣାର ଗୀତ । ମୋ ସ୍ୱପ୍ନର ନଈ ଅଛି ଉତ୍‌କୂଳ, ଉତ୍‌କୂଳି/ମୋ ସମୁଦ୍ର କଣ୍ଠେ ବିଳମ୍ବିତ କାନ୍ଦଣାର ସ୍ୱର ।/ଆଷାଢ଼ର ଅରଣ୍ୟରେ ଚକ୍‌କିଣି ଉଦାରତା/ଯାହା ମୋର ଝିଲମିଲ ତରଙ୍ଗିତ ସ୍ନାୟୁର ଭିତରେ

ମିଠା ମିଠା ସଂସାରର ଗୀତ ।' ( ହେ ମୋର ବାଂଧବୀମାନେ ) ସ୍ମୃତିକୁ ଆଧାର କରି କମଳାକାନ୍ତଙ୍କର ପ୍ରେମ କବିତାର ସଂଖ୍ୟା ଅନେକ । ଉଭୟ ପ୍ରିୟା ଓ ପତ୍ନୀଙ୍କର ସ୍ମୃତି ତାଙ୍କ ପାଇଁ ଏକ ଏକ ଅଭୁଲା ସ୍ମାରକୀ । ହୁଏତ ସ୍ମୃତି ସବୁକୁ ପାଶୋରି ଦେଲେ ସେ ନିସ୍ତାର ପାଇ ଯାଆନ୍ତେ । କିନ୍ତୁ ତା' ମଧ୍ୟ ସମ୍ଭବ ନୁହେଁ । ଶେଷ ପର୍ଯ୍ୟନ୍ତ ସ୍ମୃତି ଜୀବନ୍ତ ଓ ଅଭୁଲା ହୋଇରହେ । ପ୍ରେମରେ ପରାଜୟର ଗ୍ଲାନି ଥିଲେବି ପ୍ରତୀକ୍ଷା ତଥାପି ଅତୁଟ ରହିଛି । 'ଚିଠି ତୁମକୁ,' 'ମାନଚିତ୍ର,' ଚିଠି : ସଂପର୍କର,' ଚିଠି : ଶିମିଳି ଓ ପଳାଶ ଫୁଲକୁ,' ରୋମନ୍ଥନ,' 'ତୁମେ ଯଦି ଦେଖାହୁଅ' ଏବଂ ଆହୁରି ଅନେକ କବିତାରେ ସେଇ ସ୍ମୃତିର ସ୍ୱରୂପ ନାନା ଭାବରେ ନାନା ରୂପରେ ପାଠକ ସାମ୍ନାକୁ ଆସନ୍ତି । କାରଣ ସେ ପ୍ରେମ ଦୁର୍ଲଭ ଏକଥା ଜାଣି ପୁଣି ପ୍ରେମିକାର ସ୍ମୃତି ସବୁକୁ ଆଧାର କରି ସେ ସାରା ଜୀବନ ବଂଚିଯିବା ପାଇଁ ଇଚ୍ଛା କରନ୍ତି । 'ମୁଁ ବଂଚିବି ତୁମରି ସ୍ମୃତିରେ/ମୋ ଦେହର ଦେହଭୂତ ଦୁଃଖ/ଏବଂ ଦୁଃଖଙ୍କର ସେହ୍ନ ସିକ୍ତ କରତାଳି/ ଧୂନ ସହ ତୁମେ ହେବ ମନ୍ତ୍ର ଜୀଇବାର' (ଚିଠି : ତୁମକୁ) ସ୍ମରଣ ବିସ୍ମରଣ) ସବୁଠି ସ୍ନେହ ସମ୍ପର୍କ ମିଛ ହେବନ ବା କାହିଁକି ? ସେଦିନ ପ୍ରେମିକ କବି ମାନସିଂହ 'ଧରିତ୍ରୀ ଅବତରଣ କବିତାରେ ଏକ ଲଜ ପ୍ରେମ ମୁମୁର୍ଷୁ ଗୃହଣୀ ପାଇଁ ବାରମ୍ବାର ଏହି ମାଟିର ସ୍ୱର୍ଗ ପୃଥିବୀ ବକ୍ଷକୁ ଫେରି ଆସିବା ପାଇଁ କାମନା ପୋଷଣ କରି ନଥିଲେ କି ? ପ୍ରେମ କବିତା ଗୁଡ଼ିକରେ କମଳାକାନ୍ତଙ୍କ କାବ୍ୟ ପୁରୁଷ ଟିକ୍ ବେଶି ଯନ୍ତ୍ରଣା ଜର୍ଜରିତ ଓ କାରୁଣ୍ୟ କାଳୁଷ୍ୟ । ଯନ୍ତ୍ରଣାରୁ ହିଁ ପ୍ରେମର ଶୁଭାରମ୍ଭ । ଏ କଥା ସେ ବୁଝନ୍ତି— 'ଯାହା ଭାବ, ସତକଥା ।/ଯନ୍ତ୍ରଣାର ଦାଉଆରେ ଡୁବ ଦେବାପରେ/ତୁମକୁ ଲେଖୁଛି ଚିଠି ସଂପର୍କିତ ମୁହୂର୍ତ୍ତର ଶାଖାରେ ଓହଳି ।' (ଚିଠି : ଶିମିଳି ଓ ପଳାଶ ଫୁଲକୁ— ସ୍ମରଣ ବିସ୍ମରଣ) । ପ୍ରେମମାନେ ତ ସ୍ମୃତିର ଅଧିକାର । ସ୍ମୃତି କିନ୍ତୁ ଆନନ୍ଦର ଉତ୍ସ ନୁହେଁ । ଅନେକତ୍ର ରକ୍ତାକ୍ତ ଓ ଯନ୍ତ୍ରଣା ବିଜଡ଼ିତ, ଯାହା କାବ୍ୟନାୟକକୁ ପ୍ରତି ମୁହୂର୍ତ୍ତରେ ବିଷାଦ ବେଦନାରେ ମର୍ଚ୍ଛିତ କରେ । ସ୍ୱୀକାର କରିବାକୁ ହେବ— ବହୁ କବିତାରେ ହଜିଲା ଅତୀତ ଏବଂ ସ୍ମୃତିର ରୋମନ୍ଥନ ବଡ଼ ସ୍ପଷ୍ଟିଳ, ପ୍ରାଣବନ୍ତ ଆବେଗରେ ଛଳଛଳ । ଗୋଟିଏ ପଟେ ବିଗତ ଦିନର ସ୍ମୃତି ଓ ସ୍ୱପ୍ନ, ଅନ୍ୟ ପଟେ ବାସ୍ତବିକ୍ତ ବର୍ତ୍ତମାନ ବିରୁଦ୍ଧରେ ଅସନ୍ତୋଷ ଓ ବିଦ୍ରୋହ -- ଏଇ ଦ୍ୱନ୍ଦ୍ୱ ତାଙ୍କ କାବ୍ୟ-ଚେତନାରେ ଅନେକତ୍ର ସୁଲଭ ।

ସ୍ୱପ୍ନ ବ୍ୟର୍ଥ । ସଂପର୍କ ଅର୍ଥହୀନ । ଶୂନ୍ୟତା ଅନତିକ୍ରମ୍ୟ । ପ୍ରେମ ମାନେ କିଛି ନୁହେଁ/ଆଖି ଏବଂ ଆଖିର ନିଃଶ୍ୱାସ ବିତାପରେ ଘୂରାଇବା/ ସଂଭବତଃ ରକ୍ତର ନଈକୁ ଭିଡ଼/ ବେଳେ ବେଳେ ରକ୍ତର ତୁଠରେ ଠିଆ କରାଇବା ।'' ପ୍ରେମ ମାନେ

ମତ ଅଭିମତ ଭିନ୍ନମତ ।।

କିଛି ନୁହେଁ ଏ କଥାର ସ୍ୱୀକାରୋକ୍ତି ଖାଣ୍ଟି ସାରିଲାପରେ ବି ପ୍ରେମ କବିତା ଲେଖା ଅଟୁଟ ରହେ । ପତ୍ନୀଙ୍କ ସ୍ମୃତିକୁ ନେଇ କବିତାରେ ଫୁଲ ଫୁଟାଇବାକୁ ହୁଏ । ଲେଖାହୁଏ "ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା" ଅଜସ୍ର ଚିଠି ଲେଖିବାକୁ ପଡ଼େ ପ୍ରିୟାକୁ— 'ଚକ୍ଷୁରେ ଭିଜାଇ ମୋର ଯାତନାକୁ ;ମୋ ସ୍ୱପ୍ନର ବିଦୀର୍ଣ୍ଣ ସ୍ଥିତିକୁ/ ତୁମକୁ ଲେଖୁଚି ଚିଠି/ ବର୍ତ୍ତମାନ ଫଟାଭୂଇଁ, ଜୀର୍ଣ୍ଣ ଶୀର୍ଣ୍ଣ ଖସ ଏବଂ କାରୁଣ୍ୟର ଗୁହାରି ଶୁଭୁଚି ।" କବି ଯେଉଁ ପ୍ରେମ ଖୋଜନ୍ତି, ତାହା ମିଳନ୍ତି ନାହିଁ । ପଦେ ପଦେ ମିଳେ ବ୍ୟର୍ଥତା ଓ ନୈରାଶ୍ୟ । ତଥାପି ପ୍ରାଣେଶ୍ୱରୀଙ୍କୁ ନେଇ ବେଦନାର ମର୍ମଗତ ଗୀତ ଗାଇବା ସରେନା, ସରି ପାରେନା । 'ଏକାନ୍ତ ନୀରବ ଆଜି ଗୀତମୟ ଶଂକିତ ଆକାଶ/ମନକୁ ମୋ କରୁଥିଏ ତା' ଭିଜିଲା ବୃକ୍ଷର ପତ୍ରେ/ କାହିଁକି କେଜାଣି ଏବେ ? ଦଗ୍ଧବିନ୍ଧା ମୃତକଙ୍କର ଭିଡ଼/ କାଠହଣା ଚଢ଼େଇର ଅଣ୍ଡା ନେଇ ମନକୁ ମୋ କରୁଚି ଘାଇଲ ।" [ଅନ୍ୟରୂପ : ଏକ ଦୁର୍ବଳ ମୁହୂର୍ତ୍ତର; ପ୍ରବେଶ ନିଷେଧ] ପ୍ରେମ କବିତା-ମାନଙ୍କରେ କାବ୍ୟତତ୍ତ୍ୱର ବିଚ୍ଛୁରିତ ରୂପଟିକୁ ସହଜରେ ଧରି ହୁଏ । ନୈରାଶ୍ୟ, ଶୂନ୍ୟତା, କ୍ଷୋଭ, ଯନ୍ତ୍ରଣା, ଅତୃପ୍ତିକୁ ନେଇ ତାଙ୍କ ବିଷାଦର କଳନା ନିର୍ମିତ । ଯେତିକି ନିଜେ କହନ୍ତି —"ମୁଁ ଏକ ଲତାବାଣୀ, ଯେ ସବୁମାନ ଦୁଃଖର ମେଘକୁ ଛୁଇଁ ଛୁଇଁ ମିଶିଯାଏ ବିସ୍ତୃତିର ଜଙ୍ଗଲ ଭିତରେ ।"

କବି ନିଜର ଅନୁଭୂତି ପ୍ରତି ବିଶ୍ୱସ୍ତ ନ ହେଲେ ତା' କବିତାର ସାଫଲ୍ୟ ହୁଏ ସୁଦୂର ପରାହତ । ଯେଉଁ ସ୍ରଷ୍ଟା ତାର ଅନୁଭବ ଓ ଅଙ୍ଗୀକାର ପ୍ରତି ଯେତେ ବେଶି ବିଶ୍ୱସ୍ତ ଓ ଆନ୍ତରିକ, ତା'ର ସୃଷ୍ଟି ସେତେ ବେଶି ସଫଳ ଓ ସାର୍ଥକ । ଏହା ପରିପ୍ରେକ୍ଷୀରେ ସ୍ୱୟଂ କବିଙ୍କର ଏକ ଉକ୍ତିକୁ ଉଦ୍ଧୃତ କରାଯାଇପାରେ । କମଳାକାନ୍ତଙ୍କ ଦୃଷ୍ଟିରେ କବିତା ଶୁଦ୍ଧ ଆତ୍ମାର ଉଚ୍ଚାରଣ । "କବିତା ସୃଷ୍ଟି, ତା'ର ବ୍ୟାପ୍ତି ଓ ମହନୀୟତା ପାଇଁ ଆଉ କିଛି ଥାଉ ବା ନଥାଉ, ଲୋଡ଼ା ଗୋଟାଏ ବିଶୁଦ୍ଧ ଆତ୍ମସ୍ଥ ହୃଦୟ । ଏ ହୃଦୟ ପାଇଁ ହୃଦ୍ୟତା ଆପଣାଛାଏଁ ଆସେ । ଆପେ ଆପେ କବି କି ତା' ନିଜ କବି ସତ୍ତାର ଭିତର ଘର ଦୁଆରକୁ ଭେଟିଯାଏ । କେତେବେଳେ କେଉଁ ଛନ୍ଦକରେ ଏ ଦୁଆରର ଦର୍ଶନ ଘଟେ ତା' କେବଳ କବିତାକୁ ହିଁ ଜଣା । ତେଣୁ କବିତାହିଁ ମୋ ଦୃଷ୍ଟିରେ ଶୁଦ୍ଧ ଆତ୍ମାର ଉଚ୍ଚାରଣ" [ଯଦିଓ ସାଧାରଣ ଅର୍ଥରେ ଆତ୍ମା ଶୁକ୍ଳ] "ବକ୍ତବ୍ୟ ମିଥ୍ୟା ନୁହେଁ । ଶ୍ରୀଯୁକ୍ତ ଲେଙ୍କା ଅନୁଭୂତି ପ୍ରତି ବିଶ୍ୱସ୍ତ । ଉଚ୍ଚାରଣରେ କିଛିଟା ନିର୍ଭୀକ ମଧ୍ୟ । 'ମୋ ମା' ପ୍ରତି' କବିତାଟି ଏ ଦୃଷ୍ଟିରୁ ସ୍ମରଣୀୟ । ବ୍ୟକ୍ତିଗତ ଆତ୍ମାପରେ ସମଗ୍ର କବିତାଟି ସ୍ପନ୍ଦିତ । ଏହା କେବଳ ତାଙ୍କ ଜର୍ଜରିତ ପ୍ରାଣ ସତ୍ତାର

ଏକ ଶାବ୍ଦିକ ଉଚ୍ଚାରଣ ନୁହେଁ । କବିତାଟିରେ କାରୁଣ୍ୟ, ଏକ ମାତୃ ହୃଦୟର ସକରୁଣ ଅଭିବ୍ୟକ୍ତି, ମମତା ଓ ସହନଶୀଳତା, ଭବିଷ୍ୟତ ପାଇଁ ଅଭୀପ୍ସା, ବିଦେଶସ୍ଥ ବର୍ତ୍ତମାନର ଅବଶୋଷ - ସବୁ କିଛି ମୂଳରୁ ଚାଲି ଯାଏ ସୁନାପୁଣ ଛିଲ୍ଲୀ ସହରର କାରୁକାର୍ଯ୍ୟ ପରି ମନେ ହୁଏ । ସୁନ୍ଦର କବିତା । ଚମତ୍କାର ଉପସ୍ଥାପନା । ପାଠକ ପାଇଁ ପ୍ରଲୋଭନ ବି ବହୁତ । ମୂଳରୁ ଚାଲି ଯାଏ ଆବେଗ ସୁରକ୍ଷିତ । ଦରଜା ଖୋଲା ଏଠି ଅତି ନିଷ୍ଠୁର ଓ ଅନ୍ଧାରଙ୍କ । ଏଥିରେ ଧୈର୍ଯ୍ୟ ଛଳନା ନାହିଁ । ଜୀବନ ଓ ଯନ୍ତ୍ରଣା ଏଠି ବେଶ୍ ଘୋଳାଘୋଳି । ମମତାମୟୀ ଜନନୀଙ୍କର ସ୍ନେହ ଓ କରୁଣା ବିନା ଜୀବନର କିଛି ମାନେ ହୁଏ ନା । ତାଙ୍କର ଅବର୍ତ୍ତମାନରେ/ ଅନୁପସ୍ଥିତିରେ କବି ପ୍ରାଣରେ ଆର୍ତ୍ତି ଓ ଅସହାୟତା କବିତାଟିରେ ଉଚ୍ଚାରେ—'ଏବେଣି ସଞ୍ଜବେଳେ କାନ୍ଦ କାନ୍ଦ ଲାଗେ ଓ/ଝରି ଇଚ୍ଛାହୁଏ ତୋର ମାଟିର ଦେହକୁ ଘାଣ୍ଟି/ ଅଣ୍ଟୋଳନ୍ତି ପିଲା ଭଳି ତୋହର ଶୁଖିଲା ଥନ/ଏବଂ ତୋହର ଆଖିରେ ଖୋଜି ଦେଖନ୍ତି ମୁଁ/ମଲଗଲା ଶ୍ରାବଣ ଓ କାଳଚକ୍ରୀ ସହରର ଲହର ।" [ମୋ ମା' ପ୍ରତି:କବିତାର ନୂତନ]

ଦୁଃଖ ଓ ନୈରାଶ୍ୟ, ଯନ୍ତ୍ରଣା ଓ ଶୂନ୍ୟତା, ନିଷ୍ଠୁରତା ଓ ଅସହାୟତା କମଳାକାନ୍ତଙ୍କ କବିତାରେ ବିଶେଷ ଭାବରେ ପ୍ରକଟିତ । 'ମୁଁ ଜାଣିଚି, ଜୀବନ ଜୀବନ ଦୁଃଖ ବିନା ପାରେ ନାଏ ଯୋଜା ନଦ ଖୋଲା ମନ ଆକାଶର ଦପ୍ ଦପ୍ ତାରାକୁ ନେଇ ଜାଣି ।' (ସୂକ୍ତା-ଝଟିବାର ବେଳ) ଦୁଃଖ ତାଙ୍କ ପାଇଁ ଏକ ବଡ଼ ଆବଶ୍ୟକତା, ଜୀବନର ଗଙ୍ଗୋତ୍ରୀ । ଏ ସଂପର୍କରେ ସେ ନିଜେ କହନ୍ତି—'ପ୍ରାୟ ମୋର ସବୁ ଲେଖାରେ ଗୁନ୍ଥିଛି, ଗୁନ୍ଥିବାର ଚେଷ୍ଟା କରିଛି ନିଜ କଥା, ଅପଣା ଚେହେରା ପରି ପବନ, ନିଶ୍ୱାସ ପ୍ରଶ୍ୱାସ ଓ ଆପଣମାନଙ୍କ ଆଗରେ, ଅନ୍ଧାରେ କେଉଁ ଅସ୍ପଷ୍ଟ ହୋଇଥିବା କଥା । ପ୍ରତିଟି ମଣିଷ ପ୍ରାଣର ଥର ଥର କଂପିତ ଦୁଃଖ ସୁଖର କାଳି ଜହ୍ନର କଥା । ଯାହା ସମସ୍ତେ ଅନୁଭବ କରନ୍ତି, ଅନ୍ତରେ ଅଙ୍କନ୍ତି, ଅଥଚ କହିବାକୁ, ପ୍ରକାଶ କରିବାକୁ ଇଚ୍ଛାଥିଲେ ବି କହିପାରନ୍ତି ନାହିଁ ବା କହିବା ପାଇଁ ସାହସ ଭଣ୍ଡାର ଘର ଜମାଟ ଅନ୍ଧାରକୁ ନନ୍ଥିଲବେଳେ କାକୁସ୍ଥତାର ଝାଳରେ ବୁଡ଼ି ଯାଆନ୍ତି ।" [ଯାହା କିଛି କହିବାର ଥାଏ—ମୋ ଜୀବ ନାମ ଚିତ୍ର] ନିଜର ବ୍ୟକ୍ତିଗତ ଦୁଃଖ ଓ ବେଦନାକୁ ସେ ଯେପରି ନୈର୍ବ୍ୟକ୍ତିକ ପର୍ଯ୍ୟାୟକୁ ଉନ୍ନୀତ କରିପାରିଛନ୍ତି ତାହା ଆମ ପାଇଁ କମ୍ ଆଶ୍ୱାସନାର କଥା ନୁହେଁ । ତାଙ୍କ କବିତାରେ ଦୁଃଖ ଓ ବିଷାଦ ଅଛି ସତ, କିନ୍ତୁ ସେ ଆଦୌ ନୈରାଶ୍ୟବାଦୀ ନୁହନ୍ତି । ତାଙ୍କ କବିତାରେ ଅନେକ ରହିଛି ଆଶା, ଆନନ୍ଦ ଓ ବିଶ୍ୱାସର ସ୍ୱର । 'ଚଇତ ପୁରୁଷ' କବିତାଟିକୁ ଏ ଦୃଷ୍ଟିରୁ ସ୍ମରଣ କରାଯାଇ

ପାରେ । 'ଏଇ ସେ ଆସୁଛି ଚଢ଼ି ନାଲି ଘୋଡ଼ା/ହିଂସ୍ର ତାର ଦୀର୍ଘ କରବାଳ/ଝୁଲଇ ସଗର୍ବେ ହୃଦୟେ, ଝପ୍ ଝାପ୍ ହଁଏ ନଈ ନ ନ/ଚଳିତ ସ୍ତୂପ ସେକ ? ମଣ୍ଡ ଏକ କଥା ର ଦୂରନ୍ତ ଝଡ଼/ଦ୍ୱାର୍ଓ୍ୱାର ସ୍ୱପ୍ନ ।''

ଏଠି ସୃଜନ ଓ ଧ୍ୱଂସ, ପ୍ରେମ ଓ ମୃତ୍ୟୁର ଏକୀଭୂତ ରୂପ କଳ୍ପନା କରାଯାଇଛି । ସେ ଆସିବ ନିଶ୍ଚୟ । ସବୁ କିଛି ଧ୍ୱଂସ କରିଦେଇ ତାର ବାଡକୁ ଡେଇଁ ଏକ ଦୁରନ୍ତ ଝଡ଼ ଭଳି ସେ ଆସିବ ମୁକ୍ତିର ସ୍ୱାଦ ନେଇ । ଆଦର୍ଶ ଓ କ୍ଷମା ଅହମିକାର ଗୋଲକ ଭିତରେ ସେ ମଣିଷର ଅମୃତ ପ୍ରତ୍ୟାଶୀ ସତ୍ତାଟିକୁ ନିଶ୍ଚିହ୍ନ କରି ଦେବାକୁ ଦେବନି । ଶରବିଦ୍ଧ ଓ କଣ୍ଟକିତ ଭବିଷ୍ୟତକୁ ଉପେକ୍ଷା କରି ସେ ଆସିବ ଘୋଡ଼ା ଚଢ଼ି କଳ୍କୀ ଓ କ୍ରୁଶର ଦୈତ ଚିହ୍ନ ଧରି । ଆଉ ଏକ ସମଜାତୀୟ କବିତା 'ଅପେକ୍ଷା କେବଳ' — ଜୀବନ ଏକ ଦୀର୍ଘ ଅପେକ୍ଷା ବ୍ୟତୀତ ଅନ୍ୟ ବା କ'ଣ ? ଯେପରି Waiting for the Godotର ଭ୍ଲାଡ଼ିମିର୍ ଓ ଏସ୍ଟ୍ରାଗନ୍ ପ୍ରାଣକର୍ତ୍ତାଙ୍କ ପାଇଁ ଅପେକ୍ଷା କରିଥିଲେ । ଶେଷ ପର୍ଯ୍ୟନ୍ତ ତାଙ୍କର ଅପେକ୍ଷା, କେବଳ ଅପେକ୍ଷାରେ ହିଁ ରହିଗଲା । ଏଠି ମଧ୍ୟ କାବ୍ୟ ସତ୍ତା ସକଳ ବ୍ୟର୍ଥତା ଓ ବିଫଳତା ସତ୍ତ୍ୱେ ମୁକ୍ତି ପାଇଁ ଅପେକ୍ଷାରତ । ଆଶା ତା'ର କେବେ ନା କେବେ ଆସିବ ସେ ବହୁ ଆକାଂକ୍ଷିତ ମୁହୂର୍ତ୍ତଟି । ସେଇ ଚରମ ମୁହୂର୍ତ୍ତଟି ପାଇଁ ଯୁଗ ଯୁଗର ପ୍ରତୀକ୍ଷା । 'ସେ ଆସିବହିଁ ଆସିବ/ସେ ଆସିବ କେଉଁ ବେଳାରେ, କେଉଁ ମୁହୂର୍ତ୍ତରେ/କେଉଁ ଛଟକର ଘାତାଂକରେ/ଗଙ୍ଗଶିଉଳିର ଚଉତାଳରେ ସେ/ବାଜିବ ଶଙ୍ଖ ମୁହୂର୍ତ୍ତର ନିହ୍ନତ/କେବଳ ଯାହା ଧୈର୍ଯ୍ୟ ହସୁଛି ଧୀରେ ମୋ ମନସ୍ଥ ଶୋକର ମୁଦ୍ରା, ଧ୍ୟାନସ୍ଥ ଶିଖାର ତପସ୍ୟା ।'' [ଅପେକ୍ଷା କେବଳ—ସ୍ରୋତର ନାମ ରୀତା] ଏକ ସମ୍ଭାବନା ପୂର୍ଣ୍ଣ ଉଜ୍ଜ୍ୱଳ ଭବିଷ୍ୟତର ଚିତ୍ର ଦେବାରେ କବି ଅମକୁ ନିରାଶ କରନ୍ତି ନାହିଁ । ସମସ୍ତ ଯନ୍ତ୍ରଣାର ନିର୍ଯ୍ୟାସ ଭିତରେ ତଥାପି ଆଶାର ସ୍ୱର ତାଙ୍କ କବିତାରେ ଉଦ୍ଭାସିତ ହୁଏ । ନୈରାଶ୍ୟ, ଦୁଃଖ ଓ ଯାବତୀୟ ଯନ୍ତ୍ରଣା ସତ୍ତ୍ୱେ ଜୀବନ ପ୍ରତି କାବ୍ୟନାୟକର ମମତ୍ୱ କିଛି କମ୍ ନୁହେଁ । ଭଲ ପାଇବା ସଂପର୍କରେ ତା'ର ନିଜର ଯୁକ୍ତି ଅନେକ । ସେ ସବୁ କିଛିକୁ ଭଲପାଏ । ଆପଣାର କରେ । ସଂପର୍କ ଗଢ଼େ । ଭଲପାଇବାର ଗୀତ ଗାଏ ନିଜ ସପକ୍ଷରେ । 'ମୁଁ ଏକାନ୍ତ ଭଲପାଏ ଆପଣାର ନୂତନ ପୃଥିବୀକୁ/ଆପଣାର ପ୍ରବୃତ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ/ଭଲ ପାଏ ଭଙ୍ଗା ଖେଳନାକୁ/ଭଲପାଏ ଦୁଷ୍ଟ ମଣିଷକୁ/ଭଲପାଏ ବଞ୍ଚିବାର ନୂଆ ନୂଆ ସ୍ୱପ୍ନ ଶିର ସ୍ପନ୍ଦିତ ଇଚ୍ଛାକୁ ।' [ନିଜ ସପକ୍ଷରେ—ସ୍ରୋତର ନାମ ରୀତା] ।

॥ କବି କମଳାକାନ୍ତ

ମୃତ୍ୟୁ ମଧ୍ୟ କବିଙ୍କ ଦୃଷ୍ଟିରେ ପ୍ରାଣସତ୍ତାର ବାର୍ତ୍ତାବହ । ଜୀବନର ଏକ ଶୁଭଙ୍କର ରୂପ । ଅନ୍ୟ ଆଧୁନିକ କବିମାନଙ୍କ ପରି ତାଙ୍କ କାବ୍ୟସତ୍ତା ମଧ୍ୟ ମୃତ୍ୟୁ-ସଚେତନ । ଗୋଟିଏ ପଟେ ମୃତ୍ୟୁ ପ୍ରତି ଏକ ବେପରୁଆ ମନୋଭାବ ଓ ଅନ୍ୟ ପଟେ ମୃତ୍ୟୁ ଲାଗି ପ୍ରସ୍ତୁତି—ଏହାରି ମଧ୍ୟ ଦେଇ କବି ମୃତ୍ୟୁ ସହ ସଂପର୍କର ନିବିଡ଼ତ୍ୱ ସ୍ଥାପନ କରିଅଛନ୍ତି । ମୃତ୍ୟୁ ବୋଲି କିଛି ନାହିଁ/ଯାହା ଖାଲି ପ୍ରଚଳିତ ବିଶ୍ୱାସର ଭ୍ରାନ୍ତିର ମଲାଟ/ଥରେ ତାକୁ ରଙ୍ଗ ଦେଲେ/ଯାକି ନେଲେ/ଆଶ୍ଳେଷିଲେ ମନେ ହୁଏ/ବସନ୍ତ କି ଲେଉଟାଣି ଫେରୁଚି ପୁନଶ୍ଚ/କବିର ରାଜ୍ୟକୁ/କବିତା ର ସୁନାର ହେତକୁ ।’ [ନିଜ ସହ ଗୋଟେ ସାକ୍ଷାତକାର] ମୃତ୍ୟୁ ଭିତରେ ଏହା ହିଁ ତ ଯେମିତି ଜୀବନବୋଧର ଉପଲବ୍ଧି । ମୃତ୍ୟୁକୁ ତେଣୁ ଗ୍ରହଣ କରି ନେଲେ କ୍ଷତି କ’ଣ ? ଅନ୍ତରଙ୍ଗ ଭାବରେ ବରଂ ତାକୁ ଗ୍ରହଣ କରି ନେଲେ କ୍ଷତି କ’ଣ ? ଅନ୍ତରଙ୍ଗ ଭାବରେ ବରଂ ତାକୁ ଗ୍ରହଣ କରି ନେବାରେ ଜୀବନର ସାର୍ଥକତା । ସେଇ ଅନ୍ତରଙ୍ଗ ଅନୁଭୂତି ଭିତରୁ ଆନନ୍ଦ ଓ ସମ୍ଭାବନାର ଅନ୍ୱେଷଣହିଁ ତ ଜୀବନ !

କମଳାକାନ୍ତଙ୍କ ଅନେକ କବିତାରେ ତାଙ୍କର ନିତାନ୍ତ ବ୍ୟକ୍ତିଗତ ସ୍ୱର ଶୁଣିବାକୁ ମିଳେ । ଏହି ବ୍ୟକ୍ତିଗତ ଅନୁଭୂତିର ଅଭିବ୍ୟକ୍ତି ମଧ୍ୟରେ ଜୀବନ ଓ ମୃତ୍ୟୁ ପ୍ରତି ଦୃଷ୍ଟିଭଙ୍ଗୀ ସ୍ପଷ୍ଟତର ହୋଇ ଦେଖାଦିଏ । ଦୁଃଖର ଅନୁଭୂତିହିଁ ତାଙ୍କ ପାଇଁ ସବୁଠାରୁ ମୂଲ୍ୟବାନ୍ ଅନୁଭୂତି । ଅପର ଅର୍ଥରେ ଏଇ ଦୁଃଖ ଓ ଯନ୍ତ୍ରଣାର ଉପଲବ୍ଧ ଅର୍ଥହିଁ ଜୀବନବୋଧର ଉପଲବ୍ଧି ।

କମଳାକାନ୍ତଙ୍କ କବିତାରେ ଯେଉଁ କବି ବ୍ୟକ୍ତିତ୍ୱଟି ଦେଖିବାକୁ ମିଳେ ତାହା ଏକ ସଂଗ୍ରାମୀ ବ୍ୟକ୍ତିତ୍ୱ । ଜୀବନ ଅର୍ଥ ତାଙ୍କ ପାଇଁ ଯୁଝିବା । ସେତ କହନ୍ତି—‘ଜୀବନ ମାନେ ଗୋଟେ ଭୂଇଁ, ଯେଉଁଠି/ବଞ୍ଚିବା ଓ ମରିବା/ଭିତରେ ବିଶେଷ କିଛି ତଫାତ୍ ନ ଥିଲବେଳେ ମଣିଷ ବେକୁବ୍ ଭଳି/ଶ୍ୱାସ ପ୍ରଶ୍ୱାସରେ ଯୁଦ୍ଧ କରୁଥାଇ । ହାରିବା ଓ ଜିତିବାର ମାନେ ଖୋଜିଲେ ଦିଶେ ନିଜେ ନିଜଠୁ/ଭିନ୍ନ, ସମସ୍ତ ସମ୍ପର୍କ ଛିନ୍ନ, ଦୁଃଖ ସୁଖ ଏକାକାର ।’ [ତୁମେ ଯେଉଁମାନେ ଆସୁଚ—ଗୀତ ଗା ନା ରେ ପକ୍ଷୀ) ସାଂପ୍ରତିକ କାଳରେ ମୂଲ୍ୟବୋଧ ଜନିତ ସଂକଟର ଦ୍ୱନ୍ଦ୍ୱ ଓ ସଂଘର୍ଷ ତାଙ୍କ ଅନେକ କବିତାରେ ପ୍ରମୂର୍ତ୍ତ । ବାସ୍ତବତାର ମୁହାଁମୁହିଁ ହେଲାବେଳେ ସେ ଖୋଜନ୍ତି ଏପରି ଏକ ଇଲାକା ଯେଉଁଠି ସେ ନିଜର ପରିଚୟକୁ ଖୋଜି ପାଇବେ । ସମସ୍ତ ଛଳନାର ମୁଖା ଖୋଲି ଦେବେ । ବିଶୃଙ୍ଖଳତାର ମୁକାବିଲା କରିବେ । ମୀତ ନାମରେ

ଯେତେସବୁ ଅନୀତି, ନ୍ୟାୟ ନାମରେ ଯେତେସବୁ ଅନ୍ୟାୟ ଓ ଅତ୍ୟାଚାରର ସେ ପ୍ରତିରୋଧ କରିବେ । ବିନା ପ୍ରଶ୍ନରେ, ବିନା ପ୍ରତିବାଦରେ ସେ ସବୁକିଛିକୁ ଗ୍ରହଣ କରି ନେବାକୁ ରାଜି ନୁହନ୍ତି । ଅଧ୍ୟାପିକା ରେଖା ମହାନ୍ତି ଯଥାର୍ଥରେ କହିଛନ୍ତି—'ସେ ଚିରାଚରିତ ଜୀବନ ଧର୍ମର ଯେ ବିରୋଧ କରନ୍ତି ତା' ନୁହେଁ, କିନ୍ତୁ ନିର୍ବିଚାରରେ ତାକୁ ସ୍ୱୀକାର କରିନେବା ସମ୍ଭବ ନୁହେଁ ।'

କବିଙ୍କ ପାଇଁ ଈଶ୍ୱର ମୃତ । ହୁଏତ ଏକ ଫେରାର ଅସାମୀ । ତେଣୁ ସେ ବା କିପରି ହେବେ ପରିତ୍ରାଣର କର୍ତ୍ତା ? ସେ ତ ପ୍ରତାରଣାର ଭିନ୍ନ ନାମ ମାତ୍ର (କ୍ଷମଣୀୟ : ଝରିବାର ବେଳ) କବି ତାଙ୍କ ସହ ଜବାବ ସୁଆଲ କରନ୍ତି । ଅନେକ ପ୍ରଶ୍ନ ପଚାରନ୍ତି । ଈଶ୍ୱରଙ୍କୁ ସବୁ କିଛି ସହ୍ୟ କରିବାକୁ ହୁଏ । 'ବିନୋଦିଆ' କବିତାରେ ସେଇ ଆକ୍ଷେପର ଚିତ୍ର ଏହିପରି ଅଙ୍କିତ --

'କେଉଁ ଭାବରେ ଥାଅ ହେ ବିନୋଦିଆ ?
କେଉଁ ଅଭାବରେ ତୁମେ ନାଚୁଥାଅ, ହସୁଥାଅ,
କହାଇ କହାଇ ମାରୁଥାଅ, ମାରିଦେଇ, ସାରିଦିଅ;
ଠିଆ ଠିଆ ଉଜାଗରେ ବିତିଯାଏ,
ଭାବଟିଏ ଖୋଜୁଥାଏ, ଅଭାବରେ ଅସମ୍ଭାଳ
ଗଢ଼ିବା ତୁମର ମୂର୍ତ୍ତି ଶୂନ୍ୟତାରେ
ଭାଂଗିବା ତୁମର ଢମ ଲୋକ ଗହଳରେ ।'

(ଦୁଃଖ ସହ କଥାବାର୍ତ୍ତା)

ଆଜି ଧର୍ମରେ ଶାଶ୍ୱତ ମୂଲ୍ୟବୋଧ ଅନୁପସ୍ଥିତ । ଧର୍ମ ମଧ୍ୟ ଆଜି କମ୍ ନିର୍ମମ, ନିଷ୍ଠୁର ନୁହେଁ । ଏହି ଭୀଷଣତାକୁ କବି ସହି ସହ୍ୟକରି ପାରୁନାହିଁ । ଧର୍ମରେ ସେ ଦେଖି ପାରୁନାହିଁ ସତ୍ୟ-ଶିବ-ସୌନ୍ଦର୍ଯ୍ୟର ରୂପ । ନା ଅଛି ସେଥିରେ ନିଷ୍ଠା ନା ପବିତ୍ରତା । କବି, ମଣିଷର ଏଇ ଛଳନା ଓ ଦୁର୍ବଳତାର ବିରୁଦ୍ଧାଚରଣ କରନ୍ତି । 'ଯେଉଁମାନେ ଗୋଡ଼େ ଗୋଡ଼େ ଜଗନ୍ତି/ପୁଣ୍ୟକୁ, ଧର୍ମକୁ , ଧର୍ମାତ୍ମାମାନଙ୍କୁ/କର୍ମ-କର୍ମୀଣିର ଶୁଦ୍ଧତାକୁ/ମୋର ଗୋଟେ ଦୃଢ଼ୀଭୂତ ବିଶ୍ୱାସ ଯେ : କଳା କିଟିମିଟି ମାରଣା, ଅରଣା ଅଂଧାରୁଆକୁ/ସଲମ ଠୁଂକ ଟୁଂକ, ଲୋମଶ, କାଳୁବାଳୁଆ/ ଦାଂତାଳିଆ ଧଳକ କୋଅଳିଭ ନାଳ/ପକେଟରୁ ଅଷ୍ଟୋତ୍ତର ଶତ ନାମରେ ଝୁଂକ ଝୁଂକା/ଠିକ୍ ଠିକ୍ ଚହଲନ୍ତି ନିଜକୁ, ନିଜ/ଭିତର ଘରର ବାଂଧୁଥିବା ଚତୁର୍ଧା ମୂର୍ତ୍ତିକୁ

ଯେ : ଏମାନଂକ ନାଁ ଶୁଣିଲେ କାନ ଝାଁ ଝାଁ ହୁଏ, ଏମାନଂକ ମଙ୍ଗଳାଷ୍ଟକରେ ବିଦାୟ ହୋଇଯାଏ ଅଶାସ୍ତ୍ରୀୟ ମଙ୍ଗଳ ।" (ନିତ୍ୟ ନିସ୍ମିତ)

କମଳାକାନ୍ତ ସାମାଜିକ ଅଙ୍ଗୀକାର ଓ ଦାୟିତ୍ୱବୋଧ ପ୍ରତି ସଚେତନ । ଶୋଷଣ ଓ ଅବ୍ୟବସ୍ଥା ବିରୁଦ୍ଧରେ ତାଙ୍କର ପ୍ରତିବାଦ ତୀବ୍ର ସୁସ୍ପଷ୍ଟ । ସମକାଳୀନ ସମାଜର ଅବ୍ୟବସ୍ଥା ବିରୁଦ୍ଧରେ ଅନେକତ୍ର ତାଙ୍କ କବିତା ନୀରବ ପ୍ରତିବାଦ । କିନ୍ତୁ ସବୁଠି ରହିଛି ଗଭୀର ଆଶା ଓ ବିଶ୍ୱାସ । ଦୃଷ୍ଟିଭଙ୍ଗୀ ବ୍ୟଙ୍ଗାତ୍ମକ ନିଷ୍ଠୁର । କିନ୍ତୁ ସ୍ୱର ନିର୍ଭୀକ, ମଣିଷପ୍ରତି ସମ୍ବେଦନଶୀଳତା ଓ ମମତ୍ୱ କିଛି କମ୍ ନୁହେଁ । ସବୁ ଗତାନୁଗତିକତାର ନିଗଡ଼କୁ ଭାଙ୍ଗି ଏକ ପୂର୍ଣ୍ଣତର ଜୀବନ ସନ୍ଧାନରେ ସେ ଭରସା ରଖନ୍ତି । 'ଭାଙ୍ଗିଦିଅ ମିନାକରା କୋଠଘର ଆଭିଜାତ୍ୟ/ଜାଳିଦିଅ ଦେହ ଏବଂ ରକ୍ତର ହେଂତାଳ/ଫିଙ୍ଗିଦିଅ ମଣି ମୁକ୍ତା ଧୂପ ଦୀପ ଚନ୍ଦନ କାଠର/ଅପୂର୍ବ ବାସ୍ନାର ମତ୍ତ ସମସ୍ତ ଗର୍ବକୁ ।" (ସନ୍ନ୍ୟାସ — କବିତାର ମୁହଁ)

କବି ତେଣୁ ନୈତିକ ଅଧୋଗତି ବିରୁଦ୍ଧରେ ସ୍ୱର ତୋଳନ୍ତି । ସକଳ ଯନ୍ତ୍ରଣା ଓ ଦୁଃସ୍ଥିତି ଭିତରେ ଜୀବନକୁ ଗ୍ରହଣ କରି ନେବା ପାଇଁ ପ୍ରବର୍ତ୍ତାନ୍ତି । ସମସ୍ତ ଅତ୍ୟାଚାର ଓ ପୀଡ଼ନକୁ ଦୂରକୁ ଠେଲି ବାସ୍ତବତାର ସାମ୍ନାସାମ୍ନି ହେବାକୁ ଆହ୍ୱାନ ଦିଅନ୍ତି । ଏ ଦୃଷ୍ଟିରୁ, 'ତୁମେ ଯେଉଁମାନେ ଆସୁଛ' କବିତାଟିକୁ ନିଆଯାଇ ପାରେ । କବିତାଟି ଉତ୍ତର ପୁରୁଷଙ୍କ ପାଇଁ ଉତ୍ସର୍ଗୀକୃତ । କବି ଏଠି ସମାଜ ସତର୍କ । ସାଂପ୍ରତିକ କାଳ ଦୁର୍ଦ୍ଦିନ, ସ୍ଥିତି-ବିପନ୍ନ, ଜୀବନ ଭରସାହୀନ । ଯେଉଁ ସରଳ ନିଷ୍ପାପ ଶିଶୁମାନେ ଆଗାମୀକାଲି ଆସିବେ ଏ ସୁନ୍ଦର ପୃଥିବୀକୁ ସେମାନଙ୍କ ପାଇଁ ନା ଅଛି ସ୍ୱପ୍ନ, ନା ସଂଭାବନା । କବିଙ୍କର ଦୁଃଖ ସେଇଠି । କବି ସେମାନଙ୍କୁ ନିରାଶାର ଅପନ୍ତରାରେ ଛାଡ଼ିଦେବେ ନାହିଁ । ସାହସ ଦେବେ । ଆଗକୁ ମାଡ଼ି ଯିବା ପାଇଁ ଦେବେ ପ୍ରେରଣା । ତାଙ୍କର ସବୁ କିଛି ସଞ୍ଚିତ ପୁଣ୍ୟ, ସଂବେଦନା ଓ ପ୍ରତ୍ୟୟକୁ ପୁଞ୍ଜି କରି ସେମାନେ ଜୀବନ ରାସ୍ତାରେ ଆଗେଇ ଯିବେ । ବକ୍ତବ୍ୟ ତେଣୁ—'ଯୁଦ୍ଧିବିତ ଯୁଦ୍ଧ/ମନା ନାହିଁ/ × × × ମୁଠାଏ ମିଠା ହସରେ ତାଙ୍କି ରଖିବ ଦୁଃଖକୁ/ଉଚ୍ଚ ପିଣ୍ଡାରେ ଥାନ ପାତି ଦେବ ଦୁଷ୍ମନ୍‌କୁ/ନିରାସକ୍ତରେ କୁଣ୍ଢେଇ ଧରିଥିବା ଜଗତଟାକୁ ଯେ ଛଳ ଛଳେଇ ବନ୍ଧ ଯାଉଥିବ ପ୍ରେମ-ଜଳ ଜଳେଇ ଲେଉଟାଣି ଫେରି ଆସୁଥିବ ତୁମ ପାଖକୁ ଆପଣା-ପଣର ସମ୍ବୋଧନ ।' (ତୁମେ ଯେଉଁମାନେ ଆସୁଛ—ଗୀତ ଗା' ନା ରେ ଏକ୍ଷୀ) କବିତାଟିରେ କବିଙ୍କ ଜୀବନବୋଧ ସୁସ୍ପଷ୍ଟ । ଗୋଟିଏ ପଟେ ତା'ର ସାମାଜିକ ସଙ୍କଟ,

ମତ ଅଭିମତ ଭିନ୍ନମତ ॥

ଦୁଃସ୍ଥିତି ଆଉ ଅନ୍ୟ ପଟେ ସହାନୁଭୂତିଶୀଳ କବି ମନ ଯେଉଁ କବିତାଟି ଗଢ଼ିଛି, ଏହାର
ଆବେଗ ଓ ପ୍ରାଣ ଶକ୍ତି ମଧ୍ୟ କିଛି କମ୍ ନୁହେଁ ।

କମଳାକାନ୍ତଙ୍କ କବିତାରେ ସମାଜର ଅନ୍ୟାୟ ଓ ଅବ୍ୟବସ୍ଥା ବିରୁଦ୍ଧରେ ବିଦ୍ରୋହର ସ୍ୱର ଅନେକତ୍ର । ଅବଶ୍ୟ କେଉଁଠି କେମିତି କ୍ଷେତ୍ରରେ ଋଜୁତା ଭିତରେ ଶିଳ୍ପ ଗୁରୁତ୍ୱ ଓ ସୌନ୍ଦର୍ଯ୍ୟ ବାଧାପ୍ରାପ୍ତ ହୋଇଛି ସତ, ତଥାପି ଅନ୍ତରଙ୍ଗ ଏବଂ ସମ୍ବେଦନଶୀଳ କବି ମନ୍ ଦୃଷ୍ଟିରୁ ତାଙ୍କର ସାମାଜିକ ଭୂମିକାଟିକୁ ଅସାର ବୋଲି କହି ହୁଏ ନାହିଁ । କବିତା ତାଙ୍କ ପାଇଁ ନୀରବ ପ୍ରତିବାଦ ନିଶ୍ଚୟ, କିନ୍ତୁ ସର୍ବୋପରି ସମସ୍ତ ଯନ୍ତ୍ରଣା, ବିଷାଦ, ଦୁଃସ୍ଥିତି ଓ ସଂଗ୍ରାମ ଭିତରେ ଜୀବନକୁ ଚିହ୍ନାଇବା ତାଙ୍କ କାବ୍ୟ ପୁରୁଷ ପକ୍ଷରେ ବଡ଼ କଥା ।

ନିରଞ୍ଜନ ବେହୁରିଆ
ଅଧ୍ୟାପକ, ଓଡ଼ିଆ ବିଭାଗ
ଗୁନ୍ଦବାଲି କଲେଜ, ଗୁନ୍ଦବାଲି
୧୪ । ୧୦ । ୮୮

# ମହକାଇବାର ନିଶା

କବି ମହକେ, ତେଣୁ ମହକାଏ । ମହକି ମହକାଇବା, ଧର୍ମତଃ ପ୍ରତ୍ୟେକ ମଣିଷ ପାଇଁ ଏଇଟି ହେଉଛି ଯଥାର୍ଥରେ ଏକ ଈଶ୍ୱରୀୟ ଆହ୍ୱାନ । ପ୍ରତ୍ୟେକ ମଣିଷ ଭିତରେ କବିଟିଏ ଲୁଚି ରହିଥାଏ, କବିଟିଏ ନିର୍ଦ୍ଦେଶନା ଦେଉଥାଏ । ଠିକ୍ ସେମିତି ପ୍ରତ୍ୟେକ ମଣିଷ ଭିତରେ ନିର୍ଦ୍ଦିଷ୍ଟ କଳାଟିଏ, ଗୌରବଟିଏ । ତେଣୁ ସାହସଟିଏ ଲୁଚି ରହିଥାଏ ଏବଂ ନିର୍ଦ୍ଦେଶନା ଦେଉଥାଏ । ସେହି କଳା, ସେହି ଗୌରବ ଏବଂ ସାହସକୁ ଆମେ ସଂପୂର୍ଣ୍ଣ ପ୍ରାସଙ୍ଗିକତା ସହିତ ଈଶ୍ୱର ବୋଲି କହିପାରିବା । ଈଶ୍ୱରଙ୍କ ପ୍ରତି ଆଦୌ କୌଣସି ଅବମାନନା ନ ଦେଖାଇ ଆମେ ତାହା କହିପାରିବା । ଏହି ଈଶ୍ୱର ନଥାନ୍ତି, ସେ ଠାବ ହୁଅନ୍ତି ଆପଣାର ଆକାଶ ତଥା

ଭୌିର କୁଣ୍ଡଗୁଡ଼ିକୁ ଚିହ୍ନୁଥିବା ସଙ୍ଗେ ସଙ୍ଗେ, ଏବେଶକ ଚିହ୍ନିବାକୁ ମନ କରୁଥିବା ସଙ୍ଗେ ସଙ୍ଗେ ଅମ ଈଶ୍ୱର ନୂଆ ନୂଆ ହୋଇ ଜନ୍ମଲଭ କରୁଥାନ୍ତି । ନବ ନବ ଜାୟତେ ଜାୟମାନଃ,— ସମ୍ଭବତଃ ଶାସ୍ତ୍ର ଲେଖିଥିବା ମଣିଷ ଭିତରର କବିଟିଏ ଏପରି କହିବାକୁ ସାହସ କରିଛନ୍ତି । ନୂଆ ଈଶ୍ୱରଟିଏ ଆବିଷ୍କାର କଲେ ହିଁ ପୁରୁଣା ଈଶ୍ୱର ପିତୁଳା ହୋଇ ଯାଆନ୍ତି । ସେତେବେଳେ ପିତୁଳାଟିକୁ ଫାଡ଼ି ଦେବାକୁ ଇଚ୍ଛା ହୁଏ, ତାଙ୍କୁ ଫାଶୀରେ ଲଟକାଇ ଦେବାକୁ ଇଚ୍ଛା ହୁଏ । ଈଶ୍ୱର ବଢ଼ୁଥାନ୍ତି ଓ ଅମର ଭିତରେ ନୂଆ ମନ୍ଦିରର ଅବୟବକୁ ସୃଷ୍ଟି କରୁଥାନ୍ତି । ପିତୁଳାଗୁଡ଼ାକ ଫାଡ଼ି ହୋଇ ଯାଉଥାନ୍ତି, ଫାଶୀ ପାଆନ୍ତି, ପଛରେ ପଡ଼ି ରହନ୍ତି । ମଣିଷକବି ଆଗକୁ ଚାଲିଯାଏ ।

ଏଇଟି ହେଉଛି ଉତ୍ତରଣର ପ୍ରକ୍ରିୟା; ଏହାକୁ ତୁମେ ଆରୋହଣ ବୋଲି କହିପାରିବ ଏବଂ ଅତିକ୍ରମଣ ବୋଲି ମଧ୍ୟ କହିପାରିବ । କବି କମଳାକାନ୍ତ ତାଙ୍କର ପ୍ରଥମକାଳୀନ ଗୋଟିଏ ଗ୍ରନ୍ଥର 'ଉତ୍ତରଣ' ବୋଲି ନାମକରଣ କରିଥିଲେ । ସେତେବେଳେ ସେ କାବ୍ୟୋଦ୍ୟମରେ ଯେଉଁ ପାହାଚରେ ଥିଲେ, ସେଠାରେ ତାଙ୍କ ସହିତ ସାଙ୍ଗ ଭଳି ଠିଆ ହେଲେ ପରବର୍ତ୍ତୀ ପାହାଚଗୁଡ଼ିକ ଅର୍ଥାତ୍ ଉତ୍ତରଣଗୁଡ଼ିକ କେଡ଼େ ଉଜ୍ଜ୍ୱଳ ହୋଇ ଦିଶି ଯାଉଥିଲେ । ତାହା ପ୍ରାୟ ପଚିଶିବର୍ଷ ତଳର କଥା । ଇତି ମଧ୍ୟରେ ସେ ଆହୁରି କେତେ କବିତା ବହି ଲେଖି କେତେ ପାହାଚ ପାରିହୋଇ ଆସିଲେଣି । କବିତାର ମୁହଁକୁ ଦେଖିବାର ଆଳରେ ନିଜ ମୁହଁକୁ ଦେଖିବାର ଏକ ପୃଷ୍ଠଭୂମି ସୃଷ୍ଟି କଲେଣି, ସ୍ରୋତକୁ ହିଁ ନାମ ରତ୍ନ ବୋଲି ଦେଲେଣି, ପକ୍ଷୀମାନଙ୍କୁ ଗୀତ ନ ଗାଇବାକୁ ଅନୁରୋଧ କଲେଣି, ଦୁଃଖ ସହ କଥାବାର୍ତ୍ତାରେ ମଜ୍ଜିଲେଣି ଏବଂ 'ଉନ୍ମୋଚନ' ଏବଂ 'ଚିରାୟତ' ପାଖରେ ଆସି ପହଞ୍ଚିଲେଣି । ସମ୍ଭବତଃ ଆପେ ଆଗ୍ରହ ପ୍ରକାଶ କରି ଆପଣାର ଶ୍ରେଷ୍ଠ କବିତାଗୁଡ଼ିକର ଏକ ସଂକଳନ ବାହାର କଲେଣି । 'ସ୍ରୋତର ନାମ ରତ୍ନ' ଲାଗି ସାହିତ୍ୟ ଏକାଡେମୀରୁ ପୁରସ୍କାର ଲାଭ କଲେଣି । ହାଉଆର ହୁକୁମ ମାନି ନିଜ କବିତାକେତୋଟିର ଇଂରାଜୀ ଅନୁବାଦ କରାଇ ବହି ଆକାରରେ ଛପାଇ ସାରିଲେଣି । ତାଙ୍କର ସୂଚନା ଅନୁସାରେ ସେ ଏବେ 'ଡ଼ାଏରି କବିତା'ରେ ମନୋନିବେଶ କରିଛନ୍ତି । ତାଙ୍କର କବିତାକୃତି ଉପରେ ଦୃଷ୍ଟିପାତ କରାଯାଇ ବହିଟିଏ ପ୍ରକାଶିତ ହେଲାଣି । ଆହୁରି ଅଧିକ ଦୃଷ୍ଟିପାତ ନିମନ୍ତେ ଉଦ୍ୟମ ଏବଂ ଏଷଣା ମଧ୍ୟ ଅବ୍ୟାହତ ରହିଛି ।

ଅର୍ଥାତ୍, ଉତ୍ତରଣ ଲାଗିରହିଛି । ଆତ୍ମ-ଅବଲୋକନର ଅସରନ୍ତି ଅଧ୍ୟାୟକୁ

ମତ ଅଭିମତ ଭିନ୍ନମତ ॥

ଦୃଶ କରିବା'ର କବିପ୍ରୟାସ ଲାଗିରହିଛି । କୋଉଠି ନିତ୍ୟନୈମିତ୍ତିକ ମଣିଷଟିର କାନ୍ଧ ଉପରେ ହାତ ଦେଇ କବି ମଣିଷଟି ଫକ୍ କରି ଆଗକୁ ଡେଇଁ ପଡ଼ିବାକୁ ଇଚ୍ଛା କରୁଛି । ନିତ୍ୟନୈମିତ୍ତିକ ମଣିଷଟି ପାଇଁ ସେସବୁ ଅଣଆୟତ୍ତ ମୁହୂର୍ତ୍ତ ପରି ପ୍ରତୀତ ହେଉଛି । ସିଏ ହଟିଅବା ଶଙ୍କିଯାଉଛି । ପୁଣି ଯେତେବେଳେ କବିମଣିଷଟି ବାହନ ହୋଇଛି ତ ନିତ୍ୟନୈମିତ୍ତିକ ମଣିଷଟି ତା' କାନ୍ଧଉପରେ ଯାଇ ବସିଛି । ତାକୁ ଅଙ୍କୁଶ ମାରି ନିଜର ଜ୍ୟାମିତି ଅନୁସାରେ ଅଡ଼ାଇ ନେବାକୁ ବାହାରିଛି । ଏମିତି ଦ୍ୱନ୍ଦ୍ୱ ଲାଗିରହିଛି । ତେଣୁ ଚାହିଁ ଏହି ନିତ୍ୟନୈମିତ୍ତିକ ପୃଥିବୀଟି ଭିତରୁ ଚିତ୍ରରୂପଗୁଡ଼ିକୁ ସାଉଣ୍ଟି ଆଣି ହେଉଛି, ଶେଷଗୁଡ଼ିକୁ ସୁଶ୍ରାବ୍ୟ ନିରାବଧ ଚମକ ଆଣି ଦେଇହେଉଛି । ଆପଣାକୁ ସତେଅବା 'ଏକା ଏକା ବାଦଶାହ' ପରି ମନେ ହେଉଛି । ଆଧୁନିକ ଏକାଧିକ କବି ଏହିପରି ସ୍ୱରରେ ବଡ଼ ବିଡ଼ମ୍ବନାରେ ପଡ଼ିଯାଆନ୍ତି । ବିଡ଼ମ୍ବନାର ଶାବ୍ଦିକ ଚିତ୍ରା-ଲେଖାଟି ଭିତରେ ରସାଳତା ଭରି ରହିଥାଏ, ବେଳେବେଳେ ରସୋତ୍ତୀର୍ଣ୍ଣ ହୋଇ ଯାଉଥିବା ପରି ଏକ ପ୍ରତିଭାସ ମଧ୍ୟ ସୃଷ୍ଟି କରୁଥାଏ, ତଥାପି ବିଡ଼ମ୍ବନା ହିଁ ଚମ୍ପା-ସାଅନ୍ତାଣୀ ହୋଇ ରହିଥାଏ । ଉତ୍ତରରେ କ୍ରମରେ ହୁଏତ ଆଉ ଗୋଟିଏ ଭୂମି ରହିଛି । ଯେଉଁଠାରେ କବିମଣିଷ ଏବଂ ନିତ୍ୟନୈମିତ୍ତିକ ମଣିଷ ଭିତରେ ଏଠି ଲାଗିଥିବା ସମ୍ବନ୍ଧ ଟଣାଓଟରା ବନ୍ଦ ହୋଇଯାଏ । ବାସନା ଥାଏ, ମାତ୍ର ଭିତରେ କେହି ବଞ୍ଚିତ ହୋଇ ରହିଥିବା ପରି ଆଦୌ କ୍ରୋଧ ବା ବିଳାପ କରୁନଥାଏ । ଗତିଶୀଳତା ଶତକଡ଼ା ଶହେ ମାତ୍ରାରେ ରହିଥାଏ, ମାତ୍ର ପଳାୟନର କୌଣସି ପ୍ରୟୋଜନ ନଥାଏ । ଆପଣାର ମହକଟିକୁ ପାଇଥିବା ହେତୁ ଯେତେବେଳେ ପୃଥିବୀଟାଯାକ ମହକ ଉଠୁଥିବା ପରି ପ୍ରତ୍ୟକ୍ଷ ହୁଏ । ସିଏ ହେଉଛି ଏକ ଅନ୍ୟ ଉନ୍ମୋଚନର କଥା ।

'ଉନ୍ମୋଚନ' କବିତା-ସଂକଳନରେ କବି କମଳାକାନ୍ତ ଲେଙ୍କା କବିକୁ ଜଣେ ଅଜବ ଲୋକ ବୋଲି କହିଛନ୍ତି । 'କୁହୁଡ଼ିରେ ପହଁରିବା ତା' କାମ/ରଙ୍ଗ-ହାଣ୍ଡିରେ ବୁଡ଼ିଯିବା ତା' ଢଙ୍ଗ' ବୋଲି କହିଛନ୍ତି । ପୁଣି, 'ବିଦେଶ-ଆଷାଢ଼' ନାମକ ଆଉଗୋଟିଏ କବିତାରେ, 'ଗୋଡ଼ କାଟିଲିମାତ୍ରେ/ବିଦେଶ/ଯେ ଏମିତି ଲାଗେ/ତା ପାଇଁ ଘର ଗୋଟେ ଗୁମ୍ଫା/ବାହାର ଏକ ଜଙ୍ଗଲ, ଟେକି/ଝୁଲୁଥିବା ଅଲଗା ପବନ ଭଳି/ପୃଥିବୀ । ତାଙ୍କର 'ଘର' କବିତାରେ ପାପ, ଆନୁଗତ୍ୟ, ବୁଝାମଣା ଓ ଭଲପାଇବା ଭିତରେ ସତେଯେମିତି ଗୋଟାଏ ଚଉକଡ଼ିଆ ଯୁଦ୍ଧ; ଦଉଡ଼ିଗୁଡ଼ିକ ହାତରେ ରହିଛି, ତଥାପି ଯେପରି ଆଦୌ କୋଉଟାକୁ ହେଲେ ପାଉନାହିଁ । ଏବଂ, 'ଯୁଦ୍ଧ' ବୋଲି ନାମିତ ଆଉଗୋଟିଏ କବିତାରେ 'ଗଡ଼ଡ଼ାଲିକାର ନଡ଼ାଣିରେ, ଶଗଡ଼ଗୋଲାର

ଧାରାବାହିକତାରେ/ଏମିତ ରଚିବା, ମିଛିମିଛିବାର ବିରୋଧରେ ସେ ସତେଅବା ଅଉ କାହାକୁ ଅଥବା ଆଉ କାଅଣଟିଏକୁ ଝୁଁକ ଝୁଁକ ଯୁଦ୍ଧଘୋଷଣା କରିଛନ୍ତି ଏବଂ ସତେ-ଅବା ଅତ୍ୟନ୍ତ ଅପ୍ରସ୍ତୁତ ଭାବରେ 'ଚନ୍ଦ୍ର' କବିତାରେ ଅହଙ୍କାର କେଉଁ ସୁଡଙ୍ଗ ର ଭିତରର ମନକଥା କୋଇପଦକୁ କହି ପକାଇଛନ୍ତି, ଆପଣାକୁ ଅନ୍ତର୍ଯାମୀ ମିତାର ଗୋପନ ଇଚ୍ଛାଟିକୁ ପ୍ରକଟ କରି ଦେଇଛନ୍ତି, ସେତେବେଳେ ବହିର ପ୍ରତ୍ୟେକ ପୃଷ୍ଠା ତାଙ୍କୁ କହ୍ନଗଢ ପରି ମନେହୋଇଛି । ସେହି ବହିଟି ହେଉଛି 'ସୋନା ଗଡନ'ର ବହି । ଏହି ଯାଂତ୍ରଣାସ୍ତ ଦ୍ୱନ୍ଦ୍ୱ ଓ ବିଡ଼ମ୍ବନାରେ କବି କମଳାକାନ୍ତଙ୍କୁ ମହୌଷଧି ପରି ଆଶ୍ୱାସନା ଆଣି ଦେଉଛି, ଅର୍ଥସ୍ୱୀକୃତାର ସୁଡ଼ଙ୍ଗରେ ଘୁଞ୍ଚୁଚି ଝୁଲୁଥିବା କାର୍ଯ୍ୟକ ବ୍ୟାଧି ।

'ଉନ୍ମୋଚନ'ର ଶେଷ ଅଂଶକୁ ଶ୍ରୀଯୁକ୍ତ ଲେଙ୍କା ଭୂବନମାନ ଯେଉଁ କବିକୁ ଠାବ କରିଛନ୍ତି ଓ ତାହାଙ୍କୁ ଉଦ୍‌ବୋଧିତ କରି ଆଣିବାକୁ ଇଚ୍ଛା କରିଛନ୍ତି, ତାଙ୍କୁ ସେ 'ଈଶ୍ୱରଙ୍କ ମାଆଁଲା ଶତ୍ରୁ' ବୋଲି କହୁଛନ୍ତି (ପୃଷ୍ଠା ୫୮) । ସତେଅବା ଏକ ଆତ୍ମପୀଡ଼ନ ରଥର ଚକ୍ରବର୍ତ୍ତୀ ହୋଇ ତାଙ୍କୁ 'ନିଜ ବିପକ୍ଷରେ ଲଢୁଥିବା ପ୍ରଥମ ଶହୀଦ' ବୋଲି ବର୍ଣ୍ଣନା କରିଛନ୍ତି । ନିଜ ଭିତରର ପିତୁଳାଗୁଡ଼ାକର ଉପଦ୍ରବରେ ପୀଡ଼ିତ ହୋଇପଡୁଥିବା ମଣିଷ ଅନେକ ସମୟରେ ଏହିପରି ଅଭିମାନ କରିଥାଏ । ସେତେବେଳେ କବିତା ମଧ୍ୟ ଏକ ପିତୁଳାରେ ପରିଣତ ହୋଇଯାଏ । ନବ ଶକଳରେ କବିତାକୁ ଆବେଶ ଧରି ମୁକ୍ତି ପାଇବ ବୋଲି ଅହଂକାର କରୁ କରୁ ତା'ର କବିତା ତାକୁ ଜାଲ ପରି ବାନ୍ଧିପକାଏ, ଜାଲପରି ଆବୋରି ପକାଏ । କମଳାକାନ୍ତ କହନ୍ତି, ସେ ଫରାସୀ କବି ର‍ଁବୋଙ୍କ କବିତାଦ୍ୱାରା ଅତ୍ୟନ୍ତ ପ୍ରଭାବିତ ହୋଇଛନ୍ତି । ର‍ଁବୋଙ୍କର ଜୀବନରେ କବିତା ମାତ୍ର କେତୋଟି ବର୍ଷର । ଜୀବନ ଭିତରେ ସତେଯେପରି ଆଉ ଗୋଟାଏ ଜୀବନ । ପ୍ରାୟ ଏକ ବିସ୍ଫୋଟ ପରି । ସେଥିରେ ଉତ୍ତରଣର ଆଦୌ କୌଣସି ଚିହ୍ନ ନାହିଁ; ଏକ ସାମୟିକ ବିହରଣ ଏବଂ ଉଚ୍ଚାଟନ ରହିଛି ଏବଂ ତା' ପରେ ନିଷ୍କ୍ରମଣରେ ଶାନ୍ତିଲାଭ କରିଛି, ନିର୍ବାପିତ ହୋଇଯାଇଛି । ର‍ଁବୋଙ୍କର ସମକାଳୀନ ଫ୍ରାନ୍‌ସ ଏବଂ କମଳାକାନ୍ତଙ୍କର ଏବର ଓଡ଼ିଶା, ଦୁଇଟା ଅଲଗା ମାଟି, ଏକାବେଳେକେ ଅଲଗା ଅଭିମନ୍ତ୍ରଣ । ଏକଦା 'ଉତ୍ତରଣ'ର କବି କମଳାକାନ୍ତଙ୍କୁ ର‍ଁବୋ ଏବଂ ବୋଦ୍‌ଲେଆର୍‌ ପିତୁଳା ହୋଇ କାମୁଡ଼ି ଧରିଛନ୍ତି ଓ ତାଙ୍କୁ ସତେଅବା 'ଅଣଆତ୍ମଜ' କରି ରଖିଛନ୍ତି କି ?

'ଶରଣ୍ୟତ' ସଙ୍କଳନଟି 'ଉନ୍ମୋଚନ'ର ପ୍ରାୟ ସମକାଳୀନ । ସଙ୍କଳନର

ଦ୍ୱିତୀୟ କବିତାଟିରେ ହିଁ ଶ୍ରୀଯୁକ୍ତ ଲେଙ୍କା ପାଠକମାନଙ୍କର ଚେତନା ଲାଗି କବି ଭୀମଭୋଇଙ୍କର ସ୍ମରଣ ଆଣି ଦେଇଛନ୍ତି । 'କବି ମାନେଇ ଅନ୍ଧ/ଭୀମଭୋଇଙ୍କ ବଂଶଧର/ବୋଲି କହିଛନ୍ତି । ମାତ୍ର ତା'ର ଅବ୍ୟାହିତ ପରେ ହିଁ ସେ ପାଠକମାନଙ୍କୁ ତଥା ଭୀମଭୋଇଙ୍କୁ ମଧ୍ୟ ପ୍ରାୟ ଏକ ଧର୍ମସଙ୍କଟରେ ଆଣି ପକାଇ ଦେଇଛନ୍ତି । ଯେଉଁ କବି ଭଲମନ୍ଦକୁ ଚିହ୍ନଟ କରେ, ତାହାକୁ ସେ ମୂଢ଼ ବା ପାମର ବୋଲି କହିଛନ୍ତି । ଗୋଟିଏ ଆଖି ଅଛି, ଯାହା ମାନେ ଏବଂ ମାନିବାକୁ ହିଁ ନୀତି ବୋଲି କହେ । ଆଉ-ଗୋଟିଏ ଆଖି ଅଛି, ଯାହା ଆଦୌ କିଛି ମାନେନାହିଁ ଏବଂ ସେହି କିଛି ନମାନିବାଟାକୁ ହିଁ ମୁକ୍ତି ବୋଲି ବିଚାରେ । ଭୀମଭୋଇ ଏହି ଦୁଇଟି ଭିତରୁ କୌଣସି ଗୋଟିଏ ନାଟର ନଥିଲେ । ଆପଣାର କବି ରୂପରେ ଭୀମଭୋଇ ଆଦୌ ଅନ୍ଧ ନଥିଲେ, ସେ ଯଥାର୍ଥରେ ଚକ୍ଷୁଷ୍ମାନ୍ ଥିଲେ । ସେ ଦୁଃଖକୁ ଝଙ୍କୁଣି କରିନଥିଲେ । ବରଂ, ଆପଣାର ଦୁଃଖକୁ ବିଶ୍ୱପ୍ରତିକୁ ଉତ୍ତୋଳିତ କରି ନେଇଥିଲେ । ଗାଁ ବୋଲଙ୍କ ପରି ବିଶ୍ୱ ସହିତ ସେ କୌଣସି ଝଗଡ଼ା କରିନଥିଲେ । ଉତ୍ତରଣର ଜୀବନଯାତ୍ରାରେ ଭୟ ହେଉଛି ଆଉ ଏକ ସମ୍ଭାବନା । ପ୍ରତ୍ୟେକ କବି ନିମନ୍ତେ ମଧ୍ୟ ଏକ ଆହ୍ୱାନ । କବି ଇଚ୍ଛା କଲେ ଆପଣା ଲାଗି ଗୋଟିଏ ଗମ୍ଭୀର ତିଆରି କରି ତାହାରି ଭିତରେ ପୁନର୍ବାର ସତେଅବା ଏକ ଦାୟିତ୍ୱହୀନତାର ଜଠରକୁ ଫେରିଯାଇ ସେଇଠି ଉଲ୍ଲସିତ ଭାବରେ ନିଜକୁ ବେଶ୍ ସୁରକ୍ଷିତ କରି ରଖିବ, ପାତାଳ ଭିତରେ ସ୍ୱର୍ଗକୁ ଗଢ଼ିବ, ଏକା ଏକା ବାଦଶାହ ମଧ୍ୟ ହୋଇପାରିବ । ମାତ୍ର ଉତ୍ତରଣଠାରୁ ବହୁଦୂର ହୋଇ ରହିଯିବ । ଭୀମଭୋଇ ଆଖି ନଥାଇ ମଧ୍ୟ ଆଖି ବୁଜି ନିଜ ସହିତ କନ୍ଦଳ କରୁଥିବ ।

ଏହି ସଙ୍କଳନଟିରେ କବି କମଲାକାନ୍ତ ମିଛ ପୃଥିବୀଟିଏ ନେଇ ସ୍ୱପ୍ନ ଦେଖିଛନ୍ତି ଓ ସେହି ଶୀର୍ଷକରେ କବିତାଟିଏ ଲେଖିଛନ୍ତି । କେତେ ସୁଠାମ ଏବଂ ସବିଶ୍ୱାସ ଭାବରେ ସେ 'ଗୋଡ଼ ମାଟି ନଈ ହୋଇ ବହିଯାଉ', ଚଳଚଳ ଆଖିର ଶୂନ୍ୟତା କଳାମେଘର ଚେହେର ହଉ' ଓ 'ସାଦାସିଧା କଥା ଝିଅ ନୂଆ ମଣିଷର ବଞ୍ଚିବାର ଧାରା ହଉ' ବୋଲି ସ୍ୱପ୍ନ ଦେଖିଛନ୍ତି । ଆଉଗୋଟିଏ କବିତାରେ [ପୃଷ୍ଠା-୬୪] ସେ ନିଜ ସହିତ ଯୁଦ୍ଧ କରି ହାରିବା ନିଶ୍ଚିତ ବୋଲି ଜାଣିଥିଲେ ମଧ୍ୟ 'ତଥାପି କେଉଁ ସାହସରେ' ପ୍ରଭୃତି ମୁହୂର୍ତ୍ତ ଯୁଝିବାର କଥା କହିଛନ୍ତି । ସେ ପରିଧି ବାହାରେ ରହି ପରିଧି ଭିତରେ ଘୁରୁଥିବା ଜଣେ ମଣିଷ ପରି ନିଜର କଳ୍ପନା କରିଛନ୍ତି । ନିଜକୁ ନିଜେ ଖୁଣ୍ଟୁଛନ୍ତି, ନିଜେ ନିଜର ପ୍ରତିପକ୍ଷ ହେଉଛନ୍ତି । ତାହାହିଁ ସ୍ୱାସ୍ଥ୍ୟର ଲକ୍ଷଣ, ତାହା ଉତ୍ତରଣର ଲକ୍ଷଣ ।

|| କବି କମଲାକାନ୍ତ

'ତା' ଭିତରେ ତାହାଠାରୁ ଅଛି ଯେଣୁ ଶକ୍ତିଶାଳୀ,/ଛଦ୍ମବେଶୀ ହସ୍ତି 'ଦେବଶେଷ' ବୋଲି କହି କବି ଶ୍ରୀ ଲେଙ୍କା ଆପଣାର ଉତ୍ତରଣକୁ ଧରି ପକାଇ ଦେଇଛନ୍ତି । ଏଇ ମାନୁଷେ ସେଇ ମାନୁଷ୍ ଆଛେ ବୋଲି ବଙ୍ଗଦେଶର ବାଉଲ୍‌ମାନେ ଯାହା ଗାଆନ୍ତି, ଏହା ଠିକ୍ ସେହିପରି ଏକ କଥା, ଏଇ ମାନୁଷ୍ ପାଖରୁ ସେହି ମାନୁଷର ଉଦ୍ଦେଶ୍ୟରେ ମଣିଷର ଯେଉଁ ଅନୁକ୍ଷଣ ଯାତ୍ରା ଓ ଆତ୍ମ ଉନ୍ମୋଚନ, ତାହା ହେଉଛି ମଣିଷ ଭିତରେ ରହିଥିବା କ୍ରାନ୍ତଦର୍ଶୀ ବା କବିର ଯାତ୍ରା । ନିଜ ସହିତ ଦ୍ରୋହ କରୁଥିବା କିଛି ବ୍ୟତୀତ କୌଣସି ମନୁଷ୍ୟ ସେହି ଯାତ୍ରାକୁ ଫାଙ୍କି ଦେଇ ପଳାଇ ଯାଇପାରେନାହିଁ । ଚଉକାଠକୁ ଡେଇଁବାକୁ ହିଁ ପଡ଼ିବ, ଗୃହରେ ପ୍ରବେଶ କରିବାକୁ ପଡ଼ିବ । ଚିହ୍ନା ଗୃହ ଚୌକାଠ ହୋଇ ଯାଉଥିବ ଏବଂ ପରବର୍ତ୍ତୀ ସୋପାନଟି ମଧ୍ୟକୁ ପାଦପକାଇବା ଲାଗି ଉଚାଟ କରି ରଖିଥିବ ।-

କମଳାକାନ୍ତ ତାଙ୍କ କବିତାରେ ବ୍ୟବହାର କରିଥିବା ଶବ୍ଦଗୁଡ଼ିକ, ସମ୍ଭବତଃ ତାହାହିଁ ତାଙ୍କର ପାଠକମାନଙ୍କ ଲାଗି ସବୁଠାରୁ ବଡ଼ ଆକର୍ଷଣ । ଏହି ଶବ୍ଦବ୍ୟଞ୍ଜନା ସାଂପ୍ରତିକ ଓଡ଼ିଆ କବିମାନଙ୍କ ଭିତରେ କାହାରି ନାହିଁ । ଶବ୍ଦ କ'ଣ କେବଳ ଅଭିଧାନରୁ ଆସେ ? କବି ଉପେନ୍ଦ୍ର ଭଞ୍ଜଙ୍କୁ ଏକଦା ଅଭିଧାନ ଅଣ୍ଡିଳନାହିଁ ଯେ ସେ ନିଜ ପାଠକମାନଙ୍କର ପ୍ରୀତ୍ୟର୍ଥେ ଏକ ସ୍ୱତନ୍ତ୍ର ଗୀତାଭିଧାନ ରଚନା କରି ଦେଇଥିଲେ । ଅନୁଭବ ଦାନା ବାନ୍ଧିଲେ ଶବ୍ଦର ନିସ୍ୱନ୍ତା ଶଙ୍ଖ ଯୋଗାଇ ଦିଅନ୍ତି । ଶ୍ରଦ୍ଧା ଦାନା ବାନ୍ଧିଲେ ଶବ୍ଦମାନେ ସ୍ନେହର ଅବତାର ଗ୍ରହଣ କରି ଏକାବେଳେକେ ସମୀପରେ ଆସି ପହଞ୍ଚି ଯାଆନ୍ତି । ଏବଂ ଦୁଃଖ ଦାନା ବାନ୍ଧିଲେ ଶବ୍ଦବ୍ରହ୍ମ ସତେଅବା ସାକାର ସହୋଦର ହୋଇ ଆଗରେ ଆସି ଉଭା ହୋଇ ଯାଆନ୍ତି । ଏକଃମୃତା ନିଜ ଜୀବନର ସର୍ବପ୍ରଧାନ ଅଭୀପ୍ସାରେ ପରିଣତ ହୋଇପାରିଲେ ନିତ୍ୟାନ୍ତ ମୂକ ବସ୍ତୁଗୁଡ଼ିକ ବି କଥା କହିଉଠନ୍ତି, ଆପଣାର ଦୋସର ପରି ମନେହୁଅନ୍ତି । ଯାବତୀୟ ଶବ୍ଦ ସେତେବେଳେ ସତେଅବା କବିର ଇପ୍‌ସିତ ଏକ ସକଳ-ପ୍ରଭବ ସମର୍ଥ ଶବ୍ଦସାମାନ୍ୟକୁ ସ୍ପର୍ଶ କରି ରହନ୍ତି । ସେତେବେଳେ କବି ପାଖରେ ଶୈଳୀ ବୋଲି ସ୍ୱତନ୍ତ୍ର କିଛି ରହେନାହିଁ । ସେତେବେଳେ ଧୀଷଣାକୁ ମନ୍ଦରପର୍ବତ କରିବାର ସମସ୍ତ ଶ୍ରମକସରତ୍ ନିଷ୍ପ୍ରୟୋଜନ ହୁଏ । ଗୁଁବୋ ବି ପଛରେ ରହିଯାଆନ୍ତି । କମଳାକାନ୍ତଙ୍କର କବିତା ସମ୍ଭବତଃ ମୂଳତଃ ସେଇଥିପାଇଁ ଏତେ ଭଲ ଲାଗେ, ଆପଣା ଭିତରର ଗ୍ରହଣଶୀଳତାକୁ ତାହା ଏତେ ନିବିଡ଼ ଭାବରେ ସ୍ପର୍ଶ କରୁଥାଏ, କବିଙ୍କର ଆକୂତି ଭିତରେ ନିଜକୁ ଆବିଷ୍କାର କରିହୁଏ ।

ମତ ଅଭିମତ ଭିନ୍ନମତ ।।

ତଥାପି ବେଳେବେଳେ ଘରେ ଅଟକିଗଲା ପରି ମନେହୁଏ । କମଳାକାନ୍ତଙ୍କର ଦେହରୁ ମହକ ପାଇଁ ଆହୁରି ଉଡ଼ିଯିବା ଜମନ୍ତେ ମନ ହେଉଛନ୍ତି କେବେ କବି ଯେତେଥରେ ଘରେ ଜରାଣି କରିଦେଇ ତାଙ୍କପାଖରେ ଅନ୍ୟ ଡ଼େଣା ନାହିଁ ବୋଲି ଉତ୍ତର ଦଅନ୍ତି । ପାଠକ ଲାଗି ସମ୍ଭବତଃ ଏହାହିଁ ସବୁଠାରୁ ବଡ ଦୁଃଖ ଓ ଜଣେ କବିପାଇଁ ସବୁଠାରୁ ବଡ଼ ଅଭାବ । ଅଟକିଯିବା ହିଁ ଅଭାବ, କାଳହୋଇ ରହିବା ହେଉଛି ଅଭାବ, ତେଣୁ , ଆହୁରି ଅଧିକ ପାଇଁ ସର୍ବଦା ଅବକାଶ ରହିଛି । ଭୂ ଭୂମାରେ ପରିତେ ହୋଇଯିବାର ଜମଟିରେ ଟାଲି ଉଡ଼ି ପଳାଇବା ନୁହେଁ, ଉଡ଼ିଯିବାର ସକଳ ଆହ୍ୱାନ ସତ୍ତ୍ୱେ ଏହି ମାଟି ଉପରକୁ ଫେରି ଆସିବାର ଏକ ଅବକାଶ ସର୍ବଦା ରହିଛି । ଶଗୃର୍ଡ଼ ବାର୍ନ୍‌ଙ୍କର ଚଢ଼େଇ ଅଭ୍ୟସ୍ତ ସୀମାକୁ ଅତିକ୍ରମ କରି ଏକ ଅନ୍ୟ ଆକାଶକୁ ସ୍ପର୍ଶ କଲା ଏବଂ ତା'ପରେ ସତେଅବା ତା'ର ପରମବନ୍ଧୁ ଓ ପରମପ୍ରୀତି ଦ୍ୱାରା ନିର୍ଦ୍ଦେଶିତ ହୋଇ ଯେପରି ପୁନର୍ବାର ଅନ୍ୟ ଚଢ଼େଇମାନଙ୍କ ପାଖକୁ ଫେରି ଆସିଲା ଓ ନିଜ ଉତ୍ତରଣର କଥା କହିପାରିଲା, ଠିକ୍ ସେହିପରି ।

ତେଣୁ ଆତ୍ମୀ ଉତ୍ତରଣରୁ, ପରିପ୍ରଶ୍ନିତା ଫେରିଆସିବାରେ, ଏକାତ୍ମ ହେବାରେ । ଆମର ଏହି ବ୍ୟଥିତ ପୃଥିବୀରେ ଏକା ଏକା ବାଦଶାହ ବନିବାର ବହୁତର ପ୍ରଲୋଭନ ରହିଛି ସତ, ମାତ୍ର ସେହି ବିଷାଦରେ ପଡ଼ି, କବି ତଥାପି ତେଣେ ମନ କରିବନାହିଁ । ସିଏ ଫେରିବ, ଅତ୍ୟନ୍ତ ଜୀବନ୍ତ ଭାବରେ ଏଠାରେ ସେ ସବୁଟିକୁ ଆଦରିନେବ । ଏକ ଅନ୍ୟ ମମତାରେ କଥା କହିବ, ଭୀମଭୋଇଙ୍କ ପରି ନକ୍ଷୁଷ୍ଣାନ୍ ହେବ, ହୃଦ୍‌ବୃତ୍ତାରର ମହୋତ୍ସବରେ ସେ ନାୟକ ହେବ । 'ଢୋଲୁଚି'ର ଶେଷ ଦୁଇଟି କବିତା କବି କମଳାକାନ୍ତଙ୍କର ଏହି ପରବର୍ତ୍ତୀ ଉତ୍ତରଣଟି ବିଷୟରେ ତାଙ୍କୁ ଭଲ ପାଉଥିବା ପାଠକମାନଙ୍କର ମନରେ କେତେ ଭରସା ଯୋଗାଇ ଦେଉଛି । ଏହି କବିତା ଦୁଇଟିରେ ସେ ସତେ କେତେ ଖୋଲାଇ ହୋଇ ଯାଇଛନ୍ତି : ଫଳରେ ହୁଏତ ଅତ୍ୟନ୍ତ ଅଜାଣତରେ, ତାଙ୍କର ଢେଗୁଡ଼ିକ ମଧ୍ୟ ବଦଳି ଯାଇଥିବା ପରି ଲାଗୁଛନ୍ତି । ଏଠାରେ କମଳାକାନ୍ତ 'କାବୁଅ ପଙ୍କର ସତେଜ ନିର୍ଯ୍ୟତ'ର କଥା କହିଛନ୍ତି । 'ତବଲ ଭାତର ବାସ୍ନାକୁ ମନେ ପକାଇଛନ୍ତି । ବୋଦ୍‌ଲେଆର୍‌, କାମୁ ଗଁବୋ ତାହା କେବେହେଲେ କରିନଥିଲେ । କେଉଁ ଅଜାଣତରେ କମଳାକାନ୍ତ ନିଃଶ୍ୱାସଟିଏ ନେବାଠାରୁ ପ୍ରଶ୍ୱାସଟିଏ ଛାଡ଼ିବାକୁ ଅଧିକ କଷ୍ଟକର ବୋଲି ସ୍ୱୀକାର କରିଛନ୍ତି । 'ଘର ସର ଶରଧାତକ ଚପୁଡ଼ି ଦମକାଏ ପବନ ଭଳି ହସରେ ସବୁ

ମପାଚୁପା ଶବ୍ଦର ଆଡସବାଜିକୁ ଉଡ଼ାଇଦେବା'—ଏହା ଏକ ଅନ୍ୟ ସ୍ୱର, ସମ୍ଭବତଃ ତାହା କବିଙ୍କର ଅପେକ୍ଷମାଣ ପରବର୍ତ୍ତୀ ବାଦଶାହର ସ୍ୱର । ସାଂପ୍ରତିକ କାଳର ପାଠକ ସଚେତଅବା ସେହି ସ୍ୱରଟି ନିମନ୍ତେ କବିଆଡ଼କୁ ଗ୍ରୀବା ଟେକିଛୁ । କବି କମଳାକାନ୍ତ ସେହି ସ୍ୱରଟିର ଆଳାପ କଲାପରି 'ଦୂରକୁ ନିକଟ କରିବାର ଭାବ ଓ 'ଅଭାବକୁ ଭାବ କରିବାର ନିକଟତା' ବିଷୟରେ କହିଛନ୍ତି । କବି ଘରକୁ ଫେରି ଆସୁଥିବା ପରି ଲାଗୁଛି । ବାଇବେଲର ସେହି prodigal ପୁଅର ଘରକୁ ଫେରି ଆସିବା କଥା ଆପେଆପେ ମନେ ପଡ଼ିଯାଉଛି । ଏହି ଫେରି ଆସିବାଦ୍ୱାରା ହିଁ ପରବର୍ତ୍ତୀ ଉତ୍ତରଣଟିର ଘୋଷଣା କରିବାକୁ କେବଳ କବିତା ନୁହେଁ, ପୃଥିବୀର ଚେତନାମାନେ କ୍ରମେ ସଜ ହୋଇ ବାହାରିଲେଣି । ଆଧୁନିକ କବିତା ସମେତ ଆଧୁନିକ ସାହିତ୍ୟକାରିତା ସେଥିରେ କଣ୍ଠ ମିଳାଇ ବାହାରିଲଣି । ପୃଥିବୀର ଜୀବନ ଓ ଭାଗ୍ୟ ଏବେ ସେହି ଅଭିନବ ଉତ୍ତରଣ ଲାଗି ସଜ ହେଉଛି ।

ଚିତ୍ତରଞ୍ଜନ ଦାସ
୨୦ । ୫ । ୯୨

# ଦୁଃଖସୁଖର ଉଦ୍ୟାନ : ନିଷ୍ଟୁପ ମଧୁପର ସ୍ୱର — କମଳାକାନ୍ତଙ୍କ କବିତା

ସାଂପ୍ରତିକ ଓଡ଼ିଆ କବିତା କ୍ଷେତ୍ରରେ କବି ଶ୍ରୀ କମଳାକାନ୍ତ ଲେଙ୍କା ଜଣେ ଜଣେ ବେଶ୍ ସଚେତନ ଓ ସକ୍ରିୟ କାବ୍ୟଶିଳ୍ପୀ । ଚଳିତ ଶତକର ଷଷ୍ଠ ଦଶନ୍ଧିରୁ ଆଲୋଚ୍ୟ କାଳ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ସୃଷ୍ଟି ପ୍ରକ୍ରିୟାର ଶକ୍ତିଶାଳୀ ଓ କ୍ରିୟାଶୀଳ ହେଇ କାବ୍ୟିକ ପ୍ରବଣତାରୁ ସଂଜାତ— ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରତୀତି (୧୯୬୩), ଉତ୍ତରଣ (୧୯୬୬), ସ୍ମରଣ ବିସ୍ମରଣ (୧୯୬୩), କବିତାର ମୁହଁ (୧୯୭୪), ଅନ୍ତତଃ ନିଷ୍ଟୁପ (୧୯୭୫), ନିତ୍ୟ ନିସ୍ମିତ (୧୯୭୮), ସ୍ରୋତର ନାମ ରିତ (୧୯୭୮), ନିଜ ସହ ଗୋଟେ ସାକ୍ଷାତ୍କାର (୧୯୭୮), ଖସିବାର ବେଳ (୧୯୮୦), ଗୀତ ଗା'ନା ରେ ପକ୍ଷୀ (୧୯୮୨), ଛିତାଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ (୧୯୮୬), ଓ ଦୁଃଖ ସହ କଥାବାର୍ତ୍ତା [୧୯୮୬] ପ୍ରଭୃତି ତେର ଗୋଟି କାବ୍ୟ-ଗ୍ରନ୍ଥ । ଏହା ବ୍ୟତୀତ 'କମଳାକାନ୍ତଙ୍କ ଶ୍ରେଷ୍ଠ କବିତା' (୧୯୭୯),

ମତ ଅଭିମତ ଭିନ୍ନମତ ॥

କବିତା ଶ୍ରୀ ଓ ଧୀ (୧୯୭୭) ସଂପାଦିତ ଏବଂ What I look like [1981] ତାଙ୍କ ସାଧନା ଓ ସିଦ୍ଧିର ସଙ୍କେତ ବହନ କରନ୍ତି ।

କବି କମଳାକାନ୍ତଙ୍କ କବି କଳ୍ପନା ଯେମିତି ଅଧିକାଂଶ ଅନ୍ତର୍ମୁଖୀ ଓ ଆତ୍ମଭାବପରାୟଣ, ଯେମିତି ତାଙ୍କ କବିମାନସ ଆତ୍ମ ଦଂଶେନ । ତାଙ୍କ କବିତାରେ ବ୍ୟକ୍ତି ଜୀବନ ଓ କବିବ୍ୟକ୍ତି ବା କାବ୍ୟପୁରୁଷ ନିୟତ ବିଚରଣଶୀଳ । ଦ୍ୱନ୍ଦ୍ୱ, ଈର୍ଷା, ପ୍ରତାଆଶା, ପ୍ରବଞ୍ଚନା, ସନ୍ଦେହ, ସଂଶୟ, ହତାଶା, ବିଷାଦ, ଜଟିଳ ମନୋଭାବ, ବିଶ୍ୱାସହୀନତା, ଛଳନା ଓ ନିର୍ମମ ନିଷ୍ଠୁରତାରେ ସଂଦ୍ରଷ୍ଟିତ ଜୀବନ ରୁଦ୍ଧଶ୍ୱାସ । କବି ଶ୍ରୀ ଲେଙ୍କାଙ୍କ ବ୍ୟକ୍ତି ଜୀବନ ସାଂପ୍ରତିକ ସମାଜର ଏହି ଚେତନାରେ ପ୍ରାୟତଃ ଅସ୍ଥିର, ଆହତ, ଶଙ୍କିତ ଓ ସଂକ୍ରମିତ । କବିତାରେ ତାଙ୍କ ବ୍ୟକ୍ତି ଜୀବନର ବିପୁଳ ଅଭିଜ୍ଞତା ଓ ଅନୁଭୂତିର ବିଭୂତି ଦେଖିବା ପରିଦୃଷ୍ଟ ହେବା ସ୍ୱାଭାବିକ । 'Literature is always personal, always one man's vision of the world, one man's experience' ଯାହା Yeats କହନ୍ତି ତାହା ଶ୍ରୀ ଲେଙ୍କାଙ୍କ କବିତା ପ୍ରତି ପ୍ରଯୁଜ୍ୟ । ତାଙ୍କ କବିତାର 'ମୁଁ' ହେଉଛି ସ୍ୱୟଂ କମଳାକାନ୍ତ । ବ୍ୟକ୍ତିଗତ ଯନ୍ତ୍ରଣାବୋଧର ନିଷ୍କପଟ ଆତ୍ମସ୍ୱୀକାରୋକ୍ତି ତାଙ୍କ କବିତାରେ ସ୍ପଷ୍ଟ । ତେବେ ତାଙ୍କ କାବ୍ୟ ପୁରୁଷ ବ୍ୟକ୍ତି ଜୀବନୋତ୍ତର । ଶ୍ରେଷ୍ଠ କବିର କଳ୍ପନାରେ ବ୍ୟକ୍ତିଗତ ଜୀବନର ବେଦନାନୁଭୂତିର ରୂପାନ୍ତର କ୍ରିୟାସଂଘଟିତ ହୋଇଥାଏ । କ୍ରୋଚେ କହନ୍ତି— 'Poetic idealisation is not a frivolous embellishment, but a profound penetration in virtue of which we pass from troublous emotion to the serenity of contemplation' କାବ୍ୟ ସୃଷ୍ଟି ପ୍ରକ୍ରିୟାରେ କବି ବ୍ୟକ୍ତିଟି ଅଭ୍ରୁ ସେହି ବ୍ୟକ୍ତି ମାନ ହୋଇ ରହନ୍ତି ନାହିଁ । ତାଙ୍କ ବ୍ୟକ୍ତିସତ୍ତାର ଉତ୍ତରଣ ଘଟେ କବି ସତ୍ତାକୁ । ଏହି କବି ସତ୍ତା 'ଅବିଭକ୍ତ' ଏକକ ସତ୍ତା । କମଳାକାନ୍ତଙ୍କ ନିଜ କଣ୍ଠରେ—

> "ହୋଇପାରେ
> ଆପଣାର ଭଗ୍ନାଂଶ ବା ଅବିଭକ୍ତ ସତ୍ତା,
> ନିକେଇ କି ଅବିଭାଜ୍ୟ, ଏକକ ?
> ଏକମାତ୍ର ବିନ୍ଦୁର ନିୟନ୍ତା ।"
>
> (ଅନ୍ତତଃ ନିଷ୍ଠୁର)

ମହତ୍ତର କାବ୍ୟଚେତନାର ଆବେଶରେ କବିଙ୍କ ଚିତ୍ତ କାବ୍ୟିକ ଆବେଗ ଓ ଉଚ୍ଛ୍ୱାସରେ ଆନ୍ଦୋଳିତ ହୁଏ । ଅବ୍ୟକ୍ତ ଓ ଅମନ୍ତ୍ରୀ ଅନୁଭବରେ କବି ହୁଏ ଆତ୍ମହରା । ଏହି ଭାବୋଚ୍ଛ୍ୱାସରୁ ଜନ୍ମେ କବିତା । ଅନେକଙ୍କ ନେହା ଦୈବୀ ପ୍ରେରଣାର ନାମାନ୍ତର । ୟୁଙ୍ଗ୍ ଙ୍କ ମତରେ 'Art is a kind of innate drive that seizes a human being and makes him its instrument,' କବି ବୁଦ୍ଧଦେବ ବସୁ କହନ୍ତି— 'ତୋମାର ଚକିତ ସ୍ପର୍ଶେ ଜେଁପେ ଉଠେ କଳ୍ପନାର ଶ୍ରୋଣୀ । କବିତାର ଜନ୍ମ ହୟ ।' ସ୍ପେଣ୍ଡରଙ୍କ ଭାଷାରେ – Poetry is not written out of the will and consciousness, but it is a process of submission by the writer to the unconscious forces in him, ·····the poet becomes the instrument of sensibility through which the poem writes itself' କବି ଶ୍ରୀ ଲେଙ୍କାଙ୍କ କବିତା ସୃଷ୍ଟି ପୂର୍ବର ଭାବାବସ୍ଥା ଏହିପରି —

ପୂର୍ଣ୍ଣି ପଶି ଆସ୍ତେ ଆସ୍ତେ ପ୍ରବେଶଇ,
ଓ ଶୋଷି ନିଏ ମୋ ରକ୍ତରୁ କଙ୍କାଳର କ୍ଷୀର ।

× × ×

ଏତେବେଳେ ଘନ ଘନ ନିଃଶ୍ୱାସର ସୁଅ ଛୁଟେ,
ରକ୍ତ ଫୁଟେ ଟକମକ ହୋଇ ।
ଲୁହ ସବୁ କଥା କୁହେ ଅସ୍ଥିରତା
ଗ୍ରନ୍ଥିକୁ ଫଟାଇ ।

× × ×

ମୋତେ ଘଡି ଘଡି ଉକାଳର ରଖି
ଏମିତି ଶେଖୁଚି କାହିଁ ଅଡ୍ଡୁଆ
ଚନ୍ଦ୍ରାର ମିଛ ଛାଉଁ୍ୱାରେ ପକାଇ ।

( କବିତାର ମୁହଁ )

କବି କମଳାକାନ୍ତ ଯେଉଁ ସମାଜରେ ଆତଯାତ, ସେଠି ସ୍ଥାନ କାଳ ପାତ୍ର ନେଇ ଯାହା ଘଟୁଛି ତାହା ତାଙ୍କ କବିତାର ଭାବବସ୍ତୁ ରୂପେ ରୂପାୟିତ । ତାଙ୍କ କବିତାର ଅନ୍ତରାଳରେ ଯେଉଁ କାବ୍ୟପୁରୁଷ ରହିଛି ସେ ଆପଣାକୁ ସେହି କବିତାର

ମତ ଅଭିମତ ଭିନ୍ନମତ ।

ରୂପ ଦର୍ପଣରେ ଶତ ଇଙ୍ଗିତ ଓ ସହସ୍ର ଭଙ୍ଗୀରେ ପ୍ରକାଶ କରିଛି । ଅନ୍ତରାଳର ଏହି 'ମୁଁ'ଟିକୁ ଘେରି ରହିଛି ଶୋକ, ଦୁଃଖ, ଅସହାୟତା, ନିଃସଂଗତା ଓ ଯନ୍ତ୍ରଣା । ସଂଗୃହିତ ଆଶାଠୁଁ ଅପେକ୍ଷା ନିରାଶା ଅଧିକ । ନୈରାଶ୍ୟ ହିଁ ବ୍ୟଥାର ଜନନୀ । ବ୍ୟଥାର କଣ୍ଟକାଘାତରେ ଜୀବନ ରୁଧିରାକ୍ତ । ଜୀବନ ହୁଏ : ଦୁଃଖ ଓ ସୁଖର ଉଦ୍ୟାନ । ସେଥିରୁ ମୁକ୍ତି : ନିଷ୍ଠୁର ମଧୁପର ନିଷ୍କପଟ ସ୍ୱର —

"ମୋତେ ନେବେ କୋଠରୀରୁ ମୁକ୍ତ କରି ବଗିଚାର ଫୁଲ
ମୋତେ ତେବେ କ୍ଷମା କରି ଓ ଅନ୍ୟ ବୃକ୍ଷଲତାଙ୍କୁ ଡାକି ସବୁ
ଶୋଷି ନିଅ । ମୁଁ ଉଡ଼େ ମନ ଇଚ୍ଛା ସ୍ୱର୍ଗ ନର୍କ, ଗ୍ରାମ ନଗ୍ର,
ଗ୍ରାମାନ୍ତର ଘର । ଘରରୁ ଘରଣୀ ଘରଣୀରୁ ବନ ସ୍ଥଳ
ମରୁ ଓ କାନ୍ତାର ।"

ମୃତ୍ୟୁ ଓ ଅମୃତତ୍ୱର ଆସ୍ୱାଦନ ପାଇଁ କବିଙ୍କର ନିଷ୍ଠୁରତା । କବି ଶ୍ରୀ ଲେଙ୍କାଙ୍କ ଭାଷାରେ 'ନିଷ୍ଠୁରତାକୁ ମଣିଷ ସହି ପାରେନା । ନିଷ୍ଠୁରତା ଗୋଟେ ବୋଝ । ଗୋଟାଏ ପ୍ରେତ । ଗୋଟାଏ ଲୋମଶ କାଳର ବଜ୍ର କଠିନ ଜାବ । ଏଥିରୁ ବର୍ତ୍ତିବା ସହଜ ନୁହେଁ । କିନ୍ତୁ କବିତା ଏଥିରୁ ମୁକ୍ତ ହୁଏ । '[ସ୍ରୋତର ନାମ ରୀତ]। ମୁକ୍ତ ମଣିଷ ହେବାର ବ୍ୟାକୁଳତାରେ ମଣିଷ ନିଜକୁ ଅନ୍ୱେଷଣ କରେ । ନିଜର ପରିଚୟ ନିଜକୁ ଜିଜ୍ଞାସା କରେ । କବି ଶ୍ରୀ ଲେଙ୍କାଙ୍କ କାବ୍ୟ ପୁରୁଷର ଆତ୍ମ ପରିଚୟ ପାଇଁ ତୀବ୍ର ବ୍ୟାକୁଳ ସନ୍ଧାନ । 'ନିଜ ସପକ୍ଷରେ' କବିତାରେ କମଳାକାନ୍ତଙ୍କ ଅଭିବ୍ୟକ୍ତି —

ନିଷ୍ଠୁର ନିର୍ମମ ଏକ ମଣିଷ ମୁଁ ସ୍ୱାର୍ଥାନ୍ଧ, ଲଳିତ
ଓ ଦ୍ରବୀଭୂତ ମୋ ପୁରୁଷକାର ।
ମୋ କବିତା ଦୁଃଖ, ସୁଖ,
ପ୍ରୀତିମୟ ମୁହୂର୍ତ୍ତର କଲ୍ୟାଣୀର କ୍ଷୀର ।"

ଅପରିସୀମ ଯନ୍ତ୍ରଣାରେ ଅସହାୟ କାବ୍ୟ ପୁରୁଷର ଏହା ନିଜସ୍ୱ ସଂଲାପ । ଏହି ସଂଲାପର କବିତ୍ୱପୂର୍ଣ୍ଣ ପରିପ୍ରକାଶ 'ନିତ୍ୟନିୟମିତ' ରେ—

ପ୍ରତ୍ୟେକ ଫୁଲର ଯେମିତି ପୃଥକ୍ ପରିଚୟ
ସେମିତି ପ୍ରତ୍ୟେକ କବିର ନିଜସ୍ୱ ଯନ୍ତ୍ରଣା ।"

[ନିତ୍ୟ ନିୟମିତ

।। କବି କମଳାକାନ୍ତ

ପୃଥକ୍ ପୃଥକ୍ ଫୁଲର ପୃଥକ ପୃଥକ ଅନୁଭବର ପୃଥିବୀ ପରି ପ୍ରତ୍ୟେକ କବି ଆପଣାର ନିଜସ୍ୱ ଯନ୍ତ୍ରଣାରେ ବନ୍ଦୀ । ସେହି ଉପଲବ୍ଧିର ଏକକ, ନିର୍ଜନ ଉଚ୍ଚାରଣ ହେଉଛି କବିର କବିତା । ପ୍ରତ୍ୟେକ ମଣିଷର ସମ୍ବେଦନଶୀଳ ହୃଦୟ ପାଇଁ ଏ କବିତା ଉଦ୍ଦିଷ୍ଟ ।

କବିର ବେଦନାବିଦ୍ଧ ହୃଦୟ ହିଁ କବିତାର ଜନ୍ମଭୂମି । କବିତାର ତାତ୍ପର୍ଯ୍ୟ ପାଠକଙ୍କ ହୃଦୟରେ ହିଁ ନିହିତ ଥାଏ । କେଉଁ କବିତାକୁ କି ପ୍ରକାର ଗ୍ରହଣ କରିବା କଥା ତାହା ନିର୍ଦ୍ଦେଶ କରିବାର କ୍ଷମତା କବିର ନାହିଁ । ପ୍ରତ୍ୟେକ ପାଠକ ନିଜର ବୋଧଶକ୍ତିଦ୍ୱାରା କବିତାର ରସ ଆସ୍ୱାଦନ କରନ୍ତି । ଟେନିସନ୍‌ଙ୍କ ଉକ୍ତି ଏ ପ୍ରସଙ୍ଗରେ ଉଦ୍ଧାର କରାଯାଇ ପାରେ— Poetry short silk has many glancing colours, every reader must find his own interpretation according to his light and according to his sympathy with the poet" କବି ଶ୍ରୀ ଲେଙ୍କାଙ୍କ କବିତାରେ ଆଧୁନିକ ମଣିଷର ଯନ୍ତ୍ରଣା-ବୋଧର ସ୍ୱର ଉଚ୍ଚକିତ । କ୍ରମ କ୍ଷୟିଷ୍ଣୁ ମୂଲ୍ୟବୋଧ ଓ ସାଂସ୍କୃତିକ ସଂକଟ ଜଟିଳ ସାମାଜିକ ପରିବେଶରେ କବି ଅଶାନ୍ତଃଶ୍ୱାସୀ । ସମାଜରେ ନୈତିକତାର ସହ ଚଳି ନ ପାରିବା ବ୍ୟକ୍ତିର ଅସହାୟତା ଦେଖନ୍ତୁ !

"ଏ ଥାଏ ନାଳଠା ସନ୍ଧି ।
ହାତେ ମାପି ଗୃଖଣ୍ଡେ ଗୃଲିବା କଳା
ଜଣାଥିଲେ ଭଲ କଥା । ନଚେତ୍ କଲୁଷ
ବା କ୍ଷୁର ଦଣ୍ଡେ ଗୃଲିବା ଉଚିତ ।
ଆଉର ସବୁଠୁଁ ଭଲ ଆପଣା ଦୁଃଖରେ ଆପେ
ମରିଯିବା ମରମେ ଆଉଛି ।"

( କବିତାର ମୂହଁ )

ସାମାଜିକ ସଂପର୍କ ଆଜି ଶତଧା ବିଦୀର୍ଣ୍ଣ । ସାଧୁତା, ସ୍ନେହ, ଅକପଟ ବ୍ୟବହାର, ସରଳତା ଯେଉଁଠି ପରାହତ ସେଠି ସଂପର୍କ ପ୍ରଶ୍ନ ଉଠାଇବା ଏକ ନିର୍ବୋଧତା । ସ୍ୱାର୍ଥ ଲାଭ ଆଶାରେ ଗଢାଯାଏ ସଂପର୍କର ସେତୁ । ସ୍ୱାର୍ଥ ପୂର୍ତ୍ତି ପରେ ସେ ସେତୁ ଆଖି ପିଛୁଳାକେ ପୁଣି ଭୁଷୁଡ଼ି ପଡ଼େ । କବିଙ୍କ ଭାଷାରେ—

ମତ ଅଭିମତ ଭିନ୍ନମତ ।।

"ସଂପର୍କ ପାଣିର ସୁଅ, ସମସ୍ତର ହେଟରସା ରେଙ୍କିଙ୍କ,
ସାମାନ୍ୟ ହସର ଏକ ସରୁ ସୁତା, ସ୍ୱାର୍ଥପରତାର କଣ୍ଟିତ ଚହଲ ଗନ୍ଧ ;
ଏବଂ ଢଆଳିଆ ବକ୍ତବ୍ୟର ବିଚିତ୍ର ହରେକ୍ ରଙ୍ଗ ।"

( କବିତାର ମୁହଁ )

ସଚରାଚର ଏକ ନିଃସ୍ୱାର୍ଥପର ସଂପର୍କ ସନ୍ଧାନରେ ବାହାରିଥିବା କବି ପ୍ରାୟ ସବୁଠି ଭେଟନ୍ତି ସର୍ବଗ୍ରାସୀ ସଂପର୍କ ଶୂନ୍ୟତାକୁ । ଅଥଚ ଏହି ଶୂନ୍ୟତାବୋଧ ଭିତରେ ନୂଆ ନୂଆ ପୁଲକର ଗଡ଼ ଗଢ଼ାଯାଏ ଓ ପୁଣି ମୁହୂର୍ତ୍ତିର ସାମାନ୍ୟତମ ଧକ୍କାରେ ଏହା ଭାଙ୍ଗିଯାଏ । ଏହି ଭଙ୍ଗାଗଢ଼ାର ଇତିହାସ ହେଉଛି ଜୀବନର ଇତିହାସ । କବିତାର ନିଷ୍କପଟ ସତ୍ୟ-ଉଚ୍ଚାରଣ—

"ସଂପର୍କଙ୍କ ମୀଳ ରୁଠ । ବ୍ୟର୍ଥତା ଓ ଅସହାୟ
ମୁହୂର୍ତ୍ତିର ଝେଉ । ଭାଙ୍ଗେ ଏବଂ ଗଢ଼େ ପୁଣି
ନୂଆ ନୂଆ ପୁଲକର ରାଜଧାନୀ, କଟକ ସହର !"

ଯେଉଁଠି ସମାଜ ଜୀବନ ଓ ପାରିବାରିକ ସଂପର୍କ ସ୍ୱାର୍ଥ ସର୍ବସ୍ୱ ଓ କୃତ୍ରିମ ବନ୍ଧନ, ସ୍ୱର୍ଗୀୟ ମଧୁରତା ନାନା ଉକ୍ତତା ଓ ବିଡମ୍ବନା ପିଷ୍ଟ ସେଠାରେ ବ୍ୟକ୍ତି ଜୀବନ ନାନା ସଂଘାତ ଓ ବିଫଳତାରେ ଜର୍ଜରିତ ହେବା ଏକାନ୍ତ ସ୍ୱାଭାବିକ । ଜୀବନର ବାହ୍ୟ ଆଡ଼ମ୍ବର ଓ ଚାକଚକ୍ୟ [ଧନ, ଜନ, ଗୋପ, ଲକ୍ଷ୍ମୀ]ର ଆକର୍ଷଣ/ପ୍ରଲୋଭନରେ ଆମେ ଚେଷ୍ଟା ଯେତିକି ଆତ୍ମଭୋଲା ସଂସାରୀ, ଜୀବନର ଅନ୍ତର୍ନିହିତ ମୂଲ୍ୟବୋଧ ( ସତ୍ୟ, ନ୍ୟାୟ, ବିଶ୍ୱାସ, ପ୍ରେମ, ସୌନ୍ଦର୍ଯ୍ୟବୋଧ ଇତ୍ୟାଦି )ର ସ୍ୱରୂପ ନିର୍ଦ୍ଧାରଣରେ ଆମେ ହେଉଛି ବିସ୍ମୃତ-ବିମୂଢ଼ ! ଏହି ଦ୍ୱିବିଧ ଦନ୍ଦ୍ୱର ସମ୍ମୁଖୀନ ସଚେତନ କାବ୍ୟସ୍ରଷ୍ଟା ସଂପର୍କର ରୂପ ଏହିପରି ଗଢ଼ିବାକୁ ବାଧ୍ୟ—

"କି ଘର କି ଦ୍ୱାର
ରକ୍ତ କରେ ରକ୍ତର ଆହାର
ଛକ୍ ଛକ୍ ଛୁରୀର ଲାଲୁଆ ଜିଭ,
ମାନ କିବା ଅଭିମାନ,
ହସ ଏବଂ କାନ୍ଦର ନଅର ।"

(ସନ୍ୟାସ—କବିତାର ମୁହଁ)

|| କବି କମଳାକାନ୍ତ

ହସ ଓ କାନ୍ଦର ଯୁଗଳବନ୍ଦୀ ନୃତ୍ୟ—ଜନ୍ମଠୁଁ ମୃତ୍ୟୁ ଯାଏ । ପ୍ରକୃତିର ରମ୍ୟଲୀଳା । ଝଲକାଏ ଦୁଃଖ, ଅଂଜୁଳାଏ ବିଷାଦ ଓ କାଣିଚାଏ ହସଖୁସି ଓ ଆନନ୍ଦ । ଜୀବନର ଏହାହିଁ ସଂପଦ ଓ ଐଶ୍ୱର୍ଯ୍ୟ । ଏହାକୁ ପାଥେୟ କରି ଶତାବ୍ଦୀ ଧରି ବହୁ ଗଲେ ମୌନ ମୁଖର ଜୀବନର ନଦୀ । କବିତାର ଝର୍ଣ୍ଣା । ସମୁଦ୍ର ଆଉ ? ଉତ୍ତାଳ ତେଉର ଗର୍ଜନରେ ସମୁଦ୍ର ବାଟ ଓଗାଳେ । ସାହାରା ଆଉ ? ତାହା ବି ବାଲୁକାନ୍ତର ନଭସ୍ପର୍ଶୀ ଅନୁର୍ବରତାର ଆସ୍ଫାଳନ ! ଦୁର୍ଗମ ଗିରି, ଅରଣ୍ୟ, ବାଲୁକା ଶଯ୍ୟା ଲଙ୍ଘି ତଥାପି ଯିବାକୁ ହେବ ନଈକୁ, ଜୀବନକୁ, କବିତାକୁ ଅନନ୍ତ କାରୁଣ୍ୟରେ ବିମୁଗ୍ଧ ଇଲକା ଆଉ । ମୁକ୍ତିର ପଥ ସନ୍ଧାନହିଁ ଜୀବନ । ଏକା ଏକା ବାଟ ଚାଲିବାହିଁ ପୁରୁଷକାର । ଏକା ଏକା କାନ୍ଦୁଥିବା ଅସହାୟତା ବି ସେ ପୁରୁଷକାରଠୁଁ ସହସ୍ର ଗୁଣ ଧନୁର୍ଦ୍ଧର, ସବ୍ୟସାଚୀ । ତେଣୁ 'କାରୁଣ୍ୟର ସ୍ୱରଲିପି' ନିମ୍ନମତେ ହେବା ଜୀବଧର୍ମ, ଯୁଗ ସଙ୍କେତ !

"ତେଣୁ ମୁଁ କାନ୍ଦୁଛି ଏକା !
ଆହା ମୁଁ କି ମେଘ ଶିଶୁ, ନିଃସ୍ୱତାର ଗୃହ ।"

ହସିବାର ବହୁବିଧ ଉଦ୍ୟମ ସତ୍ତ୍ୱେ ମଣିଷ କାନ୍ଦେ । ନିଷ୍ଠୁର ବାସ୍ତବତାର ଏହାହିଁ ଏକମାତ୍ର ପ୍ରତିଦାନ । କାନ୍ଦ ବିହୁନେ ଜୀବନର ସାର୍ଥକତା କାହିଁ ? ହଡ଼ସର କାନ୍ଦର ନୀରବ ସ୍ୱଜନତ୍ୱ, ଦୁଃଖର ପ୍ରଭୁତ୍ୱ । କାନ୍ଦହିଁ ଈଶ୍ୱରୀୟ ଚେତନାର ଗୁହ୍ୱକାଠି । ଯେଉଁଠି ପ୍ରତାରଣା, ପ୍ରବଞ୍ଚିତ ଆଶା ଓ ନିର୍ମମ ସମସ୍ୟାର ଝଙ୍କଟ ଭିଡ଼, ସେଠାରେ ଛଳନା, ଜଟିଳତା ଓ ଅନ୍ତରଙ୍ଗ ହୀନତାରୁ ମଣିଷର ମୁକ୍ତି କାହିଁ ? ବା ଦୁଃଖଶୋକର ପାରିବେଶିକ ତିକ୍ତତାର ଉଷ୍ମ ଆଲିଙ୍ଗନରୁ ବ୍ୟକ୍ତିର ଛୁଟି କାହିଁ ? ତେଣୁ କାବ୍ୟପୁରୁଷ କମଳାକାନ୍ତଙ୍କ ଆଖିରେ ସମସ୍ତର ଲୁଣି ହାଓ୍ୱାରେ ଭଲ ପାଇବାର କଦମ୍ବ ଡ଼ାଳ ଶୁଖିଯିବା କିଛି ବଡ଼ ବିଚିତ୍ର କଥା ନୁହେଁ ! ରହିଆଛି ଫିକା ଫିକା ଆଖିର ରଙ୍ଗ ନିଆଁ । ସୂବୁର ମୁହଁରେ ଉଣାଧିକେ ଉଦାସିଆ ପାଗର ଛବି ଟଳ ଟଳ, ନୃତ୍ୟରତ । ଜ୍ୱାଳା ଓ ଯନ୍ତ୍ରଣାର ମେଘାଚ୍ଛନ୍ନ ଆକାଶରେ ଏକମାତ୍ର ନିଶ୍ଚୁପିଆ ତାରା । ଏକା ଏକା କଳୁଛି ଦିଗନ୍ତବ୍ୟାପୀ ଶୂନ୍ୟତାକୁ, ଏକା ଏକା ମାପୁଛି ମଣିଷର ବୁଦ୍ଧି ଓ ଚାତୁର୍ଯ୍ୟକୁ, ଏକା ଏକା ଉତ୍କର୍ଣ୍ଣ ହୋଇ ରହୁଛି 'ସୁନା ଫସଲ'ର ଆହ୍ୱାନକୁ । ନିର୍ଜନତାର ଗହ୍ୱରେ ଫାଟି ପଡ଼ୁଛି ମନର ଅଭ୍ୟନ୍ତର । ସ୍ଥିତିର ଗମ୍ବୁଜ ଭୁଷୁଡ଼ି ପଡ଼ୁଛି ଧୈର୍ଯ୍ୟର ଅତିଷ୍ଠତାରେ । ଜୀବନ ପ୍ରତି ମଣିଷର ଆଉ ରହିନାହିଁ ଆଗ୍ରହ, ସରାଗ ବା ଆସକ୍ତି । ସବୁ କ୍ଳାନ୍ତିକର ଓ ବିରକ୍ତିଭରା ବିଭକ୍ତ ଅନୁଭୂତି ।

ମତ ଅଭିମତ ଭିନ୍ନମତ ॥

"କେତୋଟି ବରଷ ଏମିତି ବିତିଗଲା,
ଏମିତି । ଖାଲି ଏମିତି । ସ୍ତ୍ରୀ ପିଲା
କୁଟୁମ୍ବଙ୍କ ବୋଝ ବୋହି
ଜାଣେ ମୋର ଖର୍ଚ୍ଚିଗଲା. କେଶ ଦାଢ଼ି କ୍ରମଶଃ ପାଚିଲା ।"

ଚଷମାର ସରୁ ଫ୍ରେମ, ବଙ୍କା ବାଡ଼ି, ଛିଣ୍ଡା ଚଟି ଘୋଷାରି ଘୋଷାରି ଅପୂର୍ଣ୍ଣ ବାସନା ଓ ତତ୍କାଳୀନ ଦୁଃଖରେ ଘାରି ହେଉଥିବା ମଣିଷର ଏଇଆହିଁ ସତ୍ୟ ପରିଚୟ । ଉତ୍ତର ବୟସରେ ଜୀବନକୁ ଉପହାର ଦେବାପାଇଁ ହାତରେ ଥାଏ କେବଳ ଅନନ୍ତ ନିଷ୍ପ୍ରଭତା । କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଭାଷାରେ 'ନୀରବତା ଯେଉଁଠି ନୀରବ ।' ଜନ୍ମ-ମୃତ୍ୟୁ ଯୋଖା ବୋମୁଣ୍ଡିଆ ଜୀବନର କେବଳ ନିଃଶବ୍ଦ ଆର୍ତ୍ତନାଦ । ମୁଖାପିନ୍ଧା ଅଭିନୟ ଛଡ଼ା ମଣିଷର ଗତ୍ୟନ୍ତର ନାହିଁ । ତେଣୁ ନିର୍ବୋଧ 'ମୁଁ'ର ହାତଗୋଡ଼ ହାତଗୋଡ଼ ବାନ୍ଧି ଅପନ୍ତରାକୁ ଫିଙ୍ଗି ଦେବା ସବୁ ଦୃଷ୍ଟିରୁ ନିରାପଦ । ସଂପର୍କହୀନତାର ଉପଲବ୍ଧି ଆସିଲେତ ଯେଉଁ ଦୁଃଖ ସେଇଆର । (ସୁଖ ଓ ସମୃଦ୍ଧି ସଜାର) । କବି ଶ୍ରୀ ନେଙ୍କା ତେଣୁ କହନ୍ତି—

"କେଉଁଠି ବୁଝେ ନା କା'ର ଦୁଃଖ
+ + +
ଦୁଃଖ ଏକ ଚିରନ୍ତନ ନଈ ।"

( ଅନ୍ତତଃ ନିଷ୍ପ୍ରଭ )

ଏହି ନଈର ଅତଳ ତଳ ଗର୍ଭରେ ଲୁଚିଥାଏ ଜୀବନ ଓ ପହଁରୁ ଥାଏ ମୃତ୍ୟୁ । ସେ ସନ୍ତରଣ କୌଶଳ ଦେଖି ଯେ ଅତର୍କରେ ହାଲିଆ ନ ହୁଏ ସେ ବୁଝେ— ନିଜେହିଁ ନିଜ ଜୀବନର ଛନ୍ଦପତନ; ସମ୍ରାଟ୍ । ଆଉ ଯେ ଚହଁକି ପଡ଼ି ହିସାବ କରି ବସେ 'ବସିବାର ବେଳ' ତା ପାଇଁ 'ଗୀତ ଗା' ନାରେ ପକ୍ଷୀ' ରୂପାନ୍ତର ଘେନେ ଜୀବନର । ତେଣୁ ମୃତ୍ୟୁକୁ ଗୀତ ଶୁଣାଇବା ଢଙ୍ଗ ନିଆରା । ତା' ନ ହେଲେ କ'ଣ କବି ଏମିତି କହନ୍ତେ—

"ମୃତ୍ୟୁ ବୋଲି କିଛୁ ନାହିଁ;
ଯାହା ଖାଲି ଚିରନ୍ତନ ବିଶ୍ୱାସର ଜନ୍ମର ମଲାଟ—
ଥରେ ତାକୁ ରଙ୍ଗ ଦେଲେ; ଯାକି ନେଲେ, ଅଶ୍ଲେଷିଲେ
ମନେ ହୁଏ ବସନ୍ତ କି କୋଇଲଟାଣି ଫେରୁଚି ପୁନଶ୍ଚ ।"

॥ କବି କମଳାକାନ୍ତ

ମନ୍ତ୍ରାମନ୍ତ୍ରମ ମୃତ୍ୟୁ ଯେମିତି ଖେଳୁଆଡ୍ କବି ସେମିତି ଖାଣ ଖେଳାଳି୍ । ସେଇଥିପାଇଁ ତ ଗୁର୍ ମିନାର୍ ଧୂଆଁ କୁଣ୍ଡଳୀରେ ମୃତ୍ୟୁକୁ ବନ୍ଦୀ କରନ୍ତି କବି— 'ଆସ, ଗୁର୍ ମିନାର୍ ଟାଣି ଟାଣି ମରଣକୁ ତଲାସ କରିବା ।' (ସ୍ରୋତର ନାମ ରଙ୍ଗ) କବିର କାମନା କେବଳ ଜୀଇବ ; ଜୀଇବାର ସୁଖ ଓ ଜୀଇବାର ଦୁଃଖ । (ଶୁଣ୍ଡଭଙ୍ଗ ମୁଣ୍ଡ— ଚିତା ଅଙ୍କା କାନ୍ଥର ନବ ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ-ମୁଖବନ୍ଧ) ପୁନର୍ଜନ୍ମରେ ବିଶ୍ୱାସ ଥାପିଥିବା କବି ସେଥିପାଇଁ ପୁଣି କହନ୍ତି—"ଆଉ ପୁଣି କେତେ ବାଟ ମୋ ମୃତ୍ୟୁରୁ ମାଆର ଗର୍ଭକୁ ।" ଜୀବନର ନୂଆଦ୍ରଷ୍ଟ ଓ ନୂତନ ସମାଜ ବିଭିନ୍ନ ଦିଗରୁ କବିଙ୍କ ସୃଷ୍ଟିରେ ପ୍ରମୂର୍ତ୍ତି । ନାଲି ଘୋଡ଼ାରେ ଆସୁଥିବା ଧ୍ୱଂସର ପ୍ରତୀକ ପୁରୁଷକୁ ସ୍ୱାଗତ କଲାବେଳେ କବି ଗଭୀର ଆତ୍ମ ବିଶ୍ୱାସ ସହ ଘୋଷଣା କରନ୍ତି— "ଗୋଠ ହଜା ଗାଭୀ ଫେରେ । ଫୁଟେ ନୂଆ କଦମ୍ବର କଢ଼ି ।" (କବିତାର ମୁହଁ) ଏହି ଆଶା ଓ ଅନ୍ୱେଷଣର ନୂଆ କଦମ୍ବ କଢ଼ି ପାଇଁ କବି କମଳାକାନ୍ତଙ୍କ ସମଗ୍ର ସୃଷ୍ଟି ସମ୍ଭାର । ତାହା ଉନ୍ମୁକ୍ତତାର ଅନିଶ୍ଚ ଦୀପଶିଖା ହେଉ ବା ଦୁଃଖ ସୁଖର ଉକ୍ତି ମଧୁର ଗୁଞ୍ଜନ ହେଉ !

**କ୍ଷୀରୋଦ କୁମାର ସାମଲ**

ଅଧ୍ୟାପକ, ଏନ୍.ସି. କଲେଜ, ଯାଜପୁର

ତା ୬ । ୭ । ୮୯

# ଜୀବନ ଓ ଜିଜ୍ଞାସାରେ
# କମଳାକାନ୍ତ - କାବ୍ୟ ପୁରୁଷ

ଗତ ତିନୋଟି ଦଶନ୍ଧି ଭିତରେ ନିରବଚ୍ଛିନ୍ନ କାବ୍ୟ ସାଧନା କରି ଜୀବନକୁ ଖୋଜିବା, ବୁଝିବା ଓ ଭଲ ପାଇବାର ମାନବବାଦୀ କବି କମଳାକାନ୍ତ ଲେଙ୍କା ଓଡ଼ିଆ କବିତାରେ ବେଶ୍ ଏକ ସୁପରିଚିତ ସ୍ୱର । ତାଙ୍କ ପ୍ରଥମ କାବ୍ୟ-ସଂକଳନ 'ସୁନାଫସଲ' (୧୯୫୮)ରୁ । ଚିତା ଅଙ୍କା କାନ୍ଥର ନବ ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ" ୧୯୮୭ ମଧ୍ୟରେ ଜୀବନକୁ ଚିହ୍ନିବା ପାଇଁ କବିତାର କଳା

ଭିତରେ ସେ ନିଜକୁ ହଜେଇ ଦେଇଛନ୍ତି । ୧୯୫୮ରୁ ୧୯୮୮ ମଧ୍ୟରେ କମଳାକାନ୍ତ ସାହିତ୍ୟ ସର୍ଜନାରେ ନୂଆମୋଡ଼ ଅଣିବାକୁ ଉଦ୍ୟମ କରିଛନ୍ତି । ତାଙ୍କ କାବ୍ୟସ୍ୱର କେବେ କେବେ ଶାଣିତ ଓ ବ୍ୟଙ୍ଗାତ୍ମକ ହୋଇଛି ତ କେବେ କେବେ ବିଦ୍ରୋହୀ ଓ କୋମଳ ହୋଇ ଉଠିଛି ସାଂପ୍ରତିକ ସମାଜର ଉତ୍ଥାନ ପତନ ଭିତରେ । ଉଭୟ ଗଦ୍ୟ ଓ ପଦ୍ୟ ଶୈଳୀରେ ଲିଖିତ ତାଙ୍କ କବିତା ଓଡ଼ିଶାର କାବ୍ୟ-କୋଣାର୍କକୁ ରୁଚିମନ୍ତ ଓ କଳା-ସମୃଦ୍ଧ କରିପାରିଛି । ତାଙ୍କର ଅନେକ କ୍ଷୁଦ୍ର କବିତା ବଞ୍ଚିବାର ନିବୁଡ଼ା ମୋହରେ ଦେଦୀପ୍ୟମାନ ।

ଜୀବନ ଓ ସଂସାରକୁ ଠିକ୍ ଭାବେ ବୁଝିଗଲେ ବଞ୍ଚିବାର ମାଦକତା ବଢ଼ିଯାଏ । ସଂସାରର ଗୂଢ଼ ତତ୍ତ୍ୱର ଗଭୀରତାକୁ ସବୁ ସଂସାରୀ ବୁଝି ପାରନ୍ତି ନାହିଁ । କିଛି କିଛି ଜାଣିଲେ ମଣିଷ ଖୁସି ହୋଇଯିବା ସ୍ୱାଭାବିକ । କବି କମଳାକାନ୍ତଙ୍କ ୧୯୭୮ରେ ପ୍ରକାଶିତ 'ନିତ୍ୟ ନିୟମିତ' 'କବିତା ସଂକଳନର ନିମ୍ନୋକ୍ତ କବିତାଟି ଜୀବନ ଓ ସଂସାରକୁ ବୁଝିବା ଓ ଭଲ ପାଇବାର ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଏଠାରେ କବି ଶ୍ରୀ ଲେଙ୍କା 'ଖରାବର୍ଷାର ଖେଳ' ଭିତରେ ଜୀବନର ହର୍ଷ ବିଷାଦ ଖୋଜିଛନ୍ତି ।

କିଛି ବୁଝି ହୁଏ ନା ବୋଲି
ସଂସାର । କିଛି ଜାଣି ହୁଏ ବୋଲି
ସଂସାରୀ । କିଛି କାନ୍ଦି ହୁଏ ବୋଲି
ଖରା ବର୍ଷାର ଖେଳ । ଭଦ୍ରତାକୁ
ଅଂଧାର ଭଲ ଲାଗେ ବୋଲି ବେପରୁଆ ।
ପଇସାବାଲା କହେ : ହାତରେ ହାତ
ଘଷିଲେ ମ୍ୟାଜିକ୍, ନାକ ତଳକୁ
ସାଉଁଳାଇ ଦେଲେ ଉର୍ବଶୀ । ସହର ତଳର
ଡିବିର ଆଲୁଅ କହେ ମୁଁ ମେନକା,
ମୁଁ ଉର୍ବଶୀ ।।

(ନିତ୍ୟ ନିୟମିତ-କବିତା-୫୪)

'ନିତ୍ୟ ନିୟମିତ' ପ୍ରକାଶନର ଗୋଟିଏ ଦଶକ ପରେ ଜୀବନର ସୁଖ ଦୁଃଖର ପ୍ରତୀକ ଚିତ୍ର କବିଙ୍କ ନିମ୍ନୋକ୍ତ କବିତାରେ ପ୍ରକାଶ ପାଇଛି ନୂତନ ଭାବ ବିନ୍ୟାସ ଓ ଅଧୁନାତନ ଶୈଳୀରେ । ଚିତା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ

ପୃଥିବୀ'ରେ ହନ୍ନି ବେଷ୍ଟିତ 'ବାନ୍ନମସ୍ତ' କବିତା କବି ଶ୍ରୀ ଲେଙ୍କାଙ୍କ ପରବର୍ତ୍ତୀ'ର ଚିନ୍ତାଧାରାର ଏକ ସଜଳ ଆଲେଖ୍ୟ । ସୃଜନଶୀଳତାର ଗୋଟେ ଦଶନ୍ଧି ମଧ୍ୟରେ କବିଙ୍କ ଭାବ ବିନ୍ୟାସର ଶୈଳୀରେ ପାର୍ଥକ୍ୟ ଏଠି ବେଶ ଲକ୍ଷଣୀୟ ।

ଜାମୁକୋଳି
ରଂଗ ପରି
ମୋ ଦୁଃଖ
ତମ ମଥାର
ବାଂଧୁଏ ସିଂଦୂର
ଚିରଭୂଲ ଶପ
ମରି ତମ
ସୁଖ,
ଖସ୍ରି ଦନ
ଛୁଟିର ସଂସାର

(ବନ୍ନମସ୍ତ)

ଜୀବନକୁ ଭଲ ପାଇବାର ଚିହ୍ନଟେ ଫୁଟି ଉଠେ କବି ଶ୍ରୀ ଲେଙ୍କାଙ୍କ 'ସ୍ରୋତର ନାମ ରୁତ' ସଂକଳନସ୍ଥ 'ନିଜ ସପକ୍ଷରେ' କବିତାରେ । ପ୍ରୋକ୍ତ କବିତାରେ ସେ ଭଙ୍ଗା ଖେଳନାର କ୍ଷଣ ଭଙ୍ଗୁରତାରୁ ଆରମ୍ଭ କରି ଦୁଃସ୍ଥ ମଣିଷର ଅବହେଳିତ ଧୂସର ଜୀବନାଦର୍ଶକୁ ଆପଣେଇ ନେଇଛନ୍ତି ଗୋଟେ ସ୍ପନ୍ଦିତ ଇଚ୍ଛାରେ, ଗଭୀର ଜୀବନ ଜିଜ୍ଞାସା ଭିତରେ । ମୁଁ ଏକାନ୍ତ ଭଲ ପାଏଁ ଆପଣାର/ନୂତନ ପୃଥିବୀକୁ ଆପଣ ର/ ପ୍ରକୃତି ଓ ଧୂଳନର ରମ୍ୟ କୋଣାର୍କକୁ/ ଭଲ ପାଏ ଭଙ୍ଗା ଖେଳନାକୁ/ ଭଲ ପାଏ ଦୁଃସ୍ଥ ମଣିଷକୁ/ ଭଲ ପାଏ, ବଞ୍ଚିବାର ନୂଆ ନୂଆ ସ୍ୱପ୍ନଙ୍କର ସ୍ପନ୍ଦିତ ଇଚ୍ଛାକୁ ।" (ସ୍ରୋତର ନାମ ରୁତ) । ଶଂସିତ କବିତାଂଶଟିକୁ ନିଗୂଢ଼ ଭାବରେ ଜଣେ ପାଶ୍ଚାତ୍ୟ ଇଂରାଜୀ କବିଙ୍କ "The still sad music of humanity" କଥା ସ୍ୱତଃ ମନେ ପଡ଼େ ।

ପ୍ରେମ କରିବା ମଣିଷର ଗୋଟେ ସହଜାତ ପ୍ରବୃତ୍ତି । ଭଲ ପାଇବା ମଣିଷର ଗୋଟେ ଆଦିମ ଲକ୍ଷଣ । ବଞ୍ଚିବା ଭିତରେ ଭଲ ପାଇବାର ଅଭ୍ୟାସ ଆମ ରକ୍ତରେ

ସଞ୍ଚରି ଯାଇଛନ୍ତି କୋଉ ଆବହମାନ କାଳରୁ । ଦାର୍ଶନିକ ନୀତ୍ସେ (Nietzsche)ଙ୍କ ଭାଷାରେ— "We love life not because we are used to living" କାବ୍ୟ ସଂକଳନ 'ଝରିବାର ବେଳ'ରେ କବି ସୁନ୍ଦର ଭାବରେ ଚିତ୍ରିତ କରିଛନ୍ତି ଚକ୍ଷୁରେ ଓ ଓଠରେ ଭଲ ପାଇବାର ଅବଦମିତ ଇଚ୍ଛାକୁ ରୂପାୟିତ କରିଛି ଏକ ନାଟକୀୟ ଭଙ୍ଗୀରେ । ଏଇଠି କବିଙ୍କର ପ୍ରେମାସ୍ପଦ ମୁହୂର୍ତ୍ତର ରସ ଘନ ଆବେଗକୁ ହୃଦୟଙ୍ଗମ କରିବା କଥା ।

"ପାଖକୁ ଆହୁରି ପାଖକୁ
ଆଖିରୁ ଆଖିକୁ, ଓଠରୁ ଓଠକୁ
ଦେହରୁ ଦେହକୁ, ସୃଷ୍ଟିଆ'ରେ ମିଳଣି ।
ଯେମିତ ତୁ ଓ ମୁଁ
କଣ୍ଟିକି ହେଇଯିବା
ଅଣବ୍ୟୁଣଟି ବର୍ଣ୍ଣମାଳାର କୋଳେଇରେ ।।

ଅଦ୍ୱୈତ (ଝରିବାର ବେଳ)

କମଳାକାନ୍ତଙ୍କ କାବ୍ୟ-ପୁରୁଷ ଗୋଟିଏ ସ୍ୱପ୍ନ ବିଭୋର ସକାଳକୁ ଅନେଇ ରହିଛି ଅପୂର୍ବ ଜିଜ୍ଞାସାରେ । ଆଲୁଅର ଲୁଚକାଳି, ବର୍ଷାର ମଉଆଳି ନାଚ, ଚଢ଼େଇଙ୍କ ଅଭୁଲା ସଂଗୀତ ତଥା ଅମାନିଆ ଶିଶୁର ଅଝଟ ପଣରେ ମୋହଗ୍ରସ୍ତ ହୋଇ କବିଶ୍ରୀ ଲେଙ୍କା ଜୀବନର ସଫେଦ ଆକାଶକୁ ସ୍ପର୍ଶି ରହିଛନ୍ତି ଅନବଦ୍ୟ ଭାବ ସଂଘାତ ମଧ୍ୟରେ । ଆଲୁଅର ଲୁଚକାଳି/ ବରଷାର ଅମାନିଆ ନାଚ/ ଅଝଟ ଶିଶୁର ଅଳି/ ଚଢ଼େଇଙ୍କ ଦରଭୁଲା ସ୍ୱରର ସଂଗୀତ/ ଚଉଦିଗ ପରିମୁକ୍ତ/ ଜୀବନର ସଫେଦ ଆକାଶ ।" (ଏଠି ସବୁ ଧାନ ବିଲ — ସ୍ମରଣ ବିସ୍ମରଣ)

ସମ ଲେଖକ ଶ୍ରୀ ଭଗବାନ ଜୟସିଂହଙ୍କ ଭାଷାରେ ତାଙ୍କର (କମଳାକାନ୍ତଙ୍କ) କବିତା ଜଣେ ସାଧାରଣ ମଣିଷର କବିତା— ଏକ କିମ୍ବଦନ୍ତୀର ସରଳ କିସ୍ମପଟ, ଭଙ୍ଗୀରେ ଭରପୂର ତାଙ୍କ କଳା ।" "ସ୍ରୋତର ନାମ ରୀତ" 'ଝରିବାର ବେଳ' ଓ 'ଗୀତ ଗା' ନାରେ ପକ୍ଷୀ' କାବ୍ୟ ସଂକଳନ ମାନଙ୍କରେ କମଳାକାନ୍ତଙ୍କ କାବ୍ୟନାୟକ ଆସିଛି । ଜୀବନକୁ ଖୁବ୍ ପାଖରୁ ଛୁଇଁବା ଓ ଅନୁଭବ କରିବାରେ କବିଙ୍କ କଲମ ବେଶ୍ ଆଗ୍ରହୀ ହୋଇ ଉଠିଛି । 'ଟିକା ଅଂକା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ

ପୃଥିବୀ'ର ମୁକ୍ତ ବଂଧନରେ ଅଧ୍ୟାପକ ଶୁଭେନ୍ଦୁ ମୁଣ୍ଡଙ୍କ ସ୍ୱଚ୍ଛ ସ୍ନିଗ୍ଧ ଦୃଷ୍ଟିକୋଣ ଏଠାରେ ସ୍ମରଣୀୟ । ଏ ସଂକଳନର କବିତା ଗୁଡ଼ିକରେ ଅଛି ବକ୍ତବ୍ୟର ସଚେତନତା, ନୂତନ ଭଙ୍ଗିମା ଓ ସହଜ ଜଟିଳ ଅନୁଭୂତିର କାବ୍ୟିକ ସମୀକରଣ ।" ବାସ୍ତବିକ ଏ ସଂକଳନର 'ନାରୀ' 'ବନମସ୍ତ' 'ପୁନର୍ଗମନ' 'ଢ଼ମିଶ ଫୁଲ' 'ମାନଚନ୍ଦ୍ର' ଓ ବଂଶୀ କବିତା ଗୁଡ଼ିକରେ ଜୀବନ ପ୍ରତି ଅଙ୍ଗୀକାର, ଅନନ୍ୟ ଜୀବନବୋଧ ଓ ସଫଳ ଜୀବନ ଜିଜ୍ଞାସା ଉଲ୍ଲେଖନୀୟ ଉଚିତତା ଦାବୀକରେ । ଏଣୁ ଉଲ୍ଲିଖିତ କବିତାଗୁଡ଼ିକ ସାଂପ୍ରତିକ ସମାଜର ସମସ୍ୟା ଓ ଜୀବନ ଚିତ୍ରକୁ ପ୍ରତିଫଳିତ କରି ପାଠକକୁ ଆଭେର ଭାବପ୍ରବଣ ଓ ମନ୍ତ୍ରମୁଗ୍ଧ କରି ପକାଏ । ପାଠକ ଭଲମନ୍ଦକୁ ଟିକିନଖି ତର୍ଜମା କରି ଶ୍ରୀ ଲେଙ୍କାଙ୍କ ଜୀବନବାଦୀ କାବ୍ୟନାୟକ ସହ ଏକାତ୍ମ ହୋଇଯାଏ ।

ପାଶ୍ଚାତ୍ୟ କବି ଶଲ୍‌ବକ, ଡ଼ିଲନ୍ ଟମାସ୍, ଅଡ଼େନ୍, ଫିଲିପ୍ ଲାର୍‌କିନ୍ ଓ ସିଲଭିଆ ପ୍ଲାଥ୍‌ଙ୍କ କବିତାରେ ଯେଉଁ ପ୍ରଗାଢ଼ ମମତ୍ୱବୋଧ, ଅବବୋଧ ଓ ଅଭିରୁଚିର ଦର୍ଶନ ରହିଛି କମଳାକାନ୍ତଙ୍କ କାବ୍ୟଦୃଷ୍ଟି ସେଥିପ୍ରତି ବେଶ୍ ସଚେତନ ଓ ସମ୍ବେଦନଶୀଳ । ନିମ୍ନୋକ୍ତ କେଇଟି ପଙ୍‌କ୍ତି କମଳାକାନ୍ତଙ୍କ ଜୀବନବାଦୀ ଅନ୍ୱେଷାର ନିଖୁଣ ପରିଚୟ ପ୍ରଦାନ କରେ । ପ୍ରତିଟି କବିତା ଭିତରେ ରହିଛି କବିଙ୍କ ଅନନ୍ୟ ଆତ୍ମ ଅନୁଶୀଳନର ଅଦୃଶ୍ୟ ଇଙ୍ଗିତ ।

"ଜୀବନଠାରୁ ମୃତ୍ୟୁ
ଏତେ ନିକଟସ୍ଥ, ଆତ୍ମୀୟ ସୁହୃଦ
ବୋଲି ସହଜରେ ଜାଣି ପାରେ ନା,
ବୁଝି ପାରେନା ସାଧାରଣ ମଣିଷ ।
ମୃତ୍ୟୁଠାରୁ ଜୀବନ
ଏତେ ପୁଷ୍ଟିତ, ଏତେ ସୁରକ୍ଷିତ, ଏତେ
ପ୍ରସାରିତ ବୋଲି ସହଜରେ
ଜାଣିପାରେ ନା, ବୁଝି ପାରେ ନା
ଧୂଳିଧୂସର, କାଦୁଆ ମଣିଷ ।"

( ନିତ୍ୟ ନିୟମିତ-କବିତା-୯୧ )

ଅଥବା

" ଜୀବନ ମାନେ ଗୋଟିଏ ଭୂଇଁ ଯେଉଁଠି
ବଞ୍ଚିବା ଓ ମରିବା ଭିତରେ ବିଶେଷ କିଛି

ମତ ଅଭିମତ ଭିନ୍ନମତ ॥

ତଫାତ୍ ନ ଥିଲା ବେଳେ ମଣିଷ ଚେକୁବ୍ ଭଳି
ଶ୍ୱାସ ପ୍ରଶ୍ୱାସରେ ଯୁଦ୍ଧ କରୁଥାଇ ।
ହାରିବା ଓ ଜିତିବାର ମାନେ ଖୋଜିଲେ ଦିଶେ
ନିଜେ ନିଜଠୁ ଭିନ୍ନ, ସମସ୍ତ ସମସ୍ତଠୁ
ଛିନ୍ନ, ଦୁଃଖ ସୁଖ ଏକାକାର ।"

(—'ତୁମେ ଯେଉଁମାନେ ଅ:ସୃତ'— ଗୀତ ଗା' ନାରେ ପକ୍ଷୀ)

ଜୀବନ ଓ ଜିଜୀବିଷା ପ୍ରତି କବି ଶ୍ରୀ ଲେଙ୍କାଙ୍କ ଦୃଷ୍ଟିଭଙ୍ଗୀ ଖୁବ୍ ଅନ୍ତରଙ୍ଗ ଓ ଅନୁଭବମୟ । ପ୍ରତ୍ୟେକ କବିର ଗୁପ୍ତ ପଞ୍ଜୁରୀ ସନ୍ଧିରେ ଗୈରିକ ସନ୍ନ୍ୟାସୀ ପରି ନିଃସଙ୍ଗ ମଣିଷଟେ ବି ଲୁଚିଥାଏ ଆମ ଅଲକ୍ଷରେ । ଏ ନିଃସଙ୍ଗତାର ଆବିଦ୍ଧ ରୂପ ସ୍ପଷ୍ଟ ହୋଇ ଉଠେ ଯେତେବେଳେ ଭାବ ବିଧୁର କବି ପ୍ରଚଣ୍ଡ ଜନଗହଳି ଭିତରେ ନିଜକୁ ଏକୁଟିଆ ମନେ କରେ ବିଚ୍ଛିନ୍ନତା ବୋଧର ଶିକାର ହୋଇ । ନିଃସଙ୍ଗ କବିଟେ ଜୀବନର ତର୍ଜମା କରୁ କରୁ ମଣିଷର ସୁଖ ଦୁଃଖ, ବିରହ ମିଳନ, ବିସ୍ମୃତ, ବିଚ୍ଛେଦ, ଅସ୍ପଷ୍ଟ ଅବବୋଧରେ ନିଜକୁ ବ୍ୟବଚ୍ଛେଦ କରିବାକୁ ଅଗ୍ରସର ହୁଏ । କାକୁସ୍ଥତା ଦେଖ ସୃଷ୍ଟି/ କାଳି ପୋଡ଼ି ବସନ୍ତର ମଧ୍ୟାହ୍ନ ଖରାକୁ/ ମୁଁ ନିଜେ ଗାଉଚି ଗୀତ/ ମୋ ରକ୍ଷିତ କଳଙ୍କି ସାରଙ୍ଗି ଧରି/ ବେପରୁଆ । ହସ୍ପିଟ ଢୋକା ପରି/ ନିଶୁନ୍ ଗିତର ଓଠେ ଖିଲ୍‌ଖିଲ୍ ବସନ୍ତ ଉଖାରି ।" (ପ୍ରାର୍ଥନା: କମ୍ପିତ ତୁମକୁ ଓ ସଂପୂର୍ଣ୍ଣ ନିଜକୁ— କବିତାର ମୁହଁ ) ଆମ ସମୟର ଅନ୍ୟତମ ଯଶସ୍ୱୀ କବି ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ— "ବ୍ୟକ୍ତି ସତ୍ତାର ଖଣ୍ଡିତ ଚେତନା ଓ ଛିନ୍ନ ଭିନ୍ନ ସମୟର ଉଚ୍ଛୃଙ୍ଖଳା ସୂଅରେ ତେଣୁ ଆଧୁନିକ କବିତାର ଆଶା ଓ ଦୈନ୍ୟର ରୂପ ଲେଙ୍କା ସୁସ୍ପଷ୍ଟ ।" କବି ମହାପାତ୍ରଙ୍କ ଉକ୍ତିର ଯଥାର୍ଥତା ଏଠାରେ ବେଶ୍ ପ୍ରତିପାଦିତ ହୋଇଛି ।

ଆଧୁନିକ କବିତାରେ ସଂଶୟ, ସଂଘର୍ଷ, ଶଂକା ଓ କ୍ଷୟିଷ୍ଣୁ ଭାବସତ୍ତା ଭିତରେ ବି ବଞ୍ଚିବାର ଦୁରନ୍ତ ଇଚ୍ଛା ଓ ଜୀବନ ପ୍ରତି ସମ୍ବେଦନଶୀଳତାର ସ୍ୱର ଛପି ରହିଥାଏ । କମଳାକାନ୍ତଙ୍କ କାବ୍ୟନାୟକ ସ୍ଥିତି ସର୍ବସ୍ୱ ହୋଇ ଜୀବନର ସଂଘର୍ଷ ସହ ସଂଗ୍ରାମ କରି ନିଜକୁ ଏ ମାଟି ପାଣି ପବନରେ ଠିଆ କରେଇ ପାରିଛି । ଶ୍ଳେଷୋକ୍ତି ଓ ବ୍ୟଙ୍ଗ ମାଧ୍ୟମରେ ସେ ସାଂପ୍ରତିକ ସମାଜର ସଭ୍ୟତାକୁ ନିରିକ୍ଷଣ କରିବାକୁ ଚେଷ୍ଟା କରିଛନ୍ତି । ସ୍ଥିତିଶୀଳ ସମାଜରେ କାବ୍ୟନାୟକ ଜୀବନ ଅଭିମୁଖୀ

ହୋଇ ମଣିଷର ଭାବ ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିପାରିଛୁ । କମଳାକାନ୍ତଙ୍କ କାବ୍ୟ ଜିଜ୍ଞାସାରେ ମେଟା ଫିଜିକାଲ ଦୃଷ୍ଟିଭଙ୍ଗୀର ଅନ୍ତଃସ୍ୱର ଶୁଣିବାକୁ ମିଳେ । ଯଦିଓ ତାଙ୍କ କାବ୍ୟପୁରୁଷ ଦାର୍ଶନିକ ଭାବଧାରାର ନିଗୂଢ଼ ତତ୍ତ୍ୱକୁ ପ୍ରବେଶ କରିପାରି ନାହିଁ, ତଥାପି ଜୀବନର ସ୍ୱାଭାବିକ ମୂଲ୍ୟାୟନ କରିବାରେ ସଫଳ ହୋଇଛୁ । ଜୀବନକୁ ରକ୍ତ ମାଂସର ଶିହରଣ ସହ ଖୁବ୍ ଭଲ ପାଇଛୁ । "ତୁମକୁ ମୁଁ ଏତେ କାହିଁ ଭଲ ପାଏଁ ? ପ୍ରତିକୂଳ ଆଶାର ସୁଅରେ !/ ତୁମକୁ ମୁଁ ଏତେ କାହିଁ ଦେଖେ ନିତି ଜୁଆରିଆ ସମୁଦ୍ର ମୁହଁରେ ?/ ହେ ମୋର କଂପିତ ବେଳା ! ଫଗୁଣର ଫୁଟା ଭୂଇଁ ! ଚଇତର ବଧୂର ସକାଳ/ ତୁମେ ମୋର ଚେତନାର ସାରି ସାରି ସ୍ମୃତିର ଶିଆର ।"
(ହେ ମୋର ବାଧବାମାନେ—୩, ସ୍ମରଣ ବିସ୍ମରଣ' )

ଜୀବନ ପ୍ରତି ନିଷ୍ଠା ଓ ତୃଷ୍ଣା ଥିବା କମଳାକାନ୍ତଙ୍କ କାବ୍ୟନାୟକ ଥରେ ଥରେ T. S. Eliotଙ୍କ ଭଳି ଅସହାୟତାରେ ଗୁମୁରି ଉଠିଛୁ । ଅସଂଲଗ୍ନ ଚିନ୍ତାଧାରା ଓ ଖଣ୍ଡିତ ଚେତନାର ସମନ୍ୱୟରେ ସେ ନିଜ ଅବ୍ୟବସ୍ଥିତ ଅସ୍ତିତ୍ୱକୁ ଆବିଷ୍କାର କରିବା ପରେ ପରେ ଚିନ୍ତିତ ହୋଇ ପଡ଼ିଛୁ । ଅଧୁନାତନ ଜୀବନ ଯନ୍ତ୍ରଣାର ରୁଦ୍ଧ କାରାଗାରରୁ ସେ ନିଜକୁ ମୁକ୍ତ କରି ପାରିନି । ସାଂପ୍ରତିକ ଜୀବନର ସ୍ଥିତିକୁ ନେଇ ଯେଉଁଠି ଗ୍ରସ୍ତାଚ୍ଛନ୍ନ ମଣିଷର ଭାଗ୍ୟ ଓ ଭବିଷ୍ୟତ ସେଠି ବୁଝା-ଅବୁଝା, ବୋଧ ଗମ୍ୟତା ଓ ଅବୋଧ୍ୟତାକୁ କାବ୍ୟ-ନାୟକ ସନ୍ଦିଗ୍ଧ ଦୃଷ୍ଟିରେ ଅନାଇବା କିଛି ବିଚିତ୍ର ନୁହେଁ । ଜର୍ଜ ଲୁକାସ୍ (George Lucas) ତାଙ୍କ The meaning of Contemporary Realismରେ ଏ ବିଷୟରେ କହିଛନ୍ତି— "Man is reduced to a sequence of unrelated experimenial fragments; he is as inexplicable to others as to himself" "ଏଣିକି ମୁଁ ଅଂଜୁଳା ପତାଇ ଦେଉଛୁ ବର୍ଷାକୁ/ ଆଖିରେ ଶୋଷି ନେଉଚି/ ଶରତ ଋତୁର ନିର୍ଜନ ଏକକ ସଂଳାପକୁ/ ଯେ ମୁଁ କ୍ଷମା ଦେଇ ଜାଣେ ନା ନିଜକୁ/ ଚିହ୍ନି ଜାଣେ ନା ନିଜ ଆତୁର ଆଉଟୁ ପାଉଟୁ/ ଚଉଦ ବ୍ରହ୍ମାଣ୍ଡର ଛେଉଣ୍ଡ ବ୍ରହ୍ମକୁ ।" (ମୋ ଛୁଡା ପ୍ରତିଟି ମଣିଷ— ଗୀତ ଗା'ନାରେ ପକ୍ଷୀ) କବି ଲେଙ୍କାଙ୍କ କାବ୍ୟନାୟକ ସାଧାରଣ ମଣିଷର ଜୀବନ ଲିପି ଅନୁଧ୍ୟାନ କଲାବେଳେ ଉଦ୍ଭଟ ଓ ଅସଂଗତ ବ୍ୟକ୍ତିବୋଧରେ ଆକ୍ରାନ୍ତ ହୋଇ ପଡ଼ିଛୁ ।

ମାନବବାଦୀ ଦୃଷ୍ଟିକୋଣରୁ ବିଚାର କଲେ କବି କମଳାକାନ୍ତ ଲେଙ୍କାଙ୍କ କବିତା ଜୀବନ ଓ ଜିଜ୍ଞାସାର ପରମ୍ପରା ଓ ବିବର୍ତ୍ତିତ ଧାରାରେ ଓତଃପ୍ରୋତ ଜଡ଼ିତ

ହୋଇ ଏକ ସମ୍ଭାବନାର ସ୍ୱର ସୃଷ୍ଟି କରି ପାରିଛି । କବିଙ୍କର ଏ ଯାଏଁ ପ୍ରକାଶିତ ବାରଟି କବିତା ସଂକଳନରେ ଜୀବନକୁ ଚିହ୍ନିବା ଓ ବୁଝିବାର ସ୍ୱର ନିଃସନ୍ଦେହରେ ସ୍ୱାଗତଯୋଗ୍ୟ । ଶ୍ରୀ ଲେଙ୍କାଙ୍କ କାବ୍ୟପୁରୁଷ କେଉଁଠି ଜୀବନବାଧିତ କେଉଁଠି ନିରାଶା-ବାଧୀ, କେଉଁଠି ଅସହାୟତାରେ ଆହତ୍‌ ପାଉଟ୍‌ତ କେଉଁଠି ସ୍ଥିତିଶୀଳ ହୋଇ ବଞ୍ଚିବାର ଓ ଜୀବନକୁ ଭଲ ପାଇବାର ସଂବେଗରେ ସମର୍ପିତ । "ଶତା ଅଙ୍କା କାନ୍ତର' ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ" କବିଙ୍କ ନିକଟରେ ପ୍ରକାଶିତ (୧୯୮୭) କାବ୍ୟଗ୍ରନ୍ଥ । ଏ ସଂକଳନଟିର ଆଂଗିକ ଓ ଆତ୍ମିକ ସଂପଦ ଅନ୍ୟ ସଂକଳନଠାରୁ ଭିନ୍ନ । ଏଥିରେ ରୋମାଣ୍ଟିକ୍ ଶୈଳୀ ଓ ଭାଷା ପାଠକର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରେ । କିନ୍ତୁ 'ଗୀତ ଗା' ନାରେ ପକ୍ଷୀ'ରୁ ଗଦ୍ୟ ସ୍ୱରର ତୀବ୍ରତାରେ ପାଠକ ଥରେ ଥରେ ହତଦମ୍ଭ ହୋଇଯାଏ । ଭଗବାନ ଜୟସିଂହଙ୍କ ଭାଷାରେ—"ତାଙ୍କ (କମଳାକାନ୍ତଙ୍କ) ଭାଷା କେବେ ଶୀତଳ ଜହ୍ନରାତି ପରି କୋମଳ ବା ମୁଲାୟମ୍ ତ, କେବେ କଙ୍କିଲ ପଥ ପରି କଠିନ ଓ କଠୋର ।" ଜୀବନର ନିଖୁଣ ସତ୍ୟ ଓ ରହସ୍ୟକୁ ଅନ୍ୱେଷଣ କରିବା କମଳାକାନ୍ତ କାବ୍ୟସତ୍ତାର ଏକ ବିଶେଷତ୍ୱ । ତଥାପି ଜୀବନର ଅହରହ ସଂଗ୍ରାମ ଭିତରେ ସେ ରକ୍ତାକ୍ତ ହୋଇବି ବଞ୍ଚିବାର ଦାବୀକୁ ସାବ୍ୟସ୍ତ କରନ୍ତି ମୃତ୍ୟୁକୁ ଚୁମା ଦେଇ ।

"ହ୍ୟାଣ୍ଡସ୍ ଅପ୍ । ନୋହିଲେ ମୃଥ ।
ନୋହିଲେ ରକ୍ତ । ନୋହିଲେ ମୃତ୍ୟୁର ଅନ୍ୟ ନାମ
ପୁନର୍ଜୀବନ । ଆଃ ! ଦୁଷ୍ମନ ।"

—ଦୁଷ୍ମନ୍ ପାଇଁ ଗୋଟେ ପ୍ରଶସ୍ତି (ଖସିବାର ବେଳ) ପୁନଶ୍ଚ ନିଃସଙ୍ଗ ଜୀବନ ଭିତରେ ସେ ମୃତ୍ୟୁକୁ ସୃଷ୍ଟିଶୀଳତାର ଅନନ୍ୟ ଛନ୍ଦ ବୋଲି ମନେ କରନ୍ତି । "ନିଜ ନିଜ ସତ୍ତାର ତାଳରେ/ମୃତ୍ୟୁ ଭଳି ଆତ୍ମୀୟ ବା କିଏ ଅଛି ?/ନାନାବାୟା ଗୀତର ତାଳରେ !' (—ମ୍ଳେଚ୍ଛ-ଅଂତତଃ ନିଷ୍ଟୁପ)

କବି କମଳାକାନ୍ତଙ୍କ କାବ୍ୟଶିଳ୍ପରେ ଭାବ, ଭାଷା ଓ ଶୈଳୀର ବହୁବିଧ କାରୁକାର୍ଯ୍ୟ ପରିଲକ୍ଷିତ ହୁଏ । ଅନେକ କବିତାରେ ଚିତ୍ରକଳ୍ପର ପ୍ରୟୋଗ ଓ ନାଟ-କୀୟତା ପାଠକକୁ ଜୀବନବୋଧର ନିଚ୍ଛକ ଚିତ୍ର ପ୍ରଦାନ କରିବାକୁ ସମର୍ଥ । କିନ୍ତୁ ସ୍ଥାନେ ସ୍ଥାନେ କବିଙ୍କ କାବ୍ୟ ପୁରୁଷ ଭାଷା ଓ ପ୍ରତୀକ ପ୍ରୟୋଗରେ ଦୁର୍ବୋଧ୍ୟତାକୁ ପ୍ରଶ୍ରୟ ଦିଏ । ଆଧୁନିକତାମାନେ ଅବୋଧ୍ୟତା ନୁହେଁ । ପାଠକଂକ ସଶ୍ରଦ୍ଧ ପାଠ-

କାବ୍ୟତାର ଧାରାବାହିକତା ଓ ଜୀବନାନୁଶୀଳନ କବି ଶ୍ରୀ ଲେଙ୍କାଙ୍କ କବିତା ବୁଝିବାରେ ଯେ ସହାୟକ, ଏଥିରେ ମୁଁ ବିଶ୍ୱାସୀ । ଲେଙ୍କା କେବଳ ଧୈର୍ଯ୍ୟ, ଗଭୀର ମନନଶୀଳତା ଓ କବିତାର ପ୍ରାଣ ପ୍ରବାହ ଭିତରେ ପାଠକର ଅନ୍ତରଙ୍ଗ ଆବେଗର ପ୍ରତିବିମ୍ବ । କବିତାକୁ ଭଲ ପାଇବା ଓ ବୁଝିବା ଭିତରେହିଁ ଜୀବନର ସୂକ୍ଷ୍ମ ସତ୍ତାକୁ ଉପଲବ୍ଧି କରିବା, ଜୀବନକୁ ଗୋଟାପଣେ ଭଲ ପାଇବା । ଡକ୍ଟର ମଥୁରାନାଥ ହୋତା କହନ୍ତି "କମଳାକାନ୍ତ ଲେଙ୍କା କବିତାକୁ ନେଇ ବଞ୍ଚନ୍ତି । ପ୍ରତିଟି ଶ୍ୱାସ ପ୍ରଶ୍ୱାସ ଭିତରେ କବିତାର ଗନ୍ଧ ବାରନ୍ତି । ବୁଦ୍ଧି ଓ ହୃଦୟର ସମୀକରଣକୁ ପସନ୍ଦ କରନ୍ତି । ଭଲ ମନ୍ଦ, ପାପ ପୁଣ୍ୟକୁ ସମୁଚିତ ମର୍ଯ୍ୟାଦା ଦିଅନ୍ତି । ଜୀବନ ତାଂକ ପାଇଁ ଗୋଟେ ଆହ୍ୱାନ । କଳା ତାଂକ ପକ୍ଷରେ ସେମିତି ଏକ ନିତ୍ୟ ନୂତନ ସାହଚର୍ଯ୍ୟ ।" ସତରେ କହିବାକୁ ଗଲେ କବି ଶ୍ରୀ ଲେଙ୍କା ସମକାଳୀନ ଓଡ଼ିଆ କବିଙ୍କ ମଧ୍ୟରେ ଗୋଟେ ସାର୍ଥକ ଓ ସନ୍ଦୀପ୍ତ ସ୍ୱର । ସେଇ ସ୍ୱର ଝଙ୍କାର ପ୍ରତି ତାଙ୍କ ସୃଜନଶୀଳତା ଆହୁରି ଅଧିକ ଆନୁଗତ୍ୟ ପ୍ରକାଶ କରୁ, ଏତିକି କାମନା କରିବା ସବୁ ଦିଗରୁ ସଙ୍ଗତ ।

**ସୌଭାଗ୍ୟବନ୍ତ ମହାରଣା**
ବଲାଙ୍ଗିର
୨୨ । ୧୦ । ୮୮

## —ସହାୟକ ଗ୍ରନ୍ଥ ସୂଚୀ—


୧) ଆଧୁନିକ କାବ୍ୟ ଜିଜ୍ଞାସା : ଚିନ୍ତାକଳ୍ପ—ଦାଶରଥି ଦାସ
୨) ଅସ୍ତିତ୍ୱବାଦର ମର୍ମ କଥା—ଶରତ କୁମାର ମହାନ୍ତି
୩) ଭିନ୍ନ ଆକାଶ ଭିନ୍ନ ଦୀପ୍ତି—ସୀତାକାନ୍ତ ମହାପାତ୍ର
୪) ଝଙ୍କାର-ପୂଜାସଂଖ୍ୟା-୧୯୮୭—ଭଗବାନ ଜୟସିଂହ
୫) ଜୀବନ ଶୀର୍ଷରେ କବି କମଳାକାନ୍ତ—ଡ଼କ୍ଟର ମଥୁରାନାଥ ହୋତା
୬) ଝଙ୍କାର-ସେପ୍ଟେମ୍ବର-୧୯୮୧—ଡ଼କ୍ଟର ନିତ୍ୟାନନ୍ଦ ଶତପଥୀ
୭) The Meaning of the Contemporary Realism—
By George Lucas
୮) Selected Essays—T. S. Eliot


ମତ ଅଭିମତ ଭିନ୍ନମତ ||

# ବିନ୍ଦୁଏ ନିଆଁ : ବଞ୍ଚିବାର ପରିଧି—
# କମଳାକାନ୍ତଙ୍କ କବିତା

ଆଲୋଚନାର ଆରମ୍ଭରୁ କବି ଶ୍ରୀ କମଳାକାନ୍ତ ଲେଙ୍କାଙ୍କ 'କେମିତି ବଞ୍ଚିଛି ମୁଁ' କବିତାରୁ କେତୋଟି ପଙ୍କ୍ତି ଉଦ୍ଧାର କରୁଛି—

"କିଏ କହିବ ମୁଁ ବଞ୍ଚିଛି ?
ବଞ୍ଚିବାର ମାନେ ଯଦି ପ୍ରତି କଥାରେ
ମଥା ଟୁଙ୍ଗାଇବା ଓ ନିର୍ବିଘ୍ନରେ ସବୁ କିଛି ମାନି ନେବା,
ଚୁପ୍ ହେବା, ହସିଦେବା"

ବେଦରେ ବର୍ଣ୍ଣିତ ଅଛି :

'ପରୀକ୍ଷ୍ୟ ଲୋକାନ୍ କର୍ମ ଚନ୍ତାନ୍'—ଅର୍ଥାତ୍ ନିଜର ଅନୁଭବ ଓ କର୍ମ କ୍ଷେତ୍ରକୁ ମଣିଷ ନିଜର ଦୃଷ୍ଟି ଓ ଦର୍ଶନ ଜରିଆରେ ପରୀକ୍ଷା କରିବା ଉଚିତ । ମଣିଷର ଧର୍ମ : ପ୍ରଥମେ ବିଚାର ଓ ପରେ ବିଶ୍ୱାସ । ଯିଏ ବିଚାର ନ କରି ସବୁ ବିଷୟକୁ ଅନ୍ଧ ଭାବରେ ଗ୍ରହଣ କରି ନିଏ, ଯାହାର ନିଜସ୍ୱ ଚିନ୍ତନ ଓ ବିଜ୍ଞାନ ନ ଥାଏ, ସେ ମଣିଷ ନୁହେଁ, ପଶୁ ! ବଞ୍ଚି ଥାଇ ବି ମୃତ !

କମଳାକାନ୍ତ ସାଂପ୍ରତିକ କାଳର ଜଣେ ସ୍ୱର୍ଚ୍ଚିତ କାବ୍ୟଶିଳ୍ପୀ । ଦାରୁଣ ପ୍ରତିକୂଳ ପରିସ୍ଥିତିରେ ରକ୍ତାକ୍ତ ହୋଇ ଚାଲିବାଟା ଯା'ର ନିୟତି । ନିଧାର୍ଯ୍ୟ ଭାଗ୍ୟ । ସାମ୍ନାରେ ଉଜାଣି ସ୍ରୋତ । ଦୁଇ ତଟରେ ତଟସ୍ଥ ଜୀବନ । ମଥା ଉପରେ ବନ୍ଧ୍ୟା ଶୂନ୍ୟତାର ବିସ୍ତୃତି । ଅଥଚ ଆଗକୁ ମାଡ଼ିବାର ଆସ୍ପର୍ଦ୍ଧାରେ ଅଟଳ କାବ୍ୟ ପୁରୁଷ । ତାର ଏକମାତ୍ର ଲକ୍ଷ୍ୟ : ବଞ୍ଚିବା ! ବଞ୍ଚିବା ପରି ବଞ୍ଚିବା । କେବଳ ବଞ୍ଚିବା ନୁହେଁ : ବଞ୍ଚିବାର ସତ୍ୟଟିକୁ ଉଦ୍‌ଘାଟନ କରିବା, କୋଳେଇବା । କିନ୍ତୁ ବାଟ ସରେ ନା । ସତ୍ୟକୁ ଛୁଇଁ ହୁଏ ନା । ସେଇ ଦୁର୍ଲଭ ସତ୍ୟଟି ପାଇଁ କାବ୍ୟ ପୁରୁଷ ଜାରି ରଖିଥାଏ ଅବିରାମ ଅନ୍ୱେଷଣ—"ତଥାପି ବାଟ ସରେ ନାହିଁ/ ଓ ଚାଲୁ ଚାଲୁ ଟିକି ବସିଯାଏ/ଧିକ୍‌କାରର ଗୋଇଠିରେ/ରକ୍ତ ଜମିଯାଏ ବଙ୍କା ବାଡ଼ିଟିର ଅଜସ୍ର ଗଣ୍ଠିରେ/ ନାଲି ଟକ ଟକ କୁଆ ମଇତାଟି ପରି ମୁଁ ଝୁଲୁଥାଏ/ସତ୍ୟର ନହକା ଡାଳରେ/ଅଥଚ ହାତ ପାଏ ନାହିଁ ।"

।। କବି କମଳାକାନ୍ତ

ତେବେ ସେଇ ଦୁର୍ଲଭ ସତ୍ୟଟି କଣ ? ନିଆଁ ଝୁଲ ମୃତ୍ୟୁର ପ୍ରବନ୍ଧ ଉଚ୍ଚାରଣ ? ଜୀଇବାର ଲଭ କ୍ଷତ ମିଶାଣ ଫେଡ଼ାଣ ? ଲଢ଼ିବାର ଇତିବୃତ୍ତ ନା ଦ୍ୱନ୍ଦ୍ୱ, ଦ୍ୱିଧା, ସଂଶୟ ? ସତ୍ୟ ବୋଧ ହୁଏ ଗୋଟେ ଅରଣ୍ୟ । ଯା' ଭିତରେ ଧନ୍ଦ ହେବାଟାଇ ଆମର ଭାଗ୍ୟ । ତେବେ ସେ ଦୁର୍ଗମ ହେଲେ ବି ଦୁର୍ବୋଧ ନୁହେଁ, କିଛି କିଛି ବୋଧ୍ୟ । ସାଂପ୍ରତିକ ମଣିଷଟି ବଞ୍ଚିବାର ଗନ୍ଧ ଖୋଜି ଖୋଜି ସତ୍ୟର ଦୁର୍ଗମ ଅରଣ୍ୟରେ ବାଟବଣା ବାଟୋଇଟିଏ ପରି କ୍ଳାନ୍ତ, ଶ୍ରାନ୍ତ, ନିସ୍ୱାନ୍ତ, କ୍ଷତ, ବିକ୍ଷତ । ସଂଶୟର ମୂଳ ଖୋଜି ଖୋଜି ସେ ନିଜେ ବାରମ୍ବାର ପୋଡ଼ି ହୋଇ ପଡ଼େ ମାଟିରେ । ଗୋଟେ ମଡ଼ା ପରି । କେବଳ ତାର ନିଜସ୍ୱ ବ୍ୟକ୍ତିତ୍ୱର ବୟାନ : 'ସତ୍ୟ ମଡ଼ା । ସତ୍ୟହିଁ ଜାରଜ ।' ନିଜର ପ୍ରକୃତି' ମୁଁ ଟିକୁ ମଣିଷ ଚିହ୍ନି ପାରେନା ବୋଲି ବାରମ୍ବାର ମଡ଼ା ପାଲଟେ, ପଚେ । ନିଜର ଆତ୍ମ ପରିଚୟ ପାଏ ନା ବୋଲି ନିଜକୁ ଏକ ଜାରଜ ବୋଲି ସନ୍ଦେହ କରେ । ତେଣୁ ତା' ଆଖିରେ ସତ୍ୟ 'ମଡ଼ା ଓ ଜାରଜ' ପରି ପ୍ରତିଭାତ ହୁଏ । ସାଂପ୍ରତିକ ମଣିଷର ଏ ପ୍ରକାର ଉଦ୍‌ଭ୍ରାନ୍ତତା ନେଇ କବିଙ୍କ ଚେତନାର ବ୍ୟଞ୍ଜିତ ହେଉଛି ପ୍ରଚ୍ଛନ୍ନ ସାଟାୟାର୍ । ତାହା ଯେପରି କୌତୁକପ୍ରଦ, ସେହିପରି ଶାଣିତ ।

ବଞ୍ଚିବାର ବିମୁଗ୍ଧ ଆକାଂକ୍ଷାରେ କମଳାକାନ୍ତଙ୍କ କାବ୍ୟଚେତନା ବହୁଧା ବିଭକ୍ତ । କବି ଦୃଷ୍ଟିରେ ଯେଉଁ ଦୃଶ୍ୟଟି ଆପାତତଃ ସତ୍ୟ ପରି ମନେହୁଏ ଓ ଜୀବନର କାଠଗଡ଼ାରେ ନିଜକୁ ଆସାମୀ ସଜାଇ ନିଜ ପାଇଁ ସତ୍ୟ-ସାକ୍ଷ୍ୟ ମିଳିଲା ବେଳକୁ ସେଇ ନିର୍ଦ୍ଦିଷ୍ଟ ମୁହୂର୍ତ୍ତଟି ହଠାତ୍ ବୟାନ ବଦଳାଇ ଦେଲାପରି ବୋଧ ହୁଏ । ସେଥିପାଇଁ କାବ୍ୟ ପ୍ରଚ୍ଛଦର ଅଭିମାନ ପ୍ରଚୁର, ପ୍ରତିବନ୍ଦିତା ବି କିଛି କମ୍ ନୁହେଁ । " ନିସ୍ୱପ୍ନ ମାଛଟି ପରି ଠକାମିର ପନିଷିରେ/ ଆମେ ସବୁ ଠିବା ଆସ ଜୀବନକୁ ଥରେ ସମର୍ପିବା/ × × × ବଞ୍ଚିବାର ଫଳକରେ ଆମେ ସବୁ ଠିବା ଆସ/ ଜାଅନ୍ତା ଶବର ଲୁହେ ସରମର କବିତା ଲେଖିବା" ଆଦି ଧାଡ଼ିଗୁଡ଼ିକ ଏଠାରେ ସ୍ମର୍ତ୍ତବ୍ୟ । ତେବେ କବିଙ୍କର ମୁକ୍ତ ଆତ୍ମା ସମାଜର କୌଣସି କଟୁ ଦୃଶ୍ୟରେ ସଙ୍କୁଚିତ ନୁହେଁ । ସମସ୍ତ ବିଫଳତା ଭିତରେ ବି ସେ ସବୁରେ ପ୍ରଚୁର ସଫଳତା ସେ ଖୋଜନ୍ତି । ସକଳ ବିତୃଷ୍ଣା ଭିତରେ ତେଣୁ କବି ଆତ୍ମାରେ ସେ ସବୁ ମହାର୍ଘ ଓ ସମୃଦ୍ଧ ସଂପନ୍ନ ମନେ ହୁଏ ।

ଜୀବନର ପ୍ରସନ୍ନତା ଖୋଜିବାକୁ ଯାଇ କବି ବାଟନ୍ତି ଅନେକ ପ୍ରଶ୍ନର ଭିଡ଼ । ବହୁ ବାଦ ବିବାଦର ବ୍ୟୂହ ଭିତରକୁ ପଶି ଆସନ୍ତି ନିଜ ଅଜାଣତରେ । ବହୁ ସମସ୍ୟାର ଶିଆଳି ଲଟା ଭିତରେ ଛନ୍ଦି ହୋଇ ପଡ଼ନ୍ତି ଓ ସାଂପ୍ରତିକ ଜୀବନରୁ ସକଳ ଛନ୍ଦ ତାଙ୍କୁ

ମତ ଅଭିମତ ଭିନ୍ନମତ ॥

ମୂଲ୍ୟ ଦେବାକୁ କଳେଇ ପାଉଛି ଯାଆନ୍ତି ତାପ ଶବରର ଶାଣିତ ଶାସ୍ତ୍ରବଟିଏ । ସେଥିପାଇଁ ତାଙ୍କର ବାକ୍‌ରୀତି ଏତେ ତୀକ୍ଷ୍ଣ, ଭାବ ବ୍ୟଞ୍ଜନା ଏତେ ଅର୍ଥବହ ।

ସମସାମୟିକ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ପରି କମଳାକାନ୍ତ ମଧ୍ୟ ବଳିଷ୍ଠ ଶବ୍ଦର ମାଲିକ୍ । ଉଭୟଙ୍କ କବିତା ଅନେକାଂଶରେ ଓଜଃଗୁଣ ସଂପନ୍ନ । ଉଭୟେ ଆପଣାର ଅହଂ ସଚେତନତାରେ ସତତ ମୁଖର ଓ ପ୍ରକାଶ ଭଙ୍ଗୀରେ ଋଦ୍ଧିତ । ତେବେ ପାର୍ଥକ୍ୟ ଏତିକି : ଖୁବ୍ ବଡ଼ ବଡ଼ କଥାକୁ କମଳାକାନ୍ତ ଯେପରି କୌତୁକ ଓ ପରିହାସ ଛଳରେ ( କଣ୍ଟା ଘାଆରେ ଚୂନ ମାରିଲା ପରି ) ପ୍ରକାଶ କରିଦିଅନ୍ତି, ରାଜେନ୍ଦ୍ରଙ୍କ ଠାରେ ତାହା ନଥିଲା ପରି ମନେ ହୁଏ । ପୁଣି ରାଜେନ୍ଦ୍ର ବେଳେ ବେଳେ ଅତ୍ୟଧିକ ମୁଖର ହେଲେ ତାଙ୍କର କେତେକ ଧାଡ଼ି ଯେପରି ଷ୍ଟେଟ୍‌ମେଣ୍ଟ ଧର୍ମୀ ହୋଇ ପଡ଼େ, କମଳାକାନ୍ତଙ୍କର ସେପରି ଘଟୁଥିଲେ ହେଁ ତାଙ୍କର କାବ୍ୟିକ କୌତୁକ ତାଙ୍କୁ କେନ୍ଦ୍ର ଆଡ଼କୁ ଟାଣି ଆଣେ । ଉଦାହରଣ :

> " ସମ୍ବରଣ କର ବସୁନ୍ଧର । ଜମ୍ବୁଦ୍ୱୀପ, ଭାରତ ଖଣ୍ଡ ।
> ସମ୍ବରଣ କର ରାଜା ବଗିରୁ କଟକ-ଏ ... ... "

( ପ୍ରତ୍ୟାବର୍ତ୍ତୀ : ରାଜେନ୍ଦ୍ର କିଶୋର ପଣ୍ଡା )

> " ଶୁଣ୍ ଶୁଣ୍ କାନ୍ତକବି, ଶୁଣ୍ କମଳାକାନ୍ତ
> କାନ ମୋଡ଼ ନାକ ଘଷ୍
> କବିତାରେ ହେବୁ ତୁ ଯେ ଶେଷ୍ ।"

( କବି ଉବାଚ — କମଳାକାନ୍ତ ଲେଙ୍କା )

କବିତାକୁ ଭାବ ନୁହେଁ, ବ୍ୟଞ୍ଜନା ହିଁ ଅଧିକ ସଫଳ କରେ । ଯେଉଁ କବିତାର ବ୍ୟଞ୍ଜନା ଯେତେ ଶାଣିତ ଓ ଋଷ୍ଟରଣଶୀଳ (Communicative), ସେଠି ତାର ଭାବଟି ସେତେ ଋଷ୍ଟ ଓ ସଂବେଦନାତ୍ମକ । ସେଇ ସଫଳତମ ମୁହୂର୍ତ୍ତଟି ଏକ ବାସିଲ ମୁହୂର୍ତ୍ତ । ଏକ ଗୀତମୁଖର ସ୍ରୋତ ( ରୂତ ? ) ସେତେବେଳେ ବୁଝିହୁଏ ମାଟି ପାଣିକୁ, ମେଘ ପବନକୁ, ଆକାଶକୁ ଓ ଛନ ସ୍ୱଚ୍ଛକୁ । ବୁଝି ହୁଏ : 'କେହି ନ ଥିଲା ବେଳେ ପବନ କଥା କହୁଚ ପବନକୁ/ ମାଟି କହୁଚ ମେଘକୁ, ଘାସ କହୁଚ/ ପତ୍ରକୁ ଯେ : ଆଜି ରାତର ଦେହ ଅଦମ୍ଭ ଭାବେ ବାସୁଚ/ ଆଜି ରାତର ଓଠରୁ

ଗୀତର ସୂଅ ଛୁଟିଛି ।" ( ସାଗ୍ର ସ୍ୱପ୍ନ ଉଜାଗର ) ତଥାପି କବିଟି କହେ : "କିଏ ଜାଣେ, କବିତା କିମିତି ହୁଏ" ? ( କବି ଚରିତ ) ସମାଜ ଆଖିରେ ଗୋଟେ ପଛା କବି ତ ହ ଅଣିଆ ଅଚଳ ଦୋ ପଇସି । ଗୋଟେ ତିନ ଆଖିଆ ନକଲି ଶମ୍ଭୁ । ଯାହାର ପାଠ ଘରେ ଶୂନ୍ ଡାଲି ଓ ଶାଠ ଘରେ କେବଳ ଢେଁଟେ । ଯାହାକୁ ଗୁରୁ ଘର ବିଦ୍ୟା କିଛି ଜଣା ନାହିଁ । ସିଏ ଗୋଟେ ଗୋବର ଗଣେଶଟିଏ ମାତ୍ର ! କବିଙ୍କର ଏଇ ବିନୀତ ସ୍ୱୀକାରୋକ୍ତି ବଡ ଶ୍ଳେଷ ବ୍ୟଞ୍ଜକ । ଆଜିକାଲି 'ଗୁରୁଘର ବିଦ୍ୟା' କହିଲେ— ବୁଝାଯାଏ ପାଣ୍ଡିତ୍ୟ ନୁହେଁ— ଅନ୍ୟର ତଣ୍ଟି କାଟିବା । ସବୁ ତଣ୍ଟିକଣ୍ଟାମାନେ ଆଜି ଯେତେବେଳେ ସମାଜର ବଡ଼ପଣ୍ଡା ସାଜିଛନ୍ତି, ତାଙ୍କର ନକଲି ଆଖିରେ ବିଚରା କବିଟି ନକଲି ଶମ୍ଭୁ' ପରି ମନେ ହେବା ଅତ୍ୟନ୍ତ ସ୍ୱାଭାବିକ ।

ଦୁଃଖରେ ଅହୋରାତ୍ର ଉଜାଗର କବିର ଭାଗ୍ୟ । କମଳାକାନ୍ତଙ୍କ ଭାଗ୍ୟଟି ମଧ୍ୟ ନିଆରା ନୁହେଁ । କବିର ଭାଗ୍ୟତ ପାପ-ପୁଣ୍ୟର ଦୋ ଦୋ ଛିଣ୍ଡା ଏକ ଦୋସରା ଜଗତ । ପୃଥକ ପୃଥକ୍ ଗଣ୍ଡଣାରେ ତିଆରି ତା'ର ସ୍ଥିତି । ଅରଣା ଅନାବନା ଶବ୍ଦ-ପୁଳାଏ ତା'ର ସଂପତ୍ତି । ସ୍ପର୍ଶ ଭୂମିଠୁ ଅସ୍ପର୍ଶ ଭୂମା ଯାଏ ତାର ବ୍ୟାପ୍ତି । ଖରାର ନାହିକୁ ବର୍ଷା ଚୁମିବା ପରି ସମସ୍ତ ଖେଦକୁ ଚୁମି ପାରେ କବିର ସ୍ୱେଦ । ସବୁ ଭୁଲ୍‌କୁ ଉଡେଇ ନେଇ ପାରେ ମାତ୍ର ଗୋଟେ ଶବ୍ଦ । କୌଣସି ଜାଲ୍ ଛଟିର ବିଭକ୍ତ ଟୁକୁରା ଯେମିତି ଉଡିଯାଏ ପବନରେ—ଯେମିତି ଗୋଟାଏ ସଫଳ ଓ ସାର୍ଥକ ମୁହୂର୍ତ୍ତିର ପ୍ରେମରେ କବଳିତ ହୁଏ ମୃତ୍ୟୁ । ଏଇ ସାର୍ଥକ ମୁହୂର୍ତ୍ତିଟି ପାଇଁ ତାର ଜୀବନବ୍ୟାପୀ ସତ୍ୟାନୁସନ୍ଧାନ । ଏମିତି ଗୋଟେ ସଫଳ ସତ୍ୟର ନିର୍ଯ୍ୟାସକୁ ଚାଖିବା ଲାଗି ସେ ଜାଣି ରଖିଥାଏ ଆମରଣ ବ୍ୟାକୁଳତା । ଯଦିଓ ସେ ଜାଣେ—

"ଯେ ସତ୍ୟଟିଏ ଖୋଜେ ତାକୁ ବୁଡ଼ି ମରିବାକୁ ହୁଏ
ଶହ ଶହ ଦେଖଣାହାରିଙ୍କ ସାମ୍ନାରେ, ଯେ ପ୍ରତିବାଦର
କ୍ଷୀଣ ସ୍ୱରଟିର ଘୁଙ୍ଗୁରପିନ୍ଧା ପାରିକୁ
ଉଡାଇ ଦିଏ ନୀଳ ଆକାଶ ତଳେ ତାକୁତ
ଭୋଗିବାକୁ ହୁଏ ଚଉରାଶି ନର୍କ !"

( ଭୁଲ )

ସବୁ ସ୍ଥିତିବାଦୀଙ୍କ ପରି କମଳାକାନ୍ତଙ୍କ ଉଚ୍ଚାରଣ ବଡ଼ ସ୍ପଷ୍ଟ ଓ ଜୀବନ ନିଷ୍ଠ । ବଂଚିବାର ଦାବୀରେ ମୁଖରିତ । ଗୋଟିକିଆ ମଣିଷର ଜୀବନ ଯେତେ ନିଃସଙ୍ଗ ହେଉ

ପକ୍ଷେ ତା'ର ସ୍ୱରଟି ଭିଡ଼ ଭିତରୁ ମୁକ୍ତ ନିଶ୍ଚୟ । କୌଣସି ହୋହଲ୍ଲାର ଖିଏ ଧ୍ୱନି ନୁହେଁ । କୋଟି କୋଟି ତାରାଙ୍କ ମେଳରେ ଗୋଟିଏ ତାରା ହେବା ଅପେକ୍ଷା କେଉଁ ଏକ ଅନ୍ଧାରିଆ ଘର କୋଣରେ ଏକାକୀ ଲଣ୍ଠନଟିଏ ହେବାରେ ବରଂ ଅଧିକ ଗୌରବ । ଏଇ ଗୋଟିକିଆ ମଣିଷକୁ ସମୁଦାୟ ଗୌରବ ଦେବାପାଇଁ ସୋ'ରେନ୍ କିର୍କେଗାର୍ଡ୍, ଫ୍ରେଡ୍‌ରିକ୍ ନିତ୍ସେ ଓ ଜ୍ୟାଁପଲ ସାର୍ତ୍ତଙ୍କ ଭଳି ଶୁଦ୍ଧ ସ୍ଥିତିବାଦୀମାନେ ଗଣ କିଛି କମ୍ କଷ୍ଟ ସ୍ୱୀକାର କରି ନାହାନ୍ତି । ମଣିଷ ନିଃସଙ୍ଗ ହେଲେ ଯାଇ ନିଜକୁ ବୁଝି ପାରେ ବୋଲି ସେମାନେ ଯୁକ୍ତି ବାଢ଼ନ୍ତି । ସେଇ 'ବୁଝିବା'ରୁ ଜନ୍ମ ନିଏ ଭଲ ପାଇବା । କମଳାକାନ୍ତଙ୍କ ଆତ୍ମାର ଉଚ୍ଚାରଣ ମଧ୍ୟ ଅନୁରୂପ :

> "ମୁଁ ଏକାନ୍ତ ଭଲ ପାଏ ଆପଣାର ନୂତନ ପୃଥିବୀକୁ,
> ଆପଣାର ପ୍ରବୃତ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ
> ଭଲପାଏ ଦୁଷ୍ଟ ମଣିଷକୁ
> ଭଲ ପାଏ ଭଙ୍ଗା ଖେଳନାକୁ
> ଭଲ ପାଏ, ବଞ୍ଚିବାର ନୂଆ ନୂଆ ସ୍ୱପ୍ନଙ୍କର
> ସ୍ପନ୍ଦିତ ଇଚ୍ଛାକୁ ।"
>
> [ନିଜ ସପକ୍ଷରେ]

କବି ଚିତ୍ତ ପୃଥିବୀ ପରି ବିଶାଳ ଓ ବିଚିତ୍ର । ତା'ର କଳ୍ପନା କ୍ଷେତ୍ରରେ ପୃଥିବୀର ସବୁ ସତ୍ୟ ଓ ସୌନ୍ଦର୍ଯ୍ୟ ରୂପ ନେଇଥାଏ । ସେ ରୂପଟି କ୍ଷୁଦ୍ର ହେଲେହେଁ ନଗଣ୍ୟ ନୁହେଁ । କାରଣ" କବିର ଅନ୍ତର୍ଲୋକର ଆନ୍ଦୋଳନ ଏବଂ ଚେତନ ସହିତ ବାହ୍ୟ ଜଗତର ସଂପର୍କ ଯେତିକି ଜଟିଳ ସେତିକି ସ୍ପଷ୍ଟ, ଯେତିକି ଆନ୍ତରିକ ସେତିକି ବିଚ୍ଛିନ୍ନ, ଯେତିକି ବ୍ୟକ୍ତିଗତ, ସେତିକି ସୁଦୂର ପରିବ୍ୟାପ୍ତ ।"

ଜୀଇଁବାର ଉଲଙ୍ଗ ବାସ୍ତବତାକୁ ଅବିକଳ ଭେଟିବା ଲାଗି ଶ୍ରୀ ଲେଙ୍କା କେତେ ଆଗ୍ରହୀ ସତେ ! ତେବେ ସେ ବାସ୍ତବତା ବହୁରୂପୀ ନିଶ୍ଚୟ । ସାର୍ତ୍ତଙ୍କ ଭାଷାରେ— "ମୁଁ ଯେଉଁ ସତ୍ୟକୁ ଅନ୍ତରରେ ଉପଲବ୍ଧି କରୁନାହିଁ ତେବେ ତାହା ମୋ ପାଇଁ ସତ୍ୟ ନୁହେଁ । ସତ୍ୟର ଭିତ୍ତି ମୁଁ ବା ଅହଂ ।" ହେଉ ବହୁରୂପୀ ବାସ୍ତବତା କେତେବେଳେ କେଉଁପରି ଦୃଶ୍ୟ ହୁଏ, ଠିକ୍ କହି ହୁଏ ନା । ଜୀବନର ସାମର୍ଥ୍ୟ ତଉଲିବା ପାଇଁ ବୋଧେ ସେ ଲୁଚକାଳି ଖେଳୁଥାଏ । କବିଙ୍କ ମଧ୍ୟ ଏ କଥାଟି ଆଦୌ ଅଜାଣୁ ନୁହେଁ —

॥ କବି କମଳାକାନ୍ତ

"ଭଲ କଣ୍ଠ ଜାଣେ କବି
କାହିଁକି ଓ କେଉଁମିତ ଛଟପଟ
ଈଶ୍ୱରଙ୍କ ଯାବତୀୟ ସୁନ୍ଦର ସୃଷ୍ଟିର
ଆକର୍ଷଣ, ରହସ୍ୟ କବନେ ।"

( ଗୋଲକ ଧନ୍ଦା )

ମୋର ମନେ ହୁଏ, କମଳାକାନ୍ତଙ୍କ କାବ୍ୟପୁରୁଷ ବଞ୍ଚିବାର ବ୍ୟାପକ ପରିଧିରେ ପ୍ରକୃତ ପକ୍ଷେ ବିଚରଣଶୀଳ । ତେଣୁ ସେ ନିଜେଇ ନିଜ ପାଇଁ ଏକ ରହସ୍ୟ । ବଞ୍ଚିବାକୁ ନେଇ ତାଙ୍କ ଭିତରେ ଯାବତୀୟ ଦ୍ୱନ୍ଦ୍ୱ, ସଂଘର୍ଷ, ସନ୍ଦେହ, ଅବିଶ୍ୱାସ, ଆକ୍ରୋଶ ପୁଣି ବେଳେବେଳେ ସୁନ୍ଦର ବୁଝାମଣା, ଯୋନାଯୋନି ଭାବ ଓ ସାମୟିକ ସହାବସ୍ଥାନ ! ସେଇହେତୁ ଶ୍ରୀ ଲେଙ୍କାଙ୍କ ଚେତନା ଓ ଚିନ୍ତନରେ ଜୀବନ ଓ ମଣିଷର ଆବର୍ତ୍ତନ ପରି ବଞ୍ଚିବାଟା ଭିନ୍ନ ଭିନ୍ନ ଭାବରେ ପ୍ରତିଭାତ । ପ୍ରାସଙ୍ଗିକତା ଦୃଷ୍ଟିରୁ କେତୋଟି ପଙ୍‌କ୍ତି ଉଦ୍ଧାର କଲେ ଭଲ ହେବ : "ଆମେ ସବୁ ଯିବା ଆସ ଦାୟୁମାସ୍ତୁ ଜୀବନ ଗଳାରେ/ବଞ୍ଚିବାର ବ୍ଲେଡ୍ ଦାଗ ଅଙ୍କା ପରଖିବା/ଆମେ ସବୁ କମିତ ବଞ୍ଚିବା ?" (ମରଣ ଜାତକ) । 'ମୋ ପୁଣ୍ୟର ତୁମେ ଅଂଶୀଦାର/ମୋ ପାପର ମୁଁ ଅଧିକାରୀ/ମୁଁ ବଞ୍ଚେ ଅବା ମରେ, ମରେ ଅବା ବଞ୍ଚେ କି ଯାଏ ତୁମର' [କି ଯାଏ ବଞ୍ଚେ ଅବା ମରେ)—'ଜୀବନ ମାନେ ଗୋଟେ ଭୂଇଁ ଯେଉଁଠି/ବଞ୍ଚିବା ଓ ମରିବା ଭିତରେ ବିଶେଷ କିଛି ତଫାତ୍ ନ ଥିଲା ବେଳେ ମଣିଷ ବେକୁବ୍ ଭଳି ଶ୍ୱାସ ପ୍ରଶ୍ୱାସରେ ଯୁଦ୍ଧ କରୁଥାଇ' । (ତୁମେ ଯେଉଁମାନେ ଅସୁଚ) 'ବଞ୍ଚିବାର ମାନେଇ ଚୁଆ ଚନ୍ଦନ ଛିଟା ଗାଲିଗୁଲରେ/ବାନ୍ତି ଉଚ୍ଛାଳ ହେଉ ଗଡ଼ିବା ଓ ଗଡ଼ାଇବା (କେମିତି ବଞ୍ଚିଚ ମୁଁ) – 'କେ କାହାର ? କେହି ନୁହେଁ/ଏକାନ୍ତ ନିଜର, ନିଜର ବଞ୍ଚିବା ଲୋଭ' (ନିଜ ସପକ୍ଷରେ)— 'ଦେହରେ ଦେହକୁ ଛିଡ଼ ବୁଝିଲେ ବଞ୍ଚିବାର ମାନେ/ବୁଝେ ସେ ବଞ୍ଚିଚ ପୃଥ୍ୱୀ' (ମାନ ଭଙ୍ଗ) ଏଇପରି ଅଜସ୍ର ଧାଡ଼ି ଖୋଜିଲେ ମିଳିବ ।

ଏପ୍ରିଲ୍‌ର ଝଡ଼ ପରି ବଞ୍ଚିବାର ସତ୍ୟ ବଡ଼ ନିର୍ମମ । ଜୀବନକୁ ଜାବୁଡ଼ି ଧରି ତା'ର ଯାବତୀୟ ଦୌରାତ୍ମ୍ୟ । ଏସବୁ ସହ୍ୟ କରିବା ଏକଲା ମଣିଷଟି ପକ୍ଷେ ଆଦୌ ସହଜ ନୁହେଁ । ଏଲିଅଟଙ୍କ ଭାଷାରେ "Human kind/can not bear very much reality !" କମଳାକାନ୍ତଙ୍କ କବିତାରେ କାବ୍ୟ ନାୟକଟି ତାହାହିଁ ଅନୁଭବ କରେ—

ମତ ଅଭିମତ ଭିନ୍ନମତ ।

"ମୋତେ ସବୁ ଶୂନ୍ ଶାନ୍ ଲାଗେ ଏଠି
ବଂଗ୍ଳୋ, ସମୁଦ୍ରର ପଠା, ଫୁଲ ଟବ୍ ଓ ପାର୍କର ଅନ୍ଧାରି।
ଫଗୁଣର ବଂଶୀ ଡ଼ାକ, ଶରତର ଜହ୍ନ, ଓ
ଯେତେ ସବୁ ଶ୍ରାବଣର ଅବିରତ ବର୍ଷାର ଘୁଂଗୁର
ମୋତେ ଲାଗେ ବିଷ ଭଳି। ଓ ମୋର
ସ୍ମୃତି ସବୁ ଜଣାଯାନ୍ତି ସପ୍ତଫେଣୀ କଣ୍ଟା ଭଳି।

(ସ୍ମରଣ ବିସ୍ମରଣ–ଜଣେ ଅବିବାହିତା ଯୁବତୀଙ୍କ
ଡାଏରୀରୁ କଥିତ)

ତାହାକୁ ଦଣ୍ଡେ ହେଲେ ଫୁରସତ୍ ନାହିଁ। ଘାସ ବଣର ଫୁଲରେ ଡେଣା-ଭଙ୍ଗା ପ୍ରଜାପତିଟି ବି ଘର୍ମାକ୍ତ! ଘରମୁହାଁ ଫେରୁଥିବା ମଣିଷର ମାଟିଆ ଦୁଃଖକୁ ହାଲ୍କା କରି ପାରେନି କାହାର କୋମଳ ଭାଗ୍ୟ। କ୍ଳାନ୍ତିର ବୋଝକୁ ଓହ୍ଲାଇ ପାରେନି ପୋକଖିଆ ଫାମ୍ପସି ବାଞ୍ଛଣା। କେତେ ଖଣ୍ଡିଆ ଖାବରା ଏ ଜୀବନ! କେତେ କଟା ଛଟା ଦାଗରେ ବିବର୍ଣ୍ଣ ହୃଦୟ। କେତେ ଝଡ଼ର ଫୁତ୍କାରରେ ଛିନ୍ନଭିନ୍ନ ନିଶ୍ୱାସର ନୀଡ଼! ତଥାପି ଅନ୍ତ ହୁଏ ନାହିଁ ଅଭିନୟ। ସମାଜର ସର୍କସ ତମ୍ବୁରେ ସାଂପ୍ରତିକ ଜୀବନ ତ କାନ୍ଦି କାନ୍ଦି ଜୋକରଟିଏ! ଅଥଚ ତାକୁ ହସ ଦେଖାଇବାର ଅଛି। ଅନ୍ୟମାନଙ୍କୁ ହସାଇବାର ଅଛି। ମୁହଁର ଅସଲ କାରୁଣ୍ୟ କାଳେ କିଏ ଦେଖିନେବ, ସେଥିପାଇଁ ନାନା ରଙ୍ଗ ବୋଳି ସେ ମୁହଁକୁ ସଜାଇଛି। ନାକ ତଳେ ଲଗେଇଛି ବହଳ ନିଶ। ଯଦିଓ 'ଖେଳ୍ ହେଲେ ଜୋକର୍‌ର ହାଡ଼ୁଆ ମୁହଁରୁ ଝଡ଼ି ପଡ଼ିବ ନିଶ, ଖେଳ୍ ହେଲେ ଜୋକର୍‌ର ମଥାରୁ ଝଡ଼ି ପଡ଼ିବ ଟୋପର/ଖେଳ୍ ହେଲେ ଜୋକର୍‌ର ଓଠକୁ ଚାକୁବ୍ ଦୃଷ୍ଟିରେ/ଚାହିଁଥିବ ଶବ୍ଦ, ଖେଳ୍ ହେଲେ ଶାଂକୁଚ ଲଜ୍ଜାରେ/ଆପଣାକୁ ପିଟି ପିଟି ଆପେ ଧକେଇଥିବ, ଗଧା ଗୁଡୁଥିବ!" (ପ୍ରତ୍ନତତ୍ତ୍ୱ) ଏ ସବୁ କୃତ୍ରିମତା ପ୍ରତି କାବ୍ୟ ନାୟକର ଭୀଷଣ ଘୃଣା। ତାକୁ ଭଲ ଲାଗେନା କୌଣସି ଖୋଳପା। ସେ ମୁକ୍ତ ହେବାକୁ ଅହରହ ବ୍ୟାକୁଳ। ଯାହା ନଗ୍ନ, ସେଥିରେ ସେ ମଗ୍ନ ହୁଅନ୍ତି। ଯାହା ସତ୍ୟ, ସେଥିରେ ସେ ନିତ୍ୟ ଆନନ୍ଦ ଖୋଜନ୍ତି! କିନ୍ତୁ କିଛି ହୁଏ ନା। ଓଲଟିଯାଏ ନିୟତି। ଉପହସିତ ହୁଏ କାବ୍ୟ ନାୟକର ଭାଗ୍ୟ। ଭୂଗୋଳକାରଟିଏ ପିଲାଙ୍କୁ ଗ୍ଲୋବ୍ ଦେଖେଇ 'ପୃଥିବୀ ଦେଖେଇ ଦେଲି' ବୋଲି ମିଛ ଆତ୍ମ ସଂତୋଷ ଲାଭ କଲା ପରି ସାଂପ୍ରତିକ କାବ୍ୟନାୟକର ଦୁରବସ୍ଥା। ଅନ୍ୟକୁ ଭଣ୍ଡିଲାବେଳେ ନିଜକୁ ଭଣ୍ଡିବାକୁ ପଡ଼େ। ନିଜେ ନିଜକୁ ଠକିବା ଛଡ଼ା ଏବର ମଣିଷ

ବେଶି କିଛୁ କରି ପାରେ ନା । ତା'ର ଅନ୍ୟମନସ୍କତା ବୁଝିବାର ସାମର୍ଥ୍ୟ ଯେଣୁ ନାହିଁ, ତାକୁ ବୁଝି ପାରିବାର ସାମର୍ଥ୍ୟ ଅନ୍ୟମାନଙ୍କ ପାଖରେ କେମିତି ବା ରହନ୍ତା ? ଏଇଠୁ ସୃଷ୍ଟି ହୁଏ ଦୂରତା । ଦୂରତା'ରୁ ବଢ଼ିଯାଏ ମଣିଷ ମଣିଷ ଭିତରେ ଫାଙ୍କ୍ ! ଠିଆ ହୁଏ ଶକ୍ତ ପାଚେରୀ । କାଚ କାନ୍ଥର ସେପଟେ ଜଣେ-ଏ ପଟେ ଜଣେ । ସମସ୍ତେ ସମସ୍ତଙ୍କୁ ଦେଖନ୍ତି,ଅଥଚ କେହି କାହାକୁ ଛୁଇଁ ପାରନ୍ତି ନା । କାହାର ହର୍ଷପୁଲକରେ କେହି ପୁଲକିତ ହୁଅନ୍ତିନ । କାହାର ଆର୍ତ୍ତି ଆକୁଳତା କାହାକୁ ଶୁଭେ ନାହିଁ । କି ଦାରୁଣ ବିଚ୍ଛିନ୍ନତା ଇଏ ? ଏତେ ପାଖାପାଖି ଥାଇ ସମସ୍ତେ ଗୋଟେ ଗୋଟେ ନିଃସଙ୍ଗ ଦ୍ୱୀପ । ନିଃସଙ୍ଗତାର ନର୍ଦ୍ଦମାରେ ଯେମିତି ପାଲୁବାଲୁ ଅସଂଖ୍ୟ କୀଟ ! ମୁମୂର୍ଷୁ ଜୀବନ ! କବିଙ୍କ ଉପଲବ୍ଧି ଦେଖନ୍ତୁ—

"ରକ୍ତର ତୋରଣି ଫେଣି
ଢୋକ ଗିଳେ ମୁମୂର୍ଷୁ ଜୀବନ !
ଦେହର ମାଉଁସ କାନ୍ଦେ
ମାଗେ କେବେ ମୁକ୍ତ ସମର୍ପଣ ।"

(ଏଟି ସବୁ ଧାନ ବିଲ)

ତେବେ କ'ଣ ଗ୍ରୀଷ୍ମଘନ ଅରଣ୍ୟର ଅନ୍ଧକାରରେ ହଜି ଯିବାଟା ନହାତ ନଧାର୍ଯ୍ୟ । 'ପବନରେ ଉଡ଼ି ଯାଉଥିବା/ଝଣ୍ଡେ'ଚିରା କାଗଜ ଭଳି/ଦେଶର ଭବିଷ୍ୟତ/ସିଗାରେଟ୍ ଧୂଆଁରେ/ ପହଁରିଯାଉଥିବା/ ଅନୁଭୂତିର ବାସ୍ନା ପରି/ ଲେଖକଙ୍କ ଭାଗ୍ୟ ।" (ଢ଼ଫିକ୍) ଆଦୌ ନୁହେଁ । ଚାର୍ଲସ୍ ରିଚ୍ ତାଙ୍କର "The Greening of America"ଗ୍ରନ୍ଥରେ ସେହିଭଳି ଏକ ସୁନ୍ଦର ସମ୍ଭାବନାର ସୂଚନା ଦେଇ ଯାଇଛନ୍ତି । ସେ କହନ୍ତି—"ଇଏ ଏକ ଅଭିନବ ଚେତନା । ମଣିଷକୁ ମଣିଷ ପରି ଦେଖିବାର ଓ ଅନୁଭବ କରିବାର ଚେତନା ।" ଶ୍ରୀ ଲେଙ୍କାଙ୍କ କବିତାରେ ସେଇ ସୁନ୍ଦର ସମ୍ଭାବନାର ସ୍ଫୁରଣ : 'ଆଲୁଅଠୁଁ ମନୋହର, ସୁନ୍ଦର ଇନ୍ଦ୍ରଧନୁଠାରୁ ଲୋଭନୀୟ/ସତେକି ଆଖିର ଦୃଶ୍ୟ ।" (ହସ୍ତାକ୍ଷର)ଅନ୍ୟ ଏକ କବିତାରେ ଅନୁରୂପ ଅନୁଭବର ଆନ୍ତରିକ ଉଦ୍ଧରଣ—

"କେହି ନ ଥିଲାବେଳେ ମନ
ହଠାତ୍ ଚହଲି ପଡ଼ାଏ ଆପଣାକୁ !
ହଠାତ୍ ଅବାକ୍ ହୁଏ

ନିଜର ସ୍ୱାଭାବିକତା ଯେ
ବାଙ୍ମୟ ବସ୍ତ୍ରରେ
ଢଙ୍କା ଯାଉଥିଲା ବେଳେ
ସଁବାଳୁଆଟି ରଙ୍ଗିନ୍ ଡେଣାରେ ଉଡ଼ିଯାଏ ।"

(କବିତା-୭୦ : ନିତ୍ୟ ବିସ୍ମିତ)

ସାଂପ୍ରତିକ ମଣିଷଟି ବୈଷୟିକ, ମାନସିକ ଓ ଆଧ୍ୟାତ୍ମିକ ଏମିତି ତିନୋଟି ଅସ୍ଥିରତା ଭିତରେ ଦୋଦୁଲ୍ୟମାନ । ତେବେ ବି ସେ ଜୀବନ ପ୍ରତି ବିମୁଖ ନୁହେଁ । ତା'ର ଆଶା, ସଁବାଳୁଆରୁ ସୁନ୍ଦର ପ୍ରଜାପତିଟିଏ ହେବା । ଏହି ମନ୍ଦଉର ଉଦ୍ଦେଶ୍ୟ ନେଇ ସେ ଅନୁଭୂତିର ପୂର୍ଣ୍ଣତାକୁ ଗ୍ରହଣ କରେ । ବର୍ତ୍ତମାନ ଜଗଆରେ ବର୍ତ୍ତମାନକୁ ବୁଝିବାର ଚେଷ୍ଟା କରେ । ଭଗବଦ୍ ଗୀତାରେ ମଣିଷ ଯେପରି ଅତୀତ ଓ ଭବିଷ୍ୟତର ମଣିଷ ନୁହେଁ, ବର୍ତ୍ତମାନର ମଣିଷ ରୂପେ ବର୍ଣ୍ଣିତ । ଅତୀତ ଓ ଭବିଷ୍ୟତ ଅପେକ୍ଷା ବର୍ତ୍ତମାନର ପରିସ୍ଥିତିକୁ ବୁଝିବା ଓ ମୁକାବିଲା କରିବା ସାଂପ୍ରତିକ ମଣିଷର ଅସଲ ଲକ୍ଷ୍ୟ । ତେଣୁ ସେ ନିଜର ସକଳ ପରିବର୍ତ୍ତିତ ପରିସ୍ଥିତିରେ ନିଜକୁ ବୁଝେ । ନିତ୍ୟ ସତ୍ୟର ନିଷ୍ଠୁରତାକୁ ଭେଟେ । ଶ୍ମଶାନ ଭିତରେ ସ୍ୱପ୍ନ ଓ ସବୁଜ ଜୀବନର ନବାଙ୍କୁର ଦେଖିପାରେ—"ମୃତ୍ୟୁ ବୋଲି କିଛି ନାହିଁ ; ଯାହା ଖାଲି ପ୍ରଚଳିତ/ବିଶ୍ୱାସର ଗ୍ରନ୍ଥିର ମଳାଟ : ଥରେ ତାକୁ ରଙ୍ଗ ଦେଲେ/ଯାକି ନେଲେ, ଆଙ୍କେଇଲେ ମନେ ହୁଏ/ବସନ୍ତ କି ଲେଉଟାଣି ଫେରୁଚି ପ୍ରବେଶ" (ନିଜ ସହ ଗୋଟେ ସାକ୍ଷାତକାର) ଆଦି ଧାଡ଼ିଗୁଡ଼ିକ ଆତ୍ମ-ବୁଝାମଣାର ବାହକ । ଯେଉଁଥିପାଇଁ କୁହାଯାଏ—'The purpose of Literature to help the man to know himself' । ଜୀବନର ସମସ୍ତ ଜାଗତିକ ଇତରତା ଭିତରେ ବି ଦେବତ୍ୱ ଲୁଚି ରହିଥାଏ, ଯାହା ନିଜକୁ ଚିହ୍ନି ନ ଶିଖିଲେ ବୁଝିବାଟା ଆଦୌ ସହଜ ନୁହେଁ । ସଂପ୍ରତିକ ସାହିତ୍ୟରେ ତେଣୁ ସ୍ରଷ୍ଟାର ଅନ୍ତର୍ମୁଖୀନତା ଅଧିକ ।

ଜୀବନକୁ ଲେଉଡ଼ି ପାରିବାର ଦୃଷ୍ଟି ଆଜିର କବି ଆପଣାର ସରଳ ଅଧିଂ ଭିତରୁ ପାଇଛି । ଅନେକ ଭେକ ଓ ନିର୍ମୋକର ମୋହରୁ ନିଜକୁ ମୁକ୍ତ କରି ଆଣିଛି । କମଳାକାନ୍ତଙ୍କ କବିତାରେ ଭେକ ଓ ନିର୍ମୋକ ପ୍ରତି ମୋହ ପ୍ରାୟତଃ ନ ଥାଏ । କେବଳ ବ୍ୟକ୍ତି କୈନ୍ଦ୍ରିକ ସ୍ଥିତିବାଦୀ ସ୍ପର୍ଶ । ସଙ୍କଟ ଅନୁଭୂତ ହୁଏ । ତାହା ଯେପରି

ଅନ୍ତ୍ୟର୍ଥିକ, ସେହିପରି ସତ୍ୟଶୀଳ ତଥା ଜୀବନନିଷ୍ଠ । 'ରେ ସମୁଦ୍ର, X X ମୁଁ ଶୂନ୍ୟଗର୍ଭ କରି ଦେବି ତୋ ସାମ୍ରାଜ୍ୟକୁ ଗୋଟାଏ ଗଣ୍ଡୁଷରେ, ଗୋଟାଏ ନିଃଶ୍ୱାସରେ ।'' (ସ୍ରୋତର ନାମ ଋତ) ।

ଆଧୁନିକ ମଣିଷକୁ ଏକଲା ହେବାକୁ ଆହ୍ୱାନ ଦେଇ ସ୍ଥିତିବାଦୀମାନେ ତା' ଭିତରର ଆତ୍ମଶକ୍ତିକୁ ଉଜ୍ଜୀବିତ କରିଛନ୍ତି । ତାକୁ ତାର ସ୍ୱନିଷ୍ଠ ଆବେଗ ତଥା ଅନୁଭବରେ ମଗ୍ନ ରଖିଛନ୍ତି । ମଗ୍ନ ହେବା ଅର୍ଥ ଭିତରକୁ ପ୍ରବେଶ କରିବା । ଭିତରକୁ ପ୍ରବେଶ କରିବାର ଅନ୍ୟ ନାମଟି : ଅନୁଭବ କରିବା । ସୌନ୍ଦର୍ଯ୍ୟକୁ ଅଙ୍ଗୀକାର କରିବା ଅର୍ଥ ତା'ର ସଂକ୍ରମଣ ଶକ୍ତିଟି ସହିତ ଆମର ପରିଚୟ ଘଟିବା । ଆମେ ଯାହାକୁ ଉପରୁ ଦେଖୁ, ଉପରୁ ଆଘ୍ରାଣ କରୁ, ଅଥବା ଉପରୁ ଚାକ୍ଷୁଷ ଧରୁ, ତାହାକୁ ଆମେ ହୁଏତ ଉପଭୋଗ କରିପାରୁ ସତ, ମାତ୍ର ତାହା ଭିତରେ ପ୍ରବେଶ କରିପାରୁ ନାହିଁ । ଭିତରେ ପ୍ରବେଶ କରିବାଟା ଏକ ବୋଧ, ଏକ ଅନୁବୋଧ । ଏକ ଉନ୍ମୋଚନ । ସେତିକି ହେଲେହିଁ ଚକ୍ରବାଳର ମହିମ୍ନ ଆଶ୍ଳେଷ ମିଳିଯାଏ । ନିଜ ଭିତରର ସମୁଦ୍ରର ବ୍ୟାକୁଳ ପ୍ରତୀକ୍ଷା ଚରିତାର୍ଥ ହୁଏ । ତା'ପରେ ପ୍ରାଚୀନତାର ଆତ୍ମାଭିତରୁ ଉଠି ଆସେ ଜୀବନ ନୂତନତାର ସ୍ୱାକ୍ଷରଟିଏ ହୋଇ । କମଳାକାନ୍ତ ତାହାହିଁ କହନ୍ତି—

'ଚକ୍ରବାଳର ମହିମ୍ନ ଆଶ୍ଳେଷରେ
ମୁଁ ଏକ ସମୁଦ୍ରର ବ୍ୟାକୁଳ ପ୍ରତୀକ୍ଷା,
ପ୍ରାଚୀନତାର ଆତ୍ମାରେ
ଚମକ୍ରିତ ନୂତନତାର ସ୍ୱାକ୍ଷର ମୁଁ !'

( ଉତ୍ତରଣ ]

କବିତାର ସତ୍ୟ ବହୁବିଧ ରୂପରେ ଭୂଷିତ । ତେଣୁ ତା' ଅରଣ୍ୟ ପରିସୀନ୍ଦ୍ର । ବୋଧ୍ୟ ହେଲେହେଁ ଦୁର୍ଗମ । (ଏଇମିତି ସତ୍ୟ ଏବଂ ବହୁବିଧ ରୂପ/ ବା ଅରଣ୍ୟ X x X ବୋଧ୍ୟ ଅଥବା ଦୁର୍ଗମ । : 'କୁହୁଡ଼ି') ସେଥିପାଇଁ ତାହା ପ୍ରକୃତ ସତ୍ୟ ଅପେକ୍ଷା ଅଧିକ ପ୍ରତୀକାତ୍ମକ । ''The statment of poetry are true not literary, but symbolically' ।

କମଳାକାନ୍ତଙ୍କ ମଗ୍ନ ଚୈତନ୍ୟ ଯେପରି ରହସ୍ୟମୟ, ସେହିପରି ସୂକ୍ଷ୍ମ ଏବଂ ଉଚ୍ଚାରଣ ଯେପରି ଶାଣିତ ସେହିପରି ବ୍ୟଞ୍ଜନାମୟ । ସ୍ଥଳ ବିଶେଷରେ ଆବେଗର

ମତ ଅଭିମତ ଭିନ୍ନମତ ||

ଉଚ୍ଛଳତାରେ ଉତ୍କଣ୍ଠିତ । ସ୍ୱାଧୀନ ଭାବରେ ଜୀବନକୁ ଭେଟିବା ଲାଗି ତାଙ୍କ କାବ୍ୟ-ପୁରୁଷ ଏଇ ମୁହୂର୍ତ୍ତରେ ଉନ୍ମୁକ୍ତ ତ ଆର ମୁହୂର୍ତ୍ତରେ ରହସ୍ୟମୟ । ତାର ଉନ୍ମୁକ୍ତତା ପାଇଁ ବହୁବାର ଆହ୍ୱାନ ଓ ରହସ୍ୟମୟତା ପାଇଁ ସକଳ ନୈତବୋଧହିଁ ଦାୟୀ । ଏକ ପକ୍ଷରେ ସେ ଅନ୍ୟମାନଙ୍କ ପାଇଁ ଯେତିକି ସଚେତନ, ଅନ୍ୟ ପକ୍ଷରେ ସେତିକି ଉଦାସୀନ ମଧ୍ୟ । ବିବେକର ଆହ୍ୱାନରେ ସେ ଯେତେବେଳେ ମୁଣ୍ଡ ଟେକେ, ଅକୃତଜ୍ଞ ସମାଜର ଲାଞ୍ଛନା ତାକୁ ସଙ୍କୁଚିତ କରି ଦିଏ । କବିଙ୍କର କାବ୍ୟ ପଙ୍କ୍ତିରେ ତାର ନମୁନା ଦୁଷ୍ପ୍ରାପ୍ୟ ନୁହେଁ । 'କବି ଯାହା ଖୋଜେ : ତା'/ବ୍ୟାକୁଳତାର ଆଲିଙ୍ଗନ/ଯାହା ପାଏ : ତା' ଗୁମୁରିଲା ଅସନ୍ତୋଷ ।'' ସାର୍ତ୍ର ମଧ କହନ୍ତି— 'ଦ୍ୱନ୍ଦ୍ୱ ଭିତରେ ଗତି କରିବା, ବିରୁଦ୍ଧ ଚିନ୍ତା ଭିତରେ ବଞ୍ଚିବା ମଣିଷର ଭାଗ୍ୟଲିପି ।' ସେ ପୁଣି କହନ୍ତି ଯେ—'ମଣିଷ ଏପରି ଏକ 'ବିଙ୍ଗ୍' ଯିଏ 'ନଥିଙ୍ଗ୍‌ନେସ୍'କୁ ଧାରଣ କରିଥାଏ ।'

ପ୍ରକୃତରେ ଯେଉଁ ମଣିଷଟି ବିଶେଷ କିଛି ଅନୁଭବ କରି ପାରେ ନାହିଁ, ସେ ନିଷ୍ପ୍ରାଣ । ସେ ଜଗତକୁ ନିଜ ଭିତରେ ଓ ନିଜକୁ ଜଗତ ଭିତରେ ଦେଖିପାରେ ନାହିଁ । ମଣିଷର ମାନସିକ ବିଚ୍ୟୁତି ଓ ବ୍ୟତିକ୍ରମର ମନସ୍ତତ୍ତ୍ୱ ତା'ର ଅବସ୍ଥା, ମାନସିକ ଓ ଆଧ୍ୟାତ୍ମିକ ସ୍ଥିତିକୁ ବ୍ୟକ୍ତ କରେ । ମନର ନାନା ଆନ୍ଧାରୁଆ ଅର୍ଗଳରୁ ବହୁ ବିକ୍ଷିପ୍ତ ଭାବ ଭାବନାକୁ ସାଉଁଟି ଆଣିପାରେ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଗୋଟିଏ ବିନ୍ଦୁରେ ତୋଳି ଧରି ପାରେ । କମଳାକାନ୍ତଙ୍କ କାବ୍ୟନାୟକର ମାନସିକ ବିଚ୍ୟୁତି ଓ ବ୍ୟତିକ୍ରମର ସୁଫଳ ଏଠାରେ ଲକ୍ଷ୍ୟ କରନ୍ତୁ । ସେ 'ଭଲ ପାଏ କାହିଁକି ପାପକୁ/ କାହିଁକି ସବୁ ରଙ୍ଗଛଡ଼ା, କାତିଛଡ଼ା, ଖାର୍‌ନସ୍ ଗନ୍ଧ ଜିତା/ପୁଚୁଣା, ମସିଆ ଦିନରୁ/ ବେକ ଭଙ୍ଗା ଖୁନ୍ଦିବା ଠାଣିକୁ ।' ତାର କାରଣ ହେଲା, ''ତା ଭିତର ଘର ଠାକୁର/ ଖୁନ୍ଦିଥାଏ ତା ଷଷ୍ଠ ଷଢର; ଲୁଭ ଲୋକସାନର ଶରତ କ୍ଷେତକୁ, ବର୍ଗି ଗୁରେ ଫୁଟି ଆସୁଥିବା/ଫୁଲଟିର ନିର୍ଲୋଭ କଡକୁ ।'' (ଗୋଲକ ଧନ୍ଦା)

ଉପରୋକ୍ତ ପଙ୍କ୍ତିରେ 'ଠାକୁର' ଶବ୍ଦଟି କୌଣସି ଈଶ୍ୱରଙ୍କୁ ବୁଝାଏ ନାହିଁ । ବୁଝାଏ ମଣିଷ ପଣିଆକୁ । ଆଧୁନିକ ମଣିଷ ଈଶ୍ୱରଙ୍କୁ କେବେଠୁ କବର ଦେଇ ସାରିଛି । କଣିକଆ ମଣିଷକୁ ନେଇ ସେ ସ୍ଥାନରେ ବସାଇଛି । ହାଇଡ୍‌ଗାର୍‌ଙ୍କ ସମୁଦାୟ ଦାର୍ଶନିକ ଅନୁଚିନ୍ତା ଭିତରେ ଈଶ୍ୱରଙ୍କ ସ୍ଥାନ ଥିଲେହେଁ ସେ ଭକ୍ତିପୂତ ଭାବରେ ବ୍ୟକ୍ତିର ପୂଜା କରିଛନ୍ତି । ତାଙ୍କ ପାଇଁ ତା' ବିଙ୍ଗ୍' ସତେ ଅବା ଈଶ୍ୱର । କଣିକଆ

ମଣିଷ ହେବାର ଗୌରବକୁ କିର୍କେଗାର୍ଡ ମଧ୍ୟ ଅନ୍ତରକ ସମର୍ଥନ କରନ୍ତି । ସାର୍ତ୍ରଙ୍କ ବ୍ୟକ୍ତି ସ୍ୱାଧୀନତା ପ୍ରସଙ୍ଗଟି ଏକ ଏକଲା ମଣିଷର ସପକ୍ଷରେ ଠିଆ ହୁଏ । ଏଥିରୁ ଅନୁମିତ ହୁଏ ଯେ, ଈଶ୍ୱର ରହସ୍ୟ ବ୍ୟକ୍ତି ଭିତରେ ଦେଖିବାକୁ ହୁଏ ତ ସେମାନେ ବ୍ୟକ୍ତି ଆଡକୁ ଟାଣି ହୋଇ ଆସିଛନ୍ତି । ଈଶ୍ୱରଙ୍କୁ ଆଦୌ ଗୁରୁତ୍ୱ ଦେଇ ନାହାନ୍ତି । 'ଈଶ୍ୱର' କ'ଣ ଜାଣିବା ଲାଗି ସାରା ଜୀବନ ଈଶ୍ୱରଙ୍କ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି । କିର୍କେଗାର୍ଡ଼ ଜଣିକିଆ ମଣିଷଟିକୁ ଖୋସ୍ ବୁଝିବା ଲାଗି ସାରା ଜୀବନ ନିଜକୁ ଏକଲା ସଜାଇଛନ୍ତି । ଅଧୁନାତନ ଓଡ଼ିଆ କବିତାରେ ଏଇ ଚିନ୍ତାଧାରାର ପ୍ରତିଫଳନ ଅନେକତ୍ର ଦୃଷ୍ଟି ଗୋଚର ହୁଏ । ସଚ୍ଚି ରାଉତରାୟ, ରମାକାନ୍ତ, ରାଜେନ୍ଦ୍ର, ସୌଭାଗ୍ୟ ଓ ଦୀପକଙ୍କ ପରି କମଳାକାନ୍ତ ମଧ୍ୟ କହନ୍ତି—'ଈଶ୍ୱର : ସମସ୍ତ ବିକୃତ ଚିନ୍ତାର/ଝିରାଝାନ୍ତ ସୂନାର ମନ୍ଦିର ।' (ମୁଁ ଓ ଈଶ୍ୱର : ଖସିବାର ବେଳ) ଅଥବା 'ଯ୍ୟା' ପରେ ହୁଏତା ହଲକ ଶୁଖିଯିବ ଶବ୍ଦମାନଙ୍କର/ରାସ୍ତା ବନ୍ଦ ହୋଇଯିବା/ଈଶ୍ୱର ନାମକ ଚଣ୍ଡାଳର" । (ଯ୍ୟା' ପରେ ହୁଏତ) । ଈଶ୍ୱରଙ୍କୁ ମଧ୍ୟ କବି ବାଦ୍ ଦେଇ ନାହାନ୍ତି । ଭାରତୀୟ ସଂସ୍କୃତିରେ ଶିବଙ୍କ ଅପେକ୍ଷା ଶକ୍ତି ପୂଜାର ପରମ୍ପରା ଯେତେବେଳେ ଅଧିକ ବିସ୍ତୃତ ଓ ଜନନୀ-ଭଗିନୀ-ଜାୟା ଏମିତି ତିନି ରୂପରେ ଯେତେବେଳେ ପ୍ରତିଭାତ, କମଳାକାନ୍ତ ସେଇ ଦେବୀଙ୍କୁ ଉଭୟ ଯୌନ ଓ ମୃତ୍ୟୁର ପ୍ରତୀକ ରୂପରେ ଚିତ୍ରଣ କରିଛନ୍ତି—

"ଏତେ ଖାଇ ସାରିଲା ପରେ
ଏତେ ଲୁଟି ନେଲା ପରେ ବି
ତୋର ଭୋକ ? ଖାଇଲୁ ସହସ୍ର ଯୋନିର
ପୃଥିବୀ, ଗିଳିଲୁ ଅଜସ୍ର ସ୍ୱପ୍ନର ଯୌବନ
ଗଣ୍ଡୂଷ କଲୁ ସଚରାଚର ଆତୁରତାର,
କୋଲାହଳର ନିଧୁବନ ।

× × × ×

ତଥାପି ତୋ ଜିଭ ଲହ ଲହ
ନିରୁଜ ଅନ୍ଧାରର ବେଦୀରେ, ତଥାପି
ତୋ ହାତ ଶୂନ୍ୟରୁ ଉଡ଼ି ଆଣୁଚି
ସ୍ପନ୍ଦିତ ଆକାଶର ଜୀବନ । କି ଭୋକ ଲୋ
ତୋର ମା' ।"

(ଯା' ଦେବୀ : ଖସିବାର ବେଳ)

ମତ ଅଭିମତ ଉନ୍ମତ ॥

'ବଞ୍ଚିବାର ବନ୍ଦୁଏ କାଆଁ' (ସ୍ରୋତର ନାମ ରୁଚି) ମଣିଷ, ପଶୁ, ପକ୍ଷୀ, କୀଟ ପତଙ୍ଗଠାରୁ ଆରମ୍ଭ କରି ଈଶ୍ୱର ଈଶ୍ୱରୀଙ୍କ ଯାଏ ପ୍ରଲମ୍ବିତ । ସେ ଏକ ଲକ୍ଷ ଲକ୍ଷ କ୍ଷୁଧା । ତା' ହୋଇପାରେ ପେଟର, ଦେହର ବା ମନର । ଫ୍ରଏଡ଼୍ କହନ୍ତି— ମନୁଷ୍ୟର ପ୍ରବୃତ୍ତି ସାଧାରଣତଃ ଦୁଇ ପ୍ରକାର— ଗୋଟିଏ 'ଏରସ୍', ଅନ୍ୟଟି 'ଥାନାଟସ୍' । ପ୍ରଥମଟି ଯୌନ ଚେତନାର ବାହକ ଓ ଦ୍ୱିତୀୟଟି ମୃତ୍ୟୁ ଚେତନାର । ମଣିଷର ଅନ୍ତର୍ନିହିତ ଚେତନା ରାଜ୍ୟରେ ଏ ଦୁଇ ପ୍ରବୃତ୍ତିର ସଂପର୍କ ଖୁବ୍ କୌତୁହଳପ୍ରଦ । ଉଭୟେ ଉଭୟଙ୍କ ସହ ଓତଃପ୍ରୋତ ଭାବରେ ଜଡ଼ିତ ଏବଂ ସେମାନଙ୍କ ଭିତରେ ସଂଘର୍ଷ ବା ଦ୍ୱନ୍ଦ୍ୱାମଣାହିଁ ଆଧୁନିକ ଚେତନାର ଭିତ୍ତିଭୂମି ।

ଯୌନ ଓ ମୃତ୍ୟୁ—ଏ ଦୁଇଟି ଚେତନା କମଳାକାନ୍ତଙ୍କ କବିତାରେ ଯେପରି ଉଦ୍ଭୂତ ଆସିଛି, ସେହିପରି ତା'ର ଭାବ ଓ ଭାଷାକୁ ମଧ୍ୟ କରିଛି ବ୍ୟଞ୍ଜନାମୟ ଓ ସଂଚରଣକ୍ଷମ । ଏ ଦୁଇଟି ଚେତନା କଣଆରେ କବି ଶ୍ରୀ ଲେଙ୍କା ବଞ୍ଚିବାର ବଳଶାଳୀ ଆକାଂକ୍ଷାଟିକୁ ତୋଳି ଧରିଛନ୍ତି ପାଠକ ସାମ୍ନାରେ । ଅଧିକନ୍ତୁ କବି ଏଇ ଶକ୍ତିଶାଳୀ ଚେତନା ଦୁଇଟିକୁ ଆଙ୍କ ଚାନ୍ଦିବାର ପ୍ରୟାସ କରୁଛି ବୋଲି ତା'ର କବିତା ବଞ୍ଚିବାର ବଚନ କାକଳିରେ ହୋଇଛି ମୂର୍ଚ୍ଛିତ । 'Sexual desire is the master motive and strongest urge which is originated in the mother's womb.' ବୋଲି କହିବା ଦ୍ୱାରା ଫ୍ରଏଡ଼୍ ମଣିଷର ଯୌନ ଚେତନା ଉପରେ ଯେପରି ଗୁରୁତ୍ୱ ଆରୋପ କରନ୍ତି ସାର୍ତ୍ରେ ମଧ୍ୟ ସେହିପରି ଜୀବନର ସକଳ ଅର୍ଥ ମୃତ୍ୟୁହିଁ ଅପହରଣ କରିନିଏ ବୋଲି କହି ମୃତ୍ୟୁ ଚେତନାର ଗୁରୁତ୍ୱ ବୃଦ୍ଧି କରନ୍ତି । ତାଙ୍କ ଭାଷାରେ—'That death is never that which gives life its meaning, it is, on the contrary, that which on the principle removes all meaning from life.' [Being and Nothingness] । ସୁତରାଂ ଯୌନ ଓ ମୃତ୍ୟୁର ମିଳିତ ଦଂଶନରେ ସାଂପ୍ରତିକ କାବ୍ୟ ନାୟକଟି କିପରି ଉଦ୍ବେଳ ବିକଳ, ତା'ର ଅବିକଳ ନିଦର୍ଶନ ଶ୍ରୀ ଲେଙ୍କାଙ୍କ କବିତାର ଛତେ ଛତେ ଅବଧାରିତ । ଉଦାହରଣ —

(କ) ଯୌନ ସମ୍ବନ୍ଧୀୟ—

> "ଆମେ ଏଠି ଶୋଇ ଶୋଇ ସମୁଦ୍ରର ଶାମୁକା ପରି ଏଥ୍ରେ
> ଡୁବ୍ ଦେଲୁ ସମୁଦ୍ରରେ । ପହଁରିଲୁ ଅକାତ ଜଳରେ ।
> ଜଳର ଉର୍ଦ୍ଧ୍ୱର ଭଙ୍ଗୀ ପବନର କସରତ ଦେଖି
>
> ॥ କବି କମଳାକାନ୍ତ

ନାଭିର ସୂର୍ଯ୍ୟର ଧାପେ ଗୁଡ଼ିଗଲା ଶିଖାର ଆଲୁଏ ।''

( ସମୁଦ୍ରକୁ ପିଠି କରି : ସୁରେଶ ବସୁରାୟ )

(ଖ) ମୃତ୍ୟୁ ସମ୍ବନ୍ଧୀୟ :

ଗୋଟେ କାଣୀ ବଳେଇ କମିତ ତା' ଫୁଲିଲା ନଖର
ଆଂକୁଶିରେ ହୁରୁଡ଼ାଇ ଦିଏ
ପଲ ପଲ ମୂଷାର ଚପଳ ସ୍ୱପ୍ନକୁ ?
କମିତ ତା' ମୁନିଆ ନଖର
କୋରଣୀରେ ବିଦାଣ ଦିଏ କୃଷ୍ଣ ଚୂଡ଼ାର ଓଠକୁ ।
ଆହା ବଳେଇଟିଏ, କାଣୀ ବଳେଇ ।''

(ଦୁଇଟି କବିତା : ସ୍ରୋତର ନାମ ରିକ୍ତ)

ବାଂଶବାର ମୋହ ଓ ବ୍ୟାକୁଳ ଜିଜ୍ଞାସାରେ ଭରପୂର ତାଙ୍କର କବିତା । ସବୁ ମଣିଷଙ୍କ ଭିତରେ ଏଇ ଦୁଇଟି ସହଜାତ ପ୍ରବୃତ୍ତି ରହିଥାଏ । ଯେଉଁଥିପାଇଁ ମଣିଷ ଜୀବନସାରା ନାନା ଉଦ୍‌ବେଗର ଶରବ୍ୟ ହୁଏ । ହସର ମୁହଁସବୁ ଝାଳୁଆ ଦିଶେ । ବିବର୍ଣ୍ଣ ହୁଏ ଧୂଳିଆ ସ୍ୱପ୍ନର ଜାଲରେ । ଚୁପ୍‌ଚାପ୍ ଝରିର ହାଡ଼କୁ ଛିଣ୍ଡିବାର ପାଗଳାମି ଛଡ଼ା ଆଉ ଅଧିକ କ'ଣ ହୋଇପାରେ ? ତେଣୁ କାବ୍ୟ ନାୟକ ବାରଂବାର ଆଶଂକିତ ହୁଏ । ଉଦ୍‌ବେଗରେ ଛନ୍ଦ ହୋଇପଡ଼େ । 'ମୁଁ କି ସତେ/ଅସ୍ତଯିବ ସୂର୍ଯ୍ୟ ପରି/ଗ୍ରସ୍ତ। ଘନ ଅରଣ୍ୟର ଗୁମ୍ଫର ଭିତର × × × ମୁଁ କି/ସତେ ଅସ୍ତଯିବ ସନ୍ଧ ନ ପାରୁଛି ?/ ବାଟଚଲା ବାଟୋଇର ନିର୍ଲିପ୍ତତା/ଘର ମୁହାଁ ଗୀତ ଶୁଣି ଶୁଣି ।'' (ସନ୍ନ୍ୟସ୍ତ) ମଣିଷ ଆଜି ବିଭିନ୍ନ କାରଣରୁ ଅସଂଲଗ୍ନ ମୁହୂର୍ତ୍ତର ଶିକାର ହୋଇ ପଡ଼ୁଛି । ଶୂନ୍ୟତା ସହିତ ସଂଗ୍ରାମ (Encounter with nothingness) କରି କରି ସେ କ୍ଳାନ୍ତ ଓ ପୀଡ଼ିତ । ସେ ଶୂନ୍ୟତା ସ୍ଥଳ ବିଶେଷରେ ଶୂନ୍ୟ, ପୁଣି ବେଳେବେଳେ ପରିପୂର୍ଣ୍ଣ ସୁଖ (?) ଏବଂ ତା'ର ଉଷ୍ମ ଉଦ୍‌ବେଳନରେ ମୁଖର ଓ ଛଳ ଛଳ !

ସ୍ୱାଧୀନୋତ୍ତର ଓଡ଼ିଆ କବିତାରେ କମଲାକାନ୍ତ ଉଭୟ ଆବେଗ ଓ ପ୍ରଜ୍ଞାର ସମନ୍ୱୟ ସାଧନରେ ନିଜର ସିଦ୍ଧି ପ୍ରମାଣିତ କରିଥିବା କାହାକୁ ଅବିଦିତ ନାହିଁ । ତାଙ୍କ

ମତ ଅଭିମତ ଭିନ୍ନମତ ।

କବିତାର ସ୍ୱଷ୍ଟା: ସାଂପ୍ରତିକ କାଳର ପ୍ରାୟ ସବୁ କବିଙ୍କ ଭିତରେ ଏକ ଚରମ ବ୍ୟତିକ୍ରମ ନେଇ ଠିଆ ହୁଏ । ଶ୍ରୀ ଲେଙ୍କାଙ୍କ ଭାଷା ଯେପରି ସଂବେଗାତ୍ମକ, ସେହିପରି ଘନବିଦ୍ଧ ଓ କମନୀୟ । ଜୀବନ ଓ ଜଗତ ସଂପର୍କରେ ତାଙ୍କର ଅବବୋଧଗତ ପରିପକ୍ୱତା ନ ଥିଲେ ସେ କଦାପି ଶବ୍ଦ ଶିଳ୍ପରେ ଅନନ୍ୟତା ହାସଲ୍ କରି ପାରି ନ ଥାନ୍ତେ । ଆଇ. ଏ. ରିଚ୍ଚର୍ଡ୍ସ୍ ତାଙ୍କର "The four kinds of meaning' ପ୍ରବନ୍ଧରେ କାବ୍ୟର ଶୈଳୀଗତ ଗୌରବ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ମତରେ ଭାବ (sense), ଅନୁଭବ(feeling), କା'ବ୍ୟସ୍ୱର(Tone) ଓ ଉଦ୍ଦେଶ୍ୟ (Intension) ର ସୁନ୍ଦର ସମନ୍ୱୟର ବ୍ୟଞ୍ଜନାଦ୍ୱୀ କବିତା । ଶ୍ରୀ ଲେଙ୍କାଙ୍କ କବିତାରେ ଏହି ଗୁଣରାଶି ଭିଣ୍ଟିବର ଉପଯୁକ୍ତ ଆନୁପାତିକ ମିଶ୍ରଣ ଅନାୟାସରେ ଲକ୍ଷ୍ୟ କରି ହୁଏ । ଉଦାହରଣଟିଏ—

"ଯେଉଁଦିନ/ଶ୍ମଶାନରୁ ଫେରିବି
ଜମ ଶବ ସତ୍କାର କରି
ହୁଏ ତ/ ମୋର ଶବ ସହ/ କଥା ବାର୍ତ୍ତାରେ
ସାରା ରାତି ବିତିଯିବ ।
ହୁଏତ/ସାରା ରାତିର ଅନ୍ଧାର
ଜଣାଯିବ କବିତାର ପ୍ରତିମା ପରି,
ପ୍ରେମର ଜୁଇ ପରି ।"

(ପ୍ରେମ : ଚିତା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ
– ଅପେକ୍ଷାରତ ପୃଥିବୀ)

ପରିଶେଷରେ ବିନମ୍ର ଅଭିଯୋଗଟିଏ । ସମୟେ ସମୟେ କମଳାକାନ୍ତ ଅତ୍ୟଧିକ ଶବ୍ଦ ମୋହରେ ପଡ଼ିଗଲା ପରି ମନେ ହୁଅନ୍ତି । ସ୍ଥଳ ବିଶେଷରେ ସେ ଶବ୍ଦ ପ୍ରୟୋଗରେ ଯେପରି ମ'ପ୍ଚୁପ୍ ମନେ ହୁଅନ୍ତି, କେବେ କେବେ ଶବ୍ଦର ସମୁଦ୍ରରେ ସନ୍ତରଣ କରୁ କରୁ ସେ ଥକ୍କା ହୋଇ ସ୍ଥିର ହୋଇପଡ଼ନ୍ତି । ଗୁଡ଼ାଏ ତରଙ୍ଗ ଆସି ତାଙ୍କ ନାକ ପାଟିରେ ପଶି, ତାଙ୍କୁ ଶ୍ୱାସରୁଦ୍ଧ କରିଦିଏ ସତେ ଯେମିତି ! ତେଣୁ ସେ ସ୍ପଷ୍ଟ ଦିଶନ୍ତି ନ ଥାଇ । ଅଧା ଭାସୁଥାନ୍ତି, ଅଧା ବୁଡ଼ି ରହୁଥାନ୍ତି । ତେବେ ତାଙ୍କର ସଦ୍ୟ ପ୍ରକାଶିତ କାବ୍ୟ ଗ୍ରନ୍ଥ 'ଚିତା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ' ଟିକୁ ଲକ୍ଷ କଲେ ଜଣା ପଡ଼େ, ଇତି ମଧ୍ୟରେ ସେ ପାଲଟି ଯାଇଛନ୍ତି ପକ୍କା

ସନ୍ତରଣ-ଶିଳ୍ପୀଟିଏ ! ତେଣୁ ଆମେ ନିର୍ବିବାଦରେ କହିପାରୁ, ତାଙ୍କ ପାଇଁ ଆଉ ବେଶୀ ଦୂର ନୁହେଁ ସଫଳତାର ସୀମାନ୍ତ । ଏଇତ ଛୁଇଁ ସାରିଲେଣି ପ୍ରାୟ କମଳାକାନ୍ତ !

**ଡକ୍ଟର ସେନାପତି ପ୍ରଦ୍ୟୁମ୍ନ କେଶରୀ**
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
କେସିଙ୍ଗା କଲେଜ
କେସିଙ୍ଗା/କଳାହାଣ୍ଡି
୨୨ । ୧୦ । ୮୮

# ପରଂପରା ଓ ପ୍ରତିଶ୍ରୁତି

(ଝଙ୍କାର-୪୧ ବର୍ଷ, ବିଷୁବ ସଂଖ୍ୟା-୧୯୮୯)

... କମଳାକାନ୍ତଙ୍କ ଦୃଷ୍ଟି ଦିଗନ୍ତ ସୁଦୂର ପ୍ରସାରୀ । ସାଂପ୍ରତିକ କାଳର ସେ ଜଣେ ବହୁ ପ୍ରସୂ କବି । ତାଙ୍କ କବିତାର କାବ୍ୟପୁରୁଷ କମଳାକାନ୍ତ ନିଜେ ତାଙ୍କର ବ୍ୟକ୍ତି ସତ୍ତା ପରି ତାଙ୍କର କବିତା ବହୁ ପରିମାଣରେ ଦ୍ୱନ୍ଦ୍ୱ ଗ୍ରସ୍ତ ; ତାଙ୍କ ଦ୍ୱନ୍ଦ୍ୱ ଗ୍ରସ୍ତ କବି ସତ୍ତାର ସରଳ ପର୍ଯ୍ୟାୟୀକରଣ ତାଙ୍କର କବିତା । ତାଙ୍କ କବିତା ସୁତରାଂ ଜଳ ସ୍ରୋତର ଦୁଇ କୂଳ ପରି ଦୁଇ ବିଭିନ୍ନ ଚେତନା ଦ୍ୱାରା ଚାଳିତ ହୋଇଥାଏ— ଉଭୟ କୂଳ ମଧ୍ୟରେ ଥିବା ସଂପର୍କ ଓ ସଂଘାତର ସମଷ୍ଟିରେ ତିଆରି ହୋଇଥାଏ ତାଙ୍କ କବିତାର ଭାବ ଓ ଭାଷା । ତାଙ୍କ କାବ୍ୟପୁରୁଷ କେତେବେଳେ ଉଭୟ ଚେତନା ଦ୍ୱାରା ସଂକ୍ରମିତ ହୋଇ ଜୀବନ ସହ ସାମୟିକ ସନ୍ଧିପାଇଁ ପ୍ରସ୍ତାବ ବାଢ଼େ । ସେଥିପାଇଁ ସେ କୁହେ—'ମଦ ଖାଅ ଯେ/ମଦୁଆ ହୁଅନା । ରସ ପିଅ ଯେ/ ରସିକ ହୁଅନା/ ପ୍ରେମ କର ଯେ/ପ୍ରତାରଣାକୁ ଧିକ୍‌କାର ନା, ନା ନା ନା/ନା ନା ନା...... କବିତା ଲେଖ ଯେ/ କବି ହୁଅ ନା,'' ନିତ୍ୟ ପରିବର୍ତ୍ତନଶୀଳ ଜୀବନରେ ପ୍ରତି ମୁହୂର୍ତ୍ତରେ ଜନ୍ମ ଓ ମୃତ୍ୟୁ, ଅନ୍ଧାର ଓ ଆଲୁଅ, ଶୋକ ଓ ସୁଖ, ବ୍ୟଷ୍ଟି ଓ ସମଷ୍ଟି ତଥା ସ୍ମରଣ ବିସ୍ମରଣ ସହ ସଂଗ୍ରାମ କରୁଥିବା କବି ବା ଆଉ କ'ଣ ଅଧିକ ପ୍ରୋତ୍ସାହନ ଦେଇପାରେ ? ମୋ ବିଗ୍ୱରରେ ଏହା ଏପରି ଏକ ସରଳ ଜିଜ୍ଞାସା, ଯାହା ଜୀବନର ସକଳ ଶୁଷ୍କ ଚେତ-ନାରେ ବଞ୍ଚିବାର ଓଁକାର ଧ୍ୱନି ସଞ୍ଚରିତ କରେ । 'ସ୍ମରଣ ବିସ୍ମରଣ'ଠାରୁ 'ଗୀତ ଗା'

ମତ ଅଭିମତ ଭିନ୍ନମତ ।।

ନାଁ ରେ ପକ୍ଷୀ' ପର୍ଯ୍ୟନ୍ତ ପ୍ରତ୍ୟେକ ସଙ୍କଳନର ଅନ୍ତଃ ସ୍ୱରରେ ଏହି ଜିଜ୍ଞାସାର ଅନୁଧ୍ୱନି ରହିଛି । ଜୀବନର ବହୁ ଆଶା, ପ୍ରତ୍ୟାଶା, ହର୍ଷ, ଉଲ୍ଲାସ, ଦୁଃଖ, ଶୋକ ଭିତରେ ସଫଳ ଭାବେ ବଞ୍ଚିବାର ପ୍ରତ୍ୟେକ ମୂଲ୍ୟବୋଧକୁ ପ୍ରତିଫଳିତ କରିଥାଏ ତାଙ୍କର କବିତା ।

ଭଗବାନ ଜୟସିଂ

# ସ୍ରୋତର ଏ କୂଳ, ସେ କୂଳ

( କମଳାକାନ୍ତ ଲେଙ୍କାଙ୍କ କବିତା )

ଝଙ୍କାର, ୩୯ଶ ବର୍ଷ, ୭ମ ସଂଖ୍ୟା, ଅକ୍ଟୋବର-୧୯୮୭

(କମଳାକାନ୍ତଙ୍କ ପ୍ରଥମ କାବ୍ୟ ସ୍ତବକରେ ଥିଲା, ସ୍ୱପ୍ନ, ଓ ସମ୍ଭାବନାର ସ୍ୱାକ୍ଷର । ସେଠି ଜୀବନ ବେଦୀରେ ଫୁଲ ଓ ମହୁର କାବ୍ୟିକ ଅଭିଷେକ, ପ୍ରଜାପତି ଓ ମହୁମାଛି-ଙ୍କର ସହନାଇ ନହବତ । କିନ୍ତୁ ତାଙ୍କର ସାଂପ୍ରତିକ କାବ୍ୟସ୍ତବକ ଭିତରେ ସେହି ଆଶାବାଦୀ ଜୀବନ ଚର୍ଯ୍ୟାର ଆଭାସ ଥିଲେ ମଧ୍ୟ କବିଙ୍କ ଦୃଷ୍ଟିଭଙ୍ଗୀ ଶାଣିତ ଓ ତାର୍କିକ୍ ଏବଂ କ୍ଷେତ୍ର ବିଶେଷରେ ତଥା କଥିତ ସାମାଜିକ ବିଧି ବ୍ୟବସ୍ଥା ଓ ପରମ୍ପରା ପ୍ରତି ତୀବ୍ର ଆକ୍ଷେପରେ ତାଙ୍କର କାବ୍ୟସ୍ୱାକ୍ଷର ରସୋତ୍ତୀର୍ଣ୍ଣ । କିନ୍ତୁ ଏହି କାବ୍ୟ କଟାକ୍ଷର ଅଙ୍ଗୀକାରର ସ୍ଲୋଗାନ ନାହିଁ । ତେଣୁ ତାହା ନିଚ୍ଛକ କଳା ରୂପେ କାଳୋତ୍ତୀର୍ଣ୍ଣ ।)

ଉତ୍ତର-ସତୁରୀରେ ପ୍ରକାଶିତ କମଳାକାନ୍ତ ଲେଙ୍କାଙ୍କ 'ସ୍ମରଣ ବିସ୍ମରଣ'ର ଏକ କବିତା 'ଏଠି ସବୁ ଧାନ ବିଲ''ର ଆରମ୍ଭ ହୁଏ ଏହିପରି—

ଏଠି ସବୁ ଜୀବନର
ଆଶା ଆଉ ଭରସାର
ବଂଚିବାର ସପନ ଦୋହଲୁଚି
× × ×
ଏଠି ସବୁ ଧାନ ବିଲ
ଜୀବନର ବଗିଚାରେ ଫୁଲ ଆଉ ଫୁଲ । (୧)

|| କବି କମଳାକାନ୍ତ

ଠିକ୍ ନଅ ବର୍ଷ ପରେ ଅନ୍ୟତମ ସଂକଳନ 'ଗୀତ ଗା' ନାଚେ ପକ୍ଷୀ'ର ଏକ କବିତା 'କେମିତି ବଞ୍ଚିଚି ମୁଁ'ର ପରିଶେଷ ହୁଏ ଏହିପରି—

କିଏ କହିବ ମୁଁ ବଂଚିଚି ?
ବଂଚିବାର ମାନେ ଯଦି ପ୍ରତି କଥାରେ
ମଥା ଟୁଙ୍ଗାରିବା, ଓ ନିର୍ବିକାରେ ସବୁ କିଛି
ମାନିନେବା, ଚୁପ୍ ହେବା, ହସି ଦେବା !! [୨]

ଉଭୟ କବିତା ପଂକ୍ତି ନିରୀକ୍ଷଣ କଲେ ସ୍ପଷ୍ଟ ହେବ : ପ୍ରଥମତଃ କମଳାକାନ୍ତ ଲେଙ୍କାଙ୍କ ପ୍ରାଥମିକ ତଥା ବର୍ତ୍ତମାନର କବିତା ମଧ୍ୟରେ ଏକ ନାଟକୀୟ ପାର୍ଥକ୍ୟ ଏବଂ ଦ୍ୱିତୀୟତଃ ଉଭୟ ମଧ୍ୟରେ ଏକ ସୁନ୍ଦର ଅବିଚ୍ଛିନ୍ନତା । ପ୍ରଥମରେ ସେ କହିବାକୁ ଚାହାନ୍ତି— ଜୀବନ : ଆଶା ଆଉ ଭରସାରେ ପରିପୂର୍ଣ୍ଣ, ଜୀବନ ; ସବୁ ସ୍ୱପ୍ନର ସମାହାର ବା ସମୀକରଣ, ସବୁ ବଗିଚାରେ ଖାଲି ଫୁଲ୍ ଆଉ ଫୁଲ । ସବୁ ଆଶାର ଆଶା । ବହୁ ବିଭିନ୍ନ ଅନୁଭୂତିରେ ଜୀବନେ ଚିର ଚଞ୍ଚଳ । ଦ୍ୱିତୀୟରେ ସେ କହିବାକୁ ଚାହାନ୍ତି ଯେ, ଜୀବନ ନିର୍ବିକାର ଚେତନାର ଅଙ୍ଗୀକାର ନୁହେଁ, ଚରାଚରର ସାଂକେତିକ ଜୟଗାନ ନୁହେଁ । ଜୀବନର ବହୁ ଆଶା, ପ୍ରତ୍ୟାଶା, ହର୍ଷ ଉଲ୍ଲାସ, ଦୁଃଖ ଶୋକ ଭିତରେ ସଫଳ ଭାବେ ବଂଚିବାର ପ୍ରତ୍ୟେକ ମୂଲ୍ୟବୋଧ ହିଁ ଜୀବନ— ଏହାହିଁ ତାଙ୍କ କବିତା ।

ଗତ ତିରିଶ ବର୍ଷ କାବ୍ୟିକ ଜୀବନର ଅନ୍ୱେଷଣରେ ଏହି ଜିଜ୍ଞାସା କରିଛନ୍ତି କବି କମଳାକାନ୍ତ ଲେଙ୍କା । ଏହି ସମୟ ପରିଧିରେ ସେ ଯେଉଁ ଅନ୍ୱେଷଣ ଜାରି ରଖିଛନ୍ତି, ତାର ଫଳ ଶ୍ରୁତି ହୋଇଛି 'ସୁନା ଫସଲ' [୧୯୫୮], 'ପ୍ରୀତି ଓ ପ୍ରତୀତି' (୧୯୬୩), 'ଉତ୍ତରଣ' (୧୯୬୬), 'ସୁଦୂର ବିସ୍ମରଣ' (୧୯୭୩), 'କବିତାର ମୁହଁ' (୧୯୭୪), 'ଅଂତତଃ ନିଷ୍ପାପ (୧୯୭୫), 'ନିଜ ସହ ଗୋଟେ ସାକ୍ଷାତକାର' [୧୯୭୮] 'ନିତ୍ୟ ନିୟମିତ' (୧୯୭୮), 'ସ୍ରୋତର ନାମ ରତି' (୧୯୭୮), 'ହସିବାର ବେଳ' (୧୯୮୦), 'ଗୀତ ଗା' ନାଚେ ପକ୍ଷୀ' (୧୯୮୨) ଏବଂ 'ଛିଟା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ' [୧୯୮୭] । ସାଂପ୍ରତିକ ଓଡ଼ିଆ କବିତାର କମଳାକାନ୍ତ ଜଣେ ବହୁ ପ୍ରସୂ କବି । ସାଂପ୍ରତିକ କାଳର ଆଉ ଦୁଇ ଜଣ କବି— ଦୀପକ ମିଶ୍ର ଓ ରାଜେନ୍ଦ୍ର କିଶୋର ପଣ୍ଡାଙ୍କୁ ବାଦ୍ ଦେଲେ ଅନ୍ୟ କୌଣସି କବିଙ୍କର ବୋଧ ହୁଏ ଏତେ ଅଧିକ ସଂକଳନ ନାହିଁ । ଦୀପକ ଓ ରାଜେନ୍ଦ୍ରଙ୍କ ପରି ତାଙ୍କର

ପ୍ରସିଦ୍ଧ ମଧ୍ୟ ଅବଦମାନ । ଏହାର କାରଣ ଏମାନଙ୍କ କବିତାର ସମୁଚିତ ଅଧ୍ୟୟନ ଓ ସାମଗ୍ରିକ ଅବଧାରଣ ଏପର୍ଯ୍ୟନ୍ତ ଠିକ୍ ଭାବରେ କରାଯାଇନାହିଁ । କମଳାକାନ୍ତ ଲେଙ୍କାଙ୍କ କବିତାର ପୂର୍ଣ୍ଣ ମୂଲ୍ୟାୟନ କରି ତାଙ୍କୁ ସାଂପ୍ରତିକ କବିତା ଭୂଇଁରେ ଯଥାସ୍ଥାନ ପ୍ରଦାନ କରିବା, ମୋର ଏ ପ୍ରବନ୍ଧର ମୂଳ ଲକ୍ଷ୍ୟ ।

[ ୧ ]

କମଳାକାନ୍ତ ଲେଙ୍କାଙ୍କ କାବ୍ୟ ଦୃଷ୍ଟିର ଉନ୍ମେଷକାଳ : ଷଷ୍ଠ ଦଶକ । ଓଡ଼ିଆ କବିତାରେ 'ନୂତନ ଶୈଳୀ ଆନ୍ଦୋଳନ' ବେଶ୍ ସୁଦୃଢ଼ ଭାବେ ପ୍ରତିଷ୍ଠିତ ହେବାକୁ ଯାଉଥିଲାବେଳେ କମଳାକାନ୍ତଙ୍କ 'ସୁନାଫସଲ' ଏବଂ 'ପ୍ରୀତି ଓ ପ୍ରତୀତି'ର ଆବିର୍ଭାବ । ଏହା କିନ୍ତୁ ବିଦେଶୀ ସାହିତ୍ୟ-ପ୍ରଭାବିତ ଆଧୁନିକତାର କୌଣସି ଗୁଣ ବହନ କରନ୍ତି ନାହିଁ ; ସାଂପ୍ରତିକ କବିତାର କୌଣସି ଅଗ୍ରଗତିର ସୂଚନା ଦିଅନ୍ତି ନାହିଁ ଏମାନେ । ଏଥିରେ ଗୁରୁପ୍ରସାଦ ଓ ଭାନୁଜୀ ରାଓଙ୍କ 'ନୂତନ କବିତା' ଏବଂ ସଚ୍ଚି ରାଉତରାୟଙ୍କ 'ପାଣ୍ଡୁଲିପି' ଇତ୍ୟାଦିର କୌଣସି ଗୁଣ ପରିଲକ୍ଷିତ ହୁଏ ନାହିଁ । ଏପରିକି ସପ୍ତମ ଦଶକରେ ପରିଲକ୍ଷିତ ସଂପ୍ରସାରିତ କାବ୍ୟଦୃଷ୍ଟି ତାଙ୍କ ଚେତନାକୁ ଆବିଷ୍ଟ କରି ପାରି ନାହିଁ । ଏହି କାଳ ଭିତରେ ଅନ୍ୟ କେତେକ ସାଂପ୍ରତିକ କବି : ଚିନ୍ତାମଣି, ବେଣୁଧର ରମାକାନ୍ତ ଓ ସୀତାକାନ୍ତ ଖୁବ୍ ଅଳ୍ପ ସମୟ ବ୍ୟବଧାନରେ ଆଧୁନିକ କବିତାର ନୂତନ ଶୈଳୀକୁ ବେଶ୍ ଆୟତ୍ତ କରିବାକୁ ସକ୍ଷମ ହୋଇ ସାରିଲେଣି ।

ସାପ୍ରତିକ ସମୟ ଓ ଯାନ୍ତ୍ର ସହ ତାଳ ଦେଇ ଆଗେଇ ଯିବାକୁ କମଳାକାନ୍ତଙ୍କୁ ଆହୁରି ଅନେକ ସମୟ ଅପେକ୍ଷା କରିବାକୁ ପଡ଼େ । ତେବେ, ବର୍ତ୍ତମାନ ପାଇଁ ଯାହା ସବୁ ତରୁଣ କବିଙ୍କ ମନର ସମୁଦ୍ରକୁ ତରଙ୍ଗାୟିତ କରେ, ତା' ହୁଏ ସ୍ୱପ୍ନ ମଧୁ ଓ ପ୍ରେମ ; ଶରତ ପ୍ରଭାତର ଲଘୁଆନନ୍ଦ, ଚୈତ୍ର ସଧାର ହାଲୁକା ସବୁଜ କ୍ଷେତ, ଛନ୍ଦହୀନ ଜୀବନ, କୁମାରୀ ସ୍ୱପ୍ନର ଅଭିସାର, କାକର ସ୍ନାତ ସବୁଜ ବନାନୀ କେଉଁଠି କେଉଁଠି କବିଙ୍କୁ ବିହ୍ୱଳିତ କରନ୍ତି । ତାଙ୍କର କବିତା ମନେହୁଏ, ଯେପରି ଅନନ୍ତ ଆକାଶର ନୀଳିମା ଭିତରେ ପକ୍ଷ ବିସ୍ତାର କରି ଉଡ଼ିଯାଉଥିବା ତରୁଣ ବିହଙ୍ଗ, ଯାର ଆକାଶର ନୀଳିମା ଯେପରି ତା'ର ଜୀବନ, ତା'ର କାକଳି ତା'ର କବିତା—ତା'ର ଚଞ୍ଚଳତା ତା'ର ପ୍ରାଣ ।

କବିତାଗୁଡ଼ିକ ବିଶେଷତଃ କେତେକ 'ସବୁଜ' କବି ' ଅନ୍ନଦାଶଙ୍କର,

କାଳନ୍ଦୀଚରଣ ତଥା ତା' ପରବର୍ତ୍ତୀ କେତେକ କବି : ଗଡ଼ନାୟକ ଓ ମାନସିଂହଙ୍କ ଦ୍ୱାରା ଆପାତତଃ ଅନୁପ୍ରାଣିତ । କିନ୍ତୁ ସେମାନଙ୍କ କବିତାର ଚମତ୍କାର ଛନ୍ଦ, ସେମାନଙ୍କ କବିତାର ଉଗ୍ର କଳ୍ପନା-ପ୍ରବାହ ଏବଂ କୃତ୍ରିମ ଭାବାବେଗ କମଳାକାନ୍ତଙ୍କ କବିତାରେ ଏତେ ବେଶି ସୃଷ୍ଟିଶୀଳ ନୁହନ୍ତି । ତେବେ, ତାଙ୍କୁ ନିଜର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ଲାଗି କେବଳ ସମୟକୁ ଅପେକ୍ଷା କରିବାକୁ ପଡ଼ିନି, ଘୋର ପରିଶ୍ରମ ଓ ସାଧନା ମଧ୍ୟ କରିବାକୁ ପଡ଼େ ।

ଏହାପରେ କମଳାକାନ୍ତଙ୍କ ପରବର୍ତ୍ତୀ ସଂକଳନ 'ଉତ୍ତରଣ' ପ୍ରକାଶ ପାଏ । ଏଥିରେ ଆଧୁନିକତାର କେତୋଟି ଦୁରନ୍ତ ପ୍ରତିଧ୍ୱନି ଶୁଣାଯାଏ । ସଂକଳନଟି ଏକ ଦୀର୍ଘ ନିରବତା; ଦୀର୍ଘ କବିତାର ଖର ପ୍ରସାର ଓ ପ୍ରସିଦ୍ଧି ସମୟରେ ଏହାର ଆବିର୍ଭାବ । ଠିକ୍ ଏହି ସମୟରେ ଓଡ଼ିଆ କବିତାରେ 'କାଳପୁରୁଷ' 'ବାଘ ଶିକାର' 'ମାଟି ଓ ମଣିଷ' କବିତା ରାଜ୍ୟରେ ବେଶ୍ ଆଲୋଡ଼ନ ସୃଷ୍ଟି କରିସାରି ଥାନ୍ତି । ପାଶ୍ଚାତ୍ୟ ଅନୁକରଣରେ ସୃଷ୍ଟି ହୋଇଥାଏ ଏ ସବୁ କବିତାର ବିଷୟବସ୍ତୁ, ଟେକ୍‌ନିକ୍ ଓ ଫର୍ମ । ପ୍ରଥମ ଥର ପାଇଁ କମଳାକାନ୍ତ ଏକ ବିଦେଶୀ ସାହିତ୍ୟର ବାୟୁମଣ୍ଡଳ ସୃଷ୍ଟି କରନ୍ତି 'ଉତ୍ତରଣ'ରେ । କୌଣସି ଏକ ସାକ୍ଷାତକାରରେ କବି ଏହା ଉପରେ ଟିପ୍ପଣୀ କରି କହିଥିଲେ—'ଏଇଟି ମୋର ପରୀକ୍ଷାତ୍ମକ ବ୍ୟତିକ୍ରମ । ଯେଉଁ ମାନସିକ ଜଟିଳ ସ୍ଥିତି ଭିତରୁ ଏ ଗ୍ରନ୍ଥଟି ଜନ୍ମ ନେଲା, ତା'ର ଗଢ଼ଣ ତାହାହିଁ ହେବା ଉଚିତ ଥିଲା ବୋଧହୁଏ । ଦେଖ, ନୂତନତାକୁ ମୁଁ ଗୋଟେ ମେଜାଜ୍ ଅର୍ଥରେ ବୁଝେ .... .... ।' [୩] ଅବଶ୍ୟ ଏଠାରେ କମଳାକାନ୍ତ କେଉଁ 'ମାନସିକ ଜଟିଳ ସ୍ଥିତି' କଥା ଉତ୍ଥାପନ କରିଛନ୍ତି, ତା' ବୁଝି ହୋଇ ନ । ତେବେ ତାଙ୍କ ମତରେ ତଥାକଥିତ 'ମେଜାଜ୍'ର ଫଳଶ୍ରୁତି ହୋଇଛି 'ଉତ୍ତରଣ' । କେହି କେହି ସମାଲୋଚକ ଏ ସଂକଳନକୁ କମଳାକାନ୍ତଙ୍କ କାବ୍ୟିକ ପ୍ରଗତିର 'ଉତ୍ତରଣ' ଭାବେ ଗ୍ରହଣ କରି ପାରନ୍ତି ; କିନ୍ତୁ ମୋ ମତରେ କବିତାଗୁଡ଼ିକ କବିଙ୍କ ଅନୁଭୂତିର ନିଷ୍ଠାପର କଳାତ୍ମକ ପଞ୍ଜିକରଣ ନୁହେଁ—କାରଣ, ଏଥିରେ କବି ଜୀବନକୁ 'କଳା' ଭାବେ ଗ୍ରହଣ କରି ନାହାନ୍ତି । ମହାନ୍ କଳାକାର ଜୀବନକୁ ଗଢ଼ନ୍ତି ନାହିଁ—ଏହା ଆପେ ଆପେ ଗଢ଼ି ହୋଇଯାଏ । ଏପରି ଜୀବନରୁ ସ୍ୱତଃସ୍ଫୂର୍ତ୍ତଭାବେ ଝରିଆସେ କଳା ।

'ଉତ୍ତରଣ'ର ଭାବ ସମୂହ ଚାରୋଟି ପର୍ଯ୍ୟାୟରେ ବିଭକ୍ତ : ସମ୍ରାଟ, ସ୍ୱୟଂସମ୍ପୂର୍ଣ୍ଣ ଉତ୍ତରଣ ଓ ଉପସଂହାର । ଚାରୋଟି ଯାକ ବିଭାଗ ପରସ୍ପରଠାରୁ ପୃଥକ୍ । ଏବଂ

ପ୍ରତ୍ୟେକ ବିଭାଗକୁ ଏକ ସ୍ୱୟଂସଂପୂର୍ଣ୍ଣ କବିତା ଭାବେ ଗ୍ରହଣ କରାଯାଇ ପାରେ । ଏ ସଂକଳନର ବଡ଼ ଦୁର୍ବଳତା—ସଂହତିର ଅଭାବ । ଭୟଙ୍କର ଚେଷ୍ଟା ସତ୍ତ୍ୱେ କବି କୌଣସି ଏକ ନିର୍ଦ୍ଦିଷ୍ଟ ଥିମ୍‌କୁ ନେଇ ତାକୁ ବିକଶିତ କରିପାରି ନାହାନ୍ତି କିମ୍ବା ଗୋଟିଏ ସହ ଅନ୍ୟଟିର ଶୃଙ୍ଖଳା ରକ୍ଷା କରି ପାରି ନାହାନ୍ତି । ପ୍ରକୃତରେ, ଏ ସଂକଳନରେ କବିଙ୍କର ଭାବାବେଗରେ ଆନ୍ତରିକତା ନାହିଁ, ଲକ୍ଷ୍ୟରେ ନିର୍ଦ୍ଦିଷ୍ଟତା ନାହିଁ ଏବଂ ଚେତନାରେ ତରଙ୍ଗ ନାହିଁ । କବିତାର ମର୍ମ ଅନେକାଂଶରେ ଅପ୍ରକୃତିସ୍ଥ ଶୈଳୀର ଭାରରେ ଭାରାକ୍ରାନ୍ତ ହୋଇପଡ଼ିଛି ।

'ଉତ୍ତରଣ' ଗଦ୍ୟ ଛନ୍ଦରେ ଲିଖିତ । ତେବେ ପଦ୍ୟଠାରୁ ବିଶେଷ ଦୂରତ୍ୱ ଦାବୀ କରେନି ଏହାର ଗଦ୍ୟ । କବିତାଗୁଡ଼ିକ କବିଙ୍କର Surrealist ଚେତନାର ପ୍ରକରଣ ହୋଇଥିବାରୁ ଏଠାରେ ଗଦ୍ୟ ଆଉ ପଦ୍ୟର ସଂହତି ରକ୍ଷିବା କିଛି ଦୁରୂହ କାର୍ଯ୍ୟ ନୁହେଁ । ତେବେ; କେତୋଟି ପଙ୍‌କ୍ତିରେ କବି ଯେଉଁ କାବ୍ୟିକ ଆବେଗର ଝଙ୍କାର ସୃଷ୍ଟି କରିଛନ୍ତି; ତାହା କିଛିଟା ପ୍ରଶଂସା ଦାବୀ କରେ । ଗୋଟିଏ ଉଦାହରଣ-

'ବର୍ତ୍ତମାନ ଗ୍ରନ୍ଥିର ଯୌବନ । ଏ ଯୌବନ ଶାଖାରେ ଫୁଲ ଏବଂ ଫଳର ସମ୍ଭାର ଓ ଅନେକ ଅପରିଚିତ ଭୀରୁ ଆତଙ୍କର କିଛି ମୃଦୁ ହସ । ବର୍ତ୍ତମାନ ସ୍ୱପ୍ନର ଝରଣା ଓ ବିହ୍ୱଳତାର ସଙ୍ଗୀତରେ ଆମେ ଏକାନ୍ତ ତନ୍ମୟ ।' [୪]

( ୩ )

କମଳାକାନ୍ତଙ୍କ ବ୍ୟକ୍ତିତ୍ୱ ତଥା କଳାର ପ୍ରକୃତ ଉତ୍ତରଣ ଘଟେ; ତାଙ୍କର ପରବର୍ତ୍ତୀ ସଂକଳନ 'ସ୍ମରଣ ବିସ୍ମରଣ'ରେ । ଏହାକୁ ତାଙ୍କର କାବ୍ୟିକ ଜୀବନର ପ୍ରଥମ କୃତି କହିଲେ କିଛି କ୍ଷତି ନାହିଁ । ଏ ସଂକଳନରେ କବିଙ୍କ ଦୁଇଟି ମୁଖ୍ୟ ଅନୁଭୂତି 'ସ୍ମରଣ' ଓ 'ବିସ୍ମରଣ' ରହିଛି । ତାଙ୍କ ମତରେ; ସ୍ମରଣ ଓ ବିସ୍ମରଣର ମଧ୍ୟରେହିଁ ଘୂରି ବୁଲେ ଜୀବନ । ଜୀବନ ନଦୀର ଦୁଇ କୂଳରେ ଏମାନେ ଦୁଇ ଭିନ୍ନ ସତ୍ତା ହୋଇ ଜୀବନର ଜଳସ୍ରୋତକୁ ଜାବୁଡ଼ି ଧରିଥାନ୍ତି । ଏହି ଜୀବନ ସ୍ରୋତର ଗୋଟିଏ କୂଳରେ ମିଳନ୍ତି ସ୍ମରଣ; ଅନ୍ୟଟିରେ ବିସ୍ମରଣ; ଗୋଟିଏରେ ଜୀବନ; ଅନ୍ୟଟିରେ ମୃତ୍ୟୁ, ଗୋଟିକରେ ସୁଖ, ଅନ୍ୟଟିରେ ଦୁଃଖ, ଗୋଟିକରେ ବ୍ୟଷ୍ଟି, ଅନ୍ୟଟିରେ ସମଷ୍ଟି, ଗୋଟିକରେ ସମସ୍ୟ, ଅନ୍ୟଟିରେ ଅସମସ୍ୟ, ଗୋଟିକରେ ଅମାବାସ୍ୟା ଓ ଅନ୍ୟଟିରେ ପୂର୍ଣ୍ଣିମା । ଉଭୟଙ୍କ ମଧ୍ୟରେ ସବୁ ସବୁ ପାର୍ଥକ୍ୟ, ବ୍ୟବଧାନ, ସଂଘର୍ଷ, ସଂଘାତ, ଷଡ଼ଯନ୍ତ୍ର, କ୍ଲିଚକାଳି ଓ କୋଲାକୋଲିହିଁ ଜୀବନ । [୫]

।। କବି କମଳାକାନ୍ତ

'ସୁରଣ ବିସ୍ମରଣ'ରେ ଯାହା ଜୀବନ ପାଇଁ ସତ୍ୟ ଓ ଗ୍ରହଣୀୟ, ତାହାହିଁ ଜୀବନ । ଏହା ହୋଇପାରେ କିଛିଟା ପୁଲକ, କିଛି ଶୀତ୍କାର, କିଛି ବିରହ, କିଛି ବେଦନା, ଯନ୍ତ୍ରଣା; ଝଗ୍ଡାଝାଟି ନଈ ବାଲିରେ ଗୃଲୁ ଗୃଲୁ ହଠାତ୍ ମେଘ ଦେଖି ଶିହରେଇ ଯିବାର ଉତ୍ତେଜନାହିଁ ସବୁହିଁ କବିଙ୍କର ସ୍ମୃତି । ତାଙ୍କ ସ୍ମୃତି ନଦୀର କୂଳେ କୂଳେ ମିଳନ୍ତି ପ୍ରେମ, ପ୍ରିୟତମାର କେଶ, ସ୍ତନ କିମ୍ବା ସମୁଦ୍ରର ଶଂଖ ଓ ଶାମୁକା ମାଛ, ଜଙ୍ଗଲ, ପବନ, ନିଷ୍ଠୁର ଆକାଶ କିମ୍ବା ପଥର ଅଓ୍ୱାଜ । ଏସବୁ ଅନୁଭୂତି ତାଙ୍କର କେତେ ନିଜର, କେତେ ଆପଣାର !

ଅନ୍ୟ ଦିଗରେ 'ବିସ୍ମରଣ'—ଏହା ମଧ୍ୟ ଜୀବନର ଏକ ପ୍ରଚଣ୍ଡ ଅନୁଭୂତି । ମଣିଷ ଜୀବନରେ ବେଳେ ବେଳେ ଏମିତି ସବୁ ମୁହୂର୍ତ୍ତ ଆସି ପହଞ୍ଚେ, ଯାହା ଅଜଣା ପକ୍ଷୀର ଫଡ୍‌ଫଡ୍ ଶବ୍ଦ କରି ଅଦୃଶ୍ୟରେ ମଣିଷର ପ୍ରାଣକୁ ଆନ୍ଦୋଳିତ କରି ଦିଏ । ସତେ ଯେପରି ସ୍ମୃତିର ସମୁଦ୍ରରେ ବିସ୍ମୃତି ଏକ ସୁନ୍ଦର ଢେଉ ହୋଇ ଜୀବନର ବେଳା ଭୂଇଁରେ ପିଟି ହୋଇ ପୁଣି ଲୁଚି ଯାଏ । କିମ୍ବା ଅନେକ ସମୟରେ ବହୁ ଦୁଃଖଦ ଅନୁଭୂତି, ଯଥା ଅପମାନ, ପାପ ଓ ମୃତ୍ୟୁ ଆସି ମଣିଷ ସମ୍ମୁଖରେ ଠିଆ ହୁଅନ୍ତି, ଏବଂ ସେମାନଙ୍କୁ କୌଣସି ମତେ ନିଜର କରି ପାରେ ନି କାବ୍ୟପୁରୁଷ, ଅବଲୀଳା କ୍ରମେ ଭୁଲି ବି ଯାଏ ।

କୌଣସି କବି, କଳାକାର ନିଜର କଳ୍ପନା ଶକ୍ତି ଜରିଆରେ ଏପରି ବହୁ ମୁହୂର୍ତ୍ତର ଐତିହାସିକ ଚିତ୍ର ଅଙ୍କନ କରିବାକୁ ଆଗେଇ ଆସନ୍ତି । 'ସ୍ମରଣ ବିସ୍ମରଣ' ରେ ଏହିପରି ଏକ କଳାତ୍ମକ ପ୍ରକ୍ରିୟା ଲକ୍ଷିବା । କବିଙ୍କ ମାନସ ପଟରେ ବହୁ ସ୍ମୃତି ଭାସି ଆସିଛି—

'ସ୍ମୃତିରେ ଉହାଁଇ ମୋତେ ଚଟ୍ ଚଟେଇ ହୁଅନ୍ତି କାହିଁକି ?
ମୁଁ ସିଝେ ମୋହରି ଦୁଃଖେ
ଭଙ୍ଗା ଏକ କୂଅକୁ ଡେଇଁକି
କୂଲ୍ ବେଙ୍ଗ ପରି ।' (୭)

କିମ୍ବା

—ନିଜକୁ ମୁଁ ଫାଙ୍କିବାର ସ୍ନେହ
ଉଡ଼ି ଧରେ ସେମାନଙ୍କୁ । ସ୍ମୃତିର ବେଣୀକୁ । (୭)

କମ୍ପା
ଏଠି ନୂଆ ଲଟା ଦୋଳେ
କୁନି କୁନି ଚଢ଼େଇଙ୍କ ପ୍ରୀତି
ଯାହା ମୁଁ ପାରେ ନା ଭୁଲି । (୮)

ସ୍ମୃତି ଯେ ଦୁଃଖଦ, କରୁଣ, ଏବଂ ଏହା ଯନ୍ତ୍ରଣାଦଗ୍ଧ ତରୁଣ କବିଙ୍କ ମନରେ ଏକ ସରଳ, ସ୍ପର୍ଶଶୀଳ ରୂପରେଖ, ଏଥିରେ ସନ୍ଦେହ ନାହିଁ । କବିଙ୍କ ଉକ୍ତି ଅନୁଯାୟୀ— 'ଯାହା ଭାବ, ସତ କଥା, ଯନ୍ତ୍ରଣାର ଦରିଆରେ ବୁଡ଼ି ଦେବା ପରେ । ତୁମକୁ ଲେଖୁଛି ଏଠି ସଂପର୍କିତ ମୁହୂର୍ତ୍ତର ଶାଖାରେ ଓହଳି ।' (୯) କମ୍ପା ଅସଂଖ୍ୟ କଦମ୍ବ ଫୁଟେ/ବିଚ୍ଛେଦର ଶ୍ରାବଣ ଓ/ଅସମ୍ଭବ ଦୁଃଖର ବର୍ଷାରେ/ତୁମକୁ ମୁଁ ଜପେ ନିତି/ପଲ୍ଲବିତ ଲତାର ପତ୍ରରେ ।' (୧୦) ଏହା ନିଶ୍ଚିତ ଭାବେ ଏକ ରୋମାଣ୍ଟିକ୍ ଯନ୍ତ୍ରଣା, ସ୍ମୃତିର ଯନ୍ତ୍ରଣା । କବି ଏବଂ ତାଙ୍କ ପ୍ରିୟତମା ଉଭୟେ ଗୋଟିଏ ନଈର ଦୁଇକୂଳ, ଗୋଟିଏ କୂଳରେ ବିସ୍ମୃତିର ଗ୍ରାସ ।

'ହେ ଶହ୍ୱାରଣୀ, ତୁମ ବିନ୍ୟସ୍ତ ଇଚ୍ଛା
ଓ ସମର୍ପିତ ଉଚ୍ଛ୍ୱାସର ଗାଲିଚ୍
ସିଇ ଦଉଚ ଉତ୍କଟ ମୁହୂର୍ତ୍ତିକୁ, ଓ
ସେଇ ମୁହୂର୍ତ୍ତର ସାମାନ୍ୟତମ ଈର୍ଷାରେ
ଚ୍ୟବ କ୍ଷୀରର ବୁନ୍ଦ୍ ବୁନ୍ଦ୍, ଯାହା
ପ୍ରତେ ହେଉଚି ତୁମ ସ୍ମୃତି ଓ ମୋର ବିସ୍ମୃତି ।' (୧୧)

ଏଠାରେ ମନେ ରଖିବାକୁ ହେବ, କବିଙ୍କ ଚେତନାରେ ସ୍ମରଣ ଓ ବିସ୍ମରଣ ଦୁଇ ଭିନ୍ନ ଅନୁଭୂତି ନୁହେଁ । ଉଭୟଙ୍କ ମଧ୍ୟରେ ବ୍ୟବଧାନ କେବଳ ଏକ କାବ୍ୟିକ ଦୃଷ୍ଟିଭଙ୍ଗୀ । ଅନ୍ୟତଃ ଗୋଟିଏ ଡାଳର ଦୁଇଟି ଫୁଲ ଏମାନେ । ଗୋଟିଏ ଫୁଲ ଝଡ଼ିଗଲେ ଅନ୍ୟ ଫୁଲଟି ଗଛକୁ ବିମ୍ବିତ କରିଥାଏ । ଚିହ୍ନିତ କରିଥାଏ ଗଛର ପରିବେଶ, ଏହାହିଁ ଜୀବନ । ଏପରି ଏକ ଜୀବନକୁ ତା'ର ସମସ୍ତ ଚପଳତା, ତାରୁଣ୍ୟ ଓ କୋମଳତା ଭିତରେ ଆବିଷ୍କାର କରିଛନ୍ତି କମଳାକାନ୍ତ ।

କମଳାକାନ୍ତ ଜଣେ ଜୀବନବାଦୀ କବି । କିନ୍ତୁ ବହୁ ସାଂପ୍ରତିକ କବିଙ୍କ ପରି

କମଳାକାନ୍ତ ଜୀବନକୁ କେବେ ହେଲେ ଦାର୍ଶନିକ ଦୃଷ୍ଟିକୋଣରୁ ବିଗ୍ଭର କରି ନାହାନ୍ତି । ରମାକାନ୍ତ, ସୀତାକାନ୍ତ, ଗଜେନ୍ଦ୍ର ଓ କେତେକାଂଶରେ ସୌଭାଗ୍ୟଙ୍କ ପରି ଜୀବନର ଅତି ଗଭୀର ଅର୍ଥ ଅନ୍ୱେଷଣ କରି ଜୀବନର ପରିଶେଷ (?) ମୃତ୍ୟୁରେ ଜୀବନର ସମର୍ଥ ଅର୍ଥ ନ୍ୟସ୍ତ ବୋଲି କେଉଁଠି କହି ନାହାନ୍ତି । ଅବଶ୍ୟ ଜୀବନର ମେଟା-ଫିଜିକାଲ ଅନ୍ୱେଷଣରୁ ସେ ସଂପୂର୍ଣ୍ଣ ଭାବେ ନିବୃତ୍ତ ହୋଇ ନାହାନ୍ତି । ତାଙ୍କର କବିତାର ମୁଖ୍ୟ ସ୍ୱର ସୁତରାଂ ସ୍ଥିତିବାଦୀ ବୋଲି କହିଲେ ସତ୍ୟର ଅପଳାପ ହେବ ନାହିଁ । ଅନେକ ସମୟରେ ଶ୍ଳେଷୋକ୍ତି ଓ ବ୍ୟଙ୍ଗ ସାହାଯ୍ୟରେ ସେ ସାଂପ୍ରତିକ ଜୀବନର ବହୁ ବିଭାଗକୁ ତନ୍ନ ତନ୍ନ କରି ନିରୀକ୍ଷଣ କରନ୍ତି, ଏବଂ ଏହାରି ସାହାଯ୍ୟରେ ସେ ରବର୍ଟ କୁଭର୍‌ଙ୍କ ଭାଷାରେ The void within and ahead ର ସ୍ୱରୂପ ନିର୍ଣ୍ଣୟ କରିଥାନ୍ତି ।

ଏହାର ପ୍ରତ୍ୟକ୍ଷ ଉଦାହରଣ 'କବିତାର ମୁହଁ' ଏବଂ କେତୋଟି ପରବର୍ତ୍ତୀ ସଂକଳନ, ଯଥା 'ଝରିବାର ବେଳ' ଓ 'ସେ୍ଲଟର ନାମ ରୁତି' । 'କବିତାର ମୁହଁ'ରେ କବିଙ୍କ ଜୀବନଚର୍ଯ୍ୟା ଏକ ଅନ୍ୱେଷଣ ମାଧ୍ୟମରେ ପ୍ରଳମ୍ବିତ ହୁଏ । ସେ ଅନୁଭବ କରନ୍ତି—

'ବର୍ତ୍ତମାନ ଗ୍ରନ୍ଥି ନିଷ୍ଫଳ, ଓ
ମୋ ଭିତରେ ଅନେକ ଆଖିର ଜ୍ୟୋତି !' (୧୨)

ଚକ୍ଷୁର ଅଖଣ୍ଡ ଜ୍ୟୋତିରେ ଜ୍ୟୋତିଷ୍ମାନ୍ କବି ସାରା ସଂସାରକୁ ନିରୀକ୍ଷଣ କରେ. ଅନ୍ୱେଷଣ କରେ ଜୀବନକୁ ଏବଂ ଜୀବନ ମାଧ୍ୟମରେ ନିଜର ସ୍ଥିତିକୁ । ତା' ଚତୁପାର୍ଶ୍ୱେ 'ନିଦ୍ରାହୀନ ଗ୍ରନ୍ଥି', ନିଷ୍ଫଳ—ଅସ୍ପଷ୍ଟ ଅନ୍ଧାର, ଅନାଗତ ଭୟ, ନିର୍ଜନତା' ଏବଂ 'ଅନୁଚ୍ଚାରିତ ଅନେକ ବେଦନାର ଆଲିଙ୍ଗନ', 'ନିଭୃତ ବ୍ୟଥାର ସିଫୋନି' । ସେ କବି ସୃଷ୍ଟିଶୀଳ । ବୀଜର ଅନ୍ଧାର ଭିତରେ ଗଛକୁ ସନ୍ଧାନ କରିବାକୁ ପଡ଼ିବ, ପ୍ରତ୍ୟେକ ଫୁଲରେ ଶବ୍ଦହୀନ ହୃଦୟର ହୃତ୍‌କମ୍ପନ ଅନୁଭବ କରିବାକୁ ପଡ଼ିବ, ଚତୁର୍ଦ୍ଦିଗର ଅମାପ ଅନ୍ଧାର ଭିତରେ ତାକୁ ଆଲୋକର ସନ୍ଧାନ କରିବାକୁ ପଡ଼ିବ । ସେ କାଳସୀ, ଏକ ତାନ୍ତ୍ରିକ ମୁହୂର୍ତ୍ତରେ ସେ ଅନ୍ଧାରର ରକ୍ତତାରୁ ମୁକ୍ତ ହେବାକୁ ଚାହେଁ । ତାଙ୍କ ପ୍ରାର୍ଥନା—

ମୋତେ ମୁକ୍ତ ଦିଅ
　　　ତମିସ୍ର ଅନ୍ଧାରରୁ
ମୋତେ ପ୍ରୀତି ଦିଅ
　　　ଖାତର କର୍ମମତାରୁ !
ମୋତେ ଶାନ୍ତି ଦିଅ
　　　ନିଜସ୍ୱ ପ୍ରାର୍ଥନାରୁ— (୧୩)

ବୈଦିକ ଯୁଗରେ ମଧ୍ୟ ଏପରି ଅନ୍ଧାରରୁ ମୁକ୍ତି ଚାହିଁଥିଲେ ଆଦି ମଣିଷ—

ତଦଗ୍ନେ ଦ୍ୟୁମ୍ନମା ଭର ।
ଯତ୍ ସା ସାହା ସଦନେ କଂ ଚିଦତ୍ରିଣମ୍ । [ସାମବେଦ]

କମଳାକାନ୍ତ ଆଲୋକ ଅନ୍ୱେଷଣରେ ଚେତନାର ତିନୋଟି ସ୍ତର ଦେଇ ଗତି କରିଥାନ୍ତି । ପ୍ରଥମ--ଜରାୟୁ, ଦ୍ୱିତୀୟ-ଜନ୍ମ, ତୃତୀୟ-ମୃତ୍ୟୁ । ସଂକଳନର କେତୋଟି କବିତା—'ଗାର୍ହସ୍ଥ୍ୟ', 'ମୋ ମା' ପ୍ରତି', 'ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ', 'ସନ୍ନ୍ୟାସ'ରେ ଏହି ସବୁ ଚେତନାର ପରିପ୍ରକାଶ ରହିଛି ।

ପ୍ରଥମ ଅନୁଭୂତି ଜରାୟୁ ବା ଗର୍ଭାଶୟର । ଏହା କବିଙ୍କ ଜନ୍ମ ପୂର୍ବରୁ ମା'ର ଗର୍ଭାଶୟର ଅନୁଭୂତି, ଯେଉଁଠି ଶିଶୁ ପ୍ରାକ୍ ଜ୍ଞାନ ଆହରଣ କରିଥାଏ, ଯେଉଁଠି ଭୟଙ୍କର ଅନ୍ଧାର ମଧ୍ୟରେ ପ୍ରଥମ ଥର ପାଇଁ ଆଲୋକ ସଞ୍ଚାଳିତ ହୁଏ । ଡିଲନ୍ ଟମାସ୍‌ଙ୍କ ଭାଷାରେ— Light breaks where no sun shines— 'କବିତାର ମୁହଁ'ରେ ସେହିପରି ଏକ ଚେତନାର ଉତ୍ସ ରହିଛି—

…… ମୁଁ ତୋର ଅନ୍ତର୍ବୃନ୍ତୀଲାକୁ
ଭିଣି ଭିଣି ମନ ଇଚ୍ଛା ନଖରେ ବିଦାରି, ଓ
ମୁଁ ତ' ତୋର ଲୁହର ତପସ୍ୟା ଓ ବୃମ୍ଫୁଁାକଣ୍ଠ ଧୀପର ଶିଖାରୁ
ଏ ପୃଥିବୀକୁ ଆସିବାର ସ୍ୱପ୍ନ ଦେଖିଅଛି, ଏବଂ
ତୋଅଣ ସବୁଜ ଆଶଃ କୁଆରର ସୀମା ଲଂଘି
ମୁଁ କାନ୍ଦିବା ଅନେକ ଆଗରୁ ତୋ ଓଠରେ
ହସ ଫୁଟାଇଛୁ !! [୧୪]

|| କବି କମଳାକାନ୍ତ

କମଳାକାନ୍ତ ବେଶ୍ ସଚେତନ ଯେ, ଜୀବନର ଆରମ୍ଭ ଜନ୍ମରେ ନୁହେଁ, ଏହାର ଯଥେଷ୍ଟ ପୂର୍ବରୁ ମାଆର ଗର୍ଭରେ : ଏଇଠି ତା'ର ଜନ୍ମ ଜାତକ ଲେଖା ହୁଏ, ତା'ର ମୃତ୍ୟୁର ପ୍ରଥମ ଯାତ୍ରା :

ବର୍ତ୍ତମାନ କେତେ ବାଟ ମାଆର ଗର୍ଭରୁ ମୋ ମୃତ୍ୟୁର ହାତକୁ ?
ବର୍ତ୍ତମାନ କେତେ ଦୂର ସ୍ନେହର ନଈରୁ ମୋ' ନୀଳ ସମୁଦ୍ରକୁ ? (୧୫)

ଜନ୍ମ, ମୃତ୍ୟୁ, ଓ ପୁନର୍ଜନ୍ମ ମଧ୍ୟରେ ପରିବ୍ୟାପ୍ତ ଜୀବନ । ଜୀବନର ସ୍ଥିତି, ବ୍ୟାପ୍ତି ଓ ପରିବେଶ ସବୁ ଚକ୍ରାକାରରେ ଘୂର୍ଣ୍ଣାୟମାନ । ମତେ ଯେପରି ଜୀବନ କେବଳ ନକ୍ଷତ୍ର ସ୍ଥିତିର ନୀରବତା ନୁହେଁ—ଜନପଦର କୋଳାହଳ, କଳରବରେ ପୂର୍ଣ୍ଣ ଏ ଜୀବନ । ବହୁ ଦୁଃଖ ଓ ଆଶା ତଥା ପ୍ରତ୍ୟେକ ମୁହୂର୍ତ୍ତର ଶତ ଶତ ଜନ୍ମ ମୃତ୍ୟୁ ଓ ପୁନର୍ଜନ୍ମରେ ଫେଣ୍ଟାଫେଣ୍ଟି ଏ ଜୀବନ ! ତେବେ ଆଶା ଅପେକ୍ଷା ନିରାଶା ଅଧିକ । କାରଣ, 'ବିଶ୍ରାମର ତମ୍ବୁ ତଳେ/ଧିକି ଧିକି ଜଳେ ଆଶା ।' ଆଶାହୀନତାରୁ ଜନ୍ମ ନିଏ ବ୍ୟଥା । ବ୍ୟଥାର କଣ୍ଟାରେ ଜୀବନ କ୍ଷତବିକ୍ଷତ ହୁଏ । ଜୀବନ ହୁଏ : 'ଦୁଃଖ ଓ ଶୋକର ଉଦ୍ୟାନ' । (ପୃ-୧୪) 'ଯନ୍ତ୍ରଣାର ପୋଖରୀ' (ପୃ ୨୭), ଯେଉଁଠି 'କେବଳ ଦୁଃଖ ଅବସାଦ' । (ପୃ ୪୧) ଏବଂ ଏଠାରେ ସବୁ ବ୍ୟସ୍ତତା, ଶୂନ୍ୟତା ଓ କ୍ଲାନ୍ତ ଝୁଲମୁଣି/ଭରିଯାଏ ଉଷ୍ମ ଦୁଧର ବାସନା' (ପୃ ୩) । ମନେ ହୁଏ, ଜୀବନରେ ଖାଲି ପଲ ପଲ ଶାଗୁଣାର/ଡେଣାପଟେ । / ମଶାଣି ଓ ଗାଁ ଜାଗୁଲାଇ' (ପୃ ୪୫) ଏବଂ 'ମୃଷା ମାଟି ଭଣ ଭଣ/ବଳେଇ ଗୁହ୍' (ପୃ ୪୭) ଏହା ସବୁ ଯେଉଁ ଜୀବନର ଚିତ୍ର ଉପସ୍ଥିତ କରେ, ତାହା ଜଣାଯାଏ ଅତି ରିକ୍ତ ଓ ବିରକ୍ତିକର !

ଏପରି ରିକ୍ତତାରେ ଜୀବନ ମନେ ହୁଏ ରସ ଶୂନ୍ୟ । ଆଶାହୀନ, ଛନ୍ଦହୀନ । ଏପରି ଅବସ୍ଥାରେ ମୃତ୍ୟୁ ଅନୁଭୂତ ହୁଏ ଶ୍ରେୟସ୍କର । ଜୀବନ ସହ ମୃତ୍ୟୁ ଏବଂ ମୃତ୍ୟୁ ସହ ଜୀବନ ଅଙ୍ଗୀଭୂତ ହେବାର ସଦା ଅନୁଭବ—

ଜୀବନଠାରୁ ମୃତ୍ୟୁ
ଏତେ ନିକଟସ୍ଥ, ଆତ୍ମୀୟ ସୁହୃଦ୍
ବୋଲି ସହଜରେ ଜାଣି ପାରେ ନା
ବୁଝି ପାରେ ନା ସାଧାରଣ ମଣିଷ !

ମୃତ୍ୟୁଠାରୁ ଜୀବନ
ଏତେ ପୃଷ୍ଟିତ, ଏତେ ସୁରକ୍ଷିତ, ଏତେ
ପ୍ରସାରିତ ବୋଲି ସହଜରେ
ଜାଣି ପାରେ ନା, ବୁଝି ପାରେନା
ଧୂଳି ଧୂସର କାଦୁଆ ମଣିଷ । (୧୬)

ନଦୀ ସ୍ରୋତରୁ ଯେଉଁପରି କୂଳକୁ ପୃଥକ୍ କରି ହୁଏ ନ, ସେହିପରି ଜନ୍ମରୁ ମୃତ୍ୟୁ ଓ ମୃତ୍ୟୁରୁ ଜନ୍ମକୁ ବିଯୁକ୍ତ କରି ହୁଏ ନାହିଁ । ସେଥିପାଇଁ କମଳାକାନ୍ତଙ୍କ ଉଭୟ ପୃଥିବୀର ମଧ୍ୟ ସ୍ଥଳରେ ଏକ ନୂଆ ପୃଥିବୀର ସୃଷ୍ଟି କାମନା କରନ୍ତି । ଏହା ପ୍ରେମ । ବହୁ ପାରଂପରିକ କବିଙ୍କ ପରି ପ୍ରେମକୁ Idealize କରନ୍ତି ନାହିଁ କମଳାକାନ୍ତ । ଜନ୍ମର ତିକ୍ତତା ବା ମୃତ୍ୟୁର ଭୀଷଣତା ମୁଖରୁ ମୁକ୍ତି ପାଇବାକୁ ହେଲେ ଦରକାର ପ୍ରେମ । ପ୍ରେମରେ ପୂର୍ଣ୍ଣତା ପାଇଁ ଦରକାର ତ୍ୟାଗ, ଏବଂ ତ୍ୟାଗ ପାଇଁ ଆବଶ୍ୟକ ନିଷ୍ଠା । କବି ଯେ ଏଥିପାଇଁ କେତେଦୂର ପ୍ରସ୍ତୁତ ଏବଂ ସଫଳ ସେଥିରେ ତାଙ୍କ ମନ ପ୍ରଶ୍ନାକୁଳ : କ୍ଷୋଭ ଅନେକ —

'ଆହା ମୁଁ କି ମେଷ ଶିଶୁ ନିଃସଙ୍ଗତାର ଗ୍ରନ୍ଥ !
ଆହା ମୁଁ କି ପ୍ରଗଲ୍‌ଭତା ! ଭ୍ରାନ୍ତିର ଉଦ୍ଭଟ
ଶ୍ଳୋକ ଏକ !' [୧୭]

( ୫ )

କମଳାକାନ୍ତ କାହିଁକି ପ୍ରଗଲ୍‌ଭ, କଣ ପାଇଁ ତାଙ୍କ ମନରେ ଭ୍ରାନ୍ତି ? ସେ କିଏ ? କେଉଁଠି ତାଙ୍କର ଅବସ୍ଥାନ ? କୁଆଡେ ତାଙ୍କର ଗତି ? ଏହାର ଉତ୍ତରରେ ପ୍ରସ୍ତୁତ ହୁଏ ତାଙ୍କର ପରବର୍ତ୍ତୀ କେତୋଟି ସଂକଳନ : 'ଅଂତତଃ ନିଷ୍ଟୁପ' 'ନିଜ ସହ ଗୋଟେ ସାକ୍ଷାତକାର' ଏବଂ 'ନିତ୍ୟ ନିସ୍ମିତ' । ପୂର୍ବବର୍ତ୍ତୀ ସଂକଳନରେ 'କବିତାର ମୁହଁ ଯେଉଁଭଳି ଖିଦେ ଦିଶୁ ନା କାହିଁକି, ଏ ସଂକଳନମାନଙ୍କରେ ଏହା ଏକ ଭିନ୍ନ ରୂପ ଗ୍ରହଣ କରେ । ଜୀବନକୁ ସଫଳତା ସହ ଯୋଡ଼ି ପାରୁ ନ ଥିବା କବି ଏକ ଭିନ୍ନ ଇଲାକାରେ ପହଞ୍ଚେ । ଅନ୍ୱେଷଣରେ ଉତ୍କଣ୍ଠା ନିବିଡ଼ତର ହୁଏ । ଏଠାରେ କବି ଦେଖେ ବା ଖୋଜେ —

ଆଲୁଅଠୁଁ ମନୋହର, ସୁନ୍ଦର ଇନ୍ଦ୍ରଧନୁଠାରୁ
ଲୋଭମୀୟ । ସଜ ସକାଳର ହତେଜ ଅଖିର ଦୃଶ୍ୟ । (୧୮)

ଆଲୁଅଠାରୁ ମନୋହର, ଇନ୍ଦ୍ରଧନୁଠାରୁ ଅଦ୍‌ଭୁତ, ରଙ୍ଗିନ୍ ସ୍ୱପ୍ନଠାରୁ ନିଚ୍ଛ ଅଉ କ'ଣ ହୋଇପାରେ—କବି ମନରେ ପ୍ରଶ୍ନ ଓ ସନ୍ଦେହ । ତେବେ ତାଙ୍କ ଉତ୍ତର—

ହୋଇପାରେ
ଆପଣାର ଭଗ୍ନାଂଶ ବା ଅବିଭକ୍ତ ସତ୍ତା ।
ନିକେଇ କି ଅବିଭାଜ୍ୟ, ଏକକ ?
ଏକମାତ୍ର ବିନ୍ଦୁର କଷ୍ଟନା । (୧୯)

'ଅବିଭାଜ୍ୟ', 'ଏକକ ଦସ୍ତି କବି ସତ୍ତା'—ଏହା ଏକ ସକ୍ରିୟ ବା କ୍ରିୟାଶୀଳ ସତ୍ତା । ଏହା ଅନେକ ଭଗ୍ନାଂଶରେ ପରିଣତ ହୋଇପାରେ କିମ୍ବା ଅନେକ ଭଗ୍ନାଂଶରେ ଏକକତ୍ୱରେ ସଂଗଠିତ ରହେ । କ୍ଷୁଦ୍ର ବାଲିକଣାରେ ପୃଥିବୀର ବିଶାଳତା କିମ୍ବା ଜଡ଼ଟିରେ ସାରା ସ୍ୱର୍ଗ ଲୁଚି ରହିଲା ପରି ଏହି ସତ୍ତାରେ ସାରା ସଂସାରର ମୋହ, ମାୟା, ପାପ ପୁଣ୍ୟ, ସ୍ୱର୍ଗ ନର୍କ, ଜୀବ ଅଜୀବ, ସଗୁଣ ନିର୍ଗୁଣ, ମହତ୍ତ୍ୱ ଓ ନିଃସତ୍ତ୍ୱ ଲୁଚି ରହେ । କବି ତାକୁ ନିଜର ଭିନ୍ନ ଭିନ୍ନ ଅନୁଭୂତି କାଳରେ ଚିହ୍ନାଙ୍କିତ କରେ; ସୃଷ୍ଟି କରେ ଏକ ନୂତନ ସ୍ନେହଶୀଳ ପୃଥିବୀ; ଏକ ନୂତନ ପ୍ରୀତିର କାକଳି ।

'ଅନ୍ତତଃ ନିଷ୍ଟୁପ' ଏପରି ଏକ ପ୍ରୀତିମୁଖର କାବ୍ୟିକ ପୃଥିବୀର ସୂଚନା ଦିଏ । ଏ କବିତା ସଂକଳନରେ ସମୟର ଏକ ସୁନ୍ଦର ଲ୍ୟାଣ୍ଡସ୍କେପ୍ ଚିତ୍ରଣ କରନ୍ତି କମଲାକାନ୍ତ । ଏ ଲ୍ୟାଣ୍ଡସ୍କେପ୍ ସାରା ଶାଳ ସମୟର ଜୟଗାନ । ଚତୁର୍ଦ୍ଦିଗ ନିର୍ଜନ, ଚୁପ୍‌ଚାପ୍ ଏହାର ପରିବେଶ, ଏହାର ବଣ ପାହାଡ଼, ଚଞ୍ଚଳତା, ଶସ୍ୟକ୍ଷେତ୍ର—ସବୁହେଁ ନିଷ୍ଟୁପ । ଏଠାରେ 'ଯେ ଆଡ଼େ ଗୃହିଲେ ମାଟି/ଏକାକାର ସମୁଦ୍ର ଆକାଶ ।' ସତେ ଯେପରି ଏ ଏକ ଗୋପନୀୟ ଜଗତ, ସବୁଦିଗ ଗ୍ରସ୍ତାଛନ୍ନ । ଏହି ଗ୍ରସ୍ତାଛନ୍ନ ଇଲାକାରେ କବି ଜନ୍ମ ଓ ମରଣରେ 'ଗୋପନ ମୈଥୁନ'ଠାରୁ ଆରମ୍ଭ କରି ଈଶ୍ୱରଙ୍କୁ ଫାଶି ଦେବା ପର୍ଯ୍ୟନ୍ତ ସମସ୍ତ କାବ୍ୟିକ କ୍ରିୟାରେ ନିମ୍ନୋକ୍ତ କରନ୍ତି ।

'ଅନ୍ତତଃ ନିଷ୍ଟୁପ'ର ବାଚ୍ୟ ସ୍ୱରୂପ ନିଜେ ସମୟ । ତାର ଅଧୀନସ୍ଥ : ପୃଥିବୀ ଆକାଶ, ସମୁଦ୍ର, କୀଟ, ପତଙ୍ଗ, ମଣିଷ ଓ ଭାଗ୍ୟ । ସମସ୍ତ ଏଠି ନିଜେ ଈଶ୍ୱର ।

ମତ ଅଭିମତ ଭିନ୍ନମତ ॥

କମଳାକାନ୍ତଙ୍କ ଭାଷାରେ—'ସେ ଯନ୍ତ୍ରଣାର ଅବତାର', ସବୁ 'ସ୍ଥିରତା ଓ ଅସ୍ଥିରତା'ର ମୂଳ ବନ୍ଧୁ । ସମୟର ଲ୍ୟାଣ୍ଡସ୍କେପ୍‌ରେ ଯେଉଁ ନଈଟି କଳକଳ। ରଡ଼ି କରି ଆଗକୁ ଆଗକୁ ବହିଯାଏ, ତାହା ଚିର ବିଷାଦର ନଈ । ତା'ର ସ୍ରୋତର ଦୁଇ କୂଳେ ଦୁଃଖ, ବିଷାଦ, ଭୟ ଓ ହାହାକାର ।

ସମୟ ଯେଉଁଠି ନିଷ୍ଠୁର, ଜୀବନ ଯେଉଁଠି ହାହାକାରମୟ, ବଞ୍ଚିବାର ପ୍ରତ୍ୟେକ ଗଳିରେ ଯେଉଁଠି ମୃତ୍ୟୁର ଜଳଧୁନ ଶବ୍ଦାୟିତ, ସେଠି କବି ଭଳି ଜଣେ ମଣିଷର ସ୍ଥିତି କେଉଁଠି ? ତାଙ୍କର ବଞ୍ଚିବାର ଢ଼ଙ୍ଗ କିପରି ? ମୃତ୍ୟୁ ଭଳି ଏକ ଭୀଷଣ ପରି-ସ୍ଥିତିକୁ ସେ କେଉଁ ଭଳି ସାମ୍ନା କରି ପାରିବ ? ତା'ର ଉତ୍ତର ବୋଧହୁଏ କବିର ସୃଷ୍ଟି ତା'ର କବିତା । ଜେମସ୍ ଟି ଫରେଲ୍‌ଙ୍କ ଭାଷାରେ—

The work of an artist, or a thinker, is an answer to death··· ·· One of the personal motivations of an artist,perhaps the supreme vanity, is to speak the grave It is not simply the wish but the determination to express thoughts that death can not encompass or obliterate......work does make one free, free for a while··· ·· (୨୦) ।

'ଜନ୍ମ ସହ ଗୋଟେ ସାକ୍ଷାତକାର'ର ଶେଷ କେଇଟି ପଙ୍‌କ୍ତିରେ ଏପରି ଏକ ଅବସ୍ଥାକୁ କମଳାକାନ୍ତ ଲେଙ୍କା ଖୁବ୍ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିଛନ୍ତି—

> 'ମୃତ୍ୟୁ ବୋଲି କିଛି ନାହିଁ ; ଯାହା ଖାଲି ପ୍ରଚଳିତ
> ବିଶ୍ୱାସର ଗନ୍ଧର ମଳିଚ ! ଅରେ ତାକୁ ରଙ୍ଗ ଦେଲେ
> ଯାକ ନେଲେ, ଆଶ୍ଲେଷିଲେ ମନେ ହୁଏ
> ବସନ୍ତ କି ଲେଉଟାଣି ଫେରୁଚି ପୁନଶ୍ଚ
> କବିର ରାଜ୍ୟକୁ, କବିତାର ସୁନାର କ୍ଷେତକୁ ,
> ଈଶ୍ୱରଙ୍କ ଶ୍ମଶାନକୁ, ଈଶ୍ୱରୀଙ୍କ ଶିଙ୍ଗାର ବେଶକୁ !! (୨୧)

ଏଠାରେ 'ରଙ୍ଗଦେବା' ଓ 'ଆଶ୍ଲେଷିବା' ଦୁଇଟି ଶକ୍ତିଶାଳୀ ପ୍ରତୀକ । ଏହା

କୌଣସି ସାହିତ୍ୟ ସୃଷ୍ଟିର ଆଧାର । ଏହା ସୃଷ୍ଟିର କେବଳ ଗୋଟିଏ କମ୍ପନ ବା ଶିହରଣ ନୁହେଁ, ଏହା ସମଗ୍ର ସୃଷ୍ଟିର ନିବିଡ଼ତା । ଏହା ସୃଷ୍ଟିର ଆତୁରତା, ବିବଶତା ମଧ୍ୟ ।

କମଳାକାନ୍ତଙ୍କ କବିତାରେ ତା' ହେଲେ ରଙ୍ଗ ଦେବାର ବିଧି କେତେ ଦୂର ସଫଳ ? କମଳାକାନ୍ତଙ୍କ ପାଠକଙ୍କୁ ବୋଧ ହୁଏ ଏ ପ୍ରଶ୍ନ ପଚାରିବାକୁ ପଡ଼େ ନାହିଁ । ତାଙ୍କର କବିତାରେ ଏହା ଅତି ପରିଷ୍କାର । ତାଙ୍କ ପାଠକ ବେଶ୍ ଭଲ ଭାବେ ବୁଝନ୍ତି ଯେ କମଳାକାନ୍ତଙ୍କ କବିତା ତାଙ୍କର ଶକ୍ତିଶାଳୀ Ego (ଯାହା ସରେଲ୍‌ଙ୍କ ଭାଷାରେ —Supreme vanity)ର ପ୍ରତିବିମ୍ବ । ତାଙ୍କ ବୁଦ୍ଧିଶୀଳ ବ୍ୟକ୍ତିସତ୍ତାର ପରିଚାୟକ ।

[ ୭ ]

କମଳାକାନ୍ତଙ୍କ ବହୁ କବିତାରେ ଯେଉଁ ବ୍ୟକ୍ତି ଉକ୍ତି ପାଠକଙ୍କ ସାମ୍ନାରେ ଏକ ସୁଦର୍ଶନ ସୁଠାମ ପୁରୁଷ ପରି ଠିଆ ହୁଏ, ସେ ତାଙ୍କ କାବ୍ୟ ପୁରୁଷ, ପରୋକ୍ଷରେ ସେ ନିଜେ—କମଳାକାନ୍ତ ଲେଙ୍କା । ଅନ୍ୟ ଭାଷାରେ, କମଳାକାନ୍ତଙ୍କ କବିତାରେ କାବ୍ୟପୁରୁଷ କମଳାକାନ୍ତ । ସେ ପାଠକଙ୍କ ସହ କିଛି ସମୟ ବସି ପାରନ୍ତି, ପାଠକଙ୍କ ସହ ଅନ୍ତରଙ୍ଗ ଗପ ଜମେଇ ପାରନ୍ତି, କିମ୍ବା ସେମାନଙ୍କୁ ପ୍ରେମ କରି ପାରନ୍ତି ବା ତିରସ୍କାର କରି ପାରନ୍ତି, ଭୁଲି ବି ଯାଇ ପାରନ୍ତି । କିନ୍ତୁ ସବୁ ଊର୍ଦ୍ଧ୍ୱରେ କମଳାକାନ୍ତ ଯେଉଁ ଗୋଟିଏ ଜିନିଷର ଅନ୍ୱେଷଣରେ ପାଗଳ ହୋଇଥାନ୍ତି, ତାହା ନିଜର ପରିଚୟ-- 'Thou art that' ।

'କମଳାକାନ୍ତଙ୍କ ଶ୍ରେଷ୍ଠ କବିତା' (୧୯୭୯) ର ସମୀକ୍ଷା କରି ଜଣେ ସମାଲୋଚକ ଲେଖିଥିଲେ—'କମଳାକାନ୍ତଙ୍କ କାବ୍ୟ ନାୟକ ଜୀବନଚର୍ଯ୍ୟାରେ ବୋହେମିଆନ । ନାନା ବିପର୍ଯ୍ୟୟଧର୍ମୀ ଅନୁଭବରେ ସେ ଜୀବନ-ଜର୍ଜର, ସମାକୁଳ । ନିର୍ବେଦର ସାଧନାରତ । ତା'ର ଭିତରେ କମଳାକାନ୍ତ ଇଚ୍ଛା ମତେ ଗ୍ରୀକ୍‌ଟୋକ୍ ସଂଳାପ ଶୁଣାନ୍ତି ଈଶ୍ୱରଙ୍କୁ, ବ୍ୟବହାର କରନ୍ତି ନାରୀକୁ, ଏବଂ ମୁକ୍ତ ଭାବରେ ସାମ୍ନା କରନ୍ତି ଜୀବନକୁ ।' (୨୨) ସାଂପ୍ରତିକ କାଳରେ ସୌଭାଗ୍ୟକୁମାର ମିଶ୍ରଙ୍କ କେତୋଟି କବିତା ବୋହେମିଆନ ଚିନ୍ତାଧାରା ବ୍ୟକ୍ତ କରନ୍ତି । ଉଦାହରଣ ସ୍ୱରୂପ —'ଅନ୍ଧ ମହମାଛି', ଅନ୍ଧମାଛି ପରି ଜୀବନ ସହ ଏକାନ୍ତ ଭାବେ ମିଶି ଯିବାର ସ୍ୱପ୍ନ ଦେଖନ୍ତି ସୌଭାଗ୍ୟ । କୌଣସି ଜିନିଷକୁ ବାଛ-ବିଚାର ନ କରି ଉପଭୋଗ କରିବାରେ ତାଙ୍କର ଯେଉଁ ଆନନ୍ଦ,

ତାହାହିଁ ତାଙ୍କ କଳାକୁ ଉଚ୍ଚତା ପ୍ରଦାନ କରେ । ତାଙ୍କ ଜୀବନକୁ ମହାସ୍ଥାନ କରେ । ସେହିପରି କମଳାକାନ୍ତ ପ୍ରତ୍ୟେକ ମୁହୂର୍ତ୍ତରେ ବଦଳୁଥିବା ଜୀବନକୁ ଅତି ନିବିଡ଼ ତଥା ମୁକ୍ତ ଭାବେ ଉପଭୋଗ କରିବାକୁ ଚାହାନ୍ତି । କିନ୍ତୁ ସୌଭାଗ୍ୟଙ୍କ ପରି ସେ ସବୁଥିରେ ଅନ୍ଧ ଭାବେ ନିମଗ୍ନ ହେବାକୁ ଚାହାନ୍ତି ନାହିଁ । ଲଗାମ ଛଡ଼ା ଜୀବନ ତାଙ୍କ ପାଇଁ ଜୀବନ ପଦବାଚ୍ୟ ନୁହେଁ । ସେଥିପାଇଁ 'ନିତ୍ୟ ନିସ୍ମିତ' ରେ ତାଙ୍କର ତାଗିଦ୍—

ମଦ ଖାଅ ଯେ
ମଦୁଆ ହୁଅ ନା । ରସ ପିଅ ଯେ
ରସିକ ହୁଅ ନା । ପ୍ରେମ କର ଯେ
ପ୍ରତାରଣାକୁ ଧିକ୍କାର ନା, ନା ନା ନା
ନା ନା ନା ... ... କବିତା ଲେଖ ଯେ
କବି ହୁଅନା । ( ୨୩ )

ଏହା ଏକ ନିର୍ଲିପ୍ତ ଚେତନା । ପ୍ରକାରାନ୍ତରେ କମଳାକାନ୍ତଙ୍କ ଜୀବନ-ଦର୍ଶନ । ଏହା ମଧ୍ୟ କୌଣସି କଳା-ସୃଷ୍ଟିର ନିର୍ଯ୍ୟାସ ।

'ନିତ୍ୟ-ନିସ୍ମିତ' ପରଠାରୁ ଏହାକୁ ତାଙ୍କ ଜୀବନ ଓ କଳାର ଚରମ ଲକ୍ଷ୍ୟ ଭାବେ ଗ୍ରହଣ କରିଛନ୍ତି କମଳାକାନ୍ତ । ଏହା ସତ୍ୟ ଯେ ସଂସାର 'ନିତ୍ୟ ଓ 'ନିସ୍ମିତ' । ବହୁ ସମସ୍ୟା, ଶଙ୍କା, ଦୁଃଖ, ଦୁର୍ଦ୍ଦଶା, ସ୍ନେହ ପ୍ରେମ, ବିସ୍ମୟ ଓ ରହସ୍ୟ ଦ୍ୱାରା ଗଠିତ ଏ ଜୀବନ । ପ୍ରତ୍ୟେକ ମୁହୂର୍ତ୍ତରେ ଏ ସବୁକୁ ସ୍ଥିତିବାଦୀଙ୍କ ଭାଷାରେ Everydayness] ର ସାମ୍ନା କରେ କବି । ତାଙ୍କ ଭିତରେ ତଦ୍ରୂପ ସନ୍ଧାନ କଲାପରି; ପ୍ରତ୍ୟେକ ଦିନର କୋଳାହଳ ଭିତରେ କବି ସୃଷ୍ଟି କରେ ପଦ୍ମତୋଳା । ନିତ୍ସେଙ୍କ ଜରାଗ୍ରସ୍ତ କୋଳାହଳ (Chaos) ଭିତରେ ନୃତ୍ୟ ଚନ୍ଦ୍ରା କଲାପରି; କବି ଯାବତୀୟ ବିପର୍ଯ୍ୟୟ ଭିତରେ ଜୀବନର ଅର୍ଥ ଅନ୍ୱେଷଣ କରେ । ପ୍ରତି ଦିନର ଜୀବନ-ସଂଘାତ ଭିତରେ କବି ମ୍ରିୟମାଣ ହୋଇ ପଡ଼ନ୍ତି ; ଶୋକ ଓ ଆଶଙ୍କାରେ ଭାଙ୍ଗି ପଡ଼ନ୍ତି, ଅନ୍ଧାରର ତାବୃତମ ଅନୁଭୂତି ଭିତ ର ପଥ ହୁଡ଼ନ୍ତି, ଯେ 'ଦୁଃଶ୍ୟକୁ ଜୀବନ୍ୟାସ ଦିଏ । ବାଙ୍ଗ୍‌ମୟ କରେ ମୃତ ଶବ୍ଦକୁ- ଦୃଶ୍ୟ ଭିତରେ ଦୃଶ୍ୟ, କଥା ଭିତରେ କଥା, ଛବି ଭିତରେ ଛବି ଦେଖିପାରେ ପୁଣି ଅନ୍ୟ ଗୋଟେ ଛବି. ଆଉ ଗୋଟେ ନୂଆ ଜୀବନର ରୂପ-ସେ ଗନ୍ଧର ଲୌକିକତା, ନିସ୍ତବ୍ଧିଆ ଦିଗ୍‌ବେଳା ଜାର-ବନ୍ଧାର ରମଣୀୟ ଜଗତ । ଯାହା ଅମ ନିତ୍ୟତା ଭିତରେ ହୋଇଯାଏ ନିସ୍ମିତ ଓ

ନିସ୍ବମର ଅନ୍ତରାତ୍ମା ଭିତରେ ନିତ୍ୟତାକୁ ଚିହ୍ନି ପାରେ, ଧରି ପାରେ—କଢ଼ଟିକୁ ଫୁଲ କରି ଫୁଟାଏ, ବିପର୍ଯ୍ୟସ୍ତ .... ଅବିନ୍ୟସ୍ତ ଅକ୍ଷରକୁ ଜାବୁଡ଼ି ଶବ୍ଦ ଭିତରେ ଶବ୍ଦ ଭୂମାକୁ ଭୂମି ଓ ଭୂମିକା କରି ଠିଆ କରାଏ ।' (ନିତ୍ୟ ନିସ୍ବମିତରେ ପ୍ରକାଶଙ୍କ 'ପଦେ') ।

'ନିତ୍ୟ ନିସ୍ବମିତ'ରୁ ଏ ପ୍ରସଙ୍ଗରେ ଗୋଟିଏ ଉଦାହରଣ ନିଆଯାଇପାରେ—

କେହି ନ ଥିଲା ବେଳେ ମନ
ହଠାତ୍ ଚିହ୍ନି ପକାଏ ଆପଣାକୁ ।
ହଠାତ୍ ଅବାକ୍ ହୁଏ
ନିଜର ସ୍ବାଭାବିକତା ଯେ
ବାଙ୍ମୟ ବିସ୍ମୟରେ
ହଜି ଯାଉଥିଲାବେଳେ
ସଁବାଳୁଅଟି ରଙ୍ଗିନ୍
ଡେଣାରେ ଉଡ଼ିଯାଏ । ( ୨୪ )

ଏଠାରେ ନିତ୍ୟ : ସ୍ବାଭାବିକ ଜୀବନ । (ହୋଇପାରେ ଜୀବନର ସବୁ ସବୁ ଅସ୍ବାଭାବିକତା) ନିସ୍ବମିତ; ସଁବାଳୁଆର ପ୍ରଜାପତିରେ ରୂପାନ୍ତର । ସ୍ବାଭାବିକ ଓ ଅସ୍ବାଭାବିକ ଜୀବନରେ ହଠାତ୍ ଦିଶି ଯାଉଥିବା ଦୃଶ୍ୟ/ଅଦୃଶ୍ୟ, ହଠାତ୍ ମହକି ଯାଉଥିବା ଗନ୍ଧ/ଦୁର୍ଗନ୍ଧ ବା ହଠାତ୍ ଶିହରେଇ ଦେଉଥିବା ଚେତନା/ଅଚେତନ ସବୁ ସବୁ ଏକ ସ୍ବାଭାବିକ ନିସ୍ବ । କବି ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ ଏହା 'ଆରଦୃଶ୍ୟ' । ବାଳୁତ କୃଷ୍ଣର ପାଁ ଭିତରେ ମାତା ଯଶୋଦାଙ୍କ କେବଳ ମାଟି ଦେଖିବାର ଅନୁଭୂତି ନୁହେଁ, ସେଥିରେ ପରିବ୍ୟାପ୍ତ ବହୁ ପୃଥିବୀ, ବହୁ ଜୀବନ, ବହୁ ମୃତ୍ୟୁର ଦୃଶ୍ୟପଟ୍ଟ ।

( ୭ )

'ନିତ୍ୟ ନିସ୍ବମିତ' ପରେ ତାଙ୍କର ଆଉ ତିନୋଟି ସଂକଳନ ପ୍ରକାଶିତ— 'ସ୍ରୋତର ନାମ ରକ୍ତ', 'ଫେରିବାର ବେଳ' ଏବଂ 'ଗୀତ ଗା' ନା ରେ ପକ୍ଷୀ' । ଏହି ତିନୋଟି ସଂକଳନର ବିଷୟବସ୍ତୁ ଏକ : ଜୀବନ ସହ ଖୋଲାଖୋଲି ସଂପର୍କ ଓ ସହବାସ । ସେଥିପାଇଁ ସେ ଆଗରୁ ବେଶ୍ ପ୍ରସ୍ତୁତ ହୋଇଛନ୍ତି, ଆହ୍ବାନ ଦେଇଛନ୍ତି— 'ନିତ୍ୟ ନିସ୍ବମିତ'ରେ :

'ନିଆଁକୁ ଚେହ୍ଲ କରିବା ଆ'ରେ ଯାଙ୍କ'

ମତ ଭିନ୍ନମତ ଅଭିମତ ।।

ସାଂପ୍ରତିକ କାଳରେ ବଂଚିବା ଅର୍ଥ କାହାଁକୁ ଗେହ୍ଲା କରିବା ନୁହେଁତ ଆଉ କ'ଣ ? 'ସ୍ରୋତର ନାମ ଋତ'ରେ ସେଥିପାଇଁ ସେ କହୁଛନ୍ତି—'ଜିତିବାର ପଥେ ଜୀଇବାର ଦଂଶନରେ ହୁଏ ଉଗ୍ର ।' ବର୍ତ୍ତମାନ କାଳରେ ଯଦି କେହୁ ସଫଳ ଭାବେ ବଂଚିବାକୁ ଚାହାନ୍ତି, ତା'ହେଲେ ସେମାନଙ୍କୁ ଯୋଦ୍ଧା ହେବାକୁ ପଡ଼ିବ । ଯେଉଁ ବ୍ୟକ୍ତି ଯୁଦ୍ଧ କ୍ଷେତ୍ରରେ ଯେତେ ସମର କୌଶଳ ଦେଖେଇ ପାରେ, ସେ ସେତେ ବଡ଼ ଯୋଦ୍ଧା ଭାବେ ପରିଗଣିତ ହୁଏ । ରଣ ଭୂଇଁରେ ପରାସ୍ତ ହୋଇ ପଳାୟନ କରିବା ଅର୍ଥ ହୁଏ ଭୀରୁତା ବା କାପୁରୁଷତା । ଅବଶ୍ୟ କମଳାକାନ୍ତ ପଳାୟନ ପନ୍ଥୀ ନୁହନ୍ତି ।

ଏହାପରେ 'ସ୍ରୋତର ନାମ ଋତ' । ଉତ୍ତର ସତୁରୀ ଓଡ଼ିଆ କବିତାର ଭାବ, ଭଙ୍ଗୀ, ଓ ଶିଳ୍ପଗତ ଏଥିରେ ସ୍ପଷ୍ଟ । ଏ ସଂକଳନରେ ଜୀବନକୁ ମୁକ୍ତ ଭାବେ ସାମ୍ନା କରିବାବେଳେ, କବି ଜୀବନ ସତ୍ୟର ଅନୁସନ୍ଧିତ୍ସା କରନ୍ତି । ଏହି ସତ୍ୟ ଯେ ଜୀବନ ଏକ ମହାନ ସ୍ରୋତ, କାଳ କାଳାନ୍ତର ଦେଇ ଏହା ପ୍ରବାହିତ—ସ୍ଥାବର ଜଙ୍ଗମ ସମସ୍ତେ ଏ ସ୍ରୋତରେ ଭାସି ଭାସି ଯାଆନ୍ତି; କିଏ ଜାଣେ କେଉଁଆଡ଼େ, କେଉଁ ନିଶ୍ଚିତ ଆଲୋକକୁ ବା ଅନ୍ଧାରକୁ; କେଉଁ ଜୀବନ ବା ମୃତ୍ୟୁର ବୃତ୍ତ ଭିତରକୁ । ସେଥିପାଇଁ ବ୍ୟସ୍ତ ହୋଇ ନାହାନ୍ତି କବି, ଫଳେ ମାତ୍ର ବିଚଳିତ ହୋଇ ନାହାନ୍ତି । ତେବେ ସ୍ରୋତର ପ୍ରବାହକୁ ଜୀବନର ପରମ ସତ୍ୟ ବୋଲି ଜାହିର କରିଛନ୍ତି କମଳାକାନ୍ତ । ଏଇ ବୋଧହୁଏ ଅସତ୍ୟ ଓ ଅନିତ୍ୟ ସଂସାରର ଏକମାତ୍ର 'ଋତ' ବା ସତ୍ୟ, ଯାହାକୁ ଜାଗତିକ ସତ୍ୟ ଭିନ୍ନ ଏକ ଶାଶ୍ୱତ ସତ୍ୟ ବୋଲି କୁହାଯାଇ ପାରେ । ସରଳ ଭାଷାରେ କହୁଥିଲେ - ଏହା ସବୁ ତଥ୍ୟର ସତ୍ୟ, ସବୁ ଅନୁଭୂତିର ଅନୁଭୂତି, ସବୁ ଜିଜ୍ଞାସାର ଜିଜ୍ଞାସା ।

ସଂକଳନଟିର ପ୍ରବକ୍ତା ତ୍ରିଲୋଚନ ମିଶ୍ରଙ୍କ ମତରେ, 'ସ୍ରୋତ; ସତ୍ତା ବା ଋତର ଏକ ସାଂକେତିକ ରୂପ : କାରଣ ଏକ ନିର୍ଦ୍ଦିଷ୍ଟ ସୀମା ଭିତରେ ଯାହା ସତତ ଅଗ୍ରଗାମୀ ଓ ଅସ୍ଥିର; ତାହା ପୁଣି ଉତ୍ପତ୍ତି ଓ ସଙ୍ଗମର କଳ୍ପିତ ସୀମା ମଧ୍ୟରେ ଏକ ଆପାତତଃ ସ୍ଥିର ଓ ଶାଶ୍ୱତ ସତ୍ତା ।' (୨୫) ସୁତରାଂ 'ସ୍ରୋତର ନାମ ଋତ'କୁ ଏକ ଅନ୍ୱେଷଣର କାବ୍ୟଗ୍ରନ୍ଥ କହିଲେ ସତ୍ୟର ଅପଳାପ ହେବ ନାହିଁ ।

ସଂକଳନର ପ୍ରଥମ କବିତା 'ଗୋଲକ ଧନ୍ଦା' ମାଧ୍ୟମରେ ଏ ଅନ୍ୱେଷା କରନ୍ତି କମଳାକାନ୍ତ । ମଣିଷ ଜୀବନର ସବୁ ସବୁ ପ୍ରକୃତି ଓ ପ୍ରବୃତ୍ତିର ସତ୍ୟାସତ୍ୟ ଆବିଷ୍କାର କରିବାକୁ ସେ ଯେପରି ଦୃଢ଼ ପରିକର । ପରାମର୍ଶ ଛଳରେ ଯେପରି ସେ କହିବାକୁ ଚାହାନ୍ତି; ରେ ଭାଇ; ତୁ ଭଲ କରି ଜାଣିବାକୁ ଚେଷ୍ଟା କର; ମଣିଷ—

ଭଲ ପାଏ ତାହାଙ୍କ ପାପକୁ
ତାହାଙ୍କ ସବୁ ରଙ୍ଗଛଡ଼ା; କାଠ ଛଡ଼ା; ଖାରକସ୍ ଗନ୍ଧଭରା
ପୁରୁଣା, ମସିଆ ଚଦର
ବେକ ଭଙ୍ଗା ଗୁହିଁବା ଠାଣିକୁ. ଭଲ କରି ଜାଣେ
ମଣିଷ ତା' ଭିତର ଘର ଠାକୁର
ଗୁହିଁଥାଏ କେମିତି ତା' ସ୍ୱପ୍ନ ସଉଦର, ଲାଭ ଲୋକସାନର
ଶରତ ସେଉତକୁ, ବଗିଚାରେ ଫୁଟି ଆସୁଥିବା
ଫୁଲଟିର ନିର୍ଲୋଭ ଜଟକୁ । ମଣିଷ
ଜାଣେ ଭଲ କରି କାହିଁକି
ସେ ଭଲପାଏ ତା' ଦୁଃଖର ଉଜାଳ ତରିକୁ
ତା' କୁଣ୍ଠା କାଠିର ସଂସାର
ଅଛ ପାଗଳାମିର ଉଲ୍ଲାସ
ତା' ପୌରୁଷର ସ୍ତୋଜ ପବନଉଁ ପଡୁଥିବା ବେଳେ ...[୨୭]

କେବଳ ମଣିଷକୁ କାହିଁକି, ସୃଜନଶୀଳ ବ୍ୟକ୍ତିତ୍ୱ ଓ କବିଙ୍କୁ ମଧ୍ୟ ତାଙ୍କର ସମ୍ବୋଧନ—

ଭଲ କରି ଜାଣେ କବି
କାହିଁକି ଓ କେଉଁମିତି ଛଟ ପଟ
ଈଶ୍ୱରଙ୍କ ଯାବତୀୟ ସୁନ୍ଦର ସୃଷ୍ଟିର
ଆକର୍ଷିତ, ରହସ୍ୟ ଭିତରେ ! (୨୭)

ଉପରୋକ୍ତ ଦୁଇ କବିତାଂଶ ପାଠ କଲେ ଏହା ସ୍ପଷ୍ଟ ହେବ ଯେ କବି ତାଙ୍କର ପୂର୍ବ ବୃତ୍ତ (ନିଷ୍ଠୁରତା) ର ଜାଲ କାଟି ଏକ ମୁକ୍ତ ମଣିଷ ହେବାର ବ୍ୟାକୁଳତା ପ୍ରକାଶ କରିଛନ୍ତି । (୨୮) ଏହି ବ୍ୟାକୁଳତାହିଁ ତାଙ୍କ ସୃଷ୍ଟିର ଉତ୍ସ । ଜୀବନ ସନ୍ଧାନରେ ବ୍ୟାକୁଳତା, ଅନୁଭୂତିରେ ତୀବ୍ରତା ଓ ସୃଷ୍ଟିରେ ସାନ୍ଦ୍ରତା ନ ଥିଲେ ବୋଧହୁଏ କବି ନୂତନତ୍ୱର ବୀଜ ବପନ କରି ପାରନ୍ତା ନାହିଁ । ତାର କୌଣସି ଦିଗ୍‌ଦର୍ଶନ ରହନ୍ତା ନାହିଁ । କିମ୍ବା ତାର କୌଣସି ଦିବ୍ୟ ଦୃଷ୍ଟି ବା **vision** ରହନ୍ତା ନାହିଁ । କମଳାକାନ୍ତଙ୍କ ଏକ ବକ୍ତବ୍ୟ ଅନୁଯାୟୀ 'କବି ଯାହା ଦେଖେ : ତା' ଆନ୍ତରିକତାର /ସାକ୍ଷୀ । କବି ଯାହା ଖୋଜେ : ତା'/ ବ୍ୟାକୁଳତାର ଆଲିଙ୍ଗନ । ଯାହା ପାଏ ' ତା'

ଗୁମୁରଇ ଅସନ୍ତୋଷ ।' ସେଥିପାଇଁ ତ କବି ନିତ୍ୟ ନିଯୁମିତରେ ପ୍ରାଚୀର ଡେଇଁ ନିଷ୍ଟୃପ-
ତାକୁ ପରିତ୍ୟାଗ କରି କୁହେ ; ' ମୁଁ ଏକାନ୍ତ ଭଲ ପାଏ ଆପଣାର/ନୂତନ ପୃଥିବୀକୁ ।'

ନିଜକୁ ଭଲ ପାଇବାକୁ ହେଲେ ନିଜର ପୃଥିବୀକୁ ଆପଣାର କରିବାକୁ ହେଲେ, ନିଜର ଦେହକୁ, ନିଜର ମାଟିକୁ କୋଳେଇ ନେବାକୁ ପଡେ । ମାଟିର ବାସ୍ନା ଦେହର ଗନ୍ଧରେ ଉନ୍ମତ୍ତ ହେବାକୁ ହୁଏ : ଉପରେର ଆକାଶ, ସମ୍ମୁଖରେ ସମୁଦ୍ର; ମାଟି ଉପରେ ଦେଇ କୁଳୁ କୁଳୁ ବହି ଯାଉଥିବା ନଦ ନଦୀ, ଝରଣା ଜଙ୍ଗଲର ପକ୍ଷୀ ଓ ଫୁଲକୁ ନେଇ କଳସୀ ପରି ନାଚିବାକୁ ପଡ଼େ । ଠିକ୍ ଏଇ ସମୟରେ ତାକୁ ରହସ୍ୟବାଦର କୁହୁଡ଼ିରୁ, ସମୟର ଦଦା ପରିବର୍ତ୍ତନଶୀଳ ରହସ୍ୟାତ୍ମକ ଜାଲରୁ ଖସି ଆସିବାକୁ ହୁଏ । କମଳାକାନ୍ତ ଲେଙ୍କା, ପରବର୍ତ୍ତୀ ସଂକଳନ 'ଖସିବାର ବେଳ'ରେ ଏଇ ଅନ୍ୱେଷଣ ଜାହିର୍ କରିଛନ୍ତି । ଏ ସଂକଳନରେ କବିଙ୍କ ବ୍ୟକ୍ତିସତ୍ତା Flux ଓ Mutation ଅର୍ଥାତ୍ 'ପରିବର୍ତ୍ତନ' ଭିତରେହିଁ ଧୂଳି ଓ ମାଟିର ଜୀବନକୁ ଅଙ୍ଗୀକାର କରି ନେଇଛି । ସେଥିପାଇଁ କ୍ଷତ ବିକ୍ଷତ ହେବାକୁ ପଡ଼ିଛି କବିକୁ ! 'ପାପ ଲୁଡ଼ିର ସିଡ଼ିକୁ/ଡ଼େଇଁ ଡ଼େଇଁ ଖସି ପଡ଼ିବାର/ଜଟମୀ ଦୃଶ୍ୟରେ' ତାଙ୍କୁ ବଂଚିବାକୁ ପଡ଼ିଛି । ଜୀବନ ସ୍ରୋତର କୂଳେ କୂଳେ ତାଙ୍କୁ ଏକ ପ୍ରକାର 'ଅକପଟ ସାନ୍ତ୍ୱନା'ରେ ଜୀବନ ଅତିବାହିତ କରିବାକୁ ପଡ଼ୁଛି । ତାଙ୍କ ଭାଷାରେ—

ଏଇ ଅକପଟ ସାନ୍ତ୍ୱନାରେ ଯେ
ଜୀଇଁ ଜାଣେ ସେ କାଞ୍ଚନ ଜଂଘାରେ
ଦେଖେ ସୂର୍ଯ୍ୟୋଦୟ ! ସେ
ପ୍ରତିଟି ନିଷିଦ୍ଧ ପାପକୁ
କରିଯାଏ ଅମୃତମୟ

ଅନ୍ଧାର ଭିତରେ ଆଲୁଅ ଓ ପାପ ଭିତରେ ଅମୃତ ସନ୍ଧାନ କରୁଥିବା କାବ୍ୟ ପୁରୁଷ ବେଳେବେଳେ ଈଶ୍ୱରଙ୍କୁ ଝୁଣ୍ଟିଥାଏ । 'ଖସିବାର ବେଳ' ରେ କବି ଯେଉଁ ସନ୍ଧ୍ୟାର 'ସ୍ୱରଲିପି' ସୃଷ୍ଟି କରିଛନ୍ତି; ତାହା ଅନେକ ସମୟରେ ଈଶ୍ୱରଙ୍କ ଅନ୍ୱେଷାରେ ମର୍ମୀନ ହୋଇଛି । ଏଠି ସ୍ମରଣ କରିଯାଇ ପାରେ ଯେ କମଳାକାନ୍ତଙ୍କ କବିତାରେ ଜୀବନ, ପ୍ରେମ, ସମୟ ପରି ଈଶ୍ୱର ମଧ୍ୟ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥାନ୍ତି ; ଈଶ୍ୱରଙ୍କ ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ ସବାଦୌ ବ୍ୟଙ୍ଗାତ୍ମକ ହୋଇଛି । ଏ ପରି-ପ୍ରେକ୍ଷୀରେ କମଳାକାନ୍ତ ସୌଭାଗ୍ୟ ମିଶ୍ରଙ୍କ ସମଗୋତ୍ରୀ । ସୌଭାଗ୍ୟଙ୍କ 'ଈଶ୍ୱରଙ୍କୁ

ଦେଖୁ ନ ? ପ୍ରତିପ୍ରତି ସ୍ପୃତି ଠିକ୍ [ହୃଦସ୍ପେଶ୍ୱରୀ ପଦ୍ମ କମଳାକାନ୍ତଙ୍କ ସ୍ମୃତି' ପରେ ହୁଏ ତ/ହଲକ ଶୁଣିଥିବ ଶବ୍ଦମାନଙ୍କର ।/ ରାସ୍ତା ବନ୍ଦ ହୋଇଥିବ/ଈଶ୍ୱର ନାମକ ଚଣ୍ଡାଳର' ତୁଲସୀସ୍ତ । କେତେକ ସମାଲୋଚକ କମଳାକାନ୍ତଙ୍କ କବିତାରେ ଆଧ୍ୟାତ୍ମିକ ଉତ୍ତରଣ ବିଷୟ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିଛନ୍ତି । କିନ୍ତୁ ମୋ ମତରେ ସେପରି କିଛି ଅଭୂତ ଧାରା ତାଙ୍କ କବିତାରେ ନାହିଁ । ଈଶ୍ୱରଙ୍କ ନାମ କେତେବାର ଉଚ୍ଚାରଣ କରି ଦେଲେ, ତାହା ତଥାକଥିତ ବିଭୂଚେତନାର କବିତା ହୋଇଯିବ ନାହିଁ ।

'ଗୀତ ଗା' ନା ରେ ପକ୍ଷୀ' ତାଙ୍କର ଏକାଦଶ ସଂକଳନ । 'ଗୀତ ଗା' ନା ରେ ପକ୍ଷୀ'ର ଶୀର୍ଷକ କୌତୂହଳ । କବିତାଗୁଡ଼ିକ ବିଶେଷ କରି ନିଜ ପ୍ରତି ଉଦ୍ଦିଷ୍ଟ, ନିଜକୁହିଁ ସମ୍ବୋଧିତ । ସେ ଯେପରି କହୁଛନ୍ତି କବିକୁ—'ରେ କବି ! ଅଛି ପକ୍ଷୀ ପରି ପ୍ରତିନିୟତ ଗାଇବାରେ କି ଆବଶ୍ୟକତା ଅଛି ; ବନ୍ଦ କରି ଦେ ଗୀତ, ଭୁଲି ଯା' ତୋର ନିଜର ସ୍ୱାଭାବିକ କ୍ରିୟା,ନୀରବ ରହି ଯା' । ଏହା ନିଜ ପ୍ରତି ଏକ ତୀବ୍ର ଅଭି-ମାନର ଅଭିବ୍ୟକ୍ତି । କବି ଆଜି ଏମିତି ଏକ ସ୍ଥାନରେ, ସମୟରେ ବା ପରିସ୍ଥିତିରେ ଏବଂ ଏମିତି ଏକ ସତ୍ୟ ସମ୍ମୁଖରେ ଦଣ୍ଡାୟମାନ, ଯେଉଁଠି 'ଗୀତଠୁଁ ଅଶ୍ୱାସ/ପ୍ରତ୍ୟାଶା କରିବା ମାନେ/ସବୁଇଙ୍ଗନାରେ ଗୀତ ପ୍ରତି ଇବା ।' ତା'ଠାରୁ ବରଂ ଭଲ, ତାଙ୍କ ଭାଷାରେ, 'ନୀରବତାର କୋଠରେ ବୋଧିବୃକ୍ଷ' ଅନ୍ୱେଷଣ କରିବା ।

ବେଳେବେଳେ ନୀରବ ରହିଯିବା ମାନେ ହୁଏ ନିଜ ଭିତରେ ଉଠି ଆସୁଥିବା ଝଡ଼କୁ ପ୍ରତିରୋଧ ନ କରି ମୁଣ୍ଡ ପୋତି ପଡ଼ି ରହିବା । ଏପରି ନୀରବତା ପ୍ରକାରାନ୍ତରେ ଏକ ନୀରବ କ୍ରୋଧକୁ ବ୍ୟକ୍ତ କରିଥାଏ ଏବଂ ଏହି କ୍ରୋଧ ତାଙ୍କର ପରବର୍ତ୍ତୀ କବିତାରେ ବେଶ୍ ସ୍ପଷ୍ଟ । କମଳାକାନ୍ତ ଏହି କ୍ରୋଧ ମାଧ୍ୟମରେ ନିଜର ବ୍ୟକ୍ତି ସତ୍ତାକୁ ବିସ୍ତାରିତ କରିଥାନ୍ତି । ଏଠି ସ୍ମରଣ କରି ଦିଆଯାଇ ପାରେ ଯେ ଏପରି କ୍ରୋଧ ଜୀବନ ପ୍ରତି ଉଦ୍ଦିଷ୍ଟ ନ ଥାଏ, ନା ଏହା କୌଣସି ସମାଜ, ରାଜନୀତି ବା ମଣିଷ ପ୍ରତି ଅଗ୍ନି ପ୍ରଜ୍ୱଳନ କରେ, ନା ଏହା କୌଣସି ବାଦ ବା ସ୍ୱର ପ୍ରତି ଅସନ୍ତୋଷ ବ୍ୟକ୍ତ କରେ । ତାଙ୍କର କ୍ରୋଧ ତାଙ୍କ 'ସତ୍ତା' ପ୍ରତି, ତାଙ୍କର ଅନ୍ତର୍ଗତ ଶୂନ୍ୟତା ପ୍ରତି ନା ସ୍ୱୀୟ ସ୍ଥିତି ପ୍ରତି !

ଆଗରୁ ଉଲ୍ଲେଖ କରିଛି, କମଳାକାନ୍ତଙ୍କ କବିତାର ନାୟକ ନିଜେ କମଳାକାନ୍ତ । ବ୍ୟକ୍ତିଗତ ସ୍ତରରେ ଜଣେ ପୂର୍ଣ୍ଣପୂର୍ଣ୍ଣ ଅଲଗା ମଣିଷ । ଏକ ଧୂଳିମାଟିର ରୋମାଣ୍ଟିକ୍ ପ୍ରାଣୀ, ଏକ ପୃଥକ୍ କବି ସତ୍ତା । ସେ ଜଣେ ବିଶେଷ କରି ଦ୍ୱନ୍ଦ୍ୱ ପୀଡ଼ିତ

ବିଷାଦ ଦଗ୍ଧ ସାଧାରଣ ମଣିଷ : ତାଙ୍କ ଜୀବନ ବସ୍ତୁ ଭିନ୍ନମୁଖୀ,ପରସ୍ପର ବିରୋଧୀ ଚେତନାର ସନ୍ଧିସ୍ଥଳ । ତାଙ୍କର ବସ୍ତୁ ସୃଷ୍ଟି ଆନ୍ତ୍ର ଜୀବନ ଚରିତ୍ରରେ ଉଜ୍ଜ୍ୱଳ । ତାଙ୍କର କାବ୍ୟ ସ୍ରୋତରେ ଏକ କୂଳରେ ସାଧାରଣ ମଣିଷର ଅନୁଭୂତ, ଅନ୍ୟଟିରେ ସାଧାରଣ ଜୀବନ ଧର୍ମରେ ଏକ ଆଧିଭୌତିକ ଜୀବନ ଦୃଷ୍ଟିର ପରିଚୟ ମିଳେ । ଏହା ସ୍ୱୀକାର୍ଯ୍ୟ : କମଳାକାନ୍ତଙ୍କ କବିତାରେ ଦ୍ୱିତୀୟ ପ୍ରକୃତି ପରିସ୍ଫୁଟ ନୁହେଁ । କମଳାକାନ୍ତ କୌଣସି ସନ୍ନ୍ୟାସୀ ବା ପ୍ରଫେଟ୍ ନୁହନ୍ତି । ତାଙ୍କର କବିତା ରମାକାନ୍ତ ବା ସୀତାକାନ୍ତଙ୍କ କବିତାର ଉଗ୍ର ସନ୍ନ୍ୟାସୀୟ ଚେତନା ବହନ କରେନା ; ଏହା କୌଣସି ଦୃଶ୍ୟ ବାହାରେ ଅଦୃଶ୍ୟ, ସତ୍ତା ବାହାରେ ଅସତ୍ତାର ଦୃଶ୍ୟପଟ୍ଟ ଅଙ୍କନ କରେ ନାହିଁ ।

ତାଙ୍କର କବିତା ଜଣେ ସାଧାରଣ ମଣିଷର କବିତା—ଏକ ନିରାଡ଼ମ୍ବର, ସରଳ, ନିଷ୍କପଟ ଜୀବନର ପରିଚୟ ତାଙ୍କର କବିତା ଜୀବନର ଗଭୀରତମ ରହସ୍ୟ ଓ ସତ୍ୟର ଅନ୍ୱେଷଣକାରୀ ପାଠକଙ୍କୁ କଷ୍ଟ ନିରାଶ କରିପାରେ । ଜୀବନ ନଦୀର ଦୁଇ କୂଳ ନେଇ ବହିଯାଏ ତାଙ୍କର କବିତାର ସ୍ରୋତ । ଏହା କେତେବେଳେ ମନ୍ଥର ଓ କେତେବେଳେ ଖୁବ୍ ବେଗବାନ୍ , କ୍ଷିପ୍ର । ଏଥିରେ ଅତି ସାଧାରଣ, କ୍ଷୁଦ୍ରାତିକ୍ଷୁଦ୍ର ଘଟଣାମାନ ଲିପିବଦ୍ଧ । ଜୀବନ ବା କବିତା ପ୍ରତି ସାଧାରଣ ଦୃଷ୍ଟିଭଙ୍ଗୀରେ ଭାସ୍ୱର—ତାଙ୍କ କଳା ।

( ୯ )

କମଳାକାନ୍ତ ଲେଙ୍କାଙ୍କ କବିତା ବିଶୁଦ୍ଧ କବିତା (ଯାହାକୁ ଇଂରାଜୀରେ pure poetry କୁହାଯାଏ) ପଦବାଚ୍ୟ ନୁହେଁ । ଆବେଗ ଓ ସ୍ୱରର ସମନ୍ୱିତ ଭାବ ସହ ଅନ୍ତର୍ନିହିତ କାଳ୍ପନିକ ଦୃଷ୍ଟିଭଙ୍ଗୀ ତଥା ଭାଷାର ଚମତ୍କାରିତା ଦ୍ୱାରା ଚିହ୍ନିତ ହୋଇଥାଏ ବିଶୁଦ୍ଧ କବିତା । କବି ଓ୍ୱାଲେସ୍ ଷ୍ଟିଭେନ୍ସଙ୍କ ଭାଷାରେ 'A poem is like a man walking on the bank of a river, whose shadow is reflected in the water.' (୩୦) ଷ୍ଟିଭେନ୍ସଙ୍କ ନଦୀ ଏଠାରେ ସଂପୂର୍ଣ୍ଣ କବିତା, ସ୍ରୋତ ତାର ଚେତନା ଏବଂ ଗତିଶୀଳ ଛାଇ ହେଉଛି ପାଠକ ମନରେ ସୃଷ୍ଟି ହେଉଥିବା ଭାବନା ଓ ଚିନ୍ତା । ପ୍ରକୃତ କବିତାର ଛାଇ ସବୁବେଳେ ପାଠକ ମନରେ ଯେଉଁ ପ୍ରତିବିମ୍ବ ସୃଷ୍ଟି କରୁଥାଏ, ତା' ଉପରେ ନିର୍ଭର କରିଥାଏ କବିତାର ସଫଳତା ବା କବି ମହାନତା । କମଳାକାନ୍ତଙ୍କ କବିତାରେ ମଣିଷଟି ହେଉଛି ତାଙ୍କ କବିତାର ରୂପ, ଜୀବନର ସ୍ରୋତ । ସ୍ରୋତର ଏ କୂଳ ସେ

ଝୁଲରେ ସେ ଚଲାବୁଲା କରିପାରେ, ନିର୍ବିଘ୍ନରେ ସେ ଆଗକୁ ଆଗକୁ ମାଡ଼ି ଚାଲିପାରେ । କିନ୍ତୁ ଅନେକ ସମୟରେ ତାର ପ୍ରତିବିମ୍ବ ଏତେଟା ପରିଷ୍କାର ହୁଏନା । କମଲାକାନ୍ତ ବେଳେବେଳେ କ'ଣ କହିବାକୁ ଚାହାନ୍ତି ଏବଂ କେଉଁଠି ଆରମ୍ଭ କରି କେଉଁଠି ଶେଷ କରନ୍ତି, ତା' ଜାଣି ହୁଏ ନା ।

କମଲାକାନ୍ତଙ୍କ କବିତା ଅନୁଶୀଳନ କଲେ ମନେ ହେବ, ତାଙ୍କ କାବ୍ୟପୁରୁଷ ବେଳେବେଳେ ମସ୍ତିଷ୍କର ସୁସ୍ଥତା ରଖି ପାରେନା । ତା'ର ଭାଷାରେ ତା'ର ସଂଯମ ରହେନା,ଅବେଗ ଉପରେ ତା'ର ନିୟନ୍ତ୍ରଣ ନ ଥାଏ. ଚନ୍ଦାରେ ଶୈନ୍ୟ ତ ଏ କ୍ଷେତ୍ରରେ ସ୍ୱପ୍ନ ! 'ଗୀତ ଗା' ନା ରେ ପକ୍ଷୀ' ରେ ସନ୍ନିବେଶିତ ଗୋଟିଏ କବିତାକୁ ଉଦ୍ରାହରଣ ସ୍ୱରୂପ ନିଆଯାଉ—

ମୁଁ କହୁଚି କମଲାକାନ୍ତ—
ଗୋଟେ ସଛା କବି, ଗୋଟେ ଢଅଣିଆ
ଝଚଲ ଦୋ ପଇସି, ଗୋଟେ ଢନ ଆଖିଆ
ନକଲି ଶମ୍ଭୁ ଯେ ' ଖାଲି ଚମ, ଖାଲି ଢ଼ମ
× × ×
କହୁଚି କମଲାକାନ୍ତ : କ'ଣ ନା କଟକଣୀ
ଛଟକଣୀ ଦେଖା ତୋର ବେଙ୍ଗଖିଆ ପାଟି
ଏବଂ ତମ୍ ତମ୍ ଥମ୍ ଥମ୍ ଝମ୍ ଝମ୍ ଚାଲି ।
ନିର୍ବୋଧ କମଲାକାନ୍ତ । ଶଳା କବି
ଛେନା କାଣେ, ଗୁଡ଼ ଗିଲେ
ମୁଗ ସାଥେ, ଫିଟିଯାଏ ମଗଜ ଖିଲ୍ଲୀ । (୩୧)

କବିତାଟି ମନେ ହୁଏ ଆତ୍ମଚରିତ ସମ୍ବନ୍ଧୀୟ ; ତେବେ କୌଣସି କବିର ସୁସ୍ଥ ମାନସିକ ଉଚ୍ଚାରଣ ମନେ ହୁଏ ନା କବିତାଟି ।

ସେହିପରି ବେଳେ ବେଳେ ମନର କେତେ ଉଦ୍ଭଟ ବିକୃତ ପରିକଳ୍ପନା ବା perversion ବ୍ୟକ୍ତ କରେ ତାଙ୍କର କେତୋଟି କବିତା । 'ନିତ୍ୟ ନିୟମିତ'ର କବିତାଂଶ ୩୩ ଏହାର ଏକ ଉଦାହରଣ । କବିତାଂଶ ୨୪ ଓ ୨୫ର କେତୋଟି ଶବ୍ଦରେ ଯେଉଁ ବିକୃତ ଭାବାବେଶ ରହିଚି, ତାହା କୌଣସି ମତେ ଗ୍ରହଣୀୟ ନୁହେଁ

ଏବଂ ଏହା କୌଣସି ରୁଚିବୋଧରେ ଘୋର କୁଠାରଘାତ କରେ ।

( ୧୦ )

କମଳାକାନ୍ତଙ୍କ ଭାଷା । 'ସୁନା ଫସଲ' ଠାରୁ ଆରମ୍ଭ କରି 'ଗୀତ ଗା' ନା ରେ ପକ୍ଷୀ' ପର୍ଯ୍ୟନ୍ତ ତାଙ୍କର ଭାଷା ବିଭିନ୍ନ ସ୍ତର ଓ ଚେତନା ଦେଇ ଅତିବାହିତ ହୋଇଛି । 'ସୁନାଫସଲ'ର ପାରଂପରିକ ଛନ୍ଦ 'ହରଣ ବିହରଣ'ର ଗୁରୁପ୍ରସାଦୀୟ ଲାଳିତ୍ୟ, ତଥା 'ନିତ୍ୟ ନିସ୍ତମିତ'ର ବାକ୍‌ଖଣ୍ଡ 'ସ୍ରୋତର ନାମ ରୀତି', 'ଦେଖିବାର ବେଳ' ଏବଂ 'ଗୀତ ଗା' ନା ରେ ପକ୍ଷୀ'ର କର୍କଶ ଗଦ୍ୟ ଶୈଳୀରେ ଏହା ପରିଷ୍କାର । ତାଙ୍କ ଭାଷା କେବେ ଶୀତଳ ନିର୍ଝରିଣୀ ପରି କୋମଳ ବା ମୁଲାୟମ ତ, କେବେ କର୍କଣ ପଥ ପରି କଠିନ ଓ କଠୋର । 'ନିତ୍ୟ ନିସ୍ତମିତ' ଧରଠାରୁ ତାଙ୍କର କବିତାରେ ସେପରି କିଛି ଉଲ୍ଲେଖନୀୟ ଅଗ୍ରଗତି ହୋଇ ପାରି ନାହିଁ । ଭାଷା ଓ ଶୈଳୀରେ ସେପରି କିଛି ଉତ୍ତରଣ ଲକ୍ଷ୍ୟ କରି ହୁଏ ନି ।

କମଳାକାନ୍ତଙ୍କ ଭାଷାର ଉଲ୍ଲେଖନୀୟ ଗୁଣ ହେଉଛି ଏହାର ନଗ୍ନତା । ଅତି ସାଧାରଣ ଘଟଣା ବା ପରିସ୍ଥିତିକୁ ବର୍ଣ୍ଣନା କରିବାକୁ ହେଲେ ଏକ ପ୍ରକାର ନଗ୍ନ ବା ମୁକ୍ତ ଭାଷାର ଆବଶ୍ୟକତାକୁ ଏଡ଼େଇ ଦିଆଯାଇ ନ ପାରେ । ଏଠି ମନେ ରଖିବାକୁ ହେବ, କମଳାକାନ୍ତଙ୍କ କବିତାର ମୁଖ୍ୟ ସ୍ୱର ଅକପଟତା ବା earnestness । ସେ ଯାହା ଅନୁଭବ କରନ୍ତି, ତାହାହିଁ ବ୍ୟକ୍ତ କରନ୍ତି । ଅକପଟ କବିତା ଲେଖିବାରେ ଯେଉଁ କବିମାନେ ଗୁରୁତ୍ୱ ଆରୋପ କରନ୍ତି ସେମାନେ 'ମାଧ୍ୟମ' ବିଷୟରେ ବିଶେଷ ଚିନ୍ତା କରନ୍ତି ନାହିଁ । ସୁତରାଂ କମଳାକାନ୍ତ ଜଣେ ସଚେତନ ଶିଳ୍ପୀ ନୁହନ୍ତି ; ମୁହୂର୍ତ୍ତି ପ୍ରଭାବିତ ଇଚ୍ଛା, ଆଶା, ଆକାଂକ୍ଷା କିମ୍ବା ଦ୍ୱନ୍ଦ୍ୱ ଦ୍ୱାରା ଚାଳିତ ତାଙ୍କର କବିତା । ଏଥିରେ ଭାଷାର ପ୍ରକୃତ ଓ ଉଚିତ ନିର୍ବାଚନ ନ ଥିବାରୁ, ତାହା ଅନେକ ସମୟରେ ରୁଚିହୀନ ମନେ ହୁଏ । ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥଙ୍କ ମତରେ, ଶ୍ରେଷ୍ଠ କବିତା ଗଦ୍ୟରେ ଲେଖାହୁଏ ଏବଂ ଏହା ଉତ୍ତୀର୍ଣ୍ଣ ହୁଏ ଗଦ୍ୟ ମାଧ୍ୟମରେ । ସେଥିପାଇଁ କେବଳ କଥିତ ଭାଷା ମଧ୍ୟରୁ କାବ୍ୟିକ ଶବ୍ଦ ନିର୍ବାଚନ କରିବାକୁ ପଡ଼ିଥାଏ । ଏହା ସତ୍ୟ ଯେ କମଳାକାନ୍ତଙ୍କ କବିତା କଥିତ ଭାଷାରେ ଲେଖାଯାଇଛି, କିନ୍ତୁ କଥିତ ଭାଷାର କାବ୍ୟିକ ନିର୍ବାଚନ ନାହିଁ, ଫଳତଃ ତାଙ୍କ କବିତା ଗଦ୍ୟର ଶୁଷ୍କତାରେ ଭାରାକ୍ରାନ୍ତ ହୋଇ ଅତି ରୁକ୍ଷ କର୍କଶ ହୋଇ ଯାଇଛି । କେତୋଟି ଉଦାହରଣ—

୧) ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଯାବି ଅପା ଧକଉଚ :
ପ୍ରେମ ମାନେ ଚୁମ୍ବା ଦବା ଝଡ଼ିଲା ପତର । (୩୨)

୨) କି ତୋଡ଼ି ଦେଖଉଚୁ ବେ ?
ଟିକା ବାଂପ ଶଳା ଚଉଦ ପୁରୁଷଙ୍କୁ
ଏମିତ ପାଣି ପିଆଇ ପିଆଇ ଗଛରୁ
ଫୁଲ ସବୁ ଝଡ଼ି ପଡ଼ିଲା । ... ... (୩୩)

୩) ହଜାର ହଜାର କାଚ ଆଖିକୁ
ଯାହା ଦଶେ, ତାହା ରେଳ ପଇ ।
ଅଜସ୍ର ଅଜସ୍ର ଜଖମୀ ଆଣ୍ଠୁକୁ
ଚୁମା ଖାଏ ଯେଉଁ ଦକ୍ଷତା, ତାହା
ମୂତୁରୀମାନଙ୍କର ହେଁସ ନ ଧୋଇବାର ଫିକର । [୩୪]

୪) ନଗ୍ନକ୍ଷଣ କଲେ ବୁଝିବ :
ଗାଲୁଆମାନଙ୍କ ନ ଥାଏ ଗାଲ
ନା ଥାଏ ଦାଢ଼ାଗିଣର ହାତ ଫୁଟୁକା
ନା ବମ୍ ବମ୍ ଭୋଲାନାଥର ଅଣ୍ଟା
ନା ଠନ୍ ଠନ୍ କଥାର ଟେଂପରିଆ ଭାବ । (୩୫)

ଉପରୋକ୍ତ ଉଦାହରଣମାନଙ୍କରେ କମଳାକାନ୍ତଙ୍କ ଭାଷା ରୁଚିବୋଧ ହରେଇଚି ସ୍ପଷ୍ଟ । ଏହା ସ୍ପଷ୍ଟ ଯେ, ଭାଷା ବ୍ୟବହାରରେ ଏଠି କମଳାକାନ୍ତ ବିଚାର (Judgement), ଆସ୍ୱାଦନ [Tast), ଶିଷ୍ଟତା (Decorum) ଏବଂ ସଂଯମ (Restraint) ର ନିଷ୍ଠାପର ସମନ୍ୱୟ ରକ୍ଷା କରି ପାରି ନାହାନ୍ତି । ଏପରି ଅନେକ ଉଦାହରଣ ତାଙ୍କ କବିତାରେ ମିଳିବ ।

'ଶିତା ଅଙ୍କା କାହ୍ନୁର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ'ରେ ବ୍ୟବହୃତ କବିତାର ଭାଷା ରୋମାଣ୍ଟିକ ଓ କେତେକାଂଶରେ ରୁଚିପୂର୍ଣ୍ଣ, ତୀକ୍ଷ୍ଣ । ଏଠାରେ ଆବେଗକୁ ଶବ୍ଦର ଆଡମ୍ବରରେ ସମନ୍ୱିତ କରିଛନ୍ତି କମଳାକାନ୍ତ । ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ପ୍ରେମ କବିତା । ପ୍ରେମ ଓ କବିତା ଉଭୟ ଏକକ ବିନ୍ଦୁରେ

ପ୍ରକାଶିତ ହୋଇଛନ୍ତି । ଏକ କବିତା ସଂକଳନର ମୁଖବନ୍ଧରେ ତାଙ୍କର ଘୋଷଣା— 'କବିତା ଲେଖିବା ଯାହା, ପ୍ରେମ କରିବା ସେୟା' ଏଠି ବାସ୍ତବତାରେ ପରିଣତ ହୋଇଛି । ଏ ସଂକଳନରେ କେତୋଟି କବିତା ମନକୁ ଆକର୍ଷିତ ଭାବେ କାବୁ କରି ପାରନ୍ତି ।

ଜହ୍ନି ଫୁଲଟିଏ
ପରି ତମେ
ଦିଶୁଛ ଦୂରରୁ,
ଅସରାଏ ବର୍ଷା
ପରେ ଯେମିତି
ଆକାଶରେ ଜହ୍ନ
କବିତାର ପୃଥିବୀ
ଝାଟିମାଟି
ସ୍ଥଳ ଉପରେ
ଭୂସ୍ୱର୍ଗ । ( ୩୭ )

କବିତାଟି ଏହାର ଗୋଟିଏ ଉଦାହରଣ ।

କବିତାଗୁଡ଼ିକ ବହୁ ରେନେସାଁ ଇଂରାଜୀ କବିତାପରି କ୍ଷୁଦ୍ର ଏବଂ ଏହାର ଶୈଳୀ **Epigrammatic**; ଷଷ୍ଠ ଦଶକ କାବ୍ୟ ପରମ୍ପରା ଅନୁସୃତ କବିତାର ମନସ୍ତାପ କ୍ଲିଷ୍ଟ ପରିବେଶରୁ ଏହା ଅନେକଟା ସଫଳ ଏ ଦିଗରେ । ଅବଶ୍ୟ ଏପରି କବିତା ବା ଶୈଳୀ କିଛି ନୂଆ ନୁହେଁ । ଏପରି ବହୁ କବିତା ଲେଖାଯାଇଛି । ଭାନୁଜୀ ରାଓଙ୍କ କିଛି କବିତା ତଥା ବ୍ରଜନାଥ ରଥ ଇତ୍ୟାଦିଙ୍କ ସଂକଳିତ 'ଛୋଟି ନିଃଶ୍ୱସର ଆକାଶ' ତଥା ବହୁ ମିନି ପତ୍ରିକାରେ ପ୍ରକାଶିତ ତଥାକଥିତ 'ମିନି' କବିତା ଏହାର ଉଦାହରଣ । କମଳାକାନ୍ତ ଏ ସଂକଳନରେ କବିତାକୁ ଏକ ଭାଷାଗତ ସୌନ୍ଦର୍ଯ୍ୟ ଭାବେ ଗ୍ରହଣ କରିଛନ୍ତି, ଯଦିଓ ବିଶେଷ ସଫଳତା ହାସଲ କରି ପାରି ନାହାନ୍ତି । କ୍ଷୁଦ୍ର କବିତାର ସାଙ୍ଗୀତିକତା ଏଥିରେ ପୁରାପୂରି ଅନୁପସ୍ଥିତ ; ଓ ଗଦ୍ୟର ସ୍ତୂପ ଭିତରୁ ସେ ପୁରାପୂରି ମୁକ୍ତ ନୁହନ୍ତି ।

ଶେଷରେ ଏତିକି କହିଲେ ଯଥେଷ୍ଟ ହେବ, କମଳାକାନ୍ତଙ୍କ କବିତା ସଚେତନ-ଶିଳ୍ପୀ ମାନସର ପଞ୍ଜୀକରଣ ନୁହେଁ । ତାଙ୍କର ଭାଷା Wittgensteinଙ୍କ

Language game ନୁହେଁ । ତାଙ୍କ ଶତୀ ବହୁ ବିପରୀତଧର୍ମୀ ଚେତନା, ଚିଭକ୍ତ ବ୍ୟକ୍ତିସତ୍ତା, ବ୍ୟକ୍ତିମାନସର ବହୁ ଦ୍ୱନ୍ଦ୍ୱର ସଫଳ ସମାବେଶ ଓ ମିଶ୍ରଣ । ଜୀବନ କବିର ମୂଳ ସେ କୂଳ ତାଙ୍କର କବିତା, ସେମିତିଭି ତାଙ୍କର କଳା ।

### ଭଗବାନ ଜୟସିଂହ

ଅଧ୍ୟାପକ, ରେଭେନ୍ସା କଲେଜ, କଟକ


୧) 'ସ୍ମରଣ ବିସ୍ମରଣ (ଦାସ ବ୍ରଦର୍ସ, ବ୍ରହ୍ମପୁର, କଟକ | ୧୯୬୩, ପୃ ୧୪

୨) 'ଗୀତ ଗା'ନା ରେ ପକ୍ଷୀ' (ଫ୍ରେଣ୍ଡସ ପବ୍ଲିଶର୍ସ, କଟକ) ୧୯୮୨, ପୃ ୬୬

୩) 'କବି କମଳାକାନ୍ତ ଲେଙ୍କାଙ୍କ ସହ ସାକ୍ଷାତକାର', ଧନଞ୍ଜୟ ନାୟକ, 'ସାରଥି' ପ୍ରଥମ ସଂଖ୍ୟା (୧୯୮୧—ପୃ ୪୨)

୪) 'ଛଉରଣ' (କାନ୍ତ କୁଟୀର, ଇଚ୍ଛାପୁର, ବାଲେଶ୍ୱର), ୧୯୬୬, ପୃ-୧୮

୫) ମୁଁ ଅବିକା ଜାଣେ ନାହିଁ ମୃତ୍ୟୁ ଏବଂ ଜୀବନର ମାନେ କ'ଣ ?
ବ୍ୟବଧାନ କ'ଣ ? ମୁଁ ଅବିକା ଜାଣେ ନାହିଁ
ଦୁଃଖ ଏବଂ ସୁଖ ଭିତରେ ପାର୍ଥକ୍ୟ କ'ଣ ? ମୁଁ
ଅବିକା ଜାଣେ ନାହିଁ ବ୍ୟଷ୍ଟି ଓ ସମଷ୍ଟି ଭିତରେ
ସଂଘର୍ଷ କ'ଣ ? ମୁଁ ଅବିକା ଜାଣେ ନାହିଁ ସମସ୍ତ
ଅସମସ୍ତ ଭିତରେ ଲୁଚାଲୁଚି, ଷଡଯନ୍ତ୍ର କ'ଣ ?
ଅମେଇସା ଓ ପୁନେଇଁ ଭିତରେ ଲୁଚକାଳି, କୋଳାକୋଳି
ସ୍ମରଣ ଓ ବିସ୍ମରଣ ମଝିମଝି ଜୀବନର
ଅର୍ଥ କ'ଣ ?? ( ନିଜ ସହ ଗୋଟେ ସାକ୍ଷାତକାର—ପୃ ୨୧ )

୬) 'ଜଣେ ଅବିବାହିତା ଯୁବତୀଙ୍କ ଡ଼ାଏରୀରୁ କିଛି' (ସ୍ମରଣ ବିସ୍ମରଣ) ପୃ ୧)

୭) 'ଅର୍ଥହୀନ ଗୀତର ହିସାବ' (ସ୍ମରଣ ବିସ୍ମରଣ) ପୃ ୧୯

୮) 'ନୂଆଗୀତ' (ସ୍ମରଣ ବିସ୍ମରଣ , ପୃ ୭୪

୯) 'ଛଠି : ଶିମୁଳ ଓ ପଳାଶ ଫୁଲଙ୍କୁ' (ସ୍ମରଣ ବିସ୍ମରଣ) ପୃ ୫୪

୧୦) 'ଛଠି . ସଂପର୍କର' (ସ୍ମରଣ ବିସ୍ମରଣ) ପୃ ୩୯

୧୧) 'ସ୍ମୃତି : ବିସ୍ମୃତି' (ସ୍ମରଣ ବିସ୍ମରଣ] ପୃ ୯୩

୧୨) 'ନିଜସ୍ୱ ପ୍ରାର୍ଥନା' (କବିତାର ମୁହିଁ) ୧୯୭୪

୧୩) 'ନିଜସ୍ୱ ପ୍ରାର୍ଥନା' (କବିତାର ମୁହିଁ) ୧୯୭୪


ମତ ଅଭିମତ ଭିନ୍ନମତ ॥

୧୪] 'ମୋ ମ,' ପ୍ରତି' [କବିତାର ମୁହଁ) ପୃ ୫/୬
୧୫) 'ମୋ ମୁଠି ପୁଟରୁ କେତୋଟି ମୁହୂର୍ତ୍ତି' (କବିତାର ମୁହଁ) ପୃ ୨୩
୧୬] 'ନିତ୍ୟ ନସୁମିତ' (କବିତା-୯୧] ବୁକ୍ସ ଏଣ୍ଡ ବୁକ୍ସ, କଟକ, ୧୯୭୮, ପୃ ୪୩
୧୭) 'ସ୍ୱରଲିପି' (କବିତାର ମୁହଁ, ପୃ ୩୧
୧୮) 'ହସ୍ତାକ୍ଷର' (ଅଚଳନ୍ତଃ ନଷ୍ଟ ୂପ), ବିଦ୍ୟାମନ୍ଦିର, ଭଦ୍ରକ, ୧୯୭୫, ପୃ ୬
୧୯, 'ହସ୍ତାକ୍ଷର' ( ,, ) ,, ,, ,, ପୃ ୭
୨୦) 'The world is Today' (Thought), 25, No. 37, (1973) P. 17
୨୧) 'ନିଜ ସଙ୍ଗ ଗୋଟେ ସାକ୍ଷାତକାର', (ପ୍ରକାଶିକା-ନିବୁଦ୍ଧନ ଦିଘ୍ର), ୧୯୬୮, ପୃ ୨୭
୨୨) ସମାବେଶ (୨୩) 'ନିତ୍ୟସୁମିତ' (କବିତା-୧), ପୃ ୩୨
୨୪) କବିତା ୭୦ (ନିତ୍ୟ ନସୁମିତ) ପୃ ୩୨
୨୫) 'ମୋ ଦୃଷ୍ଟିରେ ସ୍ରୋତର ନାମ' (ସ୍ରୋତର ନାମ ରୂତ) ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୮, ପୃ ୨/୩
୨୬) 'ଗୋଲକ ଧନ୍ଦା' (ସ୍ରୋତର ନାମ ରୂତ) ପୃ ୨
୨୭) ତନ୍ନୈବ (୨୮) 'ସ୍ରୋତର ନାମ ରୂତ'ର ସୃଷ୍ଟି ଉପରେ ମନ୍ତବ୍ୟ ଦେଇ କବି କହିଛନ୍ତି —

'ନଷ୍ଟ ପତାକୁ ମଣିଷ ସହି ପାରେ ନା । ନଷ୍ଟ ୂତା ଗୋଟାଏ ବୋଝ । ଗୋଟାଏ ପ୍ରେତ । ଗୋଟାଏ ଲୋମଶ କାଳର ବଜ୍ର କଠିନ ଭାବ । ଉଥିରୁ ବର୍ତ୍ତିବା ହଜିଜ ନୁହେଁ । କିନ୍ତୁ କବିତା ଏଥିରୁ ମୁକ୍ତ ହେବ । ଏଥିପାଇଁ 'ଅନ୍ତତଃ ନଷ୍ଟ ୂପ'ର ସୁଅ କାଟି ଗୀତ ଗାଉଚି 'ରୂତ'

୨୯) 'ପଦାକୁ କାଢିଲେ ଗୋଡ' (ଖସିବାର ବେଳ) ଓଡ଼ିଶ ବୁକ୍ ଷ୍ଟୋର, ୧୯୮୦ ପୃ ୭୧
୩୦) Letters of Wallace Stevens, ed. Holly Stevens (Newyork ; knopf) 1963, P. 364.
୩୧) 'କବି ଉବାଚ' (ଗୀତ ଗା' ନା ରେ ପକ୍ଷୀ) ପୃ ୧/୨ (୩୩) 'କୌଣସି ରାଜପୁତ୍ର ପ୍ରତି' (ଗୀତ ଗା'ନା ରେ ପକ୍ଷୀ) ପୃ ୫୦ (୩୪) 'ଏକା ଏକା'(ଖସିବାର ବେଳ) ପୃ ୪୯

॥ କବି କମଳାକାନ୍ତ

୩୫) 'ନିତ୍ୟନିୟମିତ' (କବିତା-୭) ପୃ ୩

୩୬) 'କବିତା' (ଚିତା ଅଙ୍କା କାଚର ଛବି ଓ ଚିଠି ବାହାରେ ଅପେକ୍ଷାରତ ପୃଥିବୀ) 'ନବଲିପି' ପ୍ରକାଶନୀ—୧୯୮୭, ପୃ ୨୯

# ଓଡ଼ିଆ ସାହିତ୍ୟକୁ ଭଦ୍ରକର ଦାନ

(ସମ୍ବାଦ-ବାଲେଶ୍ୱର ଜିଲ୍ଲା ବିଶେଷାଙ୍କ—୭ ଜାନୁଆରୀ ୧୯୮୭)

ଶ୍ରୀ କମଳାକାନ୍ତ ଲେଙ୍କା (ଜନ୍ମ : ୧୯୩୫) ଭଦ୍ରକରୁ ୭ କିଲୋମିଟର ଦୂର କୁଣ୍ଡିବାଗ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜୀବନର ବହୁକାଳ ଅଧ୍ୟାପନା କରି ଏବେ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ, ପୁରୀରେ ଅବସ୍ଥାପିତ । ସେ କେବଳ ଜଣେ ଅଧ୍ୟାପକ ନୁହନ୍ତି । ଜଣେ ଅତ୍ୟାଧୁନିକ କବି ମଧ୍ୟ । କବି ଭାବରେ ତାଙ୍କର ବେଶ୍ ସୁଖ୍ୟାତି ରହିଛି । ସେଥିପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି । ସେ ନୂଆରଣ, ନିଜ ସହ ଗୋଟେ ସାକ୍ଷାତକାର, ପ୍ରୀତି ଓ ପ୍ରତୀତି, ସୁନା ଫସଲ, ସ୍ମରଣ ବିସ୍ମରଣ, କବିତାର ମୁହଁ, ଅନ୍ତତଃ ନିଷ୍ଟୁପ କବିତା ପୁସ୍ତକ ଲେଖିଛନ୍ତି ।

– ଡକ୍ଟର ପୀତାମ୍ବର ସ୍ୱାଇଁ

# ସ୍ରୋତର ନାମ ଋତ ଓ ନିତ୍ୟ ନିୟମିତର

# କବି କମଳାକାନ୍ତ

( ପ୍ରାଚୀନ ଓ ଆଧୁନିକ ସାହିତ୍ୟ ସମୀକ୍ଷା )

୧ । ସ୍ରୋତର ନାମ ଋତ

ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ କବି କମଳାକାନ୍ତ ଏକ ସ୍ମରଣୀୟ ପ୍ରତିଭା । 'ସ୍ରୋତର ନାମ ଋତ' କବିତା ପୁସ୍ତକଟି ତାଙ୍କର ଅଷ୍ଟମ କବିତା ପୁସ୍ତକ ।

ମତ ଭିନ୍ନମତ ଅଭିମତ ।

କବି କମଳାକାନ୍ତଙ୍କର ଏହା ପୂର୍ବରୁ ପ୍ରକାଶିତ କବିତା ପୁସ୍ତକଗୁଡ଼ିକ ଓଡ଼ିଆ କବିତାର ପାଠକଙ୍କ ନିକଟରେ ତାଙ୍କୁ ଅନ୍ତରଙ୍ଗ କରିସାରିଛି । ଏ କଥା ନିଃସନ୍ଦେହରେ କୁହାଯାଇ ପାରେ ।

'ସ୍ରୋତର ନାମ ରାତି'ରେ ସନ୍ନିବେଶିତ କବିତାଗୁଡ଼ିକ ପ୍ରାୟ ବହୁ ପ୍ରତିଷ୍ଠିତ ପତ୍ର ପତ୍ରିକାମାନଙ୍କରେ ଦୀର୍ଘ ପାଞ୍ଚ ବର୍ଷ ଧରି ବହିଟିର ପ୍ରକାଶକାଳ ପର୍ଯ୍ୟନ୍ତ ପ୍ରକାଶିତ । ଏଥିରେ ସଂଶ୍ଳିଷ୍ଟ ନିଜସ୍ୱ କଥାରେ କବି ଶ୍ରୀଯୁକ୍ତ ଲେଙ୍କା ତାଙ୍କ କବିତା ସଂପର୍କରେ ସଫେଇ ଦେବାକୁ ଯାଇ କହିଛନ୍ତି—

'କବିତା ଲେଖିବା ଯାହା ପ୍ରେମ କରିବା ସେଇଆ । × × × ପ୍ରାୟ ପାଠକ, ମୁଁ କବିତାହିଁ ଲେଖିଛି ଓ କବିତାର କଥାହିଁ କହୁଛି, ଯାହାକୁ ଆପଣମାନେ ଭାବି ପାରନ୍ତି ଗୋଟେ ମେଜାଜ୍, ଗୋଟେ ଖିଆଲ ବା ଆତ୍ମ ଅଭିବ୍ୟକ୍ତିର ଗୋଟାଏ ନିଷ୍କପଟ ଟିପ ଚିହ୍ନ । × × × ପ୍ରତିଟି ମଣିଷ ପ୍ରାଣର ଥର ଥର, କମ୍ପିତ, ଦୁଃଖ ସୁଖର କାଠି କହ୍ନର କଥା, ଯାହା ସଭିଏଁ ଅନୁଭବ କରନ୍ତି, ରକ୍ତରେ ଆଉଟନ୍ତି, ଅଥଚ କହିବାକୁ, ପ୍ରକାଶ କରିବାକୁ ଇଚ୍ଛାଥିଲେ ବି କହି ପାରନ୍ତିନି ବା କହିବ ପାଇଁ ଭାଷାର ଭଣ୍ଡାର ଘରର କମାଟ ଅନ୍ଧାରକୁ ମନ୍ଥି ନଦେଲେ କାକୁସ୍ଥତାର ଝାଳରେ ବୁଡ଼ିଯାନ୍ତି ।'

ଏହି ଦୃଷ୍ଟିରୁ କବିଙ୍କ ସ୍ପଷ୍ଟବାଦିତା ଓ ତତ୍ତ୍ୱକଂଳଗ୍ ମନର ଏକ ନିଚ୍ଛକ ଅଭି-ବ୍ୟକ୍ତି 'ସ୍ରୋତର ନାମ ରାତି' କବିତା ସଂକଳନଟି । ସଂକଳନର ପ୍ରଥମ କବିତା 'ଗୋଲକ ଧନ୍ଦା'ରେ ସାଂପ୍ରତିକ ମଣିଷ ମନର ଗୋଲକ ଧନ୍ଦା ଅର୍ଥାତ୍ ହିଂସା, ଦ୍ୱେଷ ଜାଲିମାରେ ଲିପ୍ତ ତାର ଦୈନନ୍ଦିନ ଦୁଃଖପୂର୍ଣ୍ଣ ଜୀବନର କାହାଣୀ ରୂପାୟିତ । ତଥାପି ସେ ଏହାକୁ ସମାଜ ସଂପୃକ୍ତ ନିଜସ୍ୱ ବ୍ୟକ୍ତିବାଦ ଉପରେ ଗଢ଼ି ତୋଳିଛନ୍ତି—

'ଯାହା ଖାଲି ଥଳକୂଳ ହୀନ ହ୍ରଦ
ମଝି ଚଉରିରେ ଠିଆ ହୋଇ
ପଦ୍ମତୋଳା ବୋଲିବା ଓ ଷଡର ଚିହ୍ନକୁ
ପୁନର୍ବାର ନାଗୁଣୀର ମୁହେଁ ଯୋଖି ଦବା ।'

ଆଲୋଚ୍ୟ କବିତା ସଂକଳନରେ କବି ଲେଙ୍କାଙ୍କ କାବ୍ୟ ପୁରୁଷର ଜୀବନ ଯନ୍ତ୍ରଣା ଓ ନିର୍ଘାତିତାର ସ୍ୱାକ୍ଷର, ଅନନ୍ୟୋପାୟ ହତାଶ, ନୈରାଶ୍ୟ ଇତ୍ୟାଦି ସ୍ପଷ୍ଟ ଭାବେ

ପ୍ରତିଭାତ ହୁଏ । ସାଂପ୍ରତିକ ଦାୟିତ୍ୱ ମଣିଷ ମୃତ୍ୟୁକୁ ଆପଣାର କରିବାକୁ କୁଣ୍ଠିତ ହୁଏ, ତେଣୁ କାବ୍ୟ ପୁରୁଷର ଉକ୍ତି—

'ମୁଁ ଏକାନ୍ତ ଭଲପାଏ ଆପଣାର ନୂତନ ପୃଥିବୀକୁ,
ଆପଣାର ପ୍ରବୃତ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ ।
ଭଲପାଏ ଭଙ୍ଗା ଖେଲନାକୁ/ଭଲପାଏ ଦୁଃସ୍ଥ ମଣିଷକୁ,
ଭଲପାଏ ବଂଚିବାର ନୂଆନୂଆ ଖସୃଷ୍ଟିର ସ୍ପନ୍ଦିତ ଇଚ୍ଛାକୁ ।'

ଏଥିରେ ସାଂପ୍ରତିକ ମଣିଷ ମନର ବିଚଳତା ତଥା ଆନ୍ଦୋଳିତ ହୃଦୟରେ ସବୁଠିକୁ ଭଲପାଇ ବସିବାର ଏକ ନିଷ୍କପଟ ତଥା ଅସହାୟ ଭରସା କବିଙ୍କ ନିର୍ଭୁଲ କ୍ଷିପ୍ରତାରେ ଲେଖି ହୋଇଯାଇଛି ।

କବି କମଳାକାନ୍ତ — ମୁଖ୍ୟତଃ ଜୀବନବାଦୀ କବି ଓ ସାମାଜିକ ସଂପୃକ୍ତିରେ କ୍ଷତ ବିକ୍ଷତର ଏକ ଆହତ ପ୍ରତୀକ । କବିଙ୍କ ଜୀବନାଦର୍ଶ ଏହି ଦୃଷ୍ଟିରୁ ଖୁବ୍ କଠୋର ଓ ସ୍ପଷ୍ଟ । ତାଙ୍କ ପାଇଁ ମୃତ୍ୟୁ ଏକ ନିଷ୍କପଟ ସ୍ୱେଚ୍ଛାସ୍ୱର ବୋଲି ଧରି ନିଆଯାଇପାରେ । କବି ବଞ୍ଚିବା ପାଇଁ ବ୍ୟାକୁଳ ନୁହଁନ୍ତି, ବରଂ ବ୍ୟାକୁଳ ତାଙ୍କ କଳାର କାଳଗତ ମୂଲ୍ୟାୟନ ପାଇଁ । ସ୍ରଷ୍ଟା ମାନସ ତେଣୁ 'କଳାକାହ୍ନୁ' କବିତାରେ ଉଲ୍ଲସିତ ହୋଇ ଉଠିଛି । କବିତାଟି ସମ୍ପର୍କରେ କବିଙ୍କ ମତ — 'କଳାକାହ୍ନୁ' ଏଇ କଳାର କାରିଗର, ଜୀବନର, ଚଳନ୍ତିକାର । ଗୋଳାବାରୁଦର କୋଠରିରୁ ମୁକ୍ତ ଗୃହେଁ କଳା, କଳାକାର ବି । ସବୁ ବିଡ଼ମ୍ବନା ସତ୍ତ୍ୱେ ବି କଳାକାହ୍ନୁ ବଂଶୀ ଫୁଙ୍କେ । ଏ ଫୁଙ୍କ୍ ତାର ରକ୍ତଗତ ।' ଏଠାରେ କବି ବେଶ୍ ଚମତ୍କାର ଓ ନାଟକୀୟ ଭାବେ ଜଣେ କବିଙ୍କୁ କଳାକାହ୍ନୁ ରୂପରେ ଅବତରଣ କରାଇଛନ୍ତି । କାଳାକାହ୍ନୁ କବିତାରେ ତେଣୁ—

'ରେ ମନୁଆ ! ମନମତାଣିଆ, ଟାଆଁସା ଚୂଳଆ, ଖିଆଲି, କାଚୁଆ'— ପରି ଥିବା କେତୋଟି ଧାଡ଼ିରେ କବି ଶ୍ରୀ ଲେଙ୍କାଙ୍କ ଜୀବନାଦର୍ଶ ବେଶ୍ ପରିଚ୍ଛନ୍ନ ଭାବେ ଇଙ୍ଗିତ ହଏ ।

ଆଲୋଚ୍ୟ ସଂକଳନରେ ବହୁ ଶବ୍ଦକଳ୍ପ ପ୍ରୟୋଗରେ କବି ଶ୍ରୀଯୁକ୍ତ ଲେଙ୍କା ଜଣେ ସଫଳ ସ୍ରଷ୍ଟା । ଶବ୍ଦ ପ୍ରୟୋଗ ସମୟରେ ଆଧୁନିକ କବିତା କ୍ଷେତ୍ରରେ ନିରର୍ଥକ

ମତ ଅଭିମତ ଭିନ୍ନମତ ।।

ତଥା ଇଙ୍ଗ୍ଲକୃତ ଦୁର୍ବୋଧ ଶବ୍ଦ ପ୍ରୟୋଗ ଯେପରି ଏକ ତ୍ରୁଟି ଭାବେ ପରିଦୃଷ୍ଟ ହୋଇଥାଏ ତହିଁରୁ 'ସ୍ରୋତର ନାମ ରକ୍ତ' ସଂପୂର୍ଣ୍ଣ ଭାବେ ମୁକ୍ତ । ବରଂ ଶବ୍ଦ କୁହୁକର ଜଣେ ସଫଳ ଯାଦୁକର ଭାବେ କବି କମଳାକାନ୍ତ ଦେଖା ଦେଇଛନ୍ତି 'ମରଣ ଜାତକ' କବିତାରେ ।

ଦସ୍ତୁମାସ୍ତ ଜୀବନ ଗଳାରେ
ବନ୍ଧିବାର ବ୍ଲେଡ ଦାଢ଼ ଆଜି ପରଖିବା,
ବନ୍ଧିବାର ଫଳକରେ ଆମେ ସବୁ
ଯିବା ଆସ/ଜିଅନ୍ତା ଶବର ଲୁହେ
ସରମର କବିତା ଲେଖିବା ଏବଂ କାନ୍ଥ
ପ୍ରତିଶ୍ରୁତି ପ୍ରତିଦାନ ତାଗିଦା ଆଣିବା,
ଅନ୍ଧାରର କଲ ଦେହ୍ରୁ ସଂସ୍କୃତିର
ଲୁଗା ପ ଲଟିବା— ଆମେ ସବୁ
କେମିତି ବଂଚିବା ? (ମରଣ ଜାତକ)

ଏହାଛଡ଼ା ଶୈଳୀ ଦୃଷ୍ଟିରୁ 'ସ୍ରୋତର ନାମ ରକ୍ତ ମଧ୍ୟ ବୈଚିତ୍ର୍ୟ । ଏଥିରେ କବିଙ୍କ ମିଥ୍ ପ୍ରୟୋଗର କାର୍ପଣ୍ୟତା ପରିଲକ୍ଷିତ । 'କଳାହାଣ୍ଡି' କବିତାରେ ଯଦିଓ କବି ସଫଳତା ହାସଲ କରିଛନ୍ତି— ତଥାପି, 'କ୍ରମଶଃ ବର୍ଷା ଓ ବାଙ୍କୁଲ ମନ ଓ ଈଶ୍ୱର' କବିତାରେ ସେ ବିବାଦୀ ହୋଇ ପଡ଼ିଛନ୍ତି । ଯାହା ଦ୍ୱାରା ତାଙ୍କ ମିଥ୍ ପ୍ରୟୋଗ ଠିକ ଭାବେ ଧରି ହୋଇପାରିନାହିଁ ।

ଶୂନ୍ୟତାର ଅପସୃୟମାନ କାବ୍ୟ ନାୟକ ଅନ୍ୟନ୍ତ ପାରଂପାରିକ ଅଦୃଷ୍ଟକୁ ସ୍ୱୀକାର କରିପାରିନାହିଁ । ସେଥିପାଇଁ କବି ଆଲୋଚ୍ୟ ସଂକଳନଟିରେ ବହୁ କ୍ଷେତ୍ରରେ ବ୍ୟକ୍ତ ସର୍ବସ୍ୱ ହୋଇପଡ଼ିଛନ୍ତି ବା ଆତ୍ମନିଷ୍ଠାର ମୋହରେ ଆସକ୍ତ ହୋଇପଡ଼ିଛନ୍ତି । ଏଥିରେ ସଂକଳିତ ବହୁ ଦୀର୍ଘ କବିତା ଗୀତିଧର୍ମୀ ତଥା ଆବୃତ୍ତି ଉପଯୋଗୀ ଓ ଶ୍ରୁତି-ମଧୁର ହୋଇପାରିଛି । ସଂକଳନସ୍ଥ ଶେଷୋକ୍ତ ତିନୋଟି କବିତାରେ କବିଙ୍କୁ ଜଣେ ଗୀତିକବି ଭାବେ ଦେଖିବାକୁ ମିଳେ ।

ଦୁର୍ବୋଧତା କବିଙ୍କୁ ଯାହା ଏହା ପୂର୍ବରୁ ଆଚ୍ଛନ୍ନ କରି ରଖିଥିଲା ସେହି ଆଚ୍ଛନ୍ନତାରୁ ଏହି ସଂକଳନ ତଥା ଏଥର କବି କମଳାକାନ୍ତ ସଂପୂର୍ଣ୍ଣ ଭାବେ ମୁକ୍ତ

।। କବି କମଳାକାନ୍ତ

ହୋଇ ପାରିବନ୍ତି । ମୁଖ୍ୟତଃ ଦେଖିବାକୁ ଗଲେ ଏ ସଂକଳନରେ ସଂକଳିତ ପ୍ରତ୍ୟେକ କବିତା ସାଂପ୍ରତିକ ମାନବର ଦୋଷଦୁଷ୍ଟ ଜୀବନର ଏକ ଲିଖିତ ଭାଏରି ।

ନୃସିଂହ ଷଡଙ୍ଗୀ

# ନିତ୍ୟ ନିୟମିତ

ସାଂପ୍ରତିକ ମଣିଷର ଦୈନନ୍ଦିନ ନୀତି ନିୟମଶ୍ରିତ ଜୀବନ ଯାତ୍ରା ତା' ଜୀବନକୁ ମୋହଗ୍ରସ୍ତ, ନିଃସ୍ୱ, ବିକଳାଙ୍ଗ କରି ପକାଉଛି । ଏ ପ୍ରକାର ଗୋଟିଏ ଘୃଣ୍ୟ ଜୀବନ ବାସ୍ତବରେ ସାମାଜିକ ସୁସ୍ଥତା ବା ସୁସ୍ଥିତା ପାଇଁ ଆଦୌ ଗ୍ରହଣୀୟ ବା ଷ୍ପୃହଣୀୟ ନୁହେଁ । ତେଣୁ ଜୀବନବୋଧର ନିର୍ମମ ସତ୍ୟ ନିତ୍ୟରେ ଓ ନିୟମିତ ଭାବେ ପ୍ରକାଶ ପାଇବା ଉଚିତ । କବି କମଳାକାନ୍ତଙ୍କର ଏଇ ଅବବୋଧ ତାଙ୍କର ନବମ କବିତାଗ୍ରନ୍ଥ 'ନିତ୍ୟନିୟମିତ'ରେ ରୂପ ପାଇଛି ।

ସାଂପ୍ରତିକ କବି ଓ କବିତା ପ୍ରତି ଦୃଷ୍ଟିପାତ କଲେ 'ନିତ୍ୟନିୟମିତ' କବିତା ସଂକଳନ ଓ ଏହାର କବି କମଳାକାନ୍ତ ଏକ ଭିନ୍ନ ଦୃଷ୍ଟିକୋଣ ନେଇ ପାଠକ ତଥା ଆଲୋଚକଙ୍କ ସାମ୍ନାରେ ଦଣ୍ଡାୟମାନ ହେବା ପରି ମନେ ହୁଅନ୍ତି । ଓଡ଼ିଆ କବିତା କ୍ଷେତ୍ରରେ ଏ ସଂକଳନ ଯେ ଏକ ବିଶେଷ ବ୍ୟତିକ୍ରମ ତା' ନୁହେଁ, କିନ୍ତୁ ଏଥିରେ ସଂଶ୍ଳିଷ୍ଟ କବିତା ଗୁଡ଼ିକର ବୌଦ୍ଧିକ ଚେତନା–ସଂପନ୍ନତା ଓ ଗୁରୁଗମ୍ଭୀର ଭାବର ନିର୍ଯ୍ୟାସ ହେତୁ ଏହା ପାଠକ ତଥା ସମାଲୋଚକର ଏକ ବିଶେଷ ଦୃଷ୍ଟି ଆକର୍ଷଣ କରେ । ଏଇ ହେତୁ 'ନିତ୍ୟ ନିୟମିତ' ଆମର ଆଲୋଚ୍ୟ ।

'ନିତ୍ୟ ନିୟମିତ' ରେ ଥିବା ଶହେ ଦୁଇଟି କବିତା ନିଶ୍ଚିତ ଭାବେ ସାଂପ୍ରତିକ ଅନ୍ୟାନ୍ୟ ଆଧୁନିକ କବିତା ଠାରୁ କଳେବରରେ ଖୁବ୍ ସଂକ୍ଷିପ୍ତ । ଏପରିକି ବାର ଧାଡ଼ିରୁ ବି ଅଧିକ ନୁହେଁ । କବିତା ସଂଖ୍ୟାରେ ଚିହ୍ନିତ, କୌଣସି ଶୀର୍ଷାଧିକାରୀ ନୁହଁନ୍ତି । ଏ କବିତାର ଶୈଳୀ ଯେ କବି ଶ୍ରୀଯୁକ୍ତ ଲେଙ୍କାଙ୍କର ଏକାନ୍ତ ଭାବେ ନିଜସ୍ୱ ଏହା ସ୍ୱୀକାର କରିବାରେ କୁଣ୍ଠା ନାହିଁ ।

ମତ ଭିନ୍ନମତ ଅଭିମତ ।।

ଆଲୋଚ୍ୟ କବିତା ସଂକଳନଟିର ପ୍ରାୟ ପ୍ରତ୍ୟେକ କବିତାରେ କବି ଜୀବନର ନାଚିକ ଅନୁଭୂତି, ପ୍ରତାରଣା, ପ୍ରେମ ଓ ଜୀବନର କେତେକ ନିତାନ୍ତ ଗୂଢ଼ ରହସ୍ୟକୁ ପ୍ରତିଫଳିତ କରାଇଛନ୍ତି । ଅଣନାଃଶ୍ୱାସୀ ମଣିଷ ସାଂପ୍ରତିକ ଜୀବନବୋଧରେ ଜଳି ଯାଉଥିବା ବେଳେ କବିଟି ବର୍ଣ୍ଣିବା ତାକୁ ଚେତେଇ ଦିଏ—

‘ମଦ ଖାଅ ଯେ / ମଦୁଆ ହୁଅନା ।
ରସ ପିଅ ଯେ / ରସିକ ହୁଅନା ।
ପ୍ରେମ କର ଯେ / ପ୍ରତାରଣାକୁ ଧିକ୍‌କାର ନା ।’

ସେବେଳେ ସାମାଜିକ ଉଶୃଙ୍ଖଳାତାରେବଂଧୀ ସାମାଜିକ ପ୍ରାଣୀ ମଣିଷ ଏ ପ୍ରକାର ତାଗିଦରେ ଯେପରି ଜରଡ଼୍‌ଗବ ପାଲଟି ଯାଉଛି ।

‘ପରଂପରାର ଉଜାଳି ପୃଚ୍ଛ ଦର୍ଶନ ବୋଲି
ଦର୍ଶନ୍ତନ ମୁର୍ଦ୍ଧାରମନ୍ଦଙ୍କ ପିତୃ ପୁରୁଷ
ଯାହାଙ୍କ ପ୍ରତିଷ୍ଠିତ ଆନୁଗତ୍ୟର
ବଟବୃକ୍ଷର ଗ୍ରଛମାନଂକୁ ହକାର କହେ—
ଆମେ ଶତାବ୍ଦୀର ରାଜକୁମାର,
ମାଲ ମାଲ ସ୍ୱର୍ଣ୍ଣ ଆତଯାତ ମଥଙ୍କେ,
କପାଳରେ ।”

ଏହିପରି ଗୋଟିଏ ଗୋଟିଏ କବିତାରେ, ଗୋଟିଏ ଗୋଟିଏ ବାକ୍ୟରେ କବି ଖୋଜିଛନ୍ତି ଖୋଜାଇଛନ୍ତି ଏ ଶତାବ୍ଦୀର ମଣିଷ ପଣିଆ ହରାଇ ସଂକୀର୍ଣ୍ଣତାରେ ହଜି ଯାଇଥିବା ମାନବିକତାଟିକୁ । ଜୀବନର ବହୁ ନିଗୂଢ଼ ସତ୍ୟରେ ତଥା ବହୁ ବଣ୍ଣ୍ଣ ରୂପରେ କବି କମଳାକାନ୍ତ ‘ନିତ୍ୟ ନିସୃମିତ’ର ଅନେକ କବିତାରେ ଏକାନ୍ତ ଭାବେ ହଜି ଯାଇଥିବା ପଣ ଓ ମଜ୍ଜି ଯାଇଥିବା ପଣ ବୋଧ ହୁଅନ୍ତି । କବିର ଧର୍ମ ହିଁ ଯେ ଏଥିରେ ପାଳନ କରିଛନ୍ତି ତା’ ନୁହେଁ ବରଂ ଆମ ପାଠକ ପଣିଆ ଓ କବି ପଣିଆକୁ ନେଇ ଉଖୁରାଇ ନରେଖି ଦେଖିଛନ୍ତି—

॥ କବି କମଳାକାନ୍ତ

'ମେଣ୍ଢାମୁଣ୍ଡିଆ ଜଙ୍ଗଲର ଜ୍ଞ ଜ୍ଞାଦ୍ '
ମେଣ୍ଢା ତ ମେଣ୍ଢା / ପଠାଣ ଛାତ୍ରୁଙ୍କି ବି
ବାଟ ଛାଡ଼ି ଦିଅ ସେ ଜ୍ଞାଦ୍‌କୁ ।'

ସମସ୍ତଙ୍କ ଉଦ୍ଧରଣରେ ଆମେ ମଣିଷମାନେ ଆମ ମଣିଷ ପଣିଆକୁ ଯେଉଁ ବାଟରେ ନେଉଁ ଓ ତାର ଯେଉଁ ପ୍ରକୃତିକୁ ଧରି ଆମେ ଯେଉଁ ସଂଗୀତ ଗାଉଁ ତାହା ଯେପରି ଆମ ଦ୍ୱାରା ନୁହେଁ, ଆମର ବହୁ ପୂର୍ବରୁ, ଆମ ଆଦି ପୁରୁଷ ଠାରୁ ଗଡ଼ିଆସି ଥିବାର କବି ଅନୁମାନ କରିଛନ୍ତି । ତାଙ୍କର ଏ ଅନୁମାନ ଆମ ନିତ୍ୟ ନିସ୍ପନ୍ଦିତ ଜୀବନର ସନ୍ଦେହ, ସଂକଟ, ଆଶା ଓ ଅଭୀପ୍ସାର ଅନୁମାନ । 'ନିତ୍ୟ ନିସ୍ପନ୍ଦିତ'ରେ ସନ୍ଦେହ ଏକ ନିର୍ଦ୍ଦିଷ୍ଟ କାବ୍ୟ ନାୟକ ଯାହାର ଅସ୍ତିତ୍ୱ ଆନୁମାନିକ ଭାବେ କୁହାଯାଇ ନପାରେ । ତା' ଜୀବନ କାଳର ପରିସରରୁ ଯେଉଁ ଜୀବନ ଚେତିକା କବି ଅବସ୍ଥାର କରିଛନ୍ତି ତାହା 'ନିତ୍ୟ ନିସ୍ପନ୍ଦିତ' କବିତା ସଂକଳନଟିର କାବ୍ୟ ରୂପ । ଆଲୋଚ୍ୟ ସଂକଳନରେ କବି ଏକାନ୍ତ ଭାବେ ଜୀବନ ପ୍ରତି ବୀତଶ୍ରଦ୍ଧ ନୁହଁନ୍ତି କି ଜୀବନବାଦୀ ମଧ୍ୟ ହୋଇପାରି ନାହାନ୍ତି । କିନ୍ତୁ ଏହି ଦୁଇସ୍ଥିତିରେ ମଝି ଫାଙ୍କ ଦେଇ କିଛି ପାଇବା, କିଛି ନପାଇବାର ଦୋହୁଲ୍ୟମାନ ପରିସରରେ ବିଚରି କରି ଗୁଡ଼ାଏ ନିରାଟ ସତ୍ୟକୁ କାବ୍ୟିକ ରୂପ ପ୍ରଦାନ କରିଛନ୍ତି । ଶୁଦ୍ଧତା, ପବିତ୍ରତା, ଆକର୍ଷଣ ବା ମୋହରେ ମଣିଷର ସଂପର୍କ ବାନ୍ଧି ହୋଇପାରେନା, ବରଂ ଏହା ଅତି ଘନିଷ୍ଠ ହୋଇପଡ଼େ ପାରସ୍ପରିକ ବୁଝାମଣାରେ, ବିଶ୍ୱାସବୋଧରେ । କବିଙ୍କ ମତରେ—

'ତାକୁ କହିଦେ ରେ ପହରିବାଲା
ଆଲୁଅର ଗୁଙ୍ଗୁଡ଼ା ଧରି
ସୂର୍ଯ୍ୟ ଆସିବନି ମର୍ତ୍ତ୍ୟକୁ ।'

ଆଜି ଯେଉଁମାନେ ସତ୍ୟ, ଧର୍ମ ନାମରେ ଅଗ୍ରଣୀ ଧ୍ୱଜାଧାରୀ କବିଙ୍କ ମତରେ ସେମାନେ ହିପୋକ୍ରାଟ୍ । ତାଙ୍କର ଧବଳ ସଂଜ୍ଞାତଳେ ଗୋଟେ ଲମ୍ପଟ ରୂପ ବିକଳାଙ୍ଗ ଭାବ ଲୁଚି ରହିଛି । ତଥାପି ତାଙ୍କର ବହୁ କବିତାରେ ସେ ସବୁବେଳେ ମୃତ୍ୟୁ ନିୟମର ବନ୍ଧନରେ ଯାବୋଡ଼ି ଧରିବାକୁ ଚାହିଁ ନାହାନ୍ତି । କିନ୍ତୁ ମଣିଷର ସ୍ୱାଭାବିକ ବିବେକ ବୋଧଟିକୁ ଧୂଳିସାତ୍ କରିଦେଇ ଏକ ଖଣ୍ଡିତ ରୂପରେ ମଣିଷକୁ ଚିହ୍ନିବାକୁ ସେ କୁଣ୍ଠିତ । ତାଙ୍କ ଇଚ୍ଛା—

ମତ ଅଭିମତ ଭିନ୍ନମତ ॥

'କପଟ କରିବା ଯାଏଁ
ଆଖି ମିଟିକାରେ ତୁଣ୍ଡ ବନ୍ଦ କରିବା ସେଇଆ
ତେଣୁ ଓଠ ଖୋଲ/ତମ ଭାଷ୍ୟକମାନଙ୍କୁ କୁହ ଯେ
ସେମାନଙ୍କ ଗୁପ୍ତାଙ୍ଗରୁ ପୋଛୁ ଦିଅନ୍ତୁ
ଚୂଲାଭିଣା ଶବ୍ଦର ଶାଣ୍ଢବାର ।'

ସାଂପ୍ରତିକ ଜୀବନବୋଧର ତଳେ ହାହୁତାଶର ଗୋଟିଏ ନିର୍ମମ ରୂପକୁ ନେଇ ମଣିଷ କଥାଟି ସାମ୍ନାକୁ ଆଣିବା ସ୍ୱାଭାବିକ । ତା'ର କିଛି ହେଉନା ବା ହେବାର ଆଶଙ୍କା ନାହିଁ । ନିତ୍ୟ ନୈମିତ୍ତିକ ଜୀବନରେ ଏ ପ୍ରକାର ଆବରଣ ଆମ ସମସ୍ତଙ୍କର ଏପରିକି କବିଟିଏର ବି ବାଦ୍ ଯାଏନା । ଯେଉଁ କବି ଶବ୍ଦର ଜାଲରେ ଛନ୍ଦିପଡ଼େ ତା' ମାନସିକ ସଂକଟ କ'ଣ କବି କମଳାକାନ୍ତଙ୍କର କେବେ ଘଟିଛି ? ନଚେତ୍ ଅନୁଭବୀର ହୃଦୟକୁ ନନେଇ ସେ କ'ଣ କେବେ ଲେଖିଥାନ୍ତେ—

'ଆଉ ପଦୁଟେ ଲେଖିବା ଲାଗି ଭାଷା ପାଉନି,
ଶବ୍ଦ ଛନ୍ଦ ହୋଇଯାଉଛି ଶିଉଳି ଲଟାରେ,
ଧୁଳିଯାଉଛି ଜୁଆରିଆ ସମୁଦ୍ରର ଅଳଣା ବଢ଼ିମାନରେ

ଅଧ୍ୟାପିକା ରେଖା ମହାନ୍ତିଙ୍କ ଭାଷାରେ—

'ନିତ୍ୟ ନୈମିତ୍ତିକ' ଜୀବନର ଅଶେଷ ରୂପ ଗୁଡ଼ିକୁ ଠିକ୍ ନିଖି କରି ବାସ୍ତବ କରି କବି ଯେଉଁ ଜୀବନବୋଧର ପରିଚୟ ଦେଇଛନ୍ତି ତାହାର ଶ୍ରେଷ୍ଠ ଶ୍ରେଷ୍ଠ ସଂଳାପରେ ପରଶି ଦେଇଛନ୍ତି । ଅଡ଼ୁଆ ଜଡ଼ୁଆ ବୌଦ୍ଧିକ କଥା ନୁହେଁ, ଜୀବନର କଥା, ନିତି ଦେଖୁଥିବା, ଅଙ୍ଗେ ନିଭାଉଥିବା ଅଥଚ ଚିହ୍ନି ବି ନଚିହ୍ନି ପାରୁଥିବା ଜୀବନ ସହିତ ସେ ପରିଚୟ କରାଇ ଦେଇଛନ୍ତି ସମଗ୍ର ମଣିଷ ସମାଜକୁ ।' (ଝଙ୍କାର-୨୯ଶ ବର୍ଷ, ୫ମ ସଂଖ୍ୟା)

ମୋଟାମୋଟି ଭାବେ କହିଲେ 'ନିତ୍ୟ ନୈମିତ୍ତିକ' ଏକ ଜୀବନ ପେଟିକା । କବି ସେଇଟିକୁ ବିଶ୍ଳେଷଣ କରିଛନ୍ତି ମାତ୍ର । ଗୋଟିଏ ମଣିଷକୁ ପୋଷ୍ଟମର୍ଟମ କଲାପରି କବି ମଣିଷପଣିଆଟିକୁ ତା' ନିଛାଟିଆ ବାଟରୁ ଧରିଆଣି ତାଙ୍କ କାବ୍ୟମାନସରେ ପରୀକ୍ଷା-ନିରୀକ୍ଷା କରି ଯାହା ପାଇଛନ୍ତି, ତାର ସାରବସ୍ତୁ ଓ ଗବେଷଣାତ୍ମକ ମାନସିକ ରୁଚିକୁ 'ନିତ୍ୟ ନୈମିତ୍ତିକ'ରେ ସେ କାବ୍ୟିକ ରୂପ ପ୍ରଦାନ କରିଛନ୍ତି । ମଣିଷ, ଜୀବନ,

।। କବି କମଳାକାନ୍ତ

ଆତ୍ମା, ମୃତ୍ୟୁ, ପ୍ରେମ, ପ୍ରତାରଣା ଇତ୍ୟାଦି ଆମ ସ୍ଥୂଳ ଆୟୁଷ ସହ ନିବିଡ଼ ସମ୍ପର୍କ ସ୍ଥାପନ କରିଥିବା ଏହି ଶବ୍ଦମାନେ କବିଙ୍କ ମାନସପଟକୁ ଖୁବ୍ ସଂକ୍ରମିତ କରିଥିବା ପରି ମନେ ହୁଅନ୍ତି । କିନ୍ତୁ ଏ ଶବ୍ଦର ଚମତ୍କାର ସଂଯୋଜନା ଓ ଆକର୍ଷଣୀୟ କାବ୍ୟ ବିନ୍ୟାସରେ କବି ଶ୍ରୀଯୁକ୍ତ ଲେଙ୍କା ଏକ ଭିନ୍ନ ପ୍ରକାର କାବ୍ୟିକ ଶିଳ୍ପଶୈଳୀ ଯେ 'ନିତ୍ୟ ନିୟମିତ' କବିତା ସଂକଳନରେ ପ୍ରଣୟନ କରିଛନ୍ତି ତାହାକୁ ଅସ୍ୱୀକାର କରିବାର ଉପାୟ ନାହିଁ ।

ଏତ ଗଲା ସମଗ୍ର 'ନିତ୍ୟ ନିୟମିତ' କବିତା ସଂକଳନର ସ୍ୱରୂପ ଓ କବି କମଳାକାନ୍ତଙ୍କ ମାନସିକ ଉଦ୍‌ବେଳନ ଜନିତ ସତ୍ୟ ପ୍ରକାଶନର ଗମ୍ଭୀର ଅଭୀପ୍ସା । କିନ୍ତୁ ସମଗ୍ର କାବ୍ୟ ଗ୍ରନ୍ଥର ବିଭିନ୍ନତା ସଂପର୍କରେ ଆଲୋଚନା ପ୍ରସଙ୍ଗରେ ଏତିକି କୁହାଯାଇପାରେ ଯେ ଏଥିରେ କବି ଅତି ସଂକ୍ଷିପ୍ତ ଶବ୍ଦରେ ଦୁଇଟି କବିତା ମଧ୍ୟରେ ବହୁ ଦୀର୍ଘ ବକ୍ତବ୍ୟକୁ ପ୍ରକାଶ କରିଛନ୍ତି, ଯାହାକୁ ବୁଝିବାରେ ପାଠକକୁ ସେତେ କଷ୍ଟ ହୁଏନା । କିନ୍ତୁ ଏଥିରେ ଥିବା କେତେକ ରୂପକଳ୍ପ ଓ ଚିତ୍ରକଳ୍ପରେ ପାଠକ ବେଳେବେଳେ ଯେ ଅବୁଝା ରହିଯିବେ ସେଥିରେ ଏ ଆଲୋଚକକର କିଛିଟା ସନ୍ଦେହ ହୁଏ । ଆଲୋଚ୍ୟ ପ୍ରସଙ୍ଗରେ ଏଇଠି ମୁଁ ରେଖା ମହାନ୍ତିଙ୍କ ସହ ଏକମତ ଯେ— 'କେତେକ କବିତାର ଭାବ ସ୍ୱଚ୍ଛନ୍ଦ ନୁହେଁ । କବିତାର ନିଟୋଳ ସତ୍ୟ ରୂପଟିକୁ ବୁଝିବାକୁ ହେଲେ କବିଙ୍କର ଅନ୍ତର ସହିତ ଅନ୍ତରଙ୍ଗ ହେବାକୁ ପଡ଼ିବ ।'

**ନୃସିଂହ ଷଡ଼ଙ୍ଗୀ**

## ଅନୁଭୂତିର କବିତା

(ବାଲେଶ୍ୱରର ଇତିବୃତ୍ତ— ୧ମ ଖଣ୍ଡ-୧୯୮୭)

ସାଂପ୍ରତିକ କାଳର ଅନ୍ୟ ଜଣେ ଚେତନାଶୀଳ କବି କମଳାକାନ୍ତ (୧୯୩୫) ଓଡ଼ିଆ ସାହିତ୍ୟରେ ବିଶିଷ୍ଟତାର ଦାବୀ କରନ୍ତି । ଜଣେ ନିରବଚ୍ଛିନ୍ନ ନିଷ୍ଠାପର ସାଧକ ଭାବରେ କବିତା କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠା । ନିରନ୍ତର ଉତ୍ତରଣ ପ୍ରୟାସୀ ଏଇ କବିସତ୍ତା

ଏକ ପରିପକ୍ୱ କାବ୍ୟ ସରଣୀର ଅକୁଣ୍ଠିତ ଯାତ୍ରୀ । ଆତ୍ମ କୈନ୍ଦ୍ରିକ ରୂପ ଚେତନାର କବି ଭାବରେ ସେ ସଂଭ୍ରମତାର କ୍ଷେପାତ୍ତ ନୁହନ୍ତି । ସ୍ୱପ୍ନ ଓ ସଂଭାବନାର ଚିତ୍ର ଅଙ୍କି-ବାରେ ସେ ଜଣେ ବିଶ୍ୱସ୍ତ କଳାକାର । ସମସାମୟିକ କବିମାନଙ୍କ ତୁଳନାରେ ସେ ଏକ ବହୁ ପ୍ରସବା କବି ବ୍ୟକ୍ତିତ୍ୱ । ଏପର୍ଯ୍ୟନ୍ତ ପ୍ରାୟ ବାର ଖଣ୍ଡ କବିତା ସଂକଳନର ସେ ସ୍ରଷ୍ଟା । ସୃଷ୍ଟି ପ୍ରଚୁର ହେଲେ ବି ଗୁଣାତ୍ମକ । କବିତା ତାଙ୍କର ବିଚାର । ବର୍ତ୍ତି ନିଃସଙ୍ଗ ନକ୍ଷତ୍ର ପରି ନିଜସ୍ୱ ପୃଥିବୀରେ ଘୂରି ବୁଲୁଥିବା ଏଇ ବୈଚିତ୍ର୍ୟମୟ କାବ୍ୟ ପୁରୁଷଟିକୁ ଅନେକ ହୁଏତ ଏବେ ସୃଷ୍ଟି ଛଡ଼ା ଜୀବ ବୋଲି ମନେ କରନ୍ତି । କିନ୍ତୁ ଯେଉଁମାନେ ତାଙ୍କ ପୌରୁଷର ପ୍ରଖର ଦୀପ୍ତି ଦେଖିଛନ୍ତି, ତେଜସ୍ୱୀନ ବକ୍ତବ୍ୟ ଶୁଣିଛନ୍ତି, କବିତାରେ ମାଟିର ଗନ୍ଧ ଶୁଂଘିଛନ୍ତି, ସେମାନେ କେବେ ଏଥିରେ ଏକମତ ହେବେନାହିଁ । କବିତା ତାଙ୍କ ପାଇଁ ଏକ ଖିଆଲ, ଏକ ମେଜାଜ୍ । ନିଜ ସଂପର୍କରେ କବିଙ୍କ ମନ୍ତବ୍ୟ ପରୀକ୍ଷା କରାଯାଇପାରେ— 'ପ୍ରାୟ ମୋର ସବୁ ଗ୍ରନ୍ଥରେ ଗୁନ୍ଥିଛି, ଗୁନ୍ଥିବାର ଚେଷ୍ଟା କରିଛି ନିଜକଥା ଆପଣା ଚିହ୍ନାମାଟି, ପାଣି ପବନ ନିଃଶ୍ୱାସ ପ୍ରଶ୍ୱାସ ଓ ଆଘ୍ରାଣମାନଙ୍କ ଅଙ୍ଗରେ,ଆତ୍ମାରେ ଚିରି ଆତ୍ମସ୍ଥ ହୋଇଥିବା କଥା । ପ୍ରତିଟି ମଣିଷ ପ୍ରାଣର ଥରଥର, କଂପିତ ଦୁଃଖ ସୁଖର କାଳି ଜହ୍ନର କଥା । ଯାହା ସଭିଏଁ ଅନୁଭବ କରନ୍ତି,ରକ୍ତରେ ଆଣ୍ଟନ୍ତି,ଅଥଚ କହିବାକୁ ପ୍ରକାଶ କରିବାକୁ ଇଚ୍ଛା ଥିଲେ ବି କହିପାରନ୍ତି ନ ବା କହିବା ପାଇଁ ଭାଷାର ଭଣ୍ଡାର ଘରର ଜମାଟ ଅଂଧାରକୁ ମନ୍ଥିଲ ବେଳେ କ୍ଲିଷ୍ଟତାର ଝାଳରେ ବୁଡ଼ିଯାଆନ୍ତି ।' (ଯଦି କିଛି କହିବାର ଥାଏ- ସ୍ରୋତର ନାମ ଋତ- ପୃ ଖ) ।

ଶ୍ରୀ ଲେଙ୍କା କିନ୍ତୁ 'ସୁନା ଫସଲ' (୧୯୫୮)ରେ ଏକ ନିର୍ଦ୍ଦିଷ୍ଟ ଆବେଦନର ସ୍ୱାକ୍ଷର ରଖିପାରିନାହାନ୍ତି । ଯୌବନ ସୁଲଭ ଉଚ୍ଛଳତା ଓ ଉଚ୍ଛ୍ୱାସରେ ଏହା ଭରପୂର; ତେଣୁ ଦୀର୍ଘକାଳ ସ୍ଥାୟୀ ନୁହେଁ । ବରଂ ସେ ସମୟର କାବ୍ୟ ସମ୍ରାଟ ମାନସିଂହଙ୍କ ଅତି ନିକଟବର୍ତ୍ତୀ । 'ପ୍ରୀତି ଓ ପ୍ରତୀତି' (୧୯୬୩) ବେଳକୁ ତାଙ୍କର ଏଇ ମାନସିଂହୀୟ ରୋମାଣ୍ଟିକ ମୋହ କଟିଯାଇଛି । ମାତ୍ର ସେ ଯେଉଁ ରୋମାଣ୍ଟିକ୍ ଚେତନାର କଥା କହିବାକୁ ଆରମ୍ଭ କରିଛନ୍ତି, ତାହା ବାସ୍ତବତାର ଖୁବ୍ ପାଖାପାଖି । ଆମ ସାହିତ୍ୟରେ ହୁଏତ ଏପରି କବି ଅଛନ୍ତି, ଯେଉଁମାନେ ବହିଃ ବାସ୍ତବତାର ଚିତ୍ର ଦେବାକୁ ଯାଇ ନିଜ ମନ ଭିତରେ ଥିବା ବାସ୍ତବତାର ଦ୍ୱାରକୁ ରୁଦ୍ଧ କରିଦେଇଛନ୍ତି । କିନ୍ତୁ କମଳାକାନ୍ତଙ୍କ ଦୃଷ୍ଟିରେ ଅନ୍ତର ବାସ୍ତବତାର ମୂଲ୍ୟ ଅପରିସୀମ । ନିଜସ୍ୱ ଯନ୍ତ୍ରଣାରେ ଆକ୍ରାମାକ୍ରା ହେଉଥିବା କମଳାକାନ୍ତଙ୍କ ପାଇଁ ଜଗତରେ କେହିନାହିଁ । ସେ ଏକା ଏକା ସନ୍ୟାସୀ । କିନ୍ତୁ 'ମୁଁ ସନ୍ଥ କବି ନୁହେଁ' (ସ୍ରୋତର ନାମ ଋତ) କରିବା ଦ୍ୱାରା ଶ୍ରୀ ଲେଙ୍କା

ଅସତ୍ୟର ଜୟଗାନ କରୁନାହାନ୍ତି କି ? ନା, ସେ ସତ୍ର ନୁହନ୍ତି, ଅସତ୍ର ବି ନୁହନ୍ତି— ସତ୍ୟାସତ୍ୟର ଉର୍ଦ୍ଧ୍ୱରେ । ଯେଥିପାଇଁ ତାଙ୍କର ସତୀର୍ଥ କବି ରାଜେନ୍ଦ୍ର ପଣ୍ଡା କହନ୍ତି— 'କ୍ଷୟକ୍ଷତର ସଂସାରରେ କେବେ ଯୋଗୀ, କେବେ ଭୋଗୀ ରୂପରେ ଉଭା ହୁଅନ୍ତି କମଳାକାନ୍ତ ।' (ଆମ ସମୟର କବିତା— ଚୌକାଠରେ ଶରତକାଳ ପୃ· ୧୬୬)

ବୃହତ୍ତର ମାନସ ଭୂମିର ସାମଗ୍ରିକ ପରିଚୟ ଉଦ୍‌ଘାଟନରେ ଶ୍ରୀ ଲେଙ୍କା ବିଶ୍ୱାସୀ । 'ଉତ୍ତରଣ' (୧୯୬୬) ଠାରୁ ଏହି ପ୍ରକ୍ରିୟାର ଆରମ୍ଭ । ଏଥିରେ ଦୀର୍ଘ କବିତା ରଚନା ମାଧ୍ୟମରେ ପୂର୍ବଜ କବିମାନଙ୍କର ରଚନା ଭଙ୍ଗୀକୁ ଗ୍ରହଣ କରାଯାଇଥିବା ସତ୍ତ୍ୱେ ସେ ଉଲ୍ଲେଖ ଯୋଗ୍ୟ ସଫଳତା ହାସଲ କରିପାରିଛନ୍ତି । କିନ୍ତୁ 'ସ୍ମରଣ ବିସ୍ମରଣ' (୧୯୭୬)ର କବି କମଳାକାନ୍ତ ପୂର୍ବାପେକ୍ଷା ସ୍ପଷ୍ଟ, ଧୀରବାକ୍ । 'ସ୍ମରଣ ବିସ୍ମରଣ'ର ଗୀତଧର୍ମିତା 'କବିତାର ମୁହଁ' (୧୯୬୪) ଯାଏ ପ୍ରସାରିତ । ମାତ୍ର କବି ଏଇ ସାଂଗୀତିକ ମାଧୁର୍ଯ୍ୟ ପ୍ରତିଷ୍ଠା ପାଇଁ କବିତାର ମୂଳ ଲକ୍ଷ୍ୟରୁ ବେଳେବେଳେ ବିଚ୍ୟୁତ ହେବା ଲକ୍ଷ୍ୟ କରାଯାଏ । ପ୍ରେମ ଓ ଜୀବନର ସ୍ୱରୂପ ବର୍ଣ୍ଣନାରେ ମୁଖର ହୋଇଥିବା 'ସ୍ମରଣ ବିସ୍ମରଣ'ର କବି 'କବିତାର ମୁହଁ'ରେ ସ୍ଥିତଧୀ ଏବଂ ଗମ୍ଭୀର । ତେଣୁ ଏଠାରେ ତାଙ୍କ କବି ପ୍ରତିଭା କ୍ରମବର୍ଦ୍ଧିଷ୍ଣୁ ଅଗ୍ରଗତିର ସୂଚକ । 'ସନ୍ନ୍ୟାସ', 'ନିଜସ୍ୱ ପ୍ରାର୍ଥନା', 'ନିରୁଦ୍ଦିଷ୍ଟ ବ୍ୟକ୍ତି ସଂପର୍କରେ', 'ମୋ ମା' ପ୍ରତି' ଆଦି କବିତାଗୁଡ଼ିକ ଏ ଦୃଷ୍ଟିରୁ ଗୋଟିଏ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସୃଷ୍ଟି । ମାୟାମୟ ସଂସାରକୁ ଦେଖାଉଛି କରି କାବ୍ୟ ନାୟକ କହୁଛି— 'କି ଘର କି ଦ୍ୱାର, କି ପୁଅ ଝିଅର ସଂସାର : ନିଜ ପର ଛନ୍ଦପତ କିଏ ଅଛି ? ଦୁଃଖ ଏବଂ ସୁଖର ଉର୍ଦ୍ଧ୍ୱର ।' (ସନ୍ନ୍ୟାସ— କବିତାର ମୁହଁ) ।

କମଳାକାନ୍ତଙ୍କ କବିତା ଅନୁଭୂତିର କବିତା । ତେଣୁ ବେଳେବେଳେ ପ୍ରଜ୍ଞାର ସାହାଯ୍ୟ ନନେଇ ସେ ପାଟ୍ରିକ୍ ଏଣ୍ଡରସନ୍‌ଙ୍କ ( Patric Anderson ) ଭଳି କାନ୍ଦି କାନ୍ଦି ହୋଇ ଯାଇଛନ୍ତି । ଏଣ୍ଡରସନ କହିଛନ୍ତି— 'I shall want to cry with my own voice ।' କମଳାକାନ୍ତ ଏକାକୀ ନିଜକୁ ଭେଟିଲାବେଳେ ହୃଦୟ ତାଙ୍କର ବେଦନାରେ ଜର୍ଜରିତ ହୋଇଯାଉଛି ; 'ଏଇକ୍ଷଣି ସଞ୍ଜବେଳେ କାନ୍ଦି କାନ୍ଦି ଲାଗେ, ଖାଲି ଇଚ୍ଛା ହୁଏ ତୋର ମାଟିର ଦେହକୁ ଘାଣ୍ଟି ଅଣ୍ଡାଳନ୍ତି ପିଲାଭଳି ତୋଅର ଶୁଖିଲା ଥନ ଏବଂ ତୋଅର ଆଖିରେ ଖୋଜି ଦେଖନ୍ତି ମୁଁ ମଲାଗଲା ଶ୍ରାବଣ ଓ କାଶତଣ୍ଡୀ ହସର ଲହର × × × ମାଆଲୋ ମୁଁ ଏଇନେ ଫେରୁଛି ପିଇ ସରାପ ଓ ସେଥିପାଇଁ ତୁ ବୋଧେ ନିଷ୍କରୁଣ ହେଲୁ ଏବଂ ପେଲି ଦେଲୁ ରକ୍ତର ସମୁଦ୍ରେ

ମାଆ ନଆଁର ହୃଦୟକୁ । (ମୋ ମା' ପ୍ରତି—କବିତାର ମୁହଁ) ନିଜସ୍ୱ ଭାବର ଏହା ଏକ ଅନ୍ତରଙ୍ଗ ପ୍ରକାଶ । ମଣିଷର ସ୍ଥିତି ଏଇଠି ବଡ଼ ଦୁର୍ବଳ । କିନ୍ତୁ ଏଇ କ୍ରନ୍ଦନଶୀଳ କାଳର ବ୍ୟାପ୍ତି ମୁହୂର୍ତ୍ତଟିଏ ମାତ୍ର । ପର ମୁହୂର୍ତ୍ତରେ ସେ ଏକ ଦୁଃସାହସିକ ଭୂମିକାରେ ଅଭିନୟ ଆରମ୍ଭ କରିଦିଅନ୍ତି । ଯଦିବା କୁଏତ ଏହାଙ୍କର ଅଗ୍ରଜ କବି ଯଚ୍ଚି ଗୃହିତବ୍ୟସ୍ତ କହୁଥିଲେ— ଯଦି ତାଙ୍କ କବିତା ପାଠକ କୁଳକୁ ରୁଚିକର ମନେ ନହୁଏ, ତେବେ ସେମାନେ ତାକୁ ଶ୍ମଶାନରେ ଜାଳିପୋଡ଼ି ଦିଅନ୍ତୁ । ତା'ଆର ଭିତରେ ଲୁଚିଯିବ ଏକ ବିକଳ କବିର କ୍ଷୁବ୍ଧ ଅନ୍ତର । (କବିତାର କବର-- ପାଣ୍ଡୁଲିପି) ଶ୍ରୀ ଲେଙ୍କା ସେହିପରି ଦୃପ୍ତ କଣ୍ଠରେ ଘୋଷଣା କରନ୍ତି—' 'ଜାଭ କାଟିଦିଅ, ଖଣ୍ଡିଆ କରିଦିଅ— ତା'ର କେଉଁ ହାଡ଼ ଅଛି ଯେ ଦାଂଅଡ଼ା ହୋଇଯିବ ବ୍ଲେଡ଼ର ଧାର, କୁହା ହୋଇଯିବ କୁଂଆଉଥିବା ବସ୍ତୁସ୍ଥ ସ୍ୱପ୍ନ । ଧାନ୍ତରେ ବିଦାରି ଦିଅ ତା' ନାଲଠା ସୁଆଦ ଚଖା ଦାନ୍ତ ପଟକୁ ·· ।'

କମଳାକାନ୍ତଙ୍କ କାବ୍ୟ ଚେତନାର ରହସ୍ୟ ତାଙ୍କର ଆତ୍ମ ପରିଚୟ ଓ ଆତ୍ମ ସ୍ୱୀକାରୋକ୍ତିରୁ ବୁଝିହୁଏ । ପ୍ରଥମ ପୁରୁଷରେ ସେ ନିଜର ବକ୍ତବ୍ୟ ପାଠକ ଆଗରେ ଉପସ୍ଥାପନ କରିବାକୁ ଭଲ ପାଆନ୍ତି । ଏହା ଦ୍ୱାରା ବୈୟକ୍ତିକତାରୁ ନୈର୍ବ୍ୟକ୍ତିକତା ଆଡ଼କୁ ମଞ୍ଚର ଯିବାକୁ ସେ ସୁଯୋଗ ପାଅନ୍ତି । ନିଃସଙ୍ଗତାର ଶୂନ୍ୟ ସିଡ଼ିରେ ଉଠିଥିବା ଏଇ ମଣିଷଟି ପ୍ରାର୍ଥନା କରେଛି – 'ମୋତେ ମୁକ୍ତ ଦିଅ ତୁଷାର ଅଂଧାରରୁ, ମୋତେ ଶାନ୍ତ ଦିଅ ନିଜସ୍ୱ ପ୍ରାର୍ଥନାରୁ ।' (ନିଜସ୍ୱ ପ୍ରାର୍ଥନା— କବିତାର ମୁହଁ) ଜୀବନର କାରୁଣ୍ୟ ଓ ଜୀବନ କବିଙ୍କୁ ସ୍ୱୀକାରୋକ୍ତି ଦେବାକୁ ବାଧ କରିଛି । ତାଙ୍କର ଆତ୍ମ ସ୍ୱରୂପ ଏଠାରେ ସ୍ପଷ୍ଟ ।

ଶ୍ରୀ ଲେଙ୍କାଙ୍କ କାବ୍ୟସ୍ୱର ବହୁ ସ୍ଥଳରେ ଆଧ୍ୟାତ୍ମିକ । ମାତ୍ର ଏ ଆଧ୍ୟାତ୍ମିକତା ଆଧୁନିକତାସିକ୍ତ । ଆମର ପରଂପରା ହିନ୍ଦୁତ୍ୱ ଏ କାବ୍ୟଧାରା କିଛିଟା ସଂପର୍କ ସ୍ଥାପନରେ ପ୍ରୟାସ କରିଛି । 'ଅଂତତଃ ନିଷ୍ଟୁପ'ର ଅଧିକାଂଶ କବିତା ଏହି ଶ୍ରେଣୀର । ଏ ଆଧ୍ୟାତ୍ମିକ ଚେତନା ନଶ୍ୱରତା ମଧ୍ୟରେ ଶାଶ୍ୱତର ପରିକଳ୍ପନା; ପାପ ଓ ପୁଣ୍ୟକୁ ସମାନ ସମ୍ମାନ ପ୍ରଦର୍ଶନ କରିଥାଏ । ଯେଉଁ ଆଧ୍ୟାତ୍ମିକତା ମଣିଷକୁ ସଙ୍ଗତହୀନ ଓ ବିଡମ୍ବିତ ଜଗତ ଭିତରେ ରଖିବାକୁ ଚାହେଁ, ସେ ଆଧ୍ୟାତ୍ମିକତା ତାଙ୍କର କାମ୍ୟ ନୁହେଁ । ଏ ବିଷୟ ବର୍ଣ୍ଣନାରେ ତାଙ୍କର ବାଚନଭଙ୍ଗୀ ଖୁବ୍ ଶ୍ଳେଷାତ୍ମକ ହୋଇ ପଡ଼ିଛି । 'ଖସିବାର ବେଳ' ପର୍ଯ୍ୟନ୍ତ ଏଇ ବିଷୟଟି ନାନା ପରୀକ୍ଷା ନିରୀକ୍ଷା ମଧ୍ୟ ଦେଇ ଗତି କରିଛି ।

॥ କବି କମଳାକାନ୍ତ

ଶ୍ରୀ ଲେଙ୍କା ଏବେ ମଧ୍ୟ ସକ୍ରିୟ । ସୌନ୍ଦର୍ଯ୍ୟ ଚେତନା, ସ୍ଥିତିବାଦୀ ଦୃଷ୍ଟିଭଙ୍ଗୀ ରୋମାଣ୍ଟିକ୍ ଆବେଗ ପ୍ରଭୃତିର ସେ ଜଣେ ସଫଳ ରୂପକାର । ତଥାପି ସ୍ଥଳ ବିଶେଷରେ ତାଙ୍କ ବକ୍ତବ୍ୟରେ ଅସ୍ପଷ୍ଟତା ଭାବ ସଂକ୍ରମଣର ବାଧକ ହୋଇ ଠିଆହୁଏ । ଅନୁପ୍ରାସ ରକ୍ଷା କରିବାକୁ ଯାଇ ସେ ଅନେକ ସମୟରେ ଅପ୍ରାସଙ୍ଗିକ ଓ ଅଦରକାରୀ ଶବ୍ଦ ବ୍ୟବହାର କରନ୍ତି, ଯାହା ଭିତରେ ତାଙ୍କର ବକ୍ତବ୍ୟ ଅତି ସନ୍ତର୍ପଣରେ ଲୁଚି ଯାଇଥାଏ । ଏ ସବୁ ସତ୍ତ୍ୱେ ତାଙ୍କର ନିରବଚ୍ଛିନ୍ନ ସାହିତ୍ୟ ସାଧନାର ମୂଲ୍ୟ ଅପରିସୀମ ।

**ଡକ୍ଟର ମଥୁରାନାଥ ହୋତା**
ଅଧ୍ୟାପକ, ଏସ୍. ସି. ଏସ୍. କଲେଜ ପୁରୀ

## 'ନିତ୍ୟନିୟମିତ' ଓ କବି କମଳାକାନ୍ତ

( ଇସ୍ତାହାର-୧୦, ଏପ୍ରିଲ-ମେ-ଜୁନ୍- ୧୯୮୦ )

ଯାହା ପ୍ରତି ନିତ୍ୟ ଦୁନିଆରେ ଅଙ୍କେ ନିଭେଇବା କଥା, ତହିଁରୁ ଆଉ କିଛି ନୂଆ ସ୍ୱପ୍ନ ଝରି ପାରେ, ନୂଆ ଫୁଲ ଫୁଟି ପାରେ ; 'ନିତ୍ୟ ନିୟମିତ'ରେ ଏହି ସତ୍ୟ ପ୍ରସରି ଯାଇ ତା'ର (ନିତ୍ୟନିୟମିତର) କାବ୍ୟମାନସକୁ ଉଲ୍ଲସିତ କରିଛି । କବିତା ଗୁଡ଼ିକର ଆଲୋଚନା କଲାବେଳେ 'ନିଟୁରି ଶବ୍ଦଟିଏ କିଛି କହେ ନାହିଁ'ର ଗୋଲକଧନ୍ଦାରେ ଆମେ ପଡ଼ିଯାଉଁ । ତଥାପି ସଂବେଗକୁ ପଛରେ ପକାଇ ଦେଇ ଆଲୋଚକ ଧାଇଁଯାଏ । 'ନିରୁପମାର ତାଗିଦ୍' ପାର୍ଶ୍ୱ ଦେଇ । ନିରୁପମା ( ନିତ୍ୟ-ନିୟମିତ)ର ଏକଲା କାବ୍ୟ ନାୟିକା ନୁହେଁ, ତା' ସହିତ ଅଛନ୍ତି ଆଉ ପ୍ରାୟ ୫।୬ ପାର୍ଶ୍ୱ ନାୟିକା—କଲ୍ୟାଣୀ, ମାଧବୀ ଓ ସାବିତ୍ରୀ ଆଦି ସହିତରେ କବି ନିରୁପମାକୁ ପ୍ରଥମେ ସମ୍ବୋଧନ କରିଥିଲେ ବି କଲ୍ୟାଣୀକୁ ପ୍ରାୟ ଆଠ ଥର ଉଚ୍ଚାରଣ କରିଛନ୍ତି । ସାବିତ୍ରୀ କେବଳ ଥରକ ପାଇଁ ସମ୍ବୋଧିତ ହୋଇଅଛି । ଯଦିଓ ସଭିଙ୍କ 'ଭଲପାଇବା ମାନେ ପ୍ରେମ କରିବା କବିତାକୁ' । କିନ୍ତୁ ସେ ଝିଅମାନେ କବିତା ଲେଖନ୍ତି ନି ଓ ପ୍ରେମ ବି କରନ୍ତି ନି । ସେମାନଙ୍କ ତାଗିଦ୍‌ରେ ତେଣୁ କବି ପ୍ରତ୍ୟକ୍ଷ କରନ୍ତି ଗୋଟେ ଶାନ୍ତମତ ଷଡଯନ୍ତ୍ରର ବୃନ୍ଦଆଦି ଅର୍ଥାତ୍ ମଣିଷଟି ଜାଣେ ଯେ ଯେଉଁ ଆବେଗ

ଟିକକ ପାଇଁ ସୂର୍ଯ୍ୟ ଉଏଁ, ବର୍ଷା ଝରେ, ପବନ କାନ୍ଦେ, ଚନ୍ଦ୍ର ଅସ୍ତ ଯାଏ, ଫୁଲଟିଏ ଫୁଟି ଫୁଟି ମଉଳିଯାଏ, ନଈ ବାଟବଣା ହୋଇଯାଏ, ଚଢ଼େଇଟିଏ ଢ଼ାଉଆ ରଙ୍ଗରେ ସାମିଲ ହୋଇଯାଏ, ଗୁଣ୍ଡୁଚିଟିଏ ଅଧୀରତାର ଭାଉନାରେ ବାଲିରେ ଗଡ଼େ, ପଥର ଖସେ, ସୋଲ ବୁଡ଼େ, ମଞ୍ଚର ଡାଳ ଯାଇ ଲାଗେ ଶୂନ୍ୟରେ, ସ୍ୱର୍ଗର ଡ଼ାଳ ଆସି ଲାଗେ ମଞ୍ଚରେ ।' ତେଣୁ ତାର ଦୁଃଖ ସରେ ନାହିଁ, ବୈଦୂର୍ଯ୍ୟକୁ ପାଇଲା ପରେବି ବଢ଼େ ଅତୃପ୍ତି; ଉତ୍ତର ଗୃହିଣୀରେ ବି କାବ୍ୟ ନାୟକ ପ୍ରଶ୍ନ କରେ—

'ଶାନ୍ତି, ମୋକ୍ଷ ନା ଅଛୁ ନୋଠାରେ
ନା ନନ୍ଦଡ଼ି ଗାଙ୍ଗୁଥିବା ଖସଡ଼ା ଘାଟରେ ।'

'ଯେ କବି ପତିତ ପାବନ ବାନାକୁ' ସଂଜ୍ଞାବିତ କରିପାରେ 'ସହସ୍ର ଯୋନି'ରେ ସେ ବି ନିଷ୍ଟସ୍ପୃ ରକ୍ତ ମାଂସର କାନ୍ଥୁଆର, ଏଥିରେ ସନ୍ଦେହର ଅବକାଶ ନାହିଁ । ବୋଧହୁଏ ଏଇଥିପାଇଁ 'କଠାଧାରର ନୋଠାକୁ ବ୍ୟଙ୍ଗ ଓ 'ଖସଡ଼ା ଘାଟର'ର ପ୍ରଶସ୍ତି କରାଯାଇଛି । 'ତେଣୁ କଲ୍ୟାଣୀ ଦୁଃଖ ବୁଝେନା, ଦୁଃଖର କୌଣସି ଅନିଶ୍ଚିତ ସଂଜ୍ଞାକୁ ଖାତିର କରେନା' । ଦୁଃଖରେ ଆତ୍ମିକ ପାଉଛି ହେଉଥିବା କବିଟିଏ କିନ୍ତୁ ମଙ୍ଗଳମୟ ଶିବ ବନିଯାଏ । ଦୁଃଖର କାଳ ସର୍ପକୁ ଗଳାରେ ଛନ୍ଦି ସେ ସାତ ସମୁଦ୍ର ତେର ନଈର ଗର୍ଭରୁ ରତ୍ନ ସାଉଁଟିବା ପର୍ଯ୍ୟନ୍ତ ଅପେକ୍ଷା କରେ ।

କବିର ଏଇ ପ୍ରେମଜନିତ ଦୁଃଖର ଫର୍ଦଗୁଡ଼ିକ ଓଲଟାଇଲାବେଳେ John Gritton ଙ୍କ ଉକ୍ତି ସ୍ୱତଃ ମନରେ ପଡ଼ିଯାଏ । ସେ ନିଜର Essay on human love ପୁସ୍ତକରେ ପ୍ରେମ ସଂପର୍କରେ ଆଲୋଚନା କଲାବେଳେ ପ୍ରେମର ସଂଜ୍ଞା ନିରୂପଣ କରିଛନ୍ତି । ତାଙ୍କ ମତରେ ନିଜକୁ ବ୍ୟକ୍ତି ଜୀବନର ବନ୍ଧନରୁ ମୁକ୍ତି ଦେଇ ଅନ୍ୟ ଭିତରେ ଆପଣାକୁ ଅବସ୍ଥାପିତ ଓ ଆବିଷ୍କାର କରିବା ଏବଂ ଅପରଜଣକୁ ଏଇ ଅବସ୍ଥାପନ ଓ ଆବିଷ୍କରଣକୁ ସୁଯୋଗ ଦେବାଇଁ ପ୍ରେମ ନାମରେ ଆଖ୍ୟାୟିତ ହୋଇଅଛି । ୧) ଏଇଟି ବଡ଼ ଆଶ୍ଚର୍ଯ୍ୟ ଲାଗେ କବି କମଳାକାନ୍ତଙ୍କ ପ୍ରେମ ଆକାଶର ବ୍ୟାପ୍ତି ବ୍ୟକ୍ତି ଜୀବନରୁ ମୁକ୍ତି ପାଇଥିଲେ ମଧ୍ୟ ଯେଉଁମାନଙ୍କପାଇଁ ତାଙ୍କ ପ୍ରେମ ନିବେଦିତ, ସେମାନେ ଏଇ ପ୍ରେମର 'ଅବସ୍ଥାପନା' ଓ 'ଆବିଷ୍କରଣ'କୁ ସୁଯୋଗ ଦିଅନ୍ତି ନାହିଁ । କବିଙ୍କ ଆବେଗମୟ ଭାଷାରେ—

କଳା ନା ଜାଣେ କବି,
ଗଢ଼ ନା ଜାଣେ ନଦୀ,
ହ୍ରଦ ନା ଜାଣେ ହ୍ରଦର ଠିକଣା,
ଜାଂଦୁସ୍ତ ଝିଅଟିଏ : କାଲି
କବିତା ଲେଖେ ନା ପ୍ରେମ ବି କରେ ନା । ( ପୃ ୩୯ )

ପ୍ରେମ ଏକ ତରଫା ହେବାରେ କବିର ମାନସିକତାରେ କିଛି ଦୁଃଖ ନାହିଁ । ବରଂ ଆବେଗରେ ଆନ୍ତର ସମ୍ବେଦନଶୀଳତା ବଢ଼ି ଚାଲିଛି । ସେ କୁହନ୍ତି— 'ଦୁଃଖ କରିବାର କିଛି ନାହିଁ । ଦୁଃଖ ଆମର ପୁରୁଣା ବନ୍ଧୁ । ତେଣୁ ଜୀବନର ବଗିଚାରେ ଘାସ ଉପାଡ଼ିବା, ହାଣିବା, ହଟାଇବା ବଡ଼ ନିଷ୍ଠୁର, ଓ କଦର୍ଯ୍ୟ କାମ ହେଲେ ବି ଫୁଲଟିଏ ଫୁଟାଇବାର ନନ୍ଦନବୋଧ କବିଙ୍କର ରହିଛି । ଫୁଲ ତୋଳିବାରେ କିଛି ବାହାଦୁରି ନାହିଁ—ନିଃଶ୍ୱାସ ଗ୍ରୁଣ୍ଡିବାରେ କିଛି ତାତ୍ପର୍ଯ୍ୟ ନାହିଁ । ଫୁଲ ଫୁଟାଇବାକୁ ପଡ଼ିବ—

ଦେଖ୍, ସବୁ କରିବୁ , ଫୁଲ ତୋଳିବୁ ନାହିଁ ।
ଦେଖ୍, ସବୁ କରିବୁ, ନିଃଶ୍ୱାସ ଗ୍ରୁଣ୍ଡିବୁ ନାହିଁ ।
ଦେଖ୍, ସବୁ କରିବୁ, ଫୁଲ ଫୁଟାଇବୁ,
ଫୁଲ ମହକାଇବୁ । ନିଜେ ନ ମଲେ ସମ
କମିତ ଦର୍ଶନ ଦବ ରେ ଯମ ।' ( ପୃ ୧୪ )

ବୋଧହୁଏ ଏତ ଢଙ୍ଗର ଏକାକୀତ୍ୱ କବିଙ୍କୁ ତଥା ତାଙ୍କର କାବ୍ୟମାନଙ୍କୁ ଏପରି ଯନ୍ତ୍ରଣା ( Poetic pain ) ର ଲମ୍ବ ସ୍ରୋତରେ ଅଚଞ୍ଚଳ କରିପାରୁ ନାହିଁ । ବରଂ ତାଙ୍କର କାବ୍ୟମାନସକୁ କରିଛି ସଂଗୀତଜ୍ଞ ହରିଦାସଙ୍କ ରାଗିଣୀ ପରି ବେଗବାନ୍ ଓ ସୂକ୍ଷ୍ମ ।

ଏ ଯାବତ୍ ତାଙ୍କର ଯେତେ କବିତା ସଙ୍କଳନ ପ୍ରକାଶ ପାଇ ସାରିଲାଣି, ସବୁଥିରେ ଜନ୍ମ ଓ ପ୍ରେମ କବିତାର ମୂଳ ସ୍ୱର ଭାବରେ ପ୍ରତିଷ୍ଠା ପାଇଛି । କିନ୍ତୁ 'ନିତ୍ୟ ନିସ୍ତମିତ'ରେ ଏହି ସ୍ୱର ଅନ୍ୟ ଏକ ମୋଡ଼ ଧରିଛି । ଜନ୍ମ, ମୃତ୍ୟୁ ଏବଂ ପ୍ରେମ

ଏଠାରେ ମୃତ୍ୟୁ ନୁହନ୍ତି । କବିମାନସ ଏକାକୀ ଏମାନଙ୍କ ମଝିରେ ବୋହୂଟିଏ ପରି ରହି ଯାଇ ସଭିଙ୍କୁ ବ୍ୟଙ୍ଗ କରୁଛି । ଏପରିକି ଜନ୍ମ, ମୃତ୍ୟୁ ଓ ପ୍ରେମର ଊର୍ଦ୍ଧ୍ୱରେ ଯେଉଁ ଈଶ୍ୱର, ସେ ମଧ୍ୟ ତାଙ୍କ ଲେଖାଟରେ କଡ଼ା ପାଲଟି ଯାଇଛନ୍ତି । କିଛି ଅଘଟଣ ଘଟିବା ଆଗରୁ କବି କମଳାକାନ୍ତଙ୍କ କାବ୍ୟମାନସ ନିଜର ହାତ କାଟି ପକାଇଛି ଆଜନ୍ମରୁ ! ଏଥର କାଳିଆ କୋଡ଼ି କସୃଷ୍ଟି ହେଉଥାଉ । ଏଠି ହାତ ଗୋଡ଼ କାଟି ପକାଇଥିବା ଲୋକଟି ପରବର୍ତ୍ତୀ ସମୟରେ ନିଜ ଭିତରକୁ ଫେରି ଆସିଲାବେଳେ ଲକ୍ଷ୍ୟ କରୁଥିବ ସେ ସେ କାଳିଆ ପାଲଟି ଯାଇଛି, ସେ ନିଜେହିଁ ମାଦଳ ଗୋସେଇଁ । ଜଗତର ଦୁଃଖ, ଶୋକ ଏବଂ ପ୍ରତାରଣା ଭିତରେ ଗୋଟିଏ କାବ୍ୟ ମାନସ ନିଜକୁ ଏକୁଟିଆ କରିଦେଇ ଉପରୋକ୍ତ 'ଈଶ୍ୱର', 'କାଳିଆ' ବା 'ମାଦଳ 'ଗୋସେଇଁ' ବନି ଯାଇ କଡ଼ା ପାଲଟିଯିବ ନାହିଁ କି ? ଆତ୍ମଜ୍ଞାନ ଓ ଏକାକୀ ହାତକାଟି ପକାଇଥିବା କାବ୍ୟମାନସ ନିଶ୍ଚିତ ଭାବରେ ଆଉ କାହା'ରିକି ଏ ଦୁଃସମ୍ବାଦ ଜଣାଇ ନଥିବ ବା ମୋ ବୋଧେ ନିଶ୍ଚିତ ଥିବ ଯେ 'ତେତ୍ରିଶକୋଟି' ଜୀବଜନ୍ତୁଙ୍କ ଭିତରୁ ଖୁବ୍ କମ୍ ଲୋକ ଏ ପ୍ରକାର ସତର୍କତା ଅବଲମ୍ବନ କରି ପାରନ୍ତି ; ଯେଉଁଥିପାଇଁ ତାଙ୍କୁ (ଜଗତର ଅନ୍ୟମାନଙ୍କୁ) ଏ ଧରଣର ଦୁଃସାହସିକ କାର୍ଯ୍ୟ କରିବା ପାଇଁ ପ୍ରବର୍ତ୍ତାଇବା ବୋକାମି ହେବ । କାବ୍ୟ ମାନସ ଏକାକୀ ଏ ଜ୍ଞାନର ଅଧିକାରୀ । ('ନିତ୍ୟ ନିଯୁମିତ' ପୃ ୪୪)

କବି କମଳାକାନ୍ତ ବଙ୍ଗୀୟ କବି ଜୀବନାନନ୍ଦଙ୍କ ଭଳି ଜୀବନ ଦାଉରେ ହାଓଡ଼ା ପୋଲରୁ ଡ଼େଇଁପଡ଼ି ଆତ୍ମହତ୍ୟା କରିବାକୁ ଯିବା ସମୟରେ ଅଚାହାଁ ବାଳକଟିର ଚକୋଲେଟ୍ ଲୋଭରେ ପଛକୁ ଫେରି ନାହାନ୍ତି, ବରଂ ତାଙ୍କର କାବ୍ୟ ମାନସ ନିଜର ହାତଗୋଡ଼ କାଟିଦେଇ ନିଜକୁ ଈଶ୍ୱର ସଜାଇ ପାରିଛି ।

ଯେଉଁ ନାୟକ 'ଆତ୍ମଜ୍ଞାନ' ପ୍ରାପ୍ତ, ଯିଏ ଈଶ୍ୱରଙ୍କୁ କଡ଼ା କରିଦେଇପାରେ, ଶଙ୍କରାଚାର୍ଯ୍ୟଙ୍କ ଭଳି ନିଜକୁ ଈଶ୍ୱର ବୋଲି ଦାବୀ କରିପାରେ, ଯିଏ ଜନ୍ମ ମୃତ୍ୟୁ ଓ ପ୍ରେମର ଊର୍ଦ୍ଧ୍ୱରେ ନିଜକୁ ଅବସ୍ଥାପିତ କରିପାରେ, ଇନ୍ଦ୍ରିୟର ଆନୁଗତ୍ୟ ପ୍ରକାଶ କରୁଥିବା ସାଧାରଣ ମଣିଷ ପାଇଁ ସେହି କାବ୍ୟ ନାୟକ ଭେଦ ପ୍ରକାଶ କରିବା ସ୍ୱାଭାବିକ ନୁହେଁ କି ? ଜୀବନ ଠାରୁ ମୃତ୍ୟୁ ଯେ ପଲକ ପାତର ଦୂରତ୍ୱରେ ଅବସ୍ଥାନ କରୁଛି, ସେ କଥା ସାଧାରଣ ମଣିଷ ବୁଝେନାହିଁ । ପୁଣି ମୃତ୍ୟୁ ଠାରୁ ଜୀବନ ଏତେ ସୁରଭିତ, ଏତେ ପ୍ରସାରିତ' ବୋଲି ଉକ୍ତି ମଣିଷଟି ସମଝି ପାରେ ନାହିଁ ।

'ଜୀବନ ଠାରୁ ମୃତ୍ୟୁ
ଏତେ ନିକଟସ୍ଥ, ଆତ୍ମୀୟ ସୁହୃତ୍
ବୋଲି ସହଜରେ ଜାଣି ପାରେନା,
ବୁଝିପାରେନା ସାଧାରଣ ମଣିଷ ।
ମୃତ୍ୟୁ ଠାରୁ ଜୀବନ
ଏତେ ପୁଷ୍ପିତ, ଏତେ ସୁରଭିତ, ଏତେ ପ୍ରସାରିତ
ବୋଲି ସହଜରେ ଜାଣିପାରେନା, ବୁଝିପାରେନା
ଧୂଳି ଧୂସର କାଦୁଆ ମଣିଷ—
ସେଇଥି ପାଇଁ ତ ତରଙ୍ଗୀ ଖେଳର
ପଡଆଘର ଭଉଁରୀରେ
ମଣିଷର ଅନ୍ତର୍ନିହିତ
ଇନ୍ଦ୍ରିୟର ଆନୁଗତ୍ୟ ।'

(ପୃ ୪୩)

ମୁଁ ମୂଳରୁ କହିଛି ଏକ ପ୍ରକାର ଏକାଗ୍ରୀଭୂତ ଢଂଗ ଆଲୋଚ୍ୟ କବିତା ସଂକଳନର ସମଗ୍ର କଳେବରକୁ ସ୍ପର୍ଶ କରିଛି । ତେଣୁ ତାଙ୍କର କାବ୍ୟ ନାୟକ ସମଗ୍ର ମହାକାଳର ବିଭକ୍ତ ଅଂଶକୁ ହିଁ ବିଶ୍ୱାସ କରୁଛି । 'ସ୍ରୋତର ନାମ ଗୃହ' ର ଆଲୋଚନା ପ୍ରସଙ୍ଗରେ ଆଲୋଚକ ଶ୍ରୀ ହୃଷିକେଶ ମଲ୍ଲିକଙ୍କ ସହିତ ଏ ସମ୍ପର୍କରେ ମୋର ଦ୍ୱିମତ ହେବାର ନାହିଁ । ତାଙ୍କ ବିଗ୍ୱରରେ— 'କମଳାକାନ୍ତଙ୍କ ଅଭିବ୍ୟକ୍ତିରେ ପୁଣି ଦୃଷ୍ଟିର ସ୍ୱାତନ୍ତ୍ର୍ୟ ଓ ଅନୁଭୂତିରେ ପୃଥକ ଜଗତବିନ୍ୟାସୀ ।' (୨) ଅବଶ୍ୟ କେହି କେହି ସମାଲୋଚକ ତାଙ୍କ ପ୍ରତ୍ୟେକ ଅନୁଭୂତିର ପୃଥକ ଜଗତ ନାହିଁ ବୋଲି କଳ୍ପନା ଜଳ୍ପନା କରିପାରନ୍ତି । Kamalakanta Lenka lacks variety— Almost all poems carry a similar tone." (୩) ବୋଲି ଦୁର୍ଭାଗ୍ୟଜନକ ମନ୍ତବ୍ୟ ପ୍ରଦାନ କରି ପାରନ୍ତି, କିନ୍ତୁ ଏକଥା ସତ୍ୟ ଯେ ଜଣେ ଆବେଗପ୍ରବଣ ଅଥଚ ବୁଦ୍ଧିଦୀପ୍ତ ପାଠକ ନିକଟରେ ତାଙ୍କ କାବ୍ୟ ଚେତନାର ତରଙ୍ଗୀ ପ୍ରତିଷ୍ଠା ପ୍ରତିଭାତ ହୋଇଥାଏ, ଫଳରେ ଉଠିଥାଏ ମହାକାଳରୁ ଖସି ପଡ଼ିଥିବା ଖଣ୍ଡିତ ମୁହୂର୍ତ୍ତର ମୋଲସ୍ୱନ୍ ଅଭିବ୍ୟକ୍ତି । ସମସ୍ତ ହେଉ ବା ମୁହୂର୍ତ୍ତ ହେଉ, କେହି ସହଜରେ ତାକୁ ବୁଝିପାରେନା । ତେଣୁ ସମସ୍ତର

ଆଗମନ ପ୍ରତିକ୍ଷିତ ନିତ୍ୟ ନିସ୍ତମିତ । କୁନ୍ତଳାକୁମାରୀଙ୍କ ନଗଣ୍ୟ ଅଥଚ ମହତ୍ତ ଇଚ୍ଛାର ଗଙ୍ଗଶିଉଳିରେ ତାଙ୍କର ସମସ୍ତ ସଂସାର ଧୁଏ, ସଂସାର ଧୁଏ କଅଁଳ ପତ୍ରରେ, ସାନ ସାନ ସୃଷ୍ଟିର ମୋଲିଏମ୍ ଦୃଷ୍ଟିର ସତ୍ତ୍ୱରେ । (ନିତ୍ୟ ନିସ୍ତମିତ ପୃ ୪୨)

କବିର କବିତା କେବଳ କବି କିମ୍ବା ତା'ର ଯୁଗ ଉପରେ ନିର୍ଭର କରେ ନାହିଁ । ବରଂ ଜାତିର ମନୋବୃତ୍ତି ଓ ତହିଁରୁ ଉଠିଆସି ଆଧ୍ୟାତ୍ମିକ ଓ ନନ୍ଦନତାତ୍ତ୍ୱିକ ପରଂପରା ଓ ପରିବେଶ ଉପରେ ଆଧାରିତ ହୋଇଥାଏ । 'The work of the poet depends not only on himself and his age, but on the nationality of the nation to which he belongs and the spiritual,aesthetic tradition and environment which it creates for him' (୪) ଶ୍ରୀ ଅରବିନ୍ଦ ସାହିତ୍ୟକୁ ଏକ କଳ୍ପନାଲୋକର ସୃଷ୍ଟି ବୋଲି ସ୍ୱୀକାର କରି ତା'ର ସୃଷ୍ଟି, ଜାତିର ମନ ଓ ପରମ୍ପରା ଭିତରେ ତା'ର ବିକାଶ ବୋଲି ସୂଚେଇଛନ୍ତି । ଅବଶ୍ୟ ଏହି କଥା ମନୋବୈଜ୍ଞାନିକ ୟୁଙ୍ଗ୍ ତାଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଭିତରେ ସ୍ପଷ୍ଟ କରି କହିଛନ୍ତି ଯେ ସାହିତ୍ୟ କବିର ବ୍ୟକ୍ତିମାନସରୁ ସୃଷ୍ଟ ନୁହେଁ, ବରଂ ପରଂପରା ଓ କୃଷ୍ଟିଗତ ଐତିହ୍ୟ ମଧ୍ୟରେ ତା'ର ମନରେ ସୃଷ୍ଟି ଧର୍ମର ଯେଉଁ ପ୍ରେରଣା ସୃଷ୍ଟି ହୋଇଥାଏ, ତାହା ତାକୁ କଳା କିମ୍ବା କବିତା ସୃଷ୍ଟିର ପ୍ରେରଣା ଦେଇଥାଏ । (୫) ସାହିତ୍ୟ ବ୍ୟକ୍ତି ମନରୁ ସୃଷ୍ଟି ହେଲେ ହେଁ ଜାତି ମନର ଏହା ଫଳଫଳନ । ଗୋଟିଏ ଯୁଗର ସାହିତ୍ୟ ଭିତରେ ଯୁଗୀୟ ଆଦର୍ଶ ନୁହେଁ, ସେହି ସେହି ଜାତିର ପ୍ରବହମାନ ପରଂପରା ଓ ଅଭିରୁଚି ପ୍ରକାଶ ପାଏ । ତେଣୁ ତାହା ବ୍ୟକ୍ତି ଜୀବନର କଳା ବିଳାସ ନହୋଇ ଜାତୀୟ ଜୀବନ ଓ ସାମୂହିକ ମନର ପରିଚୟ ଆପଣାର ଲୀଳା ବିଧିତ କଳେବର ମଧ୍ୟରେ ଧାରଣ କରିଥାଏ । ତେଣୁ କୌଣସି ଯୁଗର ସାହିତ୍ୟ ଭିତରେ ସେ ଯୁଗର ଜାତୀୟ ଚରିତ୍ର ଓ ଯୁଗ ରୁଚିର ନିର୍ଦ୍ଦିଷ୍ଟ ଆକାଂକ୍ଷାଟି କବିର କଳାକୃତି ମଧ୍ୟରେ ଫୁଟିଉଠେ । ଯେତେବେଳେ ସାହିତ୍ୟ ଜାତିର ପ୍ରାଣକେନ୍ଦ୍ରକୁ ପ୍ରକାଶ କରେ ନାହିଁ, ସେତେବେଳେ ତାହା ଆପଣକୁ ଗଣ ମନରେ ପ୍ରତିଷ୍ଠା ଦେଇପାରେ ନାହିଁ । କମଳାକାନ୍ତ 'ନିତ୍ୟ ନିସ୍ତମିତ'ରେ ଏହି ସତ୍ୟର ନିକଟବର୍ତ୍ତୀ ହେବାକୁ ଚେଷ୍ଟା କରିଛନ୍ତି । ପ୍ରତ୍ୟେକ ଫୁଲର ପୃଥକ ପରିଚୟ ପରି ପ୍ରତ୍ୟେକ କବି ନିଜସ୍ୱ ସନ୍ତକ ଦେଇ କଳା ସୃଷ୍ଟିକୁ ବିଶ୍ୱ-ବ୍ୟକ୍ତି ଚେତନାରେ ବିସ୍ତାରିତ କରି ଦେବାରେ ବିସ୍ମରଣ ଘଟାନ୍ତି ନାହିଁ । ଜୁଲୁଜୁଲିଆ ପରି ଗହ୍ୱର ସାମ୍ରାଜ୍ୟରେ କାବ୍ୟ ମାନସ ଉଜ୍ଜ୍ୱଳଚଟୁଳ ପରି ରହସ୍ୟର ବାଜ୍ ଖେଳ ଖେଳପାରେ । କିନ୍ତୁ

...ଢାହାଦର ଐଶ୍ୱର୍ଯ୍ୟ କବିର କାବ୍ୟ ମାନସକୁ ଛୁଏଁ ନାହିଁ କିମ୍ବା କବିତ୍ୱର ଖଣ୍ଡାଧାରକୁ ଖାତିର କରେନାହିଁ । କବିଙ୍କ ଭାଷାରେ—

'ପ୍ରତ୍ୟେକ ଫୁଲର ଯେମିତି/ପୃଥକ ପରିଚୟ
ସେମିତି ପ୍ରତ୍ୟେକ କବିର/ନିଜସ୍ୱ ଯନ୍ତ୍ରଣା । ଜଳୁଜଳୁଆ
ପରି ଗଙ୍ଗର ସାମ୍ରାଜ୍ୟ, ନିଡ଼ଂଭି/
ଚଢ଼େଇ ପରି ରମଣୀୟ/ବ୍ରିଜ୍ ଖେଳ ! × ×
ଭାଢାହାସର ଐଶ୍ୱର୍ଯ୍ୟ ନା ଛୁଏଁ
କବିତା, ନା କବିତ୍ୱର ଖଂଡ଼ାଧାର !!'

(ନିତ୍ୟ ନିସ୍ତମିତ-୪୦)

ତଥାପି ଏକେ ଯନ୍ତ୍ରଣାର ସେଇ ସିଂଫୋନିକ ସ୍ୱରଟି ସମାଜର ସ୍ତରତଳେ ଶଙ୍ଖ ଭଳିକି ହୋଇ ଅନୁରଣିତ ହେଉଥାଏ । ବ୍ୟକ୍ତିର ବିଶ୍ୱ ଚେତନା ବିଶ୍ୱ-ବ୍ୟକ୍ତି ଚେତନାରେ ପରିକଳ୍ପନା ଓ ଏଇ ପରିପ୍ରେକ୍ଷୀରେ କମଳାକାନ୍ତଙ୍କ କାବ୍ୟମାନସ ବାଲିରେ ଲୁହେଁ, ବାଲିର ସମୁଦ୍ରରେ ଜଗନ୍ନାଥଙ୍କ ପଦଚିହ୍ନ. ଏବେଣିକ 'ଜଗନ୍ନାଥଙ୍କ ଚୂନ ପଡ଼ିବା ଛଡ଼ା ଅନ୍ୟ ଗନ୍ତା ନାହିଁ, ବୋଲି ହୃଦୟଙ୍ଗମ କରିପାରେ ।

କବି କମଳାକାନ୍ତଙ୍କ କବିତା ଦୃଷ୍ଟିରେ ଏବୁଠାରୁ ମଜାକଥା ହେଉଛି— (ଏଠାରେ କେବଳ 'ନିତ୍ୟ ନିସ୍ତମିତ' କବିତା ସଂକଳନ ସମ୍ପର୍କରେ କୁହାଯାଉଛି) କେହି ନଥିଲି ବେଳେ ତାଙ୍କ କାବ୍ୟ ମାନସ ସ୍ୱଠାରୁ ଶାନ୍ତି ଦିଏ ଆପଣାକୁ । ନିଜ ଭିତରକୁ ଫେରିଯାଏ, ଅଦୃଶ୍ୟ ହୁଏ, ପୁଣି ସଁବାଳୁଆର ଜୀର୍ଣ୍ଣ ଖୋଳରୁ ରଙ୍ଗୀନ ପ୍ରଜାପତିକୁ ଉଡ଼ାଇ ଦିଏ । ନିଜ ଭିତରକୁ ଫେରିଗଲେ ସେ ଜାଣିଛି ସହ୍ୟ କରିବାକୁ ପଡ଼ିବ ଅଜସ୍ର ଜ୍ୱାଳା, ସେ ଅନ୍ୱେଷାସୀ ହୋଇଯିବ । ତଥାପି ପ୍ରଜାପତି ହେବାର ମୋହରେ ସେ ଆତ୍ମଲୀନ । ଏଇ ଆତ୍ମଲୀନତାରୁ ସେ ଜୀବନ ଓ ମୃତ୍ୟୁକୁ ସ୍ପଷ୍ଟ ଭାବେ ଚିହ୍ନି ପାରିଛି । ମୃତ୍ୟୁରାଜ ଅସମ୍ଭବ ଭାବେ ଭୟଙ୍କର । ଗାମ୍ଭୀର୍ଯ୍ୟର ଗମ୍ଭୀରରେ ସେ ଜଏପୀ । କିନ୍ତୁ କୃପଣତାର ଡୋରି ଖେଳ ଦେଲେ ସ୍ୱଠାରୁ ଭବ ସମୁଦ୍ରରେ ତଡ଼ିତ୍ ଓ ତରଙ୍ଗର ମହାମିଳନ ସଙ୍ଗଠିତ ହୁଏ । ସେହିପରି ଗୁଞ୍ଜରୁଞ୍ଜରିଆ ଜହ୍ନ ଆଲୁଅର

ମତ ଅଭିମତ ଭିନ୍ନମତ ॥

ଲୁଚକାଲି ଖେଳ ଓ ଗ୍ରେଞ୍ଚିଆ ସ୍ପନ୍ଦନ ହୁଏତ ଜୀବନ ହୋଇପାରେ, କିନ୍ତୁ ଜୀବନ ଓ ମୃତ୍ୟୁର ଦୂରତା ମାପିବାକୁ ଯାଇ କାବ୍ୟମାନସ ଏକ ପାର୍ଶ୍ୱର ହୃଦୟବତ୍ ସମୁଦ୍ର, ଢଢ଼ଢୁ ଓ ତରଙ୍ଗ ଓ ଅନ୍ୟ ଦିଗରେ ଗୁଳି ଗୁଳିଆ ଜହ୍ନ ଆଲୁଅର ଲୁଚକାଳି, ଗ୍ରେଞ୍ଚିଆ ସ୍ପନ୍ଦନର ସଂପର୍କ ଯୋଡ଼ୁଛି । ପ୍ରକୃତରେ ଆମ୍ଭେ ନହେଲେ ଅର୍ଥାତ୍ ଉପରୋକ୍ତ 'କେହି ନଥିଲା ବେଳେ ମନ ଆପଣାକୁ ଚିହ୍ନି ନପକାଇଲେ,' ଏ ପ୍ରକାର ଚେତନା ପାଠକଙ୍କୁ ସ୍ପର୍ଶ କରନ୍ତା ନାହିଁ ।

୧) Essays on Human Love — by John Gritton, by M. Cnaring- Pearce, P. 32-33

୨) 'ଇସ୍ତାହାର' — ଜାନୁଆରୀ ମାର୍ଚ୍ଚ, ୧୯୭୯ ପୃ ୯୫ ।

୩) 'Indian Literature' — Oriya poetry after the sixties — An approach by Aswini Ku. Mishra, P. 107

୪) The Future Poetry — Sri Aurobindo, P. 52

୫) Collected works ot C G Jung Vol VIIର Psychology and literature ଏବଂ Psycho-Analytical method of literature : ଏହି ଦୁଇ ପ୍ରବନ୍ଧରେ ଏଭଳି ସିଦ୍ଧାନ୍ତକୁ ବିଶ୍ଳେଷଣ କରି ଦିଆଯାଇଛି ।

ବିଜୟ କୁମାର ମହାପାତ୍ର
ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ଧାମନଗର କଲେଜ

## '......ଶବ୍ଦକୁ ଠୁଂକିଲେ ଶିଳ୍ପି ବାଜେ.....' ??

( ନିଜ ସହ ଗୋଟେ ସାକ୍ଷାତକାର—କବି କମଳାକାନ୍ତ ଲେଙ୍କା, ପୃ ୧୨ )

( ଏକ )

ମଣିଷର 'ଭାବ' ପ୍ରକାଶ କରାଏ—'ସାହିତ୍ୟ' । ଏହି 'ସାହିତ୍ୟ' ପୁଣି ଅକ୍ଷର ଶବ୍ଦ, ପଦ ବା ବାକ୍ୟର ପାହାଚ ଦେଇ 'ଭାଷା' ପାଖରେ ପହଞ୍ଚେ, ଏବଂ ଏହି

'ଭାଷା' ହିଁ ପାଠକ ଅଥବା ଶ୍ରୋତାଙ୍କ ମନରେ 'ଭାବ ସମୁଦ୍ର' ସୃଷ୍ଟି କରେ । ଏହି-ଠାରେହିଁ ଏହି ପ୍ରକ୍ରିୟାର ଚକ୍ର ମନ୍ଥଯାଏ ।

ଅର୍ଥାତ୍, ସାହିତ୍ୟ—ଭାବରୁ, ଭାବ—ଭାଷାରୁ, ଭାଷା—ଶବ୍ଦ ବା ଅକ୍ଷରରୁ ତାହାର ଜନ୍ମଯାତ୍ରା ଆରମ୍ଭ କରିଥାଏ । ଏଣୁ, ମୂଳ ଏକକ (Unit) ହେଲା—ଶବ୍ଦ ( word ) ବା ଅକ୍ଷର ।

'ଅକ୍ଷର' ଆଉ କିଛି ନୁହେଁ, ତାହା 'ଶବ୍ଦ' (word) ର ଅସ୍ଥି କଙ୍କାଳ ( skeleton ) ମାତ୍ର । ଯଦି 'ଲିଖିତ ସାହିତ୍ୟ' ପୂର୍ବରୁ 'କଥିତ ସାହିତ୍ୟ' ବା 'ଲୋକ ସାହିତ୍ୟ' ( Folk literature ) କୁ ସ୍ୱୀକାର କରାଯାଏ, ଅଥବା ଯଦି ମଣିଷ ଲେଖିବା ପୂର୍ବରୁ 'ଭାଷା' କହୁଥାଏ—କଥାଟକୁ ସ୍ୱୀକାର କରାଯାଏ, ତେବେ ସେହି ଶବ୍ଦ (word) ଟିର ଧ୍ୱନି ( sound )କୁ ସର୍ବ ପ୍ରଥମ ଏକକ ( unit ) ବୋଲି ସ୍ୱୀକାର କରିବାକୁ ହେବ ।

ମଣିଷ ତା' ମୁଖରେ 'ଭାବନା'କୁ 'ଭାଷା'ରେ ପରିଣତ କରି ଧ୍ୱନି ମାଧ୍ୟମରେ ପ୍ରକାଶ କରେ । ସେହି ଧ୍ୱନି ବାୟୁମଣ୍ଡଳରେ ତରଙ୍ଗାୟିତ ଗତିରେ ଖେଳିଯାଇ ଶ୍ରୋତାର କର୍ଣ୍ଣପଟହକୁ ସ୍ପର୍ଶ କରେ । ଏହି 'ଧ୍ୱନି' ( ବା ଧ୍ୱନିପୁଞ୍ଜ ) ଶ୍ରୋତାର କର୍ଣ୍ଣରେ ପ୍ରବେଶ କରିବାରେ ଏହା ତା'ର ମନରେ ନିର୍ଦ୍ଦିଷ୍ଟ 'ଧ୍ୱନି' ଟି 'ନିର୍ଦ୍ଦିଷ୍ଟ ଭାବ' ପ୍ରକାଶ କରିଥାଏ । ବକ୍ତା ଯାହା କହିଥାଏ, ତାହା ଶ୍ରୋତା ମନରେ ପ୍ରକାଶ ପାଏ । ଅର୍ଥାତ୍ ବକ୍ତା ମନରୁ ଶ୍ରୋତା ମନକୁ 'ଭାବ' ସ୍ଥାନାନ୍ତରିତ ହେବା ପାଇଁ ଏହି ଯେଉଁ ପ୍ରକ୍ରିୟା ତାହା ଅନବରତ ଲାଗିଥାଏ ।

ବକ୍ତା ଶବ୍ଦ ( word )ଟି ଉଚ୍ଚାରଣ କଲାବେଳେ ପ୍ରତ୍ୟେକଟି ଧ୍ୱନି ବାୟୁ-ମଣ୍ଡଳରେ ଖେଳିଯାଏ । ଏହି ସବୁ ଛିନ୍ନ, ବିଚ୍ଛିନ୍ନ ଧ୍ୱନି ଏକତ୍ର ହୋଇ ଗୋଟିଏ ଗୋଟିଏ 'ଶବ୍ଦ' (word) ରେ ପରିଣତ ହୁଅନ୍ତି । ଏବଂ ଏହି ଶବ୍ଦଟି ଶୁଣିଲା ପରେ ଶ୍ରୋତା ମନରେ ତା'ର 'ଭାବ ଚିତ୍ର' ସୃଷ୍ଟି ହୁଏ । ଏହାକୁ ପ୍ରାଚୀନ ଭାରତୀୟ ଅଳଙ୍କାର ଶାସ୍ତ୍ରରେ 'ସ୍ଫୋଟ' ବୋଲି କୁହାଯାଇଛି । ଏହି 'ସ୍ଫୋଟ' ହିଁ ପ୍ରକୃତରେ ଧ୍ୱନିର ଅର୍ଥ ପ୍ରକାଶନର ସର୍ବପ୍ରଥମ ଏକକ । ଅଳଙ୍କାର ଶାସ୍ତ୍ରରେ ଏହାକୁ ଅଧିକ ଗୁରୁତ୍ୱ ଦିଆଯାଏ । ତେଣୁ 'ଶବ୍ଦ' ହିଁ 'ବ୍ରହ୍ମ' ବା ସୃଷ୍ଟିର ମୂଳ ବୋଲି

ମତ ଅଭିମତ ଭିନ୍ନମତ ॥

କୁହାଯାଇଛି । ବାଇବେଲରେ କୁହାଯାଇଛି—'The word is God' । ଅର୍ଥାତ୍
'ଶବ୍ଦ' ହିଁ ସ୍ୱୟଂ ଈଶ୍ୱର । ଏଥିରୁ 'ଶବ୍ଦ'ର ଗୁରୁତ୍ୱ ଓ ମହତ୍ତ୍ୱ ସହଜରେ ଉପଲବ୍ଧି
କରିହୁଏ ।

ସାହିତ୍ୟ ରଚନାର ଅନ୍ତିମ ବିଭାଗ ହେଉଛି—କାବ୍ୟ ରଚନା । ଏଥିରେ 'ଶବ୍ଦ'ର
ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଯଦିଓ ଏହା ସାହିତ୍ୟର ଏକ ପରିବେଷଣଗତ
କଳା ବା ବାହ୍ୟ ରୂପ, ତଥାପି ଏହି ପରିବେଷଣଗତ କଳା ରଚୟିତାଙ୍କ ଭାବନାକୁ
ଅବିକଳ ରୂପ ଦେବାରେ ଏବଂ ଏହାକୁ ସ୍ଥାନାନ୍ତର କରିବାରେ ପ୍ରଚୁର ଶକ୍ତି ଯୋଗାଏ ।
ଯଦି ଏହା ଦୁର୍ବଳ ହୋଇଯାଏ, ତେବେ ରଚୟିତା ମନରେ ଉଦ୍ରିକ୍ତ ହୋଇଥିବା ଭାବକୁ
ହୁଏତ ସେ ଯଥାଯଥ ପ୍ରକାଶ କରିପାରନ୍ତି ନାହିଁ । କିମ୍ବା ଏହା ଶ୍ରୋତା ଅଥବା
ପାଠକ ନିକଟରେ ପହଞ୍ଚି ପାରେ ନାହିଁ । ଫଳରେ 'ଭାବ'ର ସ୍ଥାନାନ୍ତର ହୋଇ
ପାରେ ନା । ଶେଷରେ, ଏହି 'କବି-କର୍ମ' ବ୍ୟର୍ଥତାରେ ପରିଣତ ହୁଏ । ସୁତରାଂ,
କବିତାରେ କବିଙ୍କ ଶବ୍ଦ ଚୟନ 'କବି-କର୍ମ'ର ଏକ ବିଶେଷ ଦିଗ କହିଲେ ଅତ୍ୟୁକ୍ତି
ହେବ ନାହିଁ ।

'ଶବ୍ଦ'ଗୁଡ଼ିକ ଠିକ୍ ସୁଇଚ୍ ପରି । ସୁଇଚ୍ ଟିପିଲେ ଘରଟି ଆଲୋକିତ
ହୋଇଯାଏ । ସେମିତି ପାଠକ ମନରେ ଏହି 'ଶବ୍ଦ'ର ସୁଇଚ୍ ଟିପି ତା' ମନରେ
ଉଦ୍ରିକ୍ତ 'ଭାବ'କୁ ଆଲୋକିତ କରିଦେବାହିଁ ସଫଳ କବିଙ୍କର ମୁଖ୍ୟ କର୍ତ୍ତବ୍ୟ । ଏହି
ପରିପ୍ରେକ୍ଷୀରେ କବି କମଳାକାନ୍ତ (୧୯୩୫)ଙ୍କ କବି କୃତିକୁ ବିଚାର କରାଯାଇ ପାରେ ।
କାରଣ,ତାଙ୍କ କବିତାର ବିଶେଷତ୍ୱମାନଙ୍କ ମଧ୍ୟରୁ 'ଶବ୍ଦ ଚୟନ' ଏକ ବିଶେଷ ଦିଗ ।

( ଦୁଇ )

ହାରମୋନିୟମର ରିଡ଼ ପରି କବିତାରେ ' ଶବ୍ଦ'ଗୁଡ଼ିକର ଭୂମିକା । କେଉଁ
ରିଡ୍ ଟିପିଲେ ସେଥିରେ କେଉଁସ୍ୱର ନିର୍ଗତ ହୁଏ, ତାହା ପୋକ୍ତ ଶିଳ୍ପୀ ଜାଣି ପାରନ୍ତି ।
ଏହାର ମୂଳ ଲକ୍ଷ୍ୟ ହେଲା—'ନିର୍ଗତ ସ୍ୱର' ଶ୍ରବଣ ପରେ ଶ୍ରୋତା ମନରେ ସେହି
'ଭାବ' ତରଙ୍ଗ ସୃଷ୍ଟି କରିବା । ଅତଏବ୍, ଲକ୍ଷ୍ୟ ହେଲା—'ଭାବ' ଏବଂ ମାଧ୍ୟମ
ହେଲା —ହାରମୋନିୟମର 'ସ୍ୱରପ୍ରବାହ' । ଯଦିଓ 'ସ୍ୱର' ଏକ ମାଧ୍ୟମ ମାତ୍ର,
ତଥାପି ଏହି ସ୍ୱରକୁ ବାଦ୍ ଦେଇ ଶ୍ରୋତା ମନରେ ଭାବର ଉଦ୍ରେକ ହୋଇ ପାରିବ କି ?
ଯଦିଓ 'ଶରୀର' ଏକ 'ମାଧ୍ୟମ' ତଥାପି ଶରୀର ବିନା 'ଆତ୍ମା'ର ସ୍ଥିତିକୁ ସ୍ୱୀକାର

କରାଯାଇ ପାରିବ କି ? ଏଥିରୁ 'ଭାବ' ଓ 'ଶବ୍ଦ' ଚୟନର ସଂପର୍କ ସ୍ପଷ୍ଟ ସୂଚିତ ହୁଏ ।

ଏହି ପ୍ରସଙ୍ଗରେ କବି କମଳାକାନ୍ତଙ୍କ 'କବିକର୍ମ'ର 'ଶବ୍ଦ' ଚୟନର ଧାରାକୁ ଲକ୍ଷ୍ୟ କରାଯାଇ ପାରେ ।

ଏ ପର୍ଯ୍ୟନ୍ତ ( ୧୯୮୯ ) କବି ଶ୍ରୀ ଲେଙ୍କାଙ୍କର ତେର ଖଣ୍ଡ କବିତାଗ୍ରନ୍ଥ [ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରତୀତି (୧୯୬୩), ଉତ୍ତରଣ (୧୯୬୬), ସ୍ମରଣ ବିସ୍ମରଣ (୧୯୭୩), କବିତାର ମୁହଁ ( ୧୯୭୪), ଅନ୍ତତଃ ନିଷ୍ଟୁପ ( ୧୯୭୫ ), ନିତ୍ୟ ନମୃମିତ ( ୧୯୭୮ ), ନିଜ ସହ ଗୋଟେ ସାକ୍ଷାତକାର ( ୧୯୭୮ ), ସ୍ରୋତର ନାମ ଋତ ( ୧୯୭୮ ), ଝରିବାର ବେଳ ( ୧୯୮୦ ), ଗୀତ ଗା' ନାରେ ପକ୍ଷୀ ( ୧୯୮୨ ) ଦୁଃଖ ସହ କଥା ବାର୍ତ୍ତା (୧୯୮୭) ଓ 'ଚିତା ଅଙ୍କା କାନ୍ଥର ଛବି ଓ ପରିଧି ବାହାରେ ଅପେକ୍ଷାରତ ପୃଥିବୀ ( ୧୯୮୭ ) ] ପ୍ରକାଶିତ । ଏବେ ବି କବିଙ୍କର କବିତାର ଝରଣା ଝର ଝର ବହୁଛି ।

ତାଙ୍କ କବିତାର ସ୍ଫୁରଣ ଭୂମି— ଜୀବନର ଚିହ୍ନା ଚିହ୍ନା ଅନୁଭୂତି । ତେଣୁ ସେ ବହୁ ସମୟରେ କହି ପକେଇଛନ୍ତି— ନିଜ କଥା । ନିଜ ଅନୁଭୂତିର କଥା । ତାଙ୍କର ଭାଷାରେ— 'ପ୍ରାୟ ମୋର ସବୁ ଗ୍ରନ୍ଥରେ ଗୁନ୍ଥିଛି, ଗୁନ୍ଥିବାର ଚେଷ୍ଟା କରିଛି ନିଜ କଥା, × × ×' (ସ୍ରୋତର ନାମ ଋତ— ଯଦି କିଛି କହିବାକୁ ଥାଏ—ପୃ.ଖ) ଏଠାରେ କବିକର୍ମ ବୈୟକ୍ତିକତା ମଧ୍ୟରେ ନୈର୍ବ୍ୟକ୍ତିକତା ଦିଗକୁ ଉନ୍ନୀତ ହୋଇଯାଇଛି । ଏହା ସାହିତ୍ୟର ଏକ ସାଧାରଣ ଲକ୍ଷଣ ।

'ଭାବ' ସବୁ ବ୍ୟକ୍ତିକୈନ୍ଦ୍ରିକ ହୋଇଥିବାରୁ ସେହି ବ୍ୟକ୍ତିକୈନ୍ଦ୍ରିକ 'ଭାବ' ଅନ୍ୟଠାରେ ପ୍ରକାଶ କରିବା କଷ୍ଟକର କାର୍ଯ୍ୟ । ତଥାପି, ଏହି କଷ୍ଟସାଧ୍ୟ କାର୍ଯ୍ୟ କରିବା ପାଇଁ କବି କମଳାକାନ୍ତ ଆଗେଇ ଆସିଛନ୍ତି । ଅନ୍ୟର ଏହି 'ଭାବ'ର ପ୍ରକାଶ ପାଇଁ 'ଭାଷାର ଭଣ୍ଡାର ଘରର ଜମାଟ ଅନ୍ଧାରକୁ ମନ୍ଥିଲା ବେଳେ କାକୁସ୍ଥତାରେ ଝାଳରେ ବୁଡ଼ି' ଗଲାବେଳେ ସେ ସେହି ଅନ୍ଧାର ମଧ୍ୟରେ ଡୁବକି ଦେଇ 'ଶବ୍ଦ' (ଭାଷା)ର ଉପଲକୁ ଉଦ୍ଧାର କରିପାରିଛନ୍ତି । କବିଙ୍କର ଏହି ସ୍ୱୀକାରୋକ୍ତି ହିଁ ନିଜର କବି କର୍ମରେ 'ଭାଷା' ଦିଗଟି ପ୍ରତି ସେ କିପରି ସଚେତନ ତାହାର ସ୍ପଷ୍ଟ ସୂଚନା ମିଳେ ।

ମତ ଅଭିମତ ଭିନ୍ନମତ ॥

ତାଙ୍କ କବିତା ଗ୍ରନ୍ଥ ଗୁଡ଼ିକରେ ଅନ୍ୟମାନଙ୍କ ପରି ତତ୍ସମ ଓ ତଦ୍ଭବ ଶବ୍ଦର ବହୁଳ ବ୍ୟବହାର ରହିବାଟି ସ୍ୱାଭାବିକ । ତେଣୁ ସେ ଦିଗରେ ନୀରବ ରହିବା ଉଚିତ । କେବଳ ଶବ୍ଦ ଚୟନରେ ଯେଉଁ ଦିଗଟି ପ୍ରତି ତାଙ୍କର ବୈଶିଷ୍ଟ୍ୟ ରହିଛି ସେହି ଦିଗଟି ପ୍ରତି ସାମାନ୍ୟ ଆଲୋକପାତ କରାଯାଉଛି ।

( ତିନି )

କବି କମଳାକାନ୍ତ କଥିତ ଶବ୍ଦଗୁଡ଼ିକୁ ଜୀବନ୍ୟାସ ଦେଇଛନ୍ତି । ଏହାର ସଂଖ୍ୟା ମଧ୍ୟ ଅଧିକ । ସେଥିରୁ କେତୋଟି ହେଲା— ବଢ଼ୁରି, ପାଣିଚିଆ, ଆଉଟେ (ଆଉଟିବା) ଅଖଳ, ଦଂଅଡ଼ା, ନଲଠା, ଆକ୍ତା ମାକ୍ତା ଇତ୍ୟାଦି ।

କେତେକ କ୍ଷେତ୍ରରେ ସେହି ପ୍ରଚଳିତ ପୁରୁଣା କଥିତ ଶବ୍ଦଗୁଡ଼ିକ ନୂଆ ପରି ଲାଗେ । କାରଣ, ଏହାର ପ୍ରୟୋଗ ବା ବ୍ୟବହାର କ୍ଷେତ୍ର ପାରମ୍ପରିକ ନୁହେଁ । ସମ୍ପୂର୍ଣ୍ଣ ନୂତନ । ଏହାସବୁ ନୂତନ ଅର୍ଥ ପ୍ରକାଶ କରିବା ପରି ଲାଗେ ।

ଏହି ସବୁ ସବୁ ପାରମ୍ପରିକ ଶବ୍ଦ ପାଖରେ ବ୍ୟବହୃତ ହୋଇ ନଥିବାରୁ ପାଠକ ମନରେ ଏକ ଅଭିନବ ଚିତ୍ର ଆଙ୍କି ହୋଇଯାଏ । ଶ୍ରୋତାର କର୍ଣ୍ଣ କୁହରରେ ଏକ ନୂତନତାର ପ୍ରଲେପ ଲେପି ହୋଇଯାଏ । ଯଥା—

କ) ସ୍ନେହର ପଣା—

> 'ଆସ ସକଳ ଏଡ଼ାଇ ସେନେହର ପଣା ଲାଗି
> ଯଦି ବୁକୁ ତଳେ କିଏ ଝଂକାର ତୋଳେ ଆଜି ।
>
> ( କିଏ ଝଂକାର ତୋଳେ ଆଜି/ସୁନା ଫସଲ/ପୃ-୭)

ଏଠାରେ 'ସେନେହର ପଣା'ଶବ୍ଦଟିକୁ ଲକ୍ଷ୍ୟ କରିବାର କଥା । 'ସ୍ନେହ'ଏକ ଅମୂର୍ତ୍ତି ଜନିଷ ହେଲେ ମଧ୍ୟ ତାକୁ 'ଡ଼ୋର' ବନ୍ଧନ ଆଦି ପ୍ରଚଳିତ ଶବ୍ଦ ଦ୍ୱାରା ପ୍ରକାଶ କରାଯାଇଥାଏ । ମାତ୍ର 'ସ୍ନେହର ପଣା' ଶବ୍ଦଟିର ପ୍ରଚଳନ ନାହିଁ । ଅଥଚ ଅର୍ଥ ଗ୍ରହଣ କରି ହେଉଛି ଓ ନୂତନ ପ୍ରୟୋଗ ଯୋଗୁଁ ଏହି ଶବ୍ଦଟି ନୂତନ ଅର୍ଥ-

ବୋଧ ଓ ଆଧୁନିକତାର ମର୍ଯ୍ୟାଦା ଦାବୀ କରୁଛି । ଏଠାରେ ସ୍ନେହ ଯେପରି ଏକ ତରଳ ପଦାର୍ଥ ରୂପେ ବ୍ୟବହାର କରାଯାଇଛି ।

ଖ) ମେଘର ବରୁଗ୍ରୁଡ଼ି ସ୍ତୁପ

'ଆକାଶର ଜହ୍ନ ଉଇଁ ଗ୍ରାଇ ଥିଲା ଜୋଛନାରେ ଧରା,
ମେଘର ବରୁଗ୍ରୁ ସ୍ତୁପ ହେଉଥିଲା ଅତି ବ୍ୟାଥାତୁରା ।

( ବିଦ୍ରୋହକ ଲେଖା ନାହିଁ/ଗ୍ରୀଷ୍ମ ଓ ପ୍ରଭାତ/ପୃ. ୩୮ )

ଏଠାରେ 'ମେଘ', 'ବରୁଗ୍ରୁ' ଏବଂ 'ସ୍ତୁପ'— ତିନୋଟି ଯାକ ପ୍ରଚଳିତ ଶବ୍ଦ । ମାତ୍ର ଯେତେବେଳେ ଏହି ତିନୋଟି ଶବ୍ଦକୁ ଏକାଠି ଗୁନ୍ଥି ଦେବା— ସେତେବେଳେ ମନରେ ନା 'ମେଘ' ଥାଏ, ନା 'ବରୁଗ୍ରୁ' ଥାଏ, ନା 'ସ୍ତୁପ' ଶବ୍ଦର ଅର୍ଥ ଲିଖିଥାଏ । ସେତେବେଳେ ଏହି ତିନୋଟି ଶବ୍ଦର କଂକାଳ ଉପରେ ଅନ୍ୟ ଏକ ଚିତ୍ର ଝୁଲିପଡ଼େ ଏବଂ ଏହି ଅନୁଭୂତି ହିଁ ଏପରି 'ଶବ୍ଦ-ଚୟନ'ର କାର୍ଯ୍ୟ ସମ୍ପନ୍ନ କରିଥାଏ ।

ଗ) ଦୁଃଖକୁ ଆଉଟେ ତା'ର ଟପ୍‌ଟପ୍ ଗ୍ଳାର ଭଙ୍ଗୀରେ
( ଭିନ୍ନ ଦେଶୀ ଗୀତ/ସ୍ମରଣ ବିସ୍ମରଣ/ପୃ.୭ )

ଆଉଟିବା ଏକ ପଲ୍ଲୀ ଶବ୍ଦ । ତଥାପି ଏହା ଦୁଃଖ ପାଖରେ ସଂଯୋଗ ହେବା ଦ୍ୱାରା ଏହାର ଅର୍ଥ ଦ୍ୱିଗୁଣିତ ହୋଇଛି ଓ ମାର୍ମିକତା ପ୍ରକାଶ ପାଉଛି । ଦୁଃଖ ଯେପରି ଏକ ଉଷୁମ ତରଳ ପଦାର୍ଥ ଓ ତାକୁ କବି ଆଉଟୁଛନ୍ତି ! ଅମୂର୍ତ୍ତ ଉପାଦାନକୁ ମୂର୍ତ୍ତ ରୂପ ଦେଇ ତା'ର ଏକ ସ୍ପଷ୍ଟ ଚିତ୍ର ଆଙ୍କି ଦେଇଥିବାରୁ ଏହା ପାଠକକୁ ନୂଆ ଲାଗେ ।

ଘ) ଶୂନ୍ୟତାର ଫାଂଗୁଲା ସ୍ତୁପରେ
ମାଆ ଲୋ ତୁ ଫୁଲ ହେଲୁ ଚନ୍ଦନ୍‌କି ହେଲୁ—
ଓ ରକ୍ତର ନଈରେ କା'ର ହୁଲ୍ ଡଙ୍ଗା ଭାସିବା ପୂର୍ବରୁ
ତୋଅର ଲୁହରେ ମା' ମୋ ମଣିଷପଣିଆକୁ ଯତନେ ଗଢ଼ିଲୁ !
(ମୋ ମା' ପ୍ରତି/କବିତାର ମୁହାଁ/ ପୃ. ୨)

ମତ ଅଭିମତ ଭିନ୍ନମତ ||

ଙ) ଚନ୍ଦ୍ରାର ଦାଂଅଡ଼ା ଗୋଟିଏ—

... ସବୁ ଉତ୍କଣ୍ଠାର
ଧୈର୍ଯ୍ୟକୁ ଅସ୍‌ତେ ଚୁପି ଦଅ
ତୁମ ଚନ୍ଦ୍ରାର ଦାଂଅଡ଼ା ଗୋଟିଏରେ !

(ମଂଚ/ ଅନ୍ତତଃ କଣ୍ଟୁପ ପୃ. ୨୭)

ଚନ୍ଦ୍ରାର ଗୋଟିଏ ଦାଂଅଡ଼ା ହୋଇ ଯାଇଛୁ । ସେ ଚୂଳ ଚୁଲ ତା ସ୍ପର୍ଶ-କାତରତା ହରାଇଛ । ରୁକ୍ଷତା ଓ କର୍କଶତାକୁ ଆବୋରି ନେଇଛ; ପୁଣି ଚନ୍ଦ୍ରାକୁ ଏକ ଚଳନ୍ତିଶକ୍ତି ରୂପେ କଳ୍ପନା କରି କବି ବେଶ୍ ଶିଳ୍ପ-ନୈପୁଣ୍ୟର ପରିଚୟ ମଧ୍ୟ ଦେଇଛନ୍ତି । ପୁଣି 'ଚନ୍ଦ୍ରାର ଗୋଟିଏ ଦାଂଅଡ଼ା' ରୁ ଚନ୍ଦ୍ରାର ବସ୍ତୁସ୍ଥ ରୂପଟି ଅନୁଭବରେ ଧରି ହୁଏ । ପୁନଶ୍ଚ ଏ ଚନ୍ଦ୍ରାର କ୍ରମଃ ଉଦୟ ଓ ଅସ୍ତର ପ୍ରହେଳିକା ଭିତରେ ଏହାର ଗତାନୁଗତିକତା ଓ ଓଜ ମଧ୍ୟ ବାରି ହୋଇଯାଏ । 'ଉତ୍କଣ୍ଠାର ଧୈର୍ଯ୍ୟ'କୁ 'ଚନ୍ଦ୍ରାର ଗୋଟିଏ'ରେ ପୁଣି ଦାଂଅଡ଼ା ଗୋଟିଏ'ରେ ଚୁପି ଦବା କହିବା ଦ୍ୱାରା 'ଚନ୍ଦ୍ରାର' ଦୃଢ଼ ବ୍ୟକ୍ତିତ୍ୱ ଓ ପ୍ରଭାବଶାଳୀତା ମଧ୍ୟ ସ୍ପଷ୍ଟ ହୋଇଯାଏ ।

ଚ) ସକାଳ ଗୁଡ଼େ—

"କେମିତି ସକାଳ ଗୁଡ଼େ
ଦୁଧିଆଳ ଗାଈ ପରି
ବ୍ୟସ୍ତତାର କଅଁଳା ବାଛୁରି ।"

( ବସୁନ୍ଧ/ଖସିବାର ବେଳା/ପୃ: ୩୨ )

ଦୁଧିଆଳ ଗାଈ ଭଳି ବ୍ୟସ୍ତବ୍ୟସ୍ତ (ଦୁଧ ପିଇବା ପାଇଁ ବ୍ୟସ୍ତ) କଅଁଳା ବାଛୁରୀକୁ ଗୁଡ଼ିବା ପରି ସକାଳ । ଚିତ୍ରକଳ୍ପଟି ପାଠକ ନିକଟରେ ଏକ ମର୍ମସ୍ପର୍ଶୀ ଚିତ୍ର ଆଙ୍କେ । ସେଥିପାଇଁ ଡ଼କ୍ଟର ମଥୁରାନାଥ ହୋତା କମଳାକାନ୍ତଙ୍କୁ ' ଚିତ୍ର-କଳ୍ପର ଯାଦୁକର ' ବୋଲି କହିଛନ୍ତି । (ଜୀବନ ତୀର୍ଥରେ କବି କମଳାକାନ୍ତ— ଫ୍ରେଣ୍ଡସ୍ ପବ୍ଲିଶର୍ସ-୧୯୮୭, ପୃ ୨୦୦)

କବି କମଳାକାନ୍ତ କେବଳ ବିଭିନ୍ନ ଶବ୍ଦର ଅପାରମ୍ପରିକ ସଂଯୋଗ ନୁହେଁ, କେତୋଟି ନୂତନ ଶବ୍ଦ ମଧ୍ୟ ସୃଷ୍ଟି କରିଛନ୍ତି—ଭାବପ୍ରବଣତା ଏହାର ଜନନୀ । କେତୋଟି ଶବ୍ଦ ଦେଖନ୍ତୁ—

କ) କବିଆଳ—

"ବାୟୁସମାନେ କହିବେ ଯେ; କମଳାକାନ୍ତ ଗୋଟେ କୂର୍ମ ।
କମଳାକାନ୍ତ ଗୋଟେ ମୋଟା ବୁଦ୍ଧିଆ କବିଆଳ । ଯେ ନଈ କହିଲେ
ବୁଝେ ନାଳ ।"

(ଆଜକାଲ ଶବ୍ଦକୁ ଠୁଂକଲେ ଗିନି ବାଜେ/ନଜ ସହ ଗୋଟେ ସାକ୍ଷାତ୍କାର/
ପୃ: ୧୪)

ଖ) ସ୍ନେହଜ ଆକାଶ—

ବର୍ଷା ଓ ଶରତର
ମଧ୍ୟାଂତର ପୂଜା ଛୁଟି
ସ୍ନେହଜ ଆକାଶ ।
କାଶତଂଡ଼ୀ ନଈ ନାଳ,
କୃଷ୍ଣଚୂଡ଼ା ଲଜେ ଖଣ୍ଡକାନ୍ତ ।

ପୂଜାଛୁଟି/ଅନ୍ତତଃ କଷ୍ଟୁପ/ପୃ: ୫୭)

ଗ) ଅଝଳ ଲୁହ—

ଟିକ ଟିକ ବନ୍ୟ ଚଢ଼େଇଙ୍କ
ତୁଣ୍ଡର ଅଝଳ ଲୁହ । ଉଚ୍ଛନ୍ନ ଢେଉର ସ୍ୱର
ଦୋହରାଏ: ପ୍ରଭୁ, ତୁମେ ଘନ ନୀଳ
ଆକାଶର ଭାଷା, ମୋ ଅସ୍ଥିର ମନ ତଳ
ଭୀରୁ ଆତୁରତା ।

(ହସ୍ତାକ୍ଷର/ଅନ୍ତତଃ କଷ୍ଟୁପ/ପୃ: ୬)

ଅବଶ୍ୟ କେତୋଟି ଶବ୍ଦ ପ୍ରତି କବି କମଳାକାନ୍ତଙ୍କର ଦୁର୍ବଳତା ରହିଛି । ତେଣୁ, କବିତାରେ ସେହି ଶବ୍ଦ କେତୋଟିର ବାରମ୍ବାର ପ୍ରୟୋଗ ରହିଛି । ଯଥା ବତୁରି, କଲଠା, ଭଜା (ଲୁହଭଜା, ବର୍ଷା ଭଜା) ଝଲ୍ ମଲ୍, ଆକ୍ତା ମାକ୍ତା ପ୍ରଭୃତି ।

ମତ ଅଭିମତ ଭିନ୍ନମତ ॥

କମଳାକାନ୍ତଙ୍କ କବି ପ୍ରତିଭା 'ଶବ୍ଦ' ଭୋଗରେ ଏମିତି ଛନ୍ଦି ହୋଇଯାଇଛି ଯେ ବେଳେବେଳେ ତାହା ପାଠକ ନିକଟରେ ଅସ୍ପଷ୍ଟ ମଧ୍ୟ ହୋଇ ଉଠିଛି । ସେ ଅନୁପ୍ରାସ/ଭାବ ପ୍ରବାହ ଛନ୍ଦକୁ ରକ୍ଷା କରିବାକୁ ଯାଇ "ସେ ଅନେକ ସମୟରେ ଅପ୍ରାସଙ୍ଗିକ ଓ ଅଦରକାରୀ ଶବ୍ଦ ବ୍ୟବହାର କରନ୍ତି, ଯାହା ଭିତରେ ତାଙ୍କର ବକ୍ତବ୍ୟ ଅତି ସନ୍ତର୍ପଣରେ ଲୁଚି ଯାଇଥାଏ ।" (ବାଲେଶ୍ୱରର ଇତିବୃତ୍ତ (୧ମ ଖଣ୍ଡ)—ସଂପାଦକ : ଅଧ୍ୟାପକ ବିପିନ୍ ବିହାରୀ ବିଶ୍ୱାଳ—ବିଶ୍ୱବ୍ରହ୍ମ ପ୍ରକାଶନୀ—୧୯୮୬, ପୃ ୫୫)"

ସେ ଶବ୍ଦ ବା ଭାଷା ପ୍ରସଙ୍ଗରେ ବ୍ୟାକରଣ, ପ୍ରଚଳିତ ବିଧି ଆଦିର ବିଚାର କରି ନାହାନ୍ତି । ଯେଉଁଠି ସେ ପ୍ରଚଳିତ ଶବ୍ଦଗୁଡ଼ିକ ତାଙ୍କ ଭାବ ପ୍ରକାଶ ପାଇଁ ଦୁର୍ବଳ ବା ଅକାମୀ ହୋଇ ପଡ଼ିଛି, ସେତେବେଳେ ସେ ସେହି ଅନ୍ଧାରରେ ଦଉଡ଼ି ପକାଇଛନ୍ତି । ଯାହାକୁ ସେ ହାତ ପାଆନ୍ତାରେ ପାଇଛନ୍ତି, ତାକୁ ଲେଖି ଯାଇଛନ୍ତି । ଯାହାକୁ ସେ ହାତ ପାଆନ୍ତାରେ ପାଇ ପାରି ନାହାନ୍ତି, ତାକୁ ଅସଂଲଗ୍ନ ବିଶୃଙ୍ଖଳ ପ୍ରଚଳିତ ଶବ୍ଦ ମାଧ୍ୟମରେ ଏକ ସାମଗ୍ରିକ ଭାବରେ ଭାବର ଉଚ୍ଛ୍ୱାସକୁ ପ୍ରକାଶ କରିବାକୁ ଆଗେଇ ଆସିଛନ୍ତି । ସଚେତନ ଉଚ୍ଛ୍ୱାସ ପ୍ରାଣ ପାଠକ ଏହାକୁ ନିଜର ମନ ନ କରି ନିଜ ମନରେ ଖେଳେଇ ଦେଇ ପାରିଲେ ତାଙ୍କ ଉଚ୍ଛ୍ୱାସର ସ୍ଥାନାନ୍ତକରଣ ହୋଇ ପାରିବ । ଅର୍ଥାତ୍ ସେ ଭାଷାର (ଶବ୍ଦ) ପ୍ରଚଳିତ ଅର୍ଥଠୁ ଊର୍ଦ୍ଧ୍ୱକୁ ଚାଲି ଯାଇଛନ୍ତି । (ଯେମିତି—ନାରାୟଣ ନାରାୟଣ ଶବ୍ଦରେ ଉଭା ହୁଏ ନାରଦ) —ଝଷିବାର ବେଳ । ତେଣୁ ପାଠକକୁ କେତେକ ସ୍ଥଳରେ ଅସଂଲଗ୍ନ, ଅପ୍ରାସଙ୍ଗିକ ଓ ଅଦରକାରୀ ମନେହେବା ଖୁବ୍ ସ୍ୱାଭାବିକ । ଡକ୍ଟର ଦାଶରଥି ଦାସ ଯଥାର୍ଥରେ କହିଛନ୍ତି—"ଭାଷା ତାଙ୍କ କବିତାର କ୍ରୀତ ଦାସ ।" (ନିଜ ସହ ଗୋଟେ ସାକ୍ଷାତକାର/୧୯୭୮/ପୃ )

ପାଠକର ହୃଦୟ ପଲ୍ୱଳରେ ଶବ୍ଦ (word) ର 'ପଥର ଖଣ୍ଡ' ପତିତ ହୋଇ ତରଙ୍ଗ ସୃଷ୍ଟି କରେ । ଏହି ତରଙ୍ଗ ସେଥିରେ ପାଠକର ଚିନ୍ତାର ତୀରଭୂମିକୁ ସ୍ପର୍ଶ କରେ । ଏହି ତରଙ୍ଗର ବେଗ ଓ କଂପନ ନିର୍ଭର କରେ ଶବ୍ଦର ପଥର ଖଣ୍ଡ ଉପରେ । ଏହି 'ଶବ୍ଦ' ହିଁ ପ୍ରକୃତରେ କବି ପ୍ରତିଭାର ଭିତ୍ତି ଭୂମି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଦିଗରୁ ବିଚାର କଲେ କବି କମଳାକାନ୍ତ ଜଣେ କୁଶଳୀ ଶବ୍ଦ ଚୟନକାର । 'ଶବ୍ଦ' ର ବଗିଚାରେ ସେ ଜଣେ ଚତୁର ମାଳୀ । ଜଣେ ସମଝ୍ଦାର ମାଳାକାର ।

**ଡକ୍ଟର ମନୀନ୍ଦ୍ର ମହାନ୍ତି**

# ନିଷ୍କପଟ ଉଚ୍ଚାରଣର କବି କମଳାକାନ୍ତ

କମଳାକାନ୍ତ ଲେଙ୍କା ମୋର ସାଂପ୍ରତିକ । ଆମେ ଦୁହେଁ ଗୋଟିଏ ସମୟ ଖଣ୍ଡରେ ନିଜସ୍ୱ ଭାବରେ ବଞ୍ଚୁଛୁଁ । ଆମକୁ ଘେରି ରହିଥିବା ପୃଥିବୀକୁ ନିଜସ୍ୱ ଭାବରେ ଅନୁଭବ କରୁଛୁଁ । ସବୁ କବିଙ୍କ ପାଖରେ ଏହି ନିଜସ୍ୱ ଭାବଟାହିଁ ବଡ଼ କଥା । ଏହି ଭାବ ସାଧାରଣ ବାସ୍ତବତାକୁ ଏକ ନିଜସ୍ୱ ରୂପ ଦିଏ, ନିଜସ୍ୱ ଭାବରେ ତାକୁ ଗଢ଼ି ତୋଳେ । ସାଧାରଣତାରୁ ଅନନ୍ୟତାଟିକୁ ତୋଳି ନେଇ ପୁଣି ସାଙ୍କ-ଜନୀନ କରିଦିଏ । ମାତ୍ର ଏହି ସାଙ୍କଜନୀନ କରିବା ଭିତରେ କବି ତାର ନିଜସ୍ୱ ସ୍ୱାକ୍ଷର ରଖି ଦେଇ ଯାଏ । ଏହାହିଁ ତାର ବିଶେଷତ୍ୱ । କବି କମଳାକାନ୍ତ ତାଙ୍କ ନିଜସ୍ୱ ଭାବରେ ଆମର ସାଂପ୍ରତିକ ଜଗତକୁ/ଅନୁଭୂତିକୁ ସଜାଡ଼ିଛନ୍ତି, ଗଢ଼ିଛନ୍ତି । ତାଙ୍କ କବିତା ପ୍ରାୟ ଦୀର୍ଘ ତିରିଶ ବର୍ଷର କବିତା, ଏହି ସଜାଡ଼ିବାର କାହାଣୀ । ଏକ ସଚେତନ ମନର ଅନନ୍ୟ ପ୍ରତିକ୍ରିୟା ।

ଭିନ୍ନତା, ଉଦାରତା ଏବଂ ଜଟିଳତା ହେଉଛି କମଳାକାନ୍ତଙ୍କ ବିଶେଷତ୍ୱ । ଏହି ତିନୋଟିକୁ ଗୁନ୍ଥିଛି ତାଙ୍କର ଜ୍ୱଳନ୍ତ ଅନ୍ୱେଷା । ଏହି ଅନ୍ୱେଷା ତାଙ୍କ କବିତାର ପ୍ରାଣ । ଏ ଅନ୍ୱେଷା ଦିନରେ ଆଲୁଅ ଜାଳି ସତ୍ୟକୁ ଖୋଜିବା ନୁହେଁ କିମ୍ବା ଅନ୍ଧାର ଘରେ ଆଦୌ ନ ଥିବା କଳା ବିରାଡ଼ିଟିକୁ ଖୋଜିବା ନୁହେଁ । ବୁଦ୍ଧି ଦେଇ, ତତ୍ତ୍ୱ ଦେଇ କିମ୍ବା ଯୁକ୍ତି ସାହାଯ୍ୟରେ କବି ସତ୍ୟକୁ ଖୋଜନ୍ତି ନାହାନ୍ତି । ସେ ଜୀବନର ସତ୍ୟକୁ ଖୋଜୁଛନ୍ତି ଜୀବନକୁ ହାଡେ ହାଡ଼େ ବଞ୍ଚି । ବଞ୍ଚିବାର ଅନ୍ୟନାମ କମଳାକାନ୍ତଙ୍କ କବିତା । ତେଣୁ ଏ କବିତାରେ କୃତ୍ରିମ ଝଲକ ନାହିଁ, ଅଛି ବଞ୍ଚିବାର ଜଞ୍ଜାଳ ଅନାଟକୀୟତା । ଭିନ୍ନତା, ଉଦାରତା ଓ ଜଟିଳତା ।

କବିଙ୍କର ଜଗତ ଖୁବ୍ ବ୍ୟାପକ । ଅନୁଭୂତିର ଭିନ୍ନତାକୁ କବି କବିତାରେ ରୂପ ଦେବାକୁ ଚେଷ୍ଟା କରିଛନ୍ତି । କବିଙ୍କ ପାଖରେ କାବ୍ୟିକ ଜଗତ ଅବା କାବ୍ୟିକ ବିଷୟବସ୍ତୁ ବୋଲି ବୋଧ ହୁଏ କିଛି ନାହିଁ । ସବୁ ବସ୍ତୁ, ସବୁ ଅନୁଭୂତି ତାଙ୍କ ପାଖରେ କବିତା । କବି ଗୋଟିଏ ଗୋଟିଏ ମନସ୍ଥିତିକୁ ଅତି ନିଖୁଣ ଭାବରେ ରୂପ ଦେବାରେ ସମର୍ଥ ହୋଇଛନ୍ତି । ତେଣୁ କମଳାକାନ୍ତଙ୍କ କବିତାରେ ମିଳିଥାଏ ଗୋଟିଏ ପ୍ରକାରର

ମତ ଅଭିମତ ଭିନ୍ନମତ ॥

ମୁକ୍ତ । ଏ ମୁକ୍ତ କବିତାର ପାରଂପରିକତାରୁ । ଏହି ବିଷୟବସ୍ତୁର ଭିନ୍ନତା ଭିତରେ ଛପି ରହିଛି କବିଙ୍କ ଉଦାର ଦୃଷ୍ଟିଭଙ୍ଗୀ । ଏ ଉଦାରତା କେବଳ ଅନୁଭୂତି ପ୍ରତି ନୁହେଁ ପ୍ରକାଶଭଙ୍ଗୀ ପ୍ରତି । ନିଜର ମାଧ୍ୟମ ପ୍ରତି । ଏବଂ ଶେଷରେ ଅନୁଭୂତିର ଜଟିଳତା । ଏ ଜଟିଳତାର ଗୋଟିଏ ଦିଗ ହେଉଛି ଋଜୁତା, ସୂକ୍ଷ୍ମତା । ଏହା ଅନୁଭୂତିର ନୂଆ ଦିଗକୁ ଖୋଜି ପାଏ, ପୁଣି ଅତି ପରିଚିତ ଅନୁଭୂତିର ସୂକ୍ଷ୍ମ ଦିଗଗୁଡ଼ିକୁ ନୂଆ ଭାବରେ ଚେତାଇ ଦିଏ । ତେଣୁ ଏ ଜଟିଳତା ଅର୍ଥର ଦୁର୍ବୋଧ୍ୟତା ନୁହେଁ, ଅନୁଭବର ଗଭୀରତା ସହ ସଂପର୍କିତ ।

ଏହି ଦୃଷ୍ଟିରୁ କମଳାକାନ୍ତଙ୍କ ସୃଷ୍ଟି ସମ୍ଭାରର ବିଚାର କରିବା ଉଚିତ । ମୋ ଦ୍ୱାରା ଏପରି ବିଚାର ବୋଧହୁଏ ସହଜ ନୁହେଁ । କାରଣ ମୁଁ ତାଙ୍କର ଅତି ନିକଟ । ତେଣୁ ସମାଲୋଚନା ପାଇଁ ଯେଉଁ ଦୂରତାର ପ୍ରୟୋଜନ ମୋ ପାଖରେ ତାହା ନାହିଁ । ତେଣୁ ଏ ପ୍ରବନ୍ଧ କବିଙ୍କ ସୃଷ୍ଟି ପ୍ରତି ଆଉ ଜଣେ କବିର ସାମଗ୍ରିକ ପ୍ରତିକ୍ରିୟା । ଏ ପ୍ରତିକ୍ରିୟା ଭଲ ପାଇବାର, ଗ୍ରହଣ କରିପାରିବାର । ତେଣୁ ଏହା ଏକ ଆବେଗମୟୀ ମତ ହୋଇପାରେ, କେବେହେଲେ ଅବୈଜ୍ଞାନିକ ବିଶ୍ଳେଷଣ ନୁହେଁ । ଏହି ଦୃଷ୍ଟିରୁ ଏ ପ୍ରବନ୍ଧକୁ ଗ୍ରହଣ କରିବାକୁ ଅନୁରୋଧ ।

ମୁଁ ପୂର୍ବରୁ କହିଛି ଏକ ପ୍ରକାର ଅନ୍ୱେଷା ହେଉଛି କମଳାକାନ୍ତଙ୍କ କବିତାର ପ୍ରାଣ । ଏ ଅନ୍ୱେଷାର ଦୁଇଟି ଦିଗ । ଗୋଟିଏ ଜୀବନାନୁଭୂତିର ବିଭିନ୍ନତା ଏବଂ ସୂକ୍ଷ୍ମତା ଏବଂ ଅନ୍ୟଟି ପ୍ରକାଶଭଙ୍ଗୀର ଋଜୁତା ପ୍ରତି ଅନ୍ୱେଷା । ଏହି ଅନ୍ୱେଷାହିଁ ତାଙ୍କ କବିତାରେ ଆଣି ଦେଇଛି ଏତେ ପରୀକ୍ଷା—କବିତାର ଆଙ୍ଗିକରେ, ଭାଷାର ସଫଳ ବ୍ୟବହାରରେ । ଏପରି ଅନ୍ୱେଷା ଭିତରେ କବି ଚେତନାରେ ଆମେ ପାଉଁ ଗୋଟିଏ ଦ୍ୱନ୍ଦ୍ୱ । ସେ ଦ୍ୱନ୍ଦ୍ୱ ହେଉଛି ବୁଦ୍ଧି ଏବଂ ଆବେଗ ଭିତରେ, କବିତାର ଆଙ୍ଗିକ ଓ ଅନୁଭବର ସତ୍ୟଶୀଳତା ଭିତରେ । ଏହି ଦ୍ୱନ୍ଦ୍ୱ ତାଙ୍କ କବି ଜୀବନର ମୂଳରୁହିଁ ଦେଖା ଦେଇଥିଲା । କବିଙ୍କର 'ଉତ୍ତରଣ' ୧୯୬୬ରେ ଆମେ ପାଉଁ ଏହି ଦ୍ୱନ୍ଦ୍ୱ । ପ୍ରଥମ ଦ୍ୱନ୍ଦ୍ୱ, ଯୁକ୍ତି ଏବଂ ଆବେଗ, ଅନ୍ୟଟି ହେଉଛି କବିତାର ଆଙ୍ଗିକ । ଅର୍ଥାତ୍ ଲିରିକ୍ ଧର୍ମୀ ଶ୍ରେଷ୍ଠ କବିତା ଏବଂ ସଚେତନ ଦୀର୍ଘ କବିତା "ନିଜ ସହ ଗୋଟେ ସାକ୍ଷାତକାର' (୧୯୭୮) ରେ ମଧ୍ୟ ଏହି ଆଙ୍ଗିକ ସଚେତନତା । "ଉତ୍ତରଣ"ରେ କବିଙ୍କର ଶବ୍ଦ ସଚେତନତା, ତାଙ୍କର କୃତ୍ରିମ ଶବ୍ଦ ପ୍ରୟୋଗ, ଏବଂ ଭାବକୁ ଯୁକ୍ତିଦ୍ୱାରା ବାନ୍ଧି ରଖିବାର ପ୍ରଚେଷ୍ଟା କବିତାଟିକୁ ବୁଦ୍ଧି ଏବଂ ପାଣ୍ଡିତ୍ୟର ଝଲକ ଭାବରେ ପ୍ରତିଷ୍ଠିତ କରିଥିଲାବେଳେ ମନକୁ ଛୁଇଁବାରେ

ଅସଫଳ ହୋଇଥିଲା ବୋଲି ମୋର ବ୍ୟକ୍ତିଗତ ମତ । କବିତା ଶବ୍ଦର ଚୁଲଚିରା ବୌଦ୍ଧିକ ବ୍ୟବହାରରେ ଶ୍ରେଷ୍ଠ ନୁହେଁ, ଆବେଗାନୁଭୂତିରେ ଆପ୍ଳୁତ ହୋଇ ଶବ୍ଦ ମ୍ୟାଜିକ୍‌ରେ ପରିଣତ ହୁଏ । 'ଉତ୍ତରଣ'ରେ ଶବ୍ଦ ଏହି ସ୍ତରକୁ ଉଠି ପାରି ନାହିଁ । ମାତ୍ର ଏହା ଏକ ସଚେତନ ପରୀକ୍ଷା ଭାବରେ ନିଶ୍ଚିତ ଗୃହୀତ ହେବ । ଏହାହିଁ ପରବର୍ତ୍ତୀ କମଳାକାନ୍ତଙ୍କୁ ଗଢ଼ିବାରେ ସହାୟକ ହୋଇଛି । ତାଙ୍କ ସାକ୍ଷାତକାରରେ କବି ଅଦ୍ଭୁତ ଭାବରେ ଭାବରେ ଆବେଗକୁ ଧରି ରଖିବାରେ ଆଙ୍ଗିକ-ସଫଳ ହୋଇ ପାରିଛନ୍ତି । ଏହି ଆବେଗ ସୃଷ୍ଟି କରିଛି କବିଙ୍କ 'ଅହଂ'ର ବିଭିନ୍ନ ସତ୍ତା । ଏହି ବିଭିନ୍ନ ସତ୍ତା ଭିତରେ ତାଙ୍କ ଭିତରର କବିଟି କିନ୍ତୁ ଗୃହୀଛି – "ଗୋଟିଏ ନିହାତି ନିର୍ମମ ମୁହୂର୍ତ୍ତ" କିମ୍ବା 'ଗୋଟିଏ ନିହାତି ନିକୁଛା, ଅସଂଭବ ପଣିଆ ମଗଜକୁ" ଧରି ରଖିବାକୁ । ସେ ଗୃହୀଛି କେମିତି "କବିର କବିତାକୁ ନକଲି ଆସୁଛି ସତ ସତିଆର ଡ଼ାକ" ।

'ଏହି ସତ ସତିଆର ଡ଼ାକ'ର ଅନ୍ୱେଷା କମଳାକାନ୍ତଙ୍କ କବିତା । ଏହାର ଅନ୍ୱେଷା ତାଙ୍କ କବିତାର ବିବରଣ । ଆଙ୍ଗିକ, କୃତ୍ରିମତାରୁ ମୁକ୍ତିର ପ୍ରୟାସ ହିଁ ତାଙ୍କ କବିତାର ସଫଳତା । ତେଣୁ 'ଉତ୍ତରଣ'ର ସଚେତନ ଆଙ୍ଗିକବୋଧ ପରବର୍ତ୍ତୀ କବିତାରେ ଦେଖା ନ ଦେଇ କେମିତି ସ୍ୱାଚ୍ଛନ୍ଦ୍ୟ ଆଡ଼କୁ ଗତି କରିଛି । ଏହି ସ୍ୱାଚ୍ଛନ୍ଦ୍ୟ ଆଜି ହୋଇଯାଇଛି ତାଙ୍କ କବିତାର ନିଜସ୍ୱ । ପ୍ରଥମ ଶବ୍ଦ ସଚେତନତା ପରବର୍ତ୍ତୀ କାଳରେ ତାଙ୍କୁ ଶବ୍ଦ ପଣ୍ଡିତ ନୁହେଁ, ତାଙ୍କୁ ଶବ୍ଦ-ସଖାରେ ପରିଣତ କରିଛି । ଏହି ଶବ୍ଦ ବ୍ୟବହାର ଧୀରେ ଧୀରେ ବୃଦ୍ଧି ପ୍ରାପ୍ତ ନୁହେଁ, ପ୍ରାଣ ସ୍ପନ୍ଦନରେ ଭରପୂର ହୋଇ ଉଠିଛି । ଶବ୍ଦ ବ୍ୟବହାରରେ କବି ହୋଇ ଉଠିଛନ୍ତି ଅଧିକ ସରଳ, ଅଧିକ ସାହସିକ । କଥିତ ଭାଷାର ସ୍ତରକୁ ତାଙ୍କ କବିତା ଚାଲି ଆସିଛି । ଏବଂ କଥିତ ଭାଷାର ସବୁ ଶକ୍ତିକୁ ସେ ତାଙ୍କ କବିତାରେ ବିନିଯୋଗ କରିବାରେ ସଫଳ ହୋଇ ପାରିଛନ୍ତି । ଏହି ଶବ୍ଦବୋଧ କମଳାକାନ୍ତଙ୍କ ବିଶେଷତ୍ୱ ।

କମଳାକାନ୍ତଙ୍କ କବିତାରେ ଶବ୍ଦର ବ୍ୟବହାର ପରି ଚିତ୍ରକଳ୍ପର ବ୍ୟବହାର ମଧ୍ୟ ଦୃଷ୍ଟି ଆକର୍ଷଣ କରିଥାଏ । ଏହି ଚିତ୍ରକଳ୍ପ ବ୍ୟବହାରରେ କବି ଗୋଟିଏ ମନସ୍ଥିତିକୁ ଛବିଟିଏ କରି ଥୋଇ ଦିଅନ୍ତି । ମାତ୍ର ଅନେକ ସମୟରେ ଗୁଡ଼ାଏ ଛବିର ବ୍ୟବହାର ମନସ୍ଥିତିକୁ କେମିତି ଅସ୍ପଷ୍ଟ କରିଦିଏ । ଏମିତିକି ବେଳେବେଳେ ଦୁର୍ବଳ ମଧ୍ୟ ଗୁଡ଼ାଏ ମସଲି ପଡ଼ିଲେ ଯେମିତି ତରକାରୀ, ଅଧିକ ଦୁଧ ଏବଂ ଚିନି

ମତ ଅଭିମତ ଭିନ୍ନମତ ||

ପଢ଼ିଲେ ଯେମିତି ଗୀ'ର ସ୍ୱାଦ ନଷ୍ଟ ହୁଏ ସେମିତି । ଶବ୍ଦ ଚୟନର ଅଧିକ ପ୍ରୟୋଗ ମୋ ମତରେ କମଳାକାନ୍ତଙ୍କର ଏକ ଦୁର୍ବଳତା । ଚୟନର ପ୍ରେମରେ ପଡ଼ି ସେ ଅନେକ ସମୟରେ କବିତାଟିକୁ ଦୁର୍ବଳ କରି ଦିଅନ୍ତି ।

ଏ ସବୁ ଦୁର୍ବଳତା ସତ୍ତ୍ୱେ କମଳାକାନ୍ତଙ୍କ କବିତା ମନକୁ ଛୁଏଁ । ମନକୁ ଛୁଏଁ ତାର ସୂଚନା ଧର୍ମିତା ଯୋଗୁଁ । ତାଙ୍କର ସୂଚନାଧର୍ମୀ କବିତାଟିଏ ହେଉଛି 'ବିଲ୍ୱମଙ୍ଗଳ' ଏଥିରେ ପ୍ରେମ, ପାପ, ରହସ୍ୟମୟତା ସବୁ କେମିତି ସୂଚିତ । ଏଠାରେ ଛବିର ଗଦା ନାହିଁ, ମାତ୍ର ଗୋଟିଏ କେନ୍ଦ୍ର ଛବିରେ ଚେତନାର ବିଭିନ୍ନ ସ୍ତରକୁ ଛୁଇଁ ପାରିବାର ଦକ୍ଷତା ଏ କବିତାଟିରେ ଅଛି । 'ଅକାତକାତ ପାଣିରେ/ଭାସି ଯାଉଥିବାବେଳେ ସମୁଦ୍ରର ମଝିକୁ, ହଠାତ୍/କୂଳରୁ ଭାସି ଆସିଲା/ସୁନା ଖଣ୍ଡିକା ପରି/ଗୋଟେ ଡ଼ଙ୍ଗା/ଡଙ୍ଗା ନୁହଁ ତ ସାପ/ଜିଭ ହଲାଇ ଫଁ ଫଁ ଫୁତ୍କାରରେ କହିଲା/ 'ମଙ୍ଗଳ, ଶବ ପିଠିରେ/ବସିଯାଅ । ପାଣିର ଅଥଳତାରେ ତ ମୋ' ଘର ।'' ଏଠାରେ ସମୁଦ୍ର, ସାପ, ପାଣି, ଡ଼ଙ୍ଗା ଓ ସୁନା ଖଣ୍ଡିକା ସବୁ କେମିତି ପ୍ରେମ, ଦେହ ସବୁକୁ ଏକାକାର କରି ଦେଉଛି । ଅଳ୍ପରେ ବେଶି କହିବାର ଏହା ଏକ ସଫଳ ଉଦାହରଣ । କବିଙ୍କର ବର୍ତ୍ତମାନର କବିତା ଏହି ସ୍ତରକୁ ଆସିଛି ।

ଜୀବନହିଁ କମଳାକାନ୍ତଙ୍କ କବିତା । ଏ କବିତା ଗ୍ରହଣରେ । ଆଜି ଆଉ ତାଙ୍କ ଜୀବନ ଏବଂ କବିତା ଭିତରେ ବୌଦ୍ଧିକତା, ପାଣ୍ଡିତ୍ୟ ପାଚେରି ପରି ଛିଡ଼ା ହୋଇନାହିଁ । ଏକ ସଙ୍ଗୀତମୟୀ, ସ୍ୱାଭାବିକ ଅଥଚ ଚମତ୍କାରିତାମ ଉଚ୍ଚାରଣହିଁ ଆଜିର କମଳାକାନ୍ତଙ୍କ କବିତା । ଏହା ଉଦାର ଭାବରେ ସବୁ ଗ୍ରହଣ କରେ । ନିଆ ନୁହେଁ, ସହଣୀଳ ଭାବରେ ସବୁ କହିବାକୁ ଚାହେଁ । ତାଙ୍କ କବିତା ତ ନିଷ୍କପଟ କାମ ପରି ଅନ୍ତରଙ୍ଗ ।

ଆଜି ଆମେ ସବୁ କବି ଆଉ କ'ଣ ଚାହୁଁଛୁ ? ଆମେତ ସବୁ ଚାହୁଁ — ''ଯଦି ନକ୍ଷତ୍ରମାନେ ଆଖିର ଦାଢ଼ରୁ/ଅସ୍ପଷ୍ଟ ଶବ୍ଦ ଖୁଣ୍ଟିବା ହୁଏ........''

**ସୌରୀନ୍ଦ୍ର ବାରିକ**

ଭୁବନେଶ୍ୱର, ୭ । ୩ । ୮୯

# 'ଖସିବାର ବେଳ' : ଏକଲା ମଣିଷ ଓ ବନ୍ଦୀ ଈଶ୍ୱର

କମଲାକାନ୍ତଙ୍କ ସୃଷ୍ଟି ପର୍ଯ୍ୟାୟରେ 'ଖସିବାର ବେଳ' ଦ୍ୱାଦଶ କବିତା ସଂକଳନ । ଏହା ୧୯୮୦ ମସିହାରେ ପ୍ରକାଶ ପାଏ । ଗ୍ରନ୍ଥର ନାମକରଣରୁ ଦୁଃଖାନୁଭବ ଓ ଅଧଃପତନର ଛନ୍ଦ ସ୍ପଷ୍ଟ । ବିଶ୍ୱର ହତାଶା ଓ ବ୍ୟର୍ଥତା ଜନିତ ବିମୂର୍ତ୍ତତାକୁ କବି ତୀବ୍ର ଭାବରେ ଅନୁଭବ କରିଥିବାର ଅନୁମିତ ହୁଏ । ଏହି ସାଙ୍କେତିକ ସତ୍ୟାନୁଭବର କାବ୍ୟିକ ପରିପ୍ରକାଶ ଓ ସତ୍ୟର ପ୍ରତିଷ୍ଠା ବ୍ୟକ୍ତି ଜୀବନ ଦେଇ ଅତୀନ୍ଦ୍ରିୟ ରାଜ୍ୟର ସୀମାକୁ ସ୍ପର୍ଶ କରିଛି । ରହସ୍ୟଧର୍ମିତା ତେଣୁ ଏଥିରେ ଏକ ମୁଖ୍ୟ ସ୍ୱର । ଅଭିବ୍ୟକ୍ତିରେ ଭାବ କେତେକାଂଶରେ ଆବୃତ୍ତ ହେଲେ ହେଁ ଆତ୍ମିକ ଆବେଦନ ପରିଷ୍କାର ଓ ପ୍ରାଞ୍ଜଳ । ଏହି ସଂକଳର 'ଏକା ଏକା' କବିତାରୁ ସ୍ଥିତିବାଦୀ ଚେତନାର ସ୍ୱରୂପ ଧରାପଡେ । ଏଡ଼େ ବଡ଼ ପୃଥିବୀରେ ମଣିଷ କିପରି ଏକେଲା ଓ ଅସହାୟ ତାହା କବିତାଟିରେ ସ୍ପଷ୍ଟ । ଦୁନିଆଁର ବ୍ୟକ୍ତି ମଣିଷ ପାଇଁ ଆଜି କିଛୁ ସଯାନୁଭୂତି ନାହିଁ । ସେ କେବଳ ଏକକ ଓ ନିଃସଙ୍ଗ ଯାତ୍ରୀ । ଘରଠୁଁ ବାହାର ପର୍ଯ୍ୟନ୍ତ ସବୁଠି ମଣିଷର ଭିଡ଼ । ଅଥଚ ମଣିଷ ଏକା ଏକା ବଞ୍ଚେ ଓ ବଞ୍ଚିବାକୁ ବାଧ୍ୟ । କାରଣ ଆଜିର ପୃଥିବୀ ହତାଶ୍ୱାସର ଅଥଳତଳ ପାଣିଘେର ଭିତରେ ବନ୍ଦୀ ! ସାପର ଜିଭରେ ତାର କମ୍ପିତ୍ତ ହସର ଲହର ! ଘୋ ଘୋ ଶବଦ ସୁଅରେ ଭାସି ଯାଉଥିବା କୁଟାଖିଏ ପରି ନା'ର ଆଶା, ଆଶ୍ୱାସନା ଓ ସନ୍ତୋଷ ! ଏଠି ନିଜର ଆତ୍ମୀୟମାନେହିଁ ଶତ୍ରୁ ! (ମଣିଷକୁ ମଣିଷ ଆଜିକି କହେ ବୋଲି/ପ୍ରତିଟି କଥାରେ ପ୍ରତି ବାହାଦୁରରେ ଜାତିମାନେହିଁ ଶତ୍ରୁ) । ଶତ୍ରୁତାର ରାଜଛତ୍ର ତଳେ ଆଶ୍ରିତ ମଣିଷର ଭାଗ୍ୟ । ବନ୍ଧୁତ୍ୱର ସାନ୍ତ୍ୱନା, କୃତଜ୍ଞତାର ମୁଦ୍ରା ସବୁ ଏଠି ଗୋଟିଏ ଗୋଟିଏ ପ୍ରହେଳିକା । ଏକଲା ମଣିଷର ବ୍ୟାକୁଳତା ପାଇଁ ସେ ନିଜେ ହିଁ ତାର ସୌହାର୍ଦ୍ଦର ସଂବୋଧନ । "ପବନ ସାଥେ ପବନକୁ/ମିଶାଇ କର୍କିଟ୍ ବନ୍ଧୁତ୍ୱର ଶୁଙ୍ଖଳ/ଯେ ଗଢ଼େ ସେ ସାନ୍ତ୍ୱନାର ପ୍ରଥମ ଶତ୍ରୁ ।" ଅଥବା "ସମଗ୍ର ପୃଥିବୀ ବିରୁଦ୍ଧରେ/ଠିଆ ହେଇଛି ସେଇ ଶତ୍ରୁର ରାଜଛତ୍ର/ହୋ ହା, ଘୋ ଘାରେ କଂପୁଚି/ଚିହ୍ନନ୍ତି ଜଗତ :" (ଏକା ଏକା-ପୃ: ୫୦)

'ମୁଁ ଓ ଈଶ୍ୱର' କବିତାଟି ମଧ୍ୟ ପାର୍ଥିବତା ଓ ଅଲୌକିକତାର ଏକ ବାସ୍ତବତାଧର୍ମୀ ବୌଦ୍ଧିକ ବିଶ୍ଳେଷଣ । ଯୁଗେ ଯୁଗେ ଅଦୃଶ୍ୟ ଈଶ୍ୱର ହିଁ କବି

ପ୍ରାଣକୁ ଆନ୍ଦୋଳିତ କରନ୍ତି । କବି କମଲାକାନ୍ତଙ୍କ ଈଶ୍ୱର ଏକ ଭିନ୍ନ ସମୟର ପରିବର୍ତ୍ତିତ ପରିସ୍ଥିତିର, ମାନବିକ ସଂକଟ ଜନିତ ମୂଲ୍ୟବୋଧର ଏକ ନବୀକୃତ ରୂପାୟନ । କବିର ଅବଚେତନ ମନରେ ଥିବା ଈଶ୍ୱର ସଂପର୍କିତ ଅବୋଧ ଧାରଣା ଏହି କବିତାରେ ପ୍ରତିଫଳିତ । ଅଲୌକିକତା ନୁହେଁ ଲୌକିକତାହିଁ ଈଶ୍ୱରୀୟ ଚେତନାକୁ ଚିହ୍ନଟ କରିବାରେ ସମର୍ଥ । ଈଶ୍ୱର ବୋଧହୁଏ କବି ଦୃଷ୍ଟିରେ ଅସହାୟ ମଣିଷର ଏକ ସୁନ୍ଦର କଳ୍ପିତ ରୂପ । ଯାହାଙ୍କର ପ୍ରଭାବରେ ମୁହଁରେ ତାଲି ପଡ଼େ, ହାତ ଆପେ ଆପେ ଯୋଡ଼ି ହୋଇଯାଏ । କବି ଦୃଷ୍ଟିରେ ସେ ଗାଁ ମୁଣ୍ଡ ଧୂଳି ଭରା ରାସ୍ତାର ସାମାନ୍ୟ ପଥର ଖଣ୍ଡେ । ମଣିଷର ବିକୃତ ଚିନ୍ତାର ଭାରାକ୍ରାନ୍ତ ସୁନାର ମନ୍ଦିର । ଏକ ସମ୍ଭ୍ରାନ୍ତ ସନ୍ତ୍ରାନ୍ତ ଜାକୁଷ୍ଟ ଶାଳଗ୍ରାମ । କବି ମଣିଷର ଅସହାୟତା ସହ ଈଶ୍ୱରର ଅଭିନ୍ନତା ଏଠି ସ୍ପଷ୍ଟ । ଈଶ୍ୱରଙ୍କୁ ଗୋଟେ ଡ଼ରକୁଲା ଶ୍ୱନ୍ ଚଢ଼େଇ କହିବାରେ କବି ଈଶ୍ୱରଙ୍କ ସ୍ଥିତି ସଂପର୍କିତ ପ୍ରଶ୍ନହିଁ ଗଢ଼ିଛନ୍ତି । ଈଶ୍ୱର ମଣିଷର ପାପ ଓ ପୁଣ୍ୟର, କର୍ମ ଓ ଅପକର୍ମର ଏକ ଧାରାବାହିକ ପରିଚର୍ଯ୍ୟା । ସେ କୌଣସି ଶୂନ୍ୟ ସ୍ୱରୂପ ନୁହନ୍ତି । ବରଂ ମଣିଷ ଦୁଃଖର ମାଲିକ ଓ ସୁଖର ଅଂଶୀଦାର । ସାଂପ୍ରତିକ ପରିବର୍ତ୍ତିତ ସମୟର ମୂଲ୍ୟ-ବୋଧରେ କବିଙ୍କର ଈଶ୍ୱର ସଚେତନତା ଆଧୁନିକ ସ୍ଥିତିବାଦୀ ମଣିଷର ରହସ୍ୟ ଉନ୍ମୋଚନରେ ସାହାଯ୍ୟ କରେ ।

କବି ଶ୍ରୀ ଲେଙ୍କାଙ୍କ କବିତା ଅନେକାଂଶ ଅନ୍ତର୍ମୁଖୀ ଓ ଆତ୍ମମଗ୍ନତାରେ ଉଚ୍ଛନ୍ନ । 'ଅନ୍ଧ' କବିତାରେ (ପୃ ୨୫) "ହାତ ବଢ଼ାଇଲେ ନା ହାତ/ଗୋଡ଼ ବୁଡ଼ାଇଲେ ନା ଗୋଡ ପାଉଛି ଯେ, ସେ ପହଁରୁଚି ତ ପହଁରୁଚି ।" ସେହିପରି 'ମଞ୍ଚ' କବିତାରେ କେତୋଟି ଦୁର୍ବୋଧ୍ୟ ଶବ୍ଦ ମାଧ୍ୟମରେ ମଣିଷର ଆକୁଳ ଅସହାୟତାକୁ ସେ ସୂଚେଇ ଦେଇଛନ୍ତି । "ରେ ଦେବଶୋହାଗୀମାନେ, ଦବୁ ଢକ୍କାଣ୍ଟାର ଧୈର୍ଯ୍ୟକୁ ଆସ୍ତେ ଗୁପିଦିଅ/ଭୂମ ଚନ୍ଦ୍ରାର ଦାନ୍ତଡ଼ା ଗୋଇଠିରେ" କିମ୍ବା "ଅନ୍ଧାରରେ ବସି/କିଛି ନିଶୂନ ସ୍ତବ୍ଧତାର କେନ୍ଦ୍ରରେ/ପାକୁଳି/ କରିବା କ'ଣ ଲୋଡ଼ା ।"

ତଥାପି ମଣିଷ ସ୍ୱପ୍ନ ଦେଖେ । ଅନ୍ଧାରର ନଈରେ ପହଁରେ । ଜୀଇବାର ଉଦଗ୍ର ଇଚ୍ଛାରେ ସମସ୍ତ ସ୍ୱପ୍ନକୁ ଜାବୁଡ଼ି ଧରେ । କବି ଭାଷାରେ—"କୌଣସି ଭିକାରି ନ ଫେରେ ଶୂନ୍ୟ ହାତେ, ବ୍ୟାଧିଗ୍ରସ୍ତ ଯନ୍ତ୍ରଣାରେ/ପ୍ରତିଟି ଛୁଆଙ୍କ ଓଠରୁ

ମନ୍ତ୍ର ଝରୁ/ଦୁଃଖ ଏବଂ ଦୁର୍ବିପାକ ହତାଶାର ଅରଣ୍ୟରେ ।" ପୃଥିବୀରେ ହତାଶା, ଦୁଃଖ, ନିଃସଙ୍ଗତା ଓ ଅସହାୟତା ରହିବ ହିଁ ରହିବ । ସେହି ହତାଶାର ଅରଣ୍ୟରୁ ବଞ୍ଚିବାର ମାଧୁର୍ଯ୍ୟ ସଂଗ୍ରହ କରି ପୃଥିବୀର ସକଳ ମାନବଗୋଷ୍ଠୀ ପାଖରେ ଅର୍ପଣ କରିବାକୁ ହେବ । ଏହାହିଁ କବିର ଏକ ନୈତିକ କର୍ତ୍ତବ୍ୟ । ଆଶଙ୍କା ଓ ବିଫଳତାରେ ଜର୍ଜରିତ ମଣିଷକୁ ଆହୁରି ଅଧିକ ହତାଶ କରିବାର ଅର୍ଥ ମାନବାତ୍ମା ପ୍ରତି ଏକ ବିଶ୍ୱାସଘାତକତା । ସ୍ୱୀକୃତ ଯେ କବିତା ନିଜେ ସେହି ଜାଗତିକ ହତାଶାର ଅଂଶୀଦାର । ତଥାପି ଶିବଙ୍କ ଭଳି ନୀଳକଣ୍ଠ ସାଜି ସମସ୍ତ ଗରଳ ପାନ କରି ଅମୃତ ବାଣ୍ଟିବା କବିର ଦାୟିତ୍ୱ । ତେଣୁ ଆତ୍ମସ୍ଥ ଚେତନାର ଶୁଭ୍ରତର ସକଳ ଟଙ୍କାର— "ନିଃଶେଷ କଲି ଶୋଷକୁ/ଅଥଚ ଶୁଖିଲା ନାହିଁ ସମୁଦ୍ର × × × ଅଥଚ ରକ୍ତ ନିଆଁରେ/ ତାପରେ ଶୀତଳ ହେଲ/ଖାଇବାର ଉତ୍କଣ୍ଠା ।" ମଣିଷର ଏହି ଆଦିମ ଅହଂକାରରୁ ଜନ୍ମ ନେଲେ ଈଶ୍ୱର ଏବଂ ଈଶ୍ୱର ସର୍ଜନା କଲେ ତା' ସ୍ୱପ୍ନସିଦ୍ଧ ତପସ୍ୟାର ଅମୃତ ଫଳ—ମନୁଷ୍ୟ । କମଳାକାନ୍ତଙ୍କ କାବ୍ୟିକ ଉତ୍ତରଣ ପର୍ବରେ ସାଂପ୍ରତିକ ସ୍ଥିତିବାଦୀ ଚେତନାର ଏକ ବଳିଷ୍ଠ ପଂକ୍ତି— "ନାରାୟଣ ନାରାୟଣ ଶବ୍ଦରେ ଉଡ଼ି ଆସେ ନାରଦ" ଭଳି "ଖସିବାର ବେଳ" ଆଜିର ତଥାକଥିତ ଧର୍ମଭିତ୍ତିକ ସମାଜ ଓ ମୂଲ୍ୟବୋଧ ଛଦ୍ମବେଶୀ ମଣିଷ ପାଇଁ ଏକ ଆହ୍ୱାନ, ଏକ ଅନୁଭୂତିସିଦ୍ଧ କାବ୍ୟପୁରୁଷର ନିର୍ଭୀକ ଉଚ୍ଚାରଣ ।

( ତୁଇ )

## ଗୀତ ଗା' ନାରେ ପକ୍ଷୀ :

## ଦୁଃଖର ହ୍ରଦ ଓ ଜୋକର ମଣିଷ—

କମଳାକାନ୍ତଙ୍କ କାବ୍ୟିକ ସାଧନାର ଅନ୍ୟତମ ସଫଳ ସୃଷ୍ଟି 'ଗୀତ ଗା' ନା ରେ ପକ୍ଷୀ' । ଏହାର ପ୍ରକାଶ କାଳ ୧୯୮୨ । କବି ଜୀବନର କବିତ୍ୱ ଜୀବନାନୁଭୂତି ଓ ପରିପକ୍ୱ କାବ୍ୟମାନସର ଏହା ଏକ ମନୋଜ୍ଞ ପରିପ୍ରକାଶ । ୬୭ଟି କବିତାର ପଦ୍ୟଛନ୍ଦ ଓ ମୁକ୍ତଛନ୍ଦ ସମାବେଶ ଏ ସଂକଳନ । ପ୍ରାୟ ଅଧିକାଂଶ କବିତାରେ ଶୈଳ୍ପିକ ମୂଲ୍ୟବୋଧ ଓ ନିଷ୍କପଟ କାବ୍ୟିକ ଅଭିବ୍ୟକ୍ତି ସଂରକ୍ଷିତ । ଅସ୍ତିତ୍ୱବାଦୀ ଚେତନାର ପ୍ରଭାବ କବିତାଗୁଡ଼ିକରେ ସ୍ପଷ୍ଟ ।

ମତ ଅଭିମତ ଭିନ୍ନମତ ॥

ମଣିଷର ସ୍ଥିତିକୁ ନେଇ ଯଦି ସ୍ଥିତିବାଦୀ ଚେତନାର ଉଦ୍ଭବ ତେବେ ମଣିଷ ସ୍ଥିତିର ବାସ୍ତବ ସଂଜ୍ଞା କ'ଣ ? ଯେଉଁଠି ଅସ୍ତିତ୍ୱ ସେଇଠାରେ ହିଁ ଅନସ୍ତିତ୍ୱ ଯଥାର୍ଥରେ ଅସ୍ତିତ୍ୱ ହିଁ ଏକ ଦୁର୍ବୋଧ୍ୟ ଶବ୍ଦ ଓ ଅଗମ୍ୟ ଉପଲବ୍ଧି । ଯାହାର ଅସ୍ତିତ୍ୱ ଅଛି ତାହାର ଅନସ୍ତିତ୍ୱକୁ ମଧ୍ୟ କଳ୍ପନା କରାଯାଇପାରେ । ଏହି ଅସ୍ତିତ୍ୱ ଓ ଅନସ୍ତିତ୍ୱର ସଂଘର୍ଷରୁ ସ୍ଥିତିବାଦୀ ଚେତନାର ସୃଷ୍ଟି । ଏହି ଉପଲବ୍ଧି ମାଧ୍ୟମରେ ନିଜେ ନିଜକୁ ଆବିଷ୍କାର କରିବା ବୋଧହୁଏ ସ୍ଥିତିବାଦୀ ଦର୍ଶନର ମୂଳସ୍ୱର । ଯାନ୍ତ୍ରିକ ସମାଜ ଓ ସମୟର ଜଟିଳତା ମଧ୍ୟରେ ଅଣନିଃଶ୍ୱାସୀ ମଣିଷ ସ୍ୱାଧୀନ ଭାବରେ ବଞ୍ଚିବାକୁ ଚେଷ୍ଟା କରେ ଧର୍ମ ଓ ଈଶ୍ୱରର ଦୁହାଇରେ ଆତ୍ମପ୍ରବଞ୍ଚନା । କଷ୍ଟ ଭୋଗକରେ । ଜୀବନର ସମସ୍ତ ଯନ୍ତ୍ରଣାକୁ ଅଙ୍ଗୀକାର କରି ସତ୍ୟ-ଶିବ-ସୁନ୍ଦରର ବାର୍ତ୍ତା ପ୍ରଚାର କରିବା ଆଉ ଏବର କାବ୍ୟ କବିତାର ମୁଖ୍ୟ ବିଷୟ ନୁହଁ । ବରଂ ଅସୁନ୍ଦର, ଅଶିବ ଓ ଅସତ୍ୟ ଭିତରେ ଜୀବନର ସାମଗ୍ରିକ ସୌନ୍ଦର୍ଯ୍ୟ ସନ୍ଧାନ କରିବା ଓ ତତ୍ସଙ୍ଗେ ସଙ୍ଗେ ନୈରାଶ୍ୟ ଓ ବିଷାଦବୋଧରୁ ପାରମାର୍ଥିକ ମୁକ୍ତି ଲାଗି କାବ୍ୟଚେତନାକୁ ଉନ୍ମୁଖ ରଖିବା ଏକ ଶକ୍ତିଶାଳୀ, ଆତ୍ମମଗ୍ନ କାବ୍ୟିକ ଅନୁଚିନ୍ତା ରୂପେ ଗୃହୀତ ହୋଇଛି ।

ଜୀବନର ବିଡ଼ମ୍ବନା ଓ ଗଭୀର ସମତ୍ୱବୋଧରେ କବିର ମାନସିକ ଚେତନା ବହୁଧା ଦ୍ୱନ୍ଦ୍ୱାତ୍ମକ ଓ ଅନବରତ ସନ୍ତୁଳିତ । କବିର ଏହି ଚେତନା ସହିତ ସମକାଳୀନ ଜୀବନଧାରା, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ନିବିଡ଼ଭାବେ ସଂପୃକ୍ତ । କବି ଯେତେବେଳେ ନିଜଙ୍କ ଜୀବନର ବାସ୍ତବତା ଦ୍ୱାରା ପୀଡ଼ିତ ଓ ନିଜ ପରିବେଷ୍ଟନୀ ସହିତ ସଂପର୍କ ସ୍ଥାପନରେ ଅକ୍ଷମ, ସେହିଠାରେ ହିଁ ତାଙ୍କ ସାମାଜିକ ସ୍ଥିତି ବିପନ୍ନ ଓ ଦୁଃଖର ହ୍ରଦରେ ଉବୁଟୁବୁ ଅସହାୟ ବ୍ୟକ୍ତି ସତ୍ତା ଜଟିଳ । ଅର୍ଥହୀନ ଜୀବନର ଅର୍ଥ ସନ୍ଧାନରେ ତେଣୁ କାବ୍ୟପୁରୁଷ ବ୍ୟସ୍ତ ଓ ବିବ୍ରତ । ଏହି ବ୍ୟସ୍ତତା କିନ୍ତୁ କବିଙ୍କୁ ଜୀବନ ବିମୁଖ କରି ନାହିଁ, ବରଂ ଜଣେ ଜୀବନ ପ୍ରେମୀ ଓ ଜୀବନ-ସ୍ୱାଦାକାଂକ୍ଷୀ ଲୋକକବି-ମଣିଷ ଭାବେ ତାଙ୍କୁ ଗଢ଼ି ତୋଳିଛି । ପାର୍ଥିବ ଅନୁଭବ ଭିତରେ ବସ୍ତୁବାଦୀ ଦୁନିଆର ଏକ ଅଗ୍ରଗଣ୍ୟ ପ୍ରତିନିଧି ଭାବେ ତାଙ୍କୁ ଠିଆ କରିଛି । ଜୀବନ ଭିତରେ ଥାଇ ଜୀବନ୍ମୃତ ମରଣରେ ଦୁଃଖ ଭୋଗିବା ତେଣୁ ତାଙ୍କର ନିରୂପିତ ଭାଗ୍ୟ !

ଆଲୋକ ସନ୍ଧାନୀ ମଣିଷର ଭାଗ୍ୟ ହଜୁବେଳେ ଦୁଃଖର ଗଭୀର ହ୍ରଦରେ ।

॥ କବି କମଳାକାନ୍ତ

ଅନ୍ଧାରର ଆବର୍ତ୍ତରେ ମୃତକ୍ତ ସେ ନିକ୍ଷିପ୍ତ ଓ ବିବର୍ତ୍ତିତ । ଅମୃତ ଲାଭର ଅଦମ-
ନୀୟ ଆଶା ମୃତ୍ୟୁର ନିଷ୍ଠୁର ପ୍ରତ୍ୟାଶାରେ ନିଶ୍ଚିହ୍ନ ହେବାକୁ ବାସ୍ତବତା ବାଧ୍ୟ
କରେ । ମୃତ୍ୟୁର ଶୀତଳ ଆଲିଙ୍ଗନରେ ଶରାହତ ପକ୍ଷୀଟି ପରି ଜୀବନ ଅସହାୟତାର
ଗୀତ ଶୁଣାଏ । 'ଗୀତ ଗା' ନା ରେ ପକ୍ଷୀ' ସଂକଳନଟି କବିଙ୍କର ଏହି ସମସ୍ତ
ଲକ୍ଷଣ ବିଲକ୍ଷଣକୁ ବହନ କରିଛି । ଅହଂ ସର୍ବସ୍ୱ ମଣିଷର ବ୍ୟର୍ଥତା ଓ ବୃଥା
ଆସ୍ଫାଳନରୁ ମୁକ୍ତ ନ ଥିବା ବେଳେ ପ୍ରାଣପ୍ରାଚୁର୍ଯ୍ୟର ସନ୍ଧାନରେ ନିଜକୁ ଉତ୍ସର୍ଗ
କରିବା ନିଷ୍ଫଳ ଏକ ପରିହାସ । ଅହେତୁକୀ ବିଷାଦବୋଧ ଓ କର୍ମ ଜନିତ
ଅକାରଣ ଈର୍ଷା ଓ ପ୍ରତିଦ୍ୱନ୍ଦିତା କବି କର୍ମରେ ବାଧା ଉପୁଜାଏ । କବି ଦୃଷ୍ଟିରେ
ମଣିଷ ଗୋଟାଏ ଅଭିନୟର ପରିଧିରେ ଆବଦ୍ଧ । ଦୟନୀୟତା ତା'ର ନିଷ୍ଠା ଓ
ନିଃସ୍ୱାର୍ଥ ପରତାର ପୁରସ୍କାର । ଜୀବନର ସର୍ବବ୍ୟାପୀ ଶୂନ୍ୟତା ତାର ଫୁଲମାଳ ।
'ଘୋର ହେଲେ ଜୋକର୍‌ର ହାଡ଼ୁଆ ମୁହଁରୁ ଖସି ପଡ଼ିବ ନିଶ/ଘୋର୍ ହେଲେ
ଜୋକର୍‌ର ମଥାରୁ ଖସି ପଡ଼ିବ ଟୋପର/ଘୋର୍ ହେଲେ ଜୋକର୍‌ର ଓଠରୁ
ତାକୁର୍ ଦୃଷ୍ଟିରେ/ ଗୁହିଁଥିବ ଶବ୍ଦ/ଘୋର୍ ହେଲେ ଶାଂକୁଚ ଲଣ୍ଡରେ/ଆପଣାକୁ
ପିଟିପିଟି ଆପେ ଧକଉଥିବ ।' ( ପ୍ରବୃତ୍ତି—ପୃ ୧୯)

କମଳାକାନ୍ତଙ୍କ ପୃଥିବୀ ସ୍ନେହ ଓ ସ୍ୱାଦର ଏକ କାବ୍ୟିକ ସେତୁ । କାବ୍ୟ-
ପୁରୁଷ ଜୀବନର ଅସହାୟତାକୁ ହାତ ବଢ଼ାଇଛି ଆକାଶୀ ଶୂନ୍ୟତାକୁ ପିଠିରେ
ଗଂଠେଇ ଦେଇ । ଚହଲା ପୃଥିବୀରେ ଅସଂଖ୍ୟ ଚହଲା ମୁହଁ ଓ ଅଚହଲା ବନ୍ଧୁତ୍ୱ ।
ପୁଣି ଅଚହଲା ମାଟିରେ ପରିଚିତ ସ୍ନେହ ଶ୍ରଦ୍ଧାର ପ୍ରବଳ ସମ୍ମୋହନ । ଏହାରି
ଭିତରେ ଧନ୍ଦ ହେଉଥିବା ମଣିଷ ପାଇଁ କ୍ଷଣିକ ରହଣି ଚାଲ ତା' ପାଇଁ ଯେମିତି
ଏକ ପାନ୍ଥଶାଳା । ଆଲୁଅ ନିଭା ଘରର ଉଦାସ ଚୌକିଦାର । ଅନୁପସ୍ଥିତିରୁ
ଉପସ୍ଥିତିର ଉପଲବ୍ଧି ପରି ସବୁ ଉଷରତା ଭିତରେ ବୁନ୍ଦାଏ ହସର ଝଲକ ପାଇବା
ହିଁ ମୁଖ୍ୟ କଥା । ଅନ୍ଧାରମୟ ଅନ୍ଧଗଳିରେ ଆଲୁଅ ସୋପାଏ ଭେଟିଲେ କାବ୍ୟ-
ପୁରୁଷର ସାର୍ଥକତା । ତଥାପି ଜୀବନ ମଣିଷକୁ ବ୍ୟଙ୍ଗ କରେ । ବକ୍ର ପରି ଶେଯରେ
ଶୁଆଇ ନାନାବାୟା ଶୁଣାଏ—

"କା' ପାଟିରେ ଖିଏ କୁଟା ତ,
କା' ମଥାରେ/ଝକ୍‌ମକ୍ ଫୁଟୁଥିବା
ଘିଡ ହାଣ୍ଡିର ଡାଉ ।"

କମଳାକାନ୍ତଙ୍କ କାବ୍ୟପୁରୁଷ ସୃଷ୍ଟିଶୀଳ ପୁନଶ୍ଚ ଜଣେ ଦୁଃସାହସିକ ସଂଗ୍ରାମୀ ଏବଂ ତାଙ୍କ କବିତା 'ପ୍ରୀତମସ୍ୟ ମୁହୂର୍ତ୍ତିର କଲ୍ୟାଣୀର କ୍ଷୀର।" ସେ ଯେମିତି ଅପରସୀମ ଜୀବନର, ତକ୍ର ମଧୁର ଅନୁଭୂତିର ଏକ ସଫଳ ସମନ୍ୱୟ। ନିଜ ସୃଷ୍ଟି ପ୍ରତି ଅଗାଧ ବିଶ୍ୱାସବୋଧ ତାଙ୍କ ସୃଷ୍ଟି ଚେତନାର ମୂଳ କଥା। ମର୍ଗଜୟର ଗ୍ଲାନିରେ ସେ କଡ଼ସଡ଼ ନୁହନ୍ତି କି ଜୟ ଜୟକାରର ଛଳିତ ହସରେ ଉତ୍ଫୁଲ୍ଲ ହୁଅନ୍ତି ନାହିଁ। ଜୀବନ ପ୍ରତି ଅଛି ତାଙ୍କର ତୀବ୍ର ଅଙ୍ଗୀକାରବୋଧ। ଯନ୍ତ୍ରଣା ଓ ପେଷନରୁ ଜୀବନର ନୂଆ ଅର୍ଥବୋଧ ଓ ମୂଲ୍ୟବୋଧ ତଥା ବିଶ୍ୱରବୋଧ ଫୋଲାଇଧରିବା ତାଙ୍କ କାବ୍ୟସାଧନାର ବିଶେଷତ୍ୱ। ଆଜିର ସମାଜ ଜୀବନ ଓ ତାର ପରିପାଶ୍ୱ ପାଇଁ ଏ ପ୍ରକାର ଗଭୀର କାବ୍ୟିକ ଅବବୋଧର ବିଶେଷ ଭୂମିକା ରହିଛି।

ଈଶ୍ୱରଙ୍କ ଅସ୍ୱୀକାର କରି ଆଜିର ମଣିଷର ଦାୟିତ୍ୱ ଯେମିତି ବହୁଗୁଣିତ ହୋଇଛି, ତାର ଅବଚେତନରେ ଈଶ୍ୱରୀୟ ବିଶ୍ୱାସ ସେତିକି ବରଂ ଅଧିକ ପ୍ରତିଷ୍ଠା ପାଇଛି। ଚରମ ମଙ୍ଗଳ ପ୍ରତି ପରିପୂର୍ଣ୍ଣ ଆସ୍ଥା ଓ ଆନ୍ତରିକତା ଧର୍ମାଭୂତ ହୋଇଛି। ସେ ଭଲ ଭାବରେ ଜାଣେ ଯେ ବୃହତ୍ତର ସତ୍ତାର ବିନା ଉପଲବ୍ଧିରେ ଅନ୍ତିମ ମଙ୍ଗଳ ସୁଦୂରପରାହତ। ଜୀବନର ନିଃସଙ୍ଗତା ଓ ବ୍ୟର୍ଥତାରୁ ରକ୍ଷା ପାଇବା ପାଇଁ ଈଶ୍ୱରୀୟ ସତ୍ତାର ଉପଲବ୍ଧି ହିଁ ସର୍ବଶ୍ରେଷ୍ଠ ପନ୍ଥା। ଈଶ୍ୱର ଓ ଅଣଈଶ୍ୱରୀୟ ଚେତନାର ଦ୍ୱନ୍ଦ୍ୱାତ୍ମକ ସ୍ଥିତିରେ କମଳାକାନ୍ତଙ୍କ କାବ୍ୟିକ ବାସ୍ତବ ଚେତନାର ଉଦ୍‌ବଳୟ 'ଗାଁତ ଗାଁ ନାରେ ପକ୍ଷୀ' ଗଳ୍ପଟିକୁ ଆବୋରି ବସିଛି। ଏଠି 'ଗାଁତ'ର ଅର୍ଥ ଇହକାଳରୁ ପରକାଳ ଯାଏଁ ଜୀବନ ଯାତ୍ରାର କରୁଣ, ବିଷାଦ ସଂଗୀତ। ଜୀବନର ବିପୁଳ ଦୂରତ୍ୱ ସହିତ ଅନ୍ତରରେ ଅନନ୍ତର ଉପଲବ୍ଧି ଆହୁରି ତୀବ୍ର ହୋଇଛି। ତାଙ୍କ ଈଶ୍ୱରୀୟ ପ୍ରେମ ଅନତିକ୍ରମ୍ୟ ମୃତ୍ୟୁକୁ ଅତିକ୍ରମ କରିବାର ଏକ ଦୁର୍ବାର ଅଭିଯାନ। ତେଣୁ ବଞ୍ଚିବାର ତୀବ୍ର ଆଗ୍ରହରେ ତାଙ୍କ କାବ୍ୟିକ ସତ୍ୟ ବଡ଼ ନିଷ୍ଠୁର ଭାବେ ଉଚ୍ଚାରିତ: 'ଯେ ସତ୍ୟଟିଏ ଖୋଜେ ତାକୁ ବୁଡ଼ି ମରିବାକୁ ହୁଏ/ଶହ ଶହ ଦେବଦାରୁ ଗଛଙ୍କ ସାମ୍ନାରେ, ଯେ ପ୍ରତିବାଦର/କ୍ଷୀଣ ସ୍ୱରଟିର ଧୁଙ୍ଗୁର, ପିନ୍ଧା ପାରିବୁ/ଉଡ଼ାଇଦିଏ ନୀଳ ଆକାଶ ତଳେ/ତାକୁ ତ ଭୋଗିବାକୁ ହୁଏ ଚଉରାଶି ନର୍କ। ରେ ଦଣ୍ଡଧାରୀ/ ତୋ ରୁଦ୍ରାକ୍ଷମାଳାକୁ ଉହେଇ ଦବାକୁ କହୁ ନାହିଁ ମଣାଣି ଦାଢ଼ରେ।ସାପୁଆ ନଈର ଗଣ୍ଡରେ; ମାନ୍ତ/ଜାଣି ରଖ କାହାରିକୁ କ୍ଷମା ଦିଏ ନାହିଁ, ବଦଳାଇ, ଲୁଚାଇ ରଖେ ନାହିଁ ବର୍ଷୀୟସୀ ବୁଢୀ, ବେଣି କାଳ।'

॥ କବି କମଳାକାନ୍ତ

(ଭିଜୁଲ ପୃ ୯୫) । କାବ୍ୟ ନାୟକ ଜାଣିଛି ତାର ବଞ୍ଚିବାର ଅର୍ଥ ମୃତ୍ୟୁସହ ହାତାହାତି ହେବା । ତା'ର ଅସ୍ତିତ୍ୱର ଶେଷ ପରିଣତି ହିଁ ମୃତ୍ୟୁ । ଜୀବନକୁ ଜୀବନ୍ତ ମରଣ ଭାବି ସେ ବରଣ କରେ ସତ, ତା'ର ସମସ୍ତ ସାଂସାରିକ ଚେତନାକୁ ଏହା ଦ୍ୱିଧାଗ୍ରସ୍ତ କରାଏ— "କିଏ କହିବ ମୁଁ ବଞ୍ଚିଛି ?/ ବଂଚିବାର ମାନେ ଯଦି ନିଶ୍ୱାସ / ଢୋକିବା, ଢେଉ ଗଣିବା, ପହଁରିବା ବା/ ନିଜ ସହ ଲଢ଼ିବା ହୁଏ / ତେବେ କିଏ କହିବ ମୁଁ ବଂଚିନି ?" (କେମିତି ବଂଚିଛି ମୁଁ - ପୃ ୬୫) କବିଙ୍କ ମତରେ ତାଳିପକା ଜୀବନର କିଛି ମାନେ ନାହିଁ, ଠିକ ଯେହିପରି ତାଳିମାରିବା ଓ ପ୍ରତି କଥାରେ ମୁଣ୍ଡ ଟୁଙ୍ଗାରିବା କିମ୍ବା ନିର୍ବିଘ୍ନରେ ସବୁ କିଛିକୁ ମାନି ନେବାରେ ମଣିଷର ମଣିଷତା ନାହିଁ । ତାକୁ 'ମନ୍ଦର, ଅର୍ଥ ବୁଝିବାକୁ ହେବ, ଦୃଶ୍ୟର ନିଃସଂକୋଚ ସରଳତାକୁ ଉପଲବ୍ଧି କରିବାକୁ ପଡ଼ିବ । ମଣିଷର ପ୍ରତିବାଦର ମନ୍ତ୍ର ତା' ନିଜ ଛଡ଼ା ଆଉ କେହି ଶୁଣେ ନାହିଁ । ବୁଢ଼ୀମାର ରକ୍ତ ଧୂଆ ଅନୁଭୂତିର ନିଷ୍ଫଳ ପ୍ରାର୍ଥନା କଳାକୃଷ୍ଣଙ୍କର କମଳ ଆଖିକୁ ଦେଖାଯାଏ ନାହିଁ । ଯନ୍ତ୍ରଣା ଦଗ୍ଧ ମଣିଷର ଅବଶିଷ୍ଟ ଆୟୁଷର ଗହ୍ୱରିଆ ଆଖିକୁ ଶୋକ ଶାଗୁଣାଟିଏ ହୋଇ ବାରମ୍ବାର ଖୁଂପୁଥାଏ । କେବଳ ନିଜ ସପକ୍ଷରେ ବା ବିପକ୍ଷରେ ମଣିଷ ବିଦ୍ରୋହ କରୁଥାଏ । ସେଠି ଈଶ୍ୱରଙ୍କ ଆଶିଷ ପରିବର୍ତ୍ତେ ମୃତ୍ୟୁର ଶୀତଳ ନିମନ୍ତ୍ରଣ ଟହଲୁଥାଏ ମାତ୍ର । "ଯଦି ପାରୁଚ/ନିଜ ବିରୁଦ୍ଧରେ ନିଜେ/ସାକ୍ଷ୍ୟ ଦିଅ ଓ ପାରେ ହେଲେ/ଘୁଂଚ ନାଇଁ ନିର୍ଦ୍ଧାରିତ ଅଷ୍ଟ ନରୁ/ଈଶ୍ୱରଙ୍କ କବର ଉପରୁ ।" (ଯେଉଁଠି ଅଛ ଯେଉଁ ଅବସ୍ଥାରେ— ପୃ· ୭୦) କିମ୍ବା ସବୁଦିନ କେବେ ସମାନ ଯାଏନା ନିଟୁ ଭଳି/ଘୂରୁଥିବା ହସ ଖୁସିର ଆଖଡ଼ାରେ/ଧୂଆଁ ଭଳି ଭାସୁଥିବା ସ୍ୱପ୍ନର ଆଖିଠାରରେ । ଜୀବନର/ହାତଧରି ମୃତ୍ୟୁ/ଗୁଡ଼ ଫୁଲେଇ ବୁଲୁଥିବା ବେଳେ/ଦିନମାନଙ୍କର ବଜ ଦାଣ୍ଡରେ ।" (ସବୁଦିନ ସମାନ ଯାଏନା—ପୃ ୭୩) । ନିଜର ସକଳ ଦୁଃଖକୁ ଦୁଃଖ ବୋଲି କହିହୁଏ ନାହିଁ । କୁଣ୍ଠିପାଏ ନାହିଁ ଜୀବନକୁ ମାପିବାକୁ । କେବଳ ନିର୍ଦ୍ଧାରିତ ଭାଗ୍ୟର ଜୀବନକୁ ଚକ୍ରବ୍ୟୂହର ଖେଳରେ ଭୁଲେଇବାକୁ ପଡ଼େ । ନିଜକୁ ତାଚ୍ଛଲ୍ୟରେ ପୋଡ଼ି ଦେବାକୁ ହୁଏ । ଦୁର୍ଭାଗ୍ୟ, ଦୁଃସ୍ୱପ୍ନ, ଓ ଫାଙ୍କା ଅହମିକାକୁ ଟୁଂଟିବାକୁ ପଡ଼େ ।

ତଥାପି ଜୀବନର ବାଟ ସରେନାହିଁ କି ବାଟୋଇର ଯନ୍ତ୍ରଣା ଶେଷ ହୁଏନାହିଁ । ନିଷ୍ଠୁର ସତ୍ୟର କହ୍ନିକା ଡାଳରେ ଅସହାୟ ନିଃସଙ୍ଗ ମଣିଷ ଲାଲ୍ ଟକ୍‌ମକ୍ କୁଆମଇଁଷାଟିଏ ଭଳି ଝୁଲି ରହେ । 'ବଂଚିଥିବା ଶବ୍ଦମାନଙ୍କ ମଝିରେ କବି' କବିତାଟି ଅସହାୟତାର ଏକ ନିଖୁଣ ପ୍ରତିଛବି । ମଣିଷର ସମସ୍ତ ସ୍ୱପ୍ନ, ଆଶା ଓ ସମ୍ଭାବନା ଲହୁ ଲୁହାଣ ହେବା ପରେ ସେ ଅନୁଭବ କରେ ଯେ ତା' ଅସହାୟତାର ମଧ୍ୟବିନ୍ଦୁ ଈଶ୍ୱର ଅସଂଖ୍ୟ

ପ୍ରଶ୍ନର ଜାଲ ଭିତରେ ବନ୍ଦୀ । ତା'ର ଶ୍ୱାସ ଓ ସାନ୍ତ୍ୱନା ଶୋକର ସଫେଦ୍ ଉତ୍ତରୀୟ ତଳେ ଢାଙ୍କି ହୋଇଯାଏ । ଜଆଭଳି ଧୂମ୍ରର ଧୂସର ଆକାଶକୁ ଶୂନ୍ୟ ହାତ ଟେକାଲେ । କରୁଣା ପାଇଁ ପ୍ରାର୍ଥନା କରେ । ମହୁମାଛିଟିଏ ଭଳି ଅଭିମାନରେ ସାଗ୍ରଦନ ଧ୍ୱନିବୁଲେ । କାବ୍ୟ ନାୟକ ତା'ର ସବୁ ଭଙ୍ଗା ଓ ବିକ୍ଷିପ୍ତ ସ୍ମୃତି, ଯନ୍ତ୍ରଣା ଓ ସମ୍ଭାବନାର ଅକ୍ଷରମୟ ପୃଥିବୀକୁ ଜନ୍ମ ଦେଉଥାଏ । ଈଶ୍ୱରଙ୍କ ଫାଶି ପାଇବା ଦିନ ବୋଧହୁଏ ସେ ସବୁଠୁ ବେଶି ଖୁସିହୁଏ ଓ ସୁରସାଜ୍ଞାରେ ମାତେ ! ସେ ଜାଣିଛି ଈଶ୍ୱର ତା' ପାଇଁ ଏକ ଅପ୍ରୟୋଜନୀୟ ବସ୍ତୁ । ତା' ପାଇଁ ସମ୍ଭାବନାର ପୃଥିବୀ ହେଉଛି ନିଆଁ ଝୁଲରେ ଝଁଟକୁଥିବା ସଙ୍ଗ୍ରାମୀ ଲେମଣ ମୃତ୍ୟୁର ସଂସାର । ଗୋଟିଏ ମୋହର ଶରରେ ଉଭୟ କବି ଓ ଈଶ୍ୱର ଜାଗ୍ ଶବର ଭଳି ଶରବିଦ୍ଧ । ଯେବେ ଈଶ୍ୱରଙ୍କ ଫାଶି ପାଇବା ଦିନ/ଜଡ଼ ମଉଥିଲା ସୁର ଓ ପ୍ରେମରେ/ଜ୍ୟୋତିର୍ମୟ ସ୍ପନ୍ଦାର/ ସ୍ୱାଭାବିକତାରେ ।" (ପୃ. ୮୬) ବାଘ ଓ ଛେଳିର ଖେଳ ଭଳି ମଣିଷର ଭାଗ୍ୟ ତା' ଚରୁଦ୍ଧରେ ଫନ୍ଦ'ଫନ୍ଦ' ଜମାନବନ୍ଦୀର ଛଠା ପ୍ରସ୍ତୁତ କରେ । ପବନରେ ଜୀବନର ମହକ ସବୁ ହଜିଯାଏ । 'ଶୂନ୍ୟ' ସନ୍ଧ ସନ୍ଧକରି ନିଶ୍ୱାସ ମଣିଷ ବାଟ ଭୁଲେ ।

କମଳାକାନ୍ତଙ୍କ ସ୍ଥିତିବାଦୀ କାବ୍ୟ ଚେତନା ପାର୍ଥିବତାରେ ମଣ୍ଡିତ ଓ ଅପାର୍ଥିବ ସୌନ୍ଦର୍ଯ୍ୟବୋଧରେ ଉତ୍ତୀର୍ଣ୍ଣ । ଅପାର୍ଥିବ ମୋହରେ ସେ ଯେତିକି ଆଚ୍ଛନ୍ନ ଭୌତିକତା ପ୍ରତି ସେତିକି ବିତୃଷ୍ଣ ଓ ଆଧିଭୌତିକ ଉପଲବ୍ଧିରେ ଆସ୍ଥାବନ୍ତ । ସାଂପ୍ରତିକ ଓଡ଼ିଆ କବିତାର ଇତିହାସରେ କବି ଶ୍ରୀ ଲେଙ୍କା ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ । ତାଙ୍କର ନିରବଚ୍ଛିନ୍ନ କାବ୍ୟ ସାଧନା ଆଧୁନିକ କବିତା ପାଇଁ ବିଶେଷ ସୁଖ ଓ ସୌଭାଗ୍ୟର କଥା ।

**ଡକ୍ଟର ଶଶଧର ଦାସ**

ଭଦ୍ରକ କଲେଜ, ଭଦ୍ରକ

# ରମାକାନ୍ତଙ୍କ କବିତାରେ ଚିତ୍ରକଳ୍ପ

ଆଧୁନିକ ଜୀବନଚର୍ଯ୍ୟା ପରି ଆଧୁନିକ କବିତା ବହୁ ବର୍ତ୍ତୁଳ ଓ ଜୋଖ-ସଂଘାତରେ ଋଦ୍ଧିମନ୍ତ । ଜୀବନର ଶ୍ରଦ୍ଧାଶୀଳ ଅନୁରଣନ କବିତା ଓ ଜୀବନ ଯାତ୍ରାର ନାନାବିଧ ଆବେଗିକ ଓ ବୌଦ୍ଧିକ ବର୍ତ୍ତୁଳର ବିଚିତ୍ର ରଂଗରାଗ । ଜୀବନ ପ୍ରତି ଏକ ଆନ୍ତରିକତା ପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ଏବଂ ଆଧୁନିକତା ପ୍ରତି ଉନ୍ମୁଖତା କବିତାକୁ ବର୍ତ୍ତୁଳାଢ୍ୟ କରେ । ଏଣୁ ଆଧୁନିକ ମଣିଷର ସାମଗ୍ରିକତା ପ୍ରତି ସଂବେଦନଶୀଳ କବିର ଭାଷ୍ୟ ହୋଇଛି ଅଧିକ ସଂବେଗାତ୍ମକ । ଅଭିବ୍ୟକ୍ତି ହୋଇଛି ଅଧିକ ସଙ୍କ୍ଷିପ୍ତ, ପ୍ରତିବଦ୍ଧ ଓ ପ୍ରତୀକୀତ । ଆଧୁନିକ କବିର ଜୀବନ ପ୍ରିୟତା ଏବଂ ଅନ୍ତରଙ୍ଗ ଜୀବନ ଚିତ୍ରର ଆସକ୍ତି କବିତାକୁ କରିଛି ଋଦ୍ଧ ଏବଂ ପ୍ରାଣବାନ୍ । ଜୀବନର ସୂକ୍ଷ୍ମତମ ଅନୁଭବକୁ ସଂକ୍ଷିପ୍ତ ଭାବ ବିଭୋର ଶବ୍ଦରେ ପ୍ରକାଶ କରିବାର ଉନ୍ମୁଖତା ଆଧୁନିକ କାବ୍ୟ ଦର୍ଶନର ଏକ ଅନନ୍ୟ ଭାବ ସଂପଦ । ଏ ପରିପ୍ରେକ୍ଷୀରେ ଅନ୍ତଶ୍ଚେତନର ସୂକ୍ଷ୍ମ ଅବବୋଧ ସମ୍ଭୂତ ଆବେଦନର ଅନ୍ତର୍ମୁଖୀନତା ଆଧୁନିକ କବିତାରେ ଅଧିକ କଳାତ୍ମକ ସିଦ୍ଧି ଲଭିଛି ଓ କବିତାର ଆଂଗିକରେ ବିପୁଳ ପରିବର୍ତ୍ତନ ମଧ୍ୟ ସଂଘଟିତ ହୋଇଛି । ବକ୍ତବ୍ୟ ଅପେକ୍ଷା ତେଣୁ ସ୍ୱୟଂକଥନତା ଅଧିକ ସମ୍ମାନ ଦାବୀ କରିଥାଏ । I. A. Richardsଙ୍କ ମତରେ "It is never what a poem says that matters but what it is." ଏ ପର୍ଯ୍ୟାୟରେ ତେଣୁ ଚିତ୍ରକଳ୍ପ, ରୂପକଳ୍ପ, ମିଥ୍, ପ୍ରତୀକ ପ୍ରଭୃତି ଆଧୁନିକ କାବ୍ୟ ବିଭବ ସବୁକୁ କବିତା ସୃଷ୍ଟିର ମାଧ୍ୟମ ତଥା କବିତାର ଉତ୍କର୍ଷ ସାଧନର ହେତୁ ରୂପେ ଗଣନା କରାଯାଉଛି । ଏହାଛଡ଼ା ଇଲିଏଟ୍‌ଙ୍କ Objective corelativeର ଗୁରୁତ୍ୱ ଭାବାବେଗର ରୂପନ୍ୟାସ କ୍ଷେତ୍ରରେ ପ୍ରାଧାନ୍ୟ ସ୍ୱୀକାର କରେ । 'The only way of expressing emotion is the form of art is finding an objective corelative" [T.S, Eliot] ଏ ଦୃଷ୍ଟିରୁ ଚିତ୍ରକଳ୍ପ objective corelative (ବସ୍ତୁନିଷ୍ଠ ସଂଶ୍ଳେଷକ)ର ଉପାଦାନ ମାତ୍ର ।' ଚିତ୍ରକଳ୍ପ ଭାବ ଓ ରୂପ ତଥା ବିଷୟ ବସ୍ତୁ ଓ କଳା କୌଶଳର ଅଦ୍ୱୈତ କଳାତ୍ମକ ପ୍ରତିମାନ ରୂପେ ଆଜି ହୋଇଛି ଆଧୁନିକ କବିତାର ପ୍ରାଣକେନ୍ଦ୍ର । ଅଭିବ୍ୟକ୍ତିର ଅବିଚ୍ଛେଦ୍ୟ ଅଙ୍ଗ ରୂପେ ସ୍ୱୟଂ ତାହା ସଂପ୍ରେରିତ ଭାବାନୁଭୂତିର ମୂର୍ତ୍ତି ରୂପ । ଯଥାର୍ଥ

ଚିତ୍ରକଳ୍ପ ରଚନା କବିଙ୍କର ଚରମ ପରୀକ୍ଷା । ତାହା କବିତାର ମର୍ମବାଣୀକୁ ଇନ୍ଦ୍ରିୟ ପ୍ରତ୍ୟକ୍ଷ କରାଇଥାଏ । କବିତା ବସ୍ତୁର ଶ୍ରେଷ୍ଠ ସେତୁ ଚିତ୍ରକଳ୍ପ ପ୍ରସଙ୍ଗ ବିନା କେବେ ପରିପୂର୍ଣ୍ଣତା ଲାଭ କରି ପାରେ ନାହିଁ” (୧)

କବିତାର ଚିତ୍ରକଳ୍ପ ପ୍ରୟୋଗର ସିଦ୍ଧି ପରିପ୍ରେକ୍ଷୀରେ ଆଧୁନିକ କବି କମଳା-କାନ୍ତଙ୍କ ସାଫଲ୍ୟ ଏ ଆଲୋଚନାର ବିସ୍ତୃତ ବସ୍ତୁ । କମଳା କାନ୍ତଙ୍କ କବିତାରେ ଚିତ୍ରକଳ୍ପ ଶୀର୍ଷକ ଆଲୋଚନା ପର୍ଯ୍ୟାପ୍ତରେ ସବୁ ପ୍ରଥମେ କବିଙ୍କ କବିତାର ମୌଳିକତା, ଭାବ, ଭାଷା ଏବଂ ଶୈଳୀ ସଂପର୍କରେ କିଂଚିତ୍ ଆଲୋକପାତ କରିବା ବିଧେୟ ।

କମଳାକାନ୍ତଙ୍କ କାବ୍ୟ ଫସଲର ପ୍ରାରମ୍ଭିକ ଉପହାର 'ସୁନାଫସଲ' ଠାରୁ 'ଦୁଃଖସତ୍ତ୍ୱ କଥାବାର୍ତ୍ତା' କିମ୍ବା ଅନେକ ଓଡ଼ିଆ ପତ୍ରିକାରେ ପ୍ରକାଶିତ କବିତା ସମୂହକୁ ଏକ ଅନ୍ତରଙ୍ଗ ବିଶ୍ଳେଷଣ କଲେ ସବୁଠି ଏକ ଅନ୍ୱେଷଣରତ ଜୀବନବାଦୀ କଳାକାରର ସ୍ୱାକ୍ଷର ସ୍ପଷ୍ଟ ହୁଏ । କଅର୍‌କେଗାର୍ଡ଼ଙ୍କ My task is a socratic task ବା ସକ୍ରେଟିସ୍‌ଙ୍କ ଉଦାତ୍ତ ଅହ୍ୱାନ "ସବୁ କିଛୁ ଉର୍ଦ୍ଧ୍ୱରେ ନିଜକୁ ଆବିଷ୍କାର" ପରି କବି କମଳାକାନ୍ତ ପ୍ରାୟ ସବୁ କବିତାରେ ନିଜତ୍ୱର ଠାବ କରିଛନ୍ତି ଏବଂ ମଣିଷର ମଗ୍ନ ଅଧିଷ୍ଠାନ ଭିତରେ ଏକ ସାବଲୀଳ ସୃଷ୍ଟି କାବ୍ୟ ଢଙ୍ଗର ସୌଧ ନିର୍ମାଣ କରିଛନ୍ତି ।

> "ମୋ ପ୍ରତିଟି ଉଚ୍ଚାରିତ ଶବ୍ଦ,
> ମୋ ପ୍ରତିଟି ଭାଂଗିଗଲା କର୍ମ କର୍ମାଣିର
> ମାନପତ୍ର, ମୋ ପ୍ରତିଟି ପ୍ରସିଦ୍ଧ, ନିନ୍ଦିତ
> ସତ୍ୟର ସ୍ୱରଲିପିରେ ମୁଁ ବଂଚିବି ।"

[ ଛାଇରେ ଛାଇ ହୋଇ ହଜେ-'ଖସିବାର ବେଳ' ]

କବିତା ଯେଉଁଠି ଜୀବନ ସହିତ ଘନୀଭୂତ ସେଠି ସ୍ୱାଭାବିକ ଭାଷା ଅଧିକ ସରଳ ଓ ନିଷ୍କପଟ । ଜୀବନର ହର୍ଷ ଗ୍ଲାନି, ବିସ୍ମୟବୋଧ, ଆନନ୍ଦ ଦୃଷ୍ଟିର ସାମଗ୍ରିକ

୧ : ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରକଳ୍ପ — ଦାଶରଥି ଦାସ

ସନ୍ତୁଳନକୁ କରି ପ୍ରାକ୍ତିକ ମୁହୂର୍ତ୍ତର ଅନୁପ୍ରେରଣା ମଧ୍ୟ ଯୋଡ଼ି ଦେଇଛନ୍ତି । ତେଣୁ ତାଙ୍କ କାବ୍ୟ-ଶୈଳୀ କଥା ବିଗ୍ରହ କଲାବେଳେ ଏକ ଆଡ଼ମ୍ବରହୀନ ପ୍ରଗଲ୍‌ଭ ଛାନ୍ଦନିକ ଦୃଷ୍ଟି ପଥାରୂଢ଼ ହୁଏ । ସମଗ୍ର ଜାଗତିକ ପଦାର୍ଥକୁ ବ୍ୟକ୍ତିନିଷ୍ଠ ବିଗ୍ରହ ବୋଧ ମାନ୍ୟତା ଦିଏ

କମଳାକାନ୍ତଙ୍କ କବିତାର ଆତ୍ମିକ ବିଭବଟି ସବୁବେଳେ ଅଧିକ କାଲ ସଚେତନ । ତାଙ୍କ କବିତାର ଅନ୍ତର୍ଚେତନା ଯେତିକି ସଂବେଗାତ୍ମକ, ବହିର୍ଚେତନା ସେତିକି ବୌଦ୍ଧିକ । ଏକ ସ୍ଥିତିବାଧ୍ୟ ଚେତନାର ବଶବର୍ତ୍ତୀ କବିଙ୍କର ଏ ଦ୍ୱୈତ ରୂପର ଅପୂର୍ବ କଳ୍ପିତ୍ୱ ତାଙ୍କ କବିତାର ମୌଳିକତା ପ୍ରତିପାଦନ କରେ । ଭାବ ଓ ଭାଷା ଉଭୟର ସମନ୍ୱୟ ସାଧନର ସିଦ୍ଧି ଓଡ଼ିଆ କବିତାରେ କମ୍ କବିଙ୍କ ସୃଷ୍ଟିରେ ଦୃଷ୍ଟିଗୋଚର ହୁଏ । ନିଜ ଜୀବନର ସ୍ୱନିଷ୍ଠ ଅନୁଭୂତି ହିଁ ତାଙ୍କ କବିତାର ଅନ୍ୟତମ ବିଶେଷତା । ଅନେକ କବିତାର ବକ୍ତବ୍ୟ ପ୍ରଥମ ପୁରୁଷ ଆଙ୍ଗିକରେ ମୁଁ ହିଁ ବା ନିଜତ୍ୱକୁ ପ୍ରକାଶିଛି ଓ ଆତ୍ମସ୍ୱୀକାରୋକ୍ତି ମାଧ୍ୟମରେ ବୃହତ୍ତର ସମାଜକୁ ପ୍ରଦକ୍ଷିଣ କରିଛି । ତେଣୁ ତାଙ୍କ କବିତାରେ ନାନ୍ଦନିକ ଚେତନା ଜୀବନନିଷ୍ଠ ଏବଂ ତା'ର ଉତ୍ସ ସାମାଜିକ ଚେତନା ସଂଭୂତ । ଯା' ଫଳରେ ଏକ ଜଟିଳ ମାନସିକତାର ବ୍ୟାପ୍ତି ତାଙ୍କ କବିତାରେ ରସୋତ୍ତୀର୍ଣ୍ଣତା ଲାଭ କରିଛି । ଜୀବନରେ ମହାର୍ଘ ଭାବ ସଂପଦ, ଇନ୍ଦ୍ରିୟାନୁଭୂତି ଓ ପ୍ରେମାନୁଭୂତିକୁ କବି ଅତି ନିଷ୍ଠାର ସହ ରୂପଦାନ କରିଛନ୍ତି ।

ଏ ପରିପ୍ରେକ୍ଷୀରେ ଆଧୁନିକ ଜୀବନର ଘନିଷ୍ଠ ଓ ବର୍ତ୍ତୁଳ ଚହଟିକୁ ସଂକ୍ଷିପ୍ତ ରୂପ ପ୍ରଦାନ କରିବାକୁ କବି ଅତି ଅନ୍ତରଙ୍ଗ ଛବିଟିଏ ସଂଯୋଜିତ କରି ଦିଏ । ଏହି ସଂଯୋଜନା ମଧ୍ୟ ନିଜର ଆତ୍ମିକ ଅନୁଭବଦ୍ୱାରା ସର୍ବଦା ସୁନିୟନ୍ତ୍ରିତ । ଦୈନନ୍ଦିନ ଜୀବନ ଚର୍ଯ୍ୟାରେ କବି ଯେଉଁ ସବୁ ଦୃଶ୍ୟର ସାମ୍ନା କରେ ତାରି ମଧ୍ୟରୁ ହିଁ ପ୍ରତୀକଟିଏ ବା ପ୍ରତୀକାତ୍ମକ ଛବିଟିଏ ଖୋଜି କବିତାର ସୌନ୍ଦର୍ଯ୍ୟ ଗଢେ । ଏପରି କେତୋଟି ଦୃଷ୍ଟାନ୍ତ କବିଙ୍କର ଯେ କୌଣସି କବିତାରୁ ନିଆଯାଇ ପାରେ ।

" ଯେ ଗୃହର ଅଭିଧାନକୁ ଜିଭ ଅଗରେ
ଝୁଲାଇ ସାଲ୍ୟୁଟ୍ ଦିଏ ସମ୍ରାଟ୍‌କୁ
ତାର କଟା ମୁଣ୍ଡର ରକ୍ତରେ
ଅଂକିଲା ପୃଷ୍ଠାଏ ଗୀତାଂକର । "

[ମୋ ଛଡ଼ା ପ୍ରତିଟି ମଣିଷ—'ଶୀତ ଗାଁ'ନା ରେ ପକ୍ଷୀ]

ମତି ଅଭିମତି ଭିନ୍ନମତି ॥

"ଶରତ ସ୍ମୃତିର ଆହ୍ଲାଦ ଭରା ଜହ୍ନର ବିଷାଦ
ଯେମିତି ବୁଝିପାରେ ବଲ୍ବାଲ୍, ଫେରବାଲ
ଓଡ଼ିଆଙ୍କର ନାଟକୀୟତା "

[ ଭିନ୍ନ ସ୍ୱରର କବିତା—"ଗୀତ ଗା'ନା ରେ ପକ୍ଷୀ" ]

" ସ୍ମୃତି ବୃନ୍ତେ ପଳାତକ ମୁହୂର୍ତ୍ତର ମନ ଭୁଲା
ଝାଉଁଳେଇତ ଧାଂଧାର କମିଥା । ଇଚ୍ଛା ଜାଣେ
ଫଗୁଣର ଡାଳରୁ ଝଡ଼ିଗଲା ଭୂତ, ଜହ୍ନ ଏବଂ ତରାର
ଯନ୍ତ୍ରଣା, ହିକେକେ ଚହଲିଯାଏ, ହିକେକେ ବହଲି ଯାଏ
କଇଁଆଫୁଲ ଧୂଆଁଙ୍କର ହେର୍‌ଫେର୍
ଜଳମଦ ଯାହାର ଗଂଜଣା ।"

[ ଭିନ୍ନ ସ୍ୱରର କବିତା—" ଗୀତ ଗା'ନା ରେ ପକ୍ଷୀ" ]

କେବଳ ପାଠକର ଅନ୍ତର୍ଦୃଷ୍ଟି ସମ୍ପର୍କରେ ଚିତ୍ରଟିଏ ତୋଳି ଧରିବା ଚିତ୍ରକଳ୍ପର କାମ ନୁହେଁ । ତାହା ଯେ କୌଣସି ଇନ୍ଦ୍ରିୟ ସଂବେଦନ ହୋଇପାରେ । ଧ୍ୱନିଗତ, ସ୍ପର୍ଶଗତ ଓ ଗନ୍ଧ ବା ରସଗତ ଚିତ୍ରକଳ୍ପର ଚମତ୍କାରିତା ମଧ୍ୟ କିଛି ନୁହେଁ । ବାକ୍ ବ୍ୟଞ୍ଜନା କାବ୍ୟର କୌଶଳ । ସେଥିପାଇଁ ବ୍ୟଞ୍ଜନାକୁ କବି କୌଣସି ନା କୌଣସି ଇନ୍ଦ୍ରିୟ ଗର୍ଭର ଅନ୍ତର୍ଲୀନତାର ରୂପ ଦେଇଥାନ୍ତି । ସବୁ କବିଙ୍କ ମନୋଜଗତ ମୂଳତଃ ଧ୍ୱନି, ସ୍ପର୍ଶ, ଘ୍ରାଣ ଓ ଦୃଶ୍ୟ ସଂପୃକ୍ତ ଅନୁଭୂତିରେ ଉଦ୍‌ବୁଦ୍ଧ । ତାଙ୍କ ଚିତ୍ତ ଇନ୍ଦ୍ରିୟବେଦ୍ୟ (Sensuous ) । ଇନ୍ଦ୍ରିୟରୁ ଇନ୍ଦ୍ରିୟାତୀତକୁ ଯାତ୍ରା କରିବା ତାହାର ଧର୍ମ । ମାତ୍ର ମୂଳକୁ ଭୁଲି ହୁଏ ନାହିଁ । ଇନ୍ଦ୍ରିୟଜ ହେଉ ବା ଇନ୍ଦ୍ରିୟାତୀତ ଅନୁଭୂତି ହେଉ ତାହାକୁ ସବୁଠି ତେଣୁ ଇନ୍ଦ୍ରିୟଗ୍ରାହ୍ୟ ଚିତ୍ରକଳ୍ପରେ ରୂପାନ୍ତରିତ ଓ ପ୍ରତୀକିତ କରିବାକୁ ହୁଏ । (୨),,

ଆଧୁନିକ କବିତାର ଭାବ ବ୍ୟଞ୍ଜନା ରୂପକଳ୍ପ କରିଆରେ ଅଧିକ ସାନ୍ଦ୍ର, ଅଧିକ ମାର୍ମିକ ହୋଇ ଉଠେ । ଯେଉଁ କବିଙ୍କର ଚିତ୍ରକଳ୍ପ ଯେତେ ଇନ୍ଦ୍ରିୟ ଗ୍ରାହ୍ୟ

---

୨ : 'ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ମିଥ୍, ପ୍ରତୀକ ଓ ଚିତ୍ରକଳ୍ପ'— ମାଳବିକା ରାୟ : ଝଙ୍କାର— ୩୮ଶ ବର୍ଷ ୧୦ମ ସଂଖ୍ୟା ।

ସେ ସେତେ ସଫଳ । ମନୁଷ୍ୟ ତା'ର ପଞ୍ଚେନ୍ଦ୍ରିୟ ଦ୍ୱାରା ଗ୍ରାହ୍ୟ ବସ୍ତୁର ଏକ ଅନୁରୂପ ଚିତ୍ର ନିଜ ମଧ୍ୟରେ ସୃଷ୍ଟି କରେ । ତାକୁ ହିଁ ମୌଳିକ ମାନସିକ ପ୍ରତିଛବି ରୂପେ ସେ ଗ୍ରହଣ କରିଥାଏ । ଏ ଗ୍ରହଣ କରିବା ପ୍ରକ୍ରିୟା ବିଶେଷତଃ ଚାକ୍ଷୁଷ ( Visual ) ଯଥା— ରୂପ, ରଙ୍ଗ ଓ ଆକାର ; ଶ୍ରାବଣିକ ( Auditory ) ଯଥା— ବିଭିନ୍ନ ପ୍ରକାରର ଧ୍ୱନି ଓ ଅନୁରଣନ ; ନାସିକ ; ଯଥା— ବିଭିନ୍ନ ପ୍ରକାରର ଗନ୍ଧ, ସ୍ପର୍ଶିକ ( Factual ) ଯଥା—ବସ୍ତୁର ସ୍ପର୍ଶଜ ଗୁଣାବଳୀ କଠିନତା, ମସୃଣତା, ଉଷ୍ଣତା, ଶୀତଳତା ଇତ୍ୟାଦି ଏବଂ ରସନିକ ( Justatory ) ଯଥା— ବିଭିନ୍ନ ସ୍ୱାଦ । ଏତଦ୍ ବ୍ୟତୀତ ଆଧୁନିକ ମନୋବୈଜ୍ଞାନିକମାନେ ଆଉରି ଦୁଇ ପ୍ରକାରର ପ୍ରତିଛବି ବା ଜ୍ଞାନର ମୌଳିକ ଉପାଦାନ କଥା ଉଲ୍ଲେଖ କରିଛନ୍ତି । ସେ ଦୁଇଟି ହେଲା – ଜୈବିକ (Organic ଯଥା— ହୃଦ୍ ସ୍ପନ୍ଦନ, ପାଚକ କ୍ରିୟା, ଶ୍ୱାସପ୍ରଶ୍ୱାସ ଏବଂ ପେଶୀଜ ବା ବେଗଜ ( Kinaesthetic ) ଯଥା— ପେଶୀକ ବା ସ୍ନାୟୁବିକ କ୍ରିୟା ପ୍ରକ୍ରିୟା ସଂକଷଣ, ବ୍ୟଥା, ଉତ୍ତେଜନା ଇତ୍ୟାଦି ।,, (୩)

ଏ ରୂପ ସାତ ପ୍ରକାରର ମାଧ୍ୟମ ଦ୍ୱାରା ମଣିଷ ବିଭିନ୍ନ ଅନୁଭୂତି ସଂଗ୍ରହ କରିଥାଏ । ଏବଂ ପ୍ରତ୍ୟେକ କବି କଳାକାର ସାଧାରଣ ପାଠକର ହୃଦୟକୁ, ମେଧାକୁ ତା'ର ଉଲ୍ଲିଖିତ ଇନ୍ଦ୍ରିୟଦ୍ୱାରା ସ୍ପର୍ଶ କରିଥାଏ । ଯେଉଁ କବିର କାବ୍ୟକୃତି ଯେତେ ଆବେଦନ କ୍ଷମ, ଯେତେ ସ୍ପର୍ଶକ୍ଷମ ତା'ର ସୃଷ୍ଟ ଚିତ୍ରଟି ସେତେ ବାସ୍ତବ, ସେତେ ଜୀବନ୍ତ। ଏ ଦୃଷ୍ଟିରୁ କବି ଶ୍ରୀ ଲେଙ୍କାଙ୍କ କାବ୍ୟକୃତିରୁ ବିଭିନ୍ନ ଇନ୍ଦ୍ରିୟ ଗ୍ରାହ୍ୟ ଚିତ୍ରକଳ୍ପର ଉଦାହରଣ ଅତିସୁଲଭ । ତାଙ୍କ ଚିତ୍ରକଳ୍ପର ଅନନ୍ୟତା ହେଲା ତାର ମୌଳିକ ଗଠନ ରୀତି, ଅକୃତ୍ରିମ ଭାବ ପ୍ରକାଶ ଏବଂ ସାଧାରଣ ଶବ୍ଦ ଚୟନର ଅସାଧାରଣ ଗୁମ୍ଫନ ।

> (କ)"କମିତି ସମୁଦ୍ର ମାଡ଼ି ଆସେ ବାଇଶୀ ପାହାଚର
> ଶେଷ ପାହାଚ ଯାଏ ବା ଖଗର ଜଠର
> ଗ୍ରେଟରେ ସିଝି ଯାଏ କମିତି
> ହରିବୋଲ, ହୁଳ ହୁଳିର ଜାତୁଆ ଦ୍ୱିପ୍ରହର ।"
> [ ଛେଉ ପର୍ଦ୍ଧ୍ୱା—ଅନ୍ତତଃ ଜଣ୍ଟୁପ ]

(୩) : ଚିତ୍ରକଳ୍ପ ଓ ଚିତ୍ରକଳ୍ପବାଦ"— ଡକ୍ଟର ଅନନ୍ତ ଚରଣ ଶୁକ୍ଳ • ଝଙ୍କାର-୨୨ଶ ବର୍ଷ, ୧ମ ସଂଖ୍ୟା ।

(ଙ)" ଦୁଃଖ ଘୂର ଆସିଲା ସମସ୍ତ
ବନ୍ଧ ଯନ୍ତ୍ରଣା ପଥ ।"

[ ନବ ନାଟକ— ଖେଳିବାର ବେଳ ]

ସତ୍ୟ ଏବଂ ସୌନ୍ଦର୍ଯ୍ୟବୋଧର ଉଦାର ଅନୁଭବରେ କବିଚିତ୍ତ ଆଲୋଡ଼ିତ । କେବଳ ଦର୍ଶନେନ୍ଦ୍ରିୟର ରୂପ ଆକର୍ଷଣ ପ୍ରବୃତ୍ତି ନୁହେଁ, ବରଂ ଅନ୍ତରର ହୃଦ୍ଗତ ସତ୍ୟପ୍ରକାଶ ହିଁ କବିତାରେ ରୂପ ପାଏ । ତେଣୁ ଗୃହୀତ ବର୍ଣ୍ଣନା ସହିତ ଅନ୍ୟ ଇନ୍ଦ୍ରିୟଙ୍କ ରୂପାନୁଭୂତି ମଧ୍ୟ ତଦନୁରୂପ ଉତ୍କର୍ଷତା ଲଭେ । ନାସିକ ଚିତ୍ରକଳ୍ପର ଉଦାହରଣ—

"ଝଡ଼ା ମଲ୍ଲୀ ଫୁଲର ବାସ୍ନା ନିଃଶ୍ୱାସକୁ ଚଟଚଟ
ଯାଏ ନାହିଁ, ଫୁଟା ଟ୍ରଙ୍କରୁ ଝରିଡ଼ି
ପଡ଼ିଥିବା କେଉଁ ଟୋପା ଅତରରୁ ଜାଣି ହୁଏ
ଯେ ଆକାଶରେ ଆଉ ଜହ୍ନ ଉଇଁବ ନାହିଁ,
ଉହୁଂକ ଶୁହୁଁଥିବା ଟିଂଗଣିଭଳର ଓଠରୁ
ଆଉ ଶୁଭବ ନାହିଁ ବଇଁଶୀଆଳର ପ୍ରିୟ ଗୀତର
ସୁର୍ ।"

[ ଅନ୍ୟ ବୃନ୍ଦାବନ— ଗୀତ ଗା' ନାରେ ପକ୍ଷୀ ]

ଶ୍ରୀ ନୈଙ୍କାଙ୍କ ପ୍ରତିଟି କବିତା ଅପୂର୍ବ ଚିତ୍ରକଳ୍ପର ସମାହାର ଶ୍ରୀକ୍ଷେତ୍ର । ଜୀବନାନୁଭୂତିର ନିବିଡ଼ତା ସହିତ ପ୍ରତୀକାତ୍ମ ଚିତ୍ରକଳ୍ପର ସଂଯୋଜନା ତାଙ୍କ କବିତାକୁ ଖୁବ ଉଚ୍ଚସ୍ତରର କରି ତୋଳେ । ଚିତ୍ରକଳ୍ପ ଶ୍ରୀନୈଙ୍କାଙ୍କର କବିତାର ମୁଖ୍ୟ ଓ ମୌଳିକ ପିଣ୍ଡ । ଏବଂ କବିତାର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଚେତନା ସହିତ ଏକା ସଂପର୍କିତ । ତାଙ୍କ ଚିତ୍ରକଳ୍ପ ଗୁଡ଼ିକୁ ବିଶ୍ଳେଷଣ କଲେ ସତ୍ୟ ଶିବ ସୁନ୍ଦରର ଚିରନ୍ତନ ସତ୍ୟ ଉପଲବ୍ଧି ହୁଏ । ଗୃହୀତ ଚିତ୍ରକଳ୍ପ ସମ୍ପ୍ରେକ୍ଷୀରେ—

"ଘଂଟା କଂଟାର ଅଚଳ ସ୍ଥିତାବସ୍ଥା
ଓଗାଳି ପାରେ ନା ସ୍ୱପ୍ନର
ପ୍ରତନସୂତ୍ର ସ୍ୱଚ୍ଛନ୍ଦ ବାଟ ।"

[ ଏକା ଏକା — ଖେଳିବାର ବେଳ ]

।। କବି କମଳାକାନ୍ତ

ଶ୍ରାବଣୀକ ଚିତ୍ରକଳ୍ପର ଦୃଷ୍ଟାନ୍ତ ମଧ୍ୟ ଶ୍ରୀଲେଙ୍କାଙ୍କ କବିତାରେ ଅସୁଲଭ ନୁହେଁ । ଯଥା—

" ଘୋ ଘୋ ହୋଇ ଫଂଙ୍କାଏ ଲୋକ
ଚେଉ ଭଳି ମାଡ଼ି ଆସୁଥାନ୍ତି--
ଜଣା ଯାଉ ଥାଏ ମଂଜଥର ଶୀତରେ
ଯେମିତି କଂପୁଚି ହତ ଶ୍ୱାସ ପୃଥିବୀ,
ଯେମିତି ମଳି ସଁ ବାଲ୍ଟିଆ ଉଦରରେ
ତେଣା କଅଁଳୁଚି ବସ୍ତ୍ରସ୍ବର ।"
[ ଏକା ଏକା — ଖସିବାର ବେଳ ]

ଚିତ୍ରକଳ୍ପ ମାଧ୍ୟମରେ ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଭାବ ବଳୟ ଅଙ୍କନ କରିବାରେ କବି ଶ୍ରୀ ଲେଙ୍କା ସିଦ୍ଧ ହସ୍ତ । ସ୍ନାୟବିକ ଉପଲବ୍ଧିର ଦେଇ ପାଠକଙ୍କୁ ଏକ ଅମୂର୍ତ୍ତ ଭାବ ଭୂମିରେ ବନ୍ଧ ଦେବାର ଆଗ୍ରହ ନିମ୍ନ ଉଦ୍ଧୃତିରେ ପରିଲକ୍ଷିତ ହୁଏ ।

(୧) " ଭ୍ରମ ମୌନ ଅହଂକାରର
ଆଗୁର ବର୍ଷା ଧାରରେ
ମୁଁ ନିଜେକ ହୋଇ ଯାଉଚି ସମୁଦ୍ର ।"

[ ବହୁତ ଡେରି ହେଲେ ବ : ଦୁଃଖସହ କଥାବାର୍ତ୍ତା ]

(୨) " ଆଂଜୁଳାରେ ଟେକ ଧର
ସମୁଦ୍ରକୁ, ଯେମିତି ପ୍ରାର୍ଥନା ରତ
କାମନା ସମସ୍ତ ।"

[ କଏ ଜାଣେ କେତେବେଳେ : ଦୁଃଖସହ କଥାବାର୍ତ୍ତା ]

ଚିତ୍ରକଳ୍ପ ଜରିଆରେ ସମୁଦ୍ର ଏ ଦୁଇ ଉଦ୍ଧୃତିରେ ସୀମାହୀନ ବ୍ୟାପ୍ତିର ମହିମ୍ନ ପ୍ରକାଶ । ଯାହାକି ପାଠକର ହୃଦୟକୁ ଅତୀନ୍ଦ୍ରିୟ ଉପଲବ୍ଧିରେ ସମାଚ୍ଛନ୍ନ କରେ । ସାଧାରଣ ଭାବେ ଏ ଚିତ୍ରକଳ୍ପ ଗୁଡ଼ିକ ସୂକ୍ଷ୍ମ ଅର୍ଥ ଦ୍ୟୋତନାର ପକ୍ଷପାତୀ ହୋଇଲେ ହେଁ ପ୍ରକୃତରେ ଏମାନଙ୍କ ଭାବ ଆବେଦନ ସମସ୍ତ ଜ୍ଞାନେନ୍ଦ୍ରିୟକୁ କାବୁ

ମତ ଅଭିମତ ଭିନ୍ନମତ ॥

କରିଦିଏ । ଏବଂ ଇନ୍ଦ୍ରିୟାତୀତ ଚେତନାର ଏକ ସତ୍ୟଶୀଳ ଝଂକାର ଆତ୍ମାକୁ ଆର୍ଦ୍ର କରି ତୋଳେ । ଏଣୁ ଦୃଷ୍ଟ ଚିତ୍ରକଳ୍ପ ସୃଷ୍ଟିରେ କବିଙ୍କର ଆନ୍ତରିକତା ଅଧିକ । ଦାର୍ଶନିକଙ୍କ ମତରେ ମଣିଷ ବାହ୍ୟ ବସ୍ତୁରୁ ନିଜର ଦର୍ଶନେନ୍ଦ୍ରିୟ ଦ୍ୱାରା ଶତକଡ଼ା ୮୩ ଭାଗ ଶିକ୍ଷା ଲଭିଲା ବେଳେ ଅନ୍ୟ ଇନ୍ଦ୍ରିୟମାନଙ୍କ ଦ୍ୱାରା ଗ୍ରାହ୍ୟ ଶକ୍ତି ଅତି କମ୍ । ଶ୍ରବଣେନ୍ଦ୍ରିୟ ୧୧%. ଘ୍ରାଣେନ୍ଦ୍ରିୟ 3½ ସ୍ପର୍ଶେନ୍ଦ୍ରିୟ 1½ ଏବଂ ରସନେନ୍ଦ୍ରିୟ ୧% ଜ୍ଞାନ ଲଭିବାରେ ମଣିଷକୁ ସାହାଯ୍ୟ କରିଥାଏ । ଆମ ଚତୁର୍ଦ୍ଦିଗର ବୈଚିତ୍ର୍ୟମୟ ବିଶ୍ୱ ଏବଂ ତାର ବିସ୍ମୃତ ବିମୁଗ୍ଧତାକୁ ହୃଦୟଙ୍ଗମ କରିବାକୁ ଦୃଷ୍ଟ ଏବଂ ଶ୍ରାବଣିକ ଚିତ୍ରକଳ୍ପର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଯେ କୌଣସି ରୂପକଳ୍ପଟିଏକୁ ଅନୁଧ୍ୟାନ କଲେ ତା'ର ସୂକ୍ଷ୍ମ ପ୍ରତିଫଳନ ମସ୍ତିଷ୍କର ଉପଲବ୍ଧିକୁ ତ୍ୱରାନ୍ୱିତ କରିଥାଏ । ଚିତ୍ରକଳ୍ପ ପ୍ରୟୋଗରେ ଶ୍ରୀଲେଙ୍କାଙ୍କର ନିଷ୍ଠା ଅବିସମ୍ବାଦିତ । "ଚିତ୍ରମୟ କାରୁକାର୍ଯ୍ୟ ସମ୍ବଳିତ ତାଙ୍କର ପ୍ରକାଶଭଙ୍ଗୀ ଅନେକ ସ୍ଥଳରେ ଶବ୍ଦ ଚୟନର ସଂଯମ ଓ ଶୁଚିତା ମଧ୍ୟରେ ପ୍ରକଟିତ ହୋଇ ପାଠକ ମନରେ ବୌଦ୍ଧିକ ପ୍ରେରଣା ସୃଷ୍ଟି କରିଥାଏ ।" (ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ— ଡ଼କ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ) ।"

ଚିତ୍ରକଳ୍ପରେ ଶ୍ରୀଲେଙ୍କା କେବଳ ବୌଦ୍ଧିକତାକୁ ପ୍ରଶ୍ରୟ ଦେଇ ନାହାନ୍ତି, ବରଂ ନିତ୍ୟ ନୂତନତା ପ୍ରତି ତାଙ୍କର ଗଭୀର ଅନୁରକ୍ତି ପରିଲକ୍ଷ୍ୟ । ଏ ସଂପର୍କିତ ତାଙ୍କର ସ୍ୱୀକାରୋକ୍ତି ସ୍ପଷ୍ଟ ହୁଏ ନିମ୍ନ ଉଦ୍ଧୃତିରୁ—

" ତମକୁ ଡାଳ ହେଲେ ପୁରୁଣା ଢଙ୍ଗରେ ଯଦି
ଏଣୁ ତେଣୁ ବକୁଥାଏ, ବଦଳଉଥାଏ—
ଆଦୁ ଭୁଲ୍ ବୁଝିବ ନାହିଁ, ହେ ବନୋଦିଆ !
ମୁଁ ଆଜି କୌଣସି ଭାବରେ ନାହିଁ କି ଅଭାବରେ ନାହିଁ ।"

[ ବନୋଦିଆ: ଦୁଃଖ ସହ କଥାବାର୍ତ୍ତା ]

କବିଙ୍କର ଏ ସ୍ୱୀକାରୋକ୍ତି ଆହୁରି ସ୍ପଷ୍ଟ ହୁଏ ଯେ ଯେତେବେଳେ ଲେଙ୍କାପ୍ତତାକୁ ନିଜର ତଥା ନିଜ ସମାଜର କୁଣ୍ଠାହୀନ ଉଦ୍‌ବୋଧନ ଏବଂ ଆତ୍ମିକ ବିଶ୍ୱାସର ସବୁଠୁ ବେଶି ସତ୍ୟଶୀଳ ଜାଗ୍ରତ ରୂପ ବର୍ଣ୍ଣନା କରନ୍ତି । ତାଙ୍କର ଭାଷାରେ—"ଜୀବନ ମୃତ୍ୟୁ, ଭଲ ମନ୍ଦ, ହାନି ଲାଭ ଇଚ୍ଛା ଛନ୍ଦ ଚନ୍ଦ୍ରଲୋକର

ଘ୍ନୃଷ୍ଟାଛନ୍ନତା ଭିତରେ ଧାଡ଼ିଏ ପ୍ରାଣରୁଆଁ ଗୀତ ବୋଲି ଦେବାକୁ ମୁଁ ତ ଲେଙ୍କାସ୍ତ ନିଶ୍ୱାସ ବୋଲି ବୁଝେ । ଗ୍ରନ୍ଥ ଭିତରୁ ଦୃଷ୍ଟି ଫେରାଇ ଆସୁଥିବା ଭବଟିଏ, ସୁର୍‌ଟିଏ ଭିତରେ ଚେଷ୍ଟାଏ ଯେତିକି ନମନୀୟତା, ଥାଏ ତା'ଠୁ ବେଶି ନିଜ ଅନୁଭବ ପ୍ରତି ଅନୁରକ୍ତ, ରକ୍ତଶୂନ୍ୟ ଦୃଢ଼ତା, ଅକପଟ ସ୍ୱଚ୍ଛମନ ଓ ହୃଦୟର ସ୍ନିଗ୍ଧ ଆତ୍ମୀୟତା-ବୋଧର ନିବେଦନ । ଯେଉଁ ଲେଖକଙ୍କର ଘଟଣା ଓ ବସ୍ତୁମାନଙ୍କ ପ୍ରତି ଯେତେ ଅଧିକ ପ୍ରତିକ୍ରିୟା ତା' ଲେଖାରେ ସେତେ ଏଗଭଳି ବିଶ୍ୱାସର ବିଶ୍ୱସ୍ତ ଶବ୍ଦ ଖେଳ ଓ ଏଇ ଖେଳରେ ମାତିଥିବା ଯାଏ ଲେଖକଟି ଜୀବନକୁ ମହ୍ୱରେଇ ଦେବାର ସମ୍ଭବନାରେ କି ସାଂଘାତିକ ଭାବରେ ଉଡ଼ୁଥାଏ ପ୍ରତି ନିଃସ୍ୱତ, ଚିରସ୍ୱତ ।'

[ସାହିତ୍ୟିକର ବିଶ୍ୱାସ- କମଳାକାନ୍ତ ଲେଙ୍କା-ସଂବାଦ : ଅକ୍ଟୋବର- ୧୫, ୧୯୮୯]

ଉପରୋକ୍ତ ଆତ୍ମ ସ୍ୱୀକୋରୋକ୍ତିକୁ କମଳାକାନ୍ତୀୟ କାବ୍ୟଧାରାର ମୂଳ ନିର୍ଯ୍ୟାସ ରୂପେ ଗ୍ରହଣ କରି ନିଆଯାଇପାରେ । ଜୀବନବୋଧର ଅନନ୍ୟ ଉପସ୍ଥାପନା କବିଙ୍କୁ ଏକ ପରିଚ୍ଛନ୍ନ ଏବଂ ସଂକ୍ଷିପ୍ତ ଶୈଳୀ ଅବଲମ୍ବନ କରିବାକୁ ବାଧ୍ୟ କରେ । ଏ ପ୍ରସଙ୍ଗରେ ଗ୍ରାମ୍ୟ ଭାଷା ବା ଲୋକ ଗୀତର ନିଚ୍ଛ୍ୱାସଧର୍ମୀ ଶୈଳୀର ଅବତାରଣାକୁ ସ୍ମରଣ କରାଯାଇପାରେ ।

> "ଜୁଲୁକୁଲୁ ଜହ୍ନ ଥାଏ ଉଦିଟିଏ, ଜୁଳୁକୁଳା ପୋକଟିଏ
> ଆଖିନାହିଁ, କାନ ନାହିଁ, ସବୁରିଇବା ଖିଅନାହିଁ
> ଏ ମୁଣ୍ଡରୁ ଆର ମୁଣ୍ଡ ଦଉଆଡ଼ ଆଖି ପାଏନାହିଁ ।"

[ ନିଜ ସହ ଗୋଟେ ସାକ୍ଷାତକାର-ପୃ ୪ ]

ଏ ପର୍ଯ୍ୟାୟରେ ଲୋକ ପରଂପରାର ଅନେକ ସ୍ମୃତି ଚିହ୍ନ 'କବି ଉବାଚ' (ଗୀତ ଗା'ନାରେ ପକ୍ଷୀ) କବିତାରେ ଅପୂର୍ବ ଶୈଳିକ ସିଦ୍ଧି ଲଭିଛି ।

> "ଉଡ଼ିଗଲେ ଗେଂଡାଳିଆ ଝାଡ଼ିଦେଲେ ପର,
> ହାବି ଅପା ଧିକଇଚ
> ପ୍ରେମ ମାନେ ରୁମାଦବା ଝିଙ୍କଲି ପଡର ।
> ଦୁଃଖମାନେ ସଂଜୁଳିବା ଜାଅନ୍ତା ମାଗୁର ।"

[ କବି ଉବାଚ- ଗୀତ ଗା' ନାରେ ପକ୍ଷୀ ]

ମତ ଅଭିମତ ଭିନ୍ନମତ ॥

ଗେଣ୍ଡାଳିଆ ପ୍ରତୀକ ଭିତରେ ଦୂରଗତ ପ୍ରେମର ପରିବେଶକୁ ବଜାୟ ରଖିଛନ୍ତି କବି । ଝିଙ୍କାଳ ପଡ଼ି ପରି ଅସହାୟ ପ୍ରେମର ଚିତ୍ର ଏବଂ ପ୍ରେମିକାର ଅବସ୍ଥା ସଂତୁଳିବା ନିଅନ୍ତା ମାଗୁଛି ପରି । ଏ ଚିତ୍ରକଳ୍ପ ଅତି ବିଶ୍ୱସ୍ତ ଭାବେ ଏକ ଗ୍ରାମ୍ୟ ପରିବେଶର ଚିତ୍ର ଅଙ୍କନ କରେ । 'ଜୀବ ଉବାଚ' କବିଙ୍କର ପଲ୍ଲୀ ଭାବନାର ଉଷ୍ମ-ଭାବାବେଗରେ ଉଦ୍ଭାସିତ । ଲୋକଗୀତର ସ୍ୱର ସୌନ୍ଦର୍ଯ୍ୟର ଉଦ୍ଭାସନ ଭିତରେ କବିଙ୍କର ଆତ୍ମିକ ଭାବ ସଂପଦକୁ ପରିବେଷଣ କରିବାରେ ସକ୍ଷମ ହୋଇଛନ୍ତି । ବସ୍ତୁତ ଲୋକଜୀବନର ଅନାବିଳ କାହାଣୀ ଅକପଟ ସୌନ୍ଦର୍ଯ୍ୟ କବି ପ୍ରାଣକୁ ପ୍ରଭାବିତ କରିଛି । ଯେଉଁ ପ୍ରଭାବ ସହସ୍ର ସଭ୍ୟତାର କୃତ୍ରିମ ଅବହାୱା ମଧ୍ୟରେ ନିଶ୍ଚିହ୍ନ ନ ହୋଇ ବରଂ ଶତଗୁଣିତ ହୋଇ କଳାତ୍ମକ ରୂପ ଗ୍ରହଣ କରିଛି ।

" + + ମୁଁ ଏକ  
ନୋଳିଆ ବସ୍ତି, ଚକ୍‌ଚକ୍ ଝିଲ୍ ଏବଂ ଚର୍ତ୍ତିର ଦ୍ୱିରୁକ୍ତି  
କଳାକଳା ଅଂଧାରର ଦ୍ରିସ୍ତୃତମ, ସ୍ତବ୍ଧତାର  
ସଜଳ ସକାଳ ଯେ ଦିନେ ଗୋଡ଼ ଭାଂଗି  
ଠିଆ ହେବା ଜାଣେନାହିଁ କ୍ଷୁଧାର୍ତ୍ତ ଓ  
ନିଦ୍‌ଖୋର ସଂଜର ଦୁଆରେ ।'

[ ସଂପର୍କ : ପୂର୍ଣ୍ଣ- ୧୯୭୨ : ଦୁଃଖସନ୍ଧ କଥାବାର୍ତ୍ତା ]

ବିମୁଗ୍ଧ ସକାଳ ମଣି କବିର ଅନ୍ତର । ସେଠି ଥାଏ ନିଷ୍କପଟତାର ମହାନ୍ ପ୍ରକାଶ । ସେ ଅଂଧାରର ସାମ୍ରାଜ୍ୟକୁ ମାନେନା, ଅସତ୍ୟର ସ୍ତୁତି ଗାନ କରେ ନା । ତେଣୁ ତାର ଆତ୍ମିକ ସ୍ୱରଟି ପରିଚ୍ଛନ୍ନ ଶବ୍ଦ ପୁଂଜକୁ ପୁଂଜି କରି କବିତା ରଚେ । ଏ ପର୍ଯ୍ୟାୟରେ ପଲ୍ଲୀ ଚିତ୍ରର ଅକପଟତା କବିଙ୍କ ଅନେକ କବିତାରେ ଲକ୍ଷ୍ୟ କରାଯାଏ ।

"ତୁମେ ହୁଏତ  
ଗୋଟେ ନିପଟ ମଫସଲର  
ଶ୍ମଶାନ ମଝିରେ

ଏକାକୀ ଠିଆ ହୋଇଥିବା
ଥୁଂଟା ଅଶ୍ୱତ୍ଥ ଶାଖାରୁ
ଝୁଲି ରହିଥିବ ଭଦଭଦଳିଆର
ଗ୍ଲାଇ ପର, ହୁଏତ
ଗୋଟେ ଅରଖ ଗଛର ପାଂଡୁରିଆ
ପତ୍ର ଉପରେ
ନିର୍ଜନତାର ଚେହେରା ଦେଖୁଥିବ,
ସମୟର ହୃତବାକ୍
ଜଗୁଆଳି ହୋଇ ଗ୍ଲଡ଼େ
ଶ୍ୱାସରେ ଯେପରି ।"

[ ଏମିତି ସବୁ : ଦୁଃଖ ସହ କଥା ବାର୍ତ୍ତା ]

ଏତଦ୍ ବ୍ୟତୀତ କବିଙ୍କର ଚିତ୍ରକଳ୍ପର କଳାତ୍ମକ ପ୍ରୟୋଗ ମଧ୍ୟ ଦୃଷ୍ଟିଦାନ ଯୋଗ୍ୟ ।

୧) "ଗଳା ବୁଢ଼ର ଗାଲରେ ଝକମକ କେମନ୍ତେ ବସନ୍ତ"

[ ନିଜ ସହ ଗୋଟେ ସାକ୍ଷାତ୍କାର ]

୨) "ସ୍ୱପ୍ନ ଗୋଟେ କାପୁରୁଷ ପଣିଆ, ହୁଂଡ଼ାଳିଆ କଥାର
କୁହୁକ ପେଡ଼ି ।"

[ ନିଜ ସହ ଗୋଟେ ସାକ୍ଷାତ୍କାର ]

୩) ମଣିଷ, ଗୋଟେ ଆଖି ଦଗଦା ଦ'ପାଦିଆ ପୁଷ୍କର ।
ଗୋଟେ ଆଖି ଚମକା/ଚକ୍ମକିଆ ରଣପା ସିଂଧା ରଣଜନ୍ତୁ ।

[ ଉଦ୍ବେଗ ]

୪) "ମୋର ଦୁର୍ଦ୍ଦମନୀୟ ଇଚ୍ଛାର ପିଠିରେ ଅସଂଖ୍ୟ ଫୁଲର ବୋଝ ।"

[ ଉତ୍ତରଣ ]

କମଳାକାନ୍ତଙ୍କ କାବ୍ୟକୃତିର ଯେ କୌଣସି କବିତାରୁ ଚିତ୍ରକଳ୍ପର ଅଜସ୍ର ଉଦାହରଣ ସଂଗ୍ରହ କରାଯାଇପାରେ । ତଥାପି ପ୍ରାରମ୍ଭିକ କାବ୍ୟଚର୍ଯ୍ୟା 'ସୁନା ଫସଲ' ଓ 'ପ୍ରୀତି ଓ ପ୍ରତୀତିରେ ରହିଛି । 'ଉତ୍ତରଣ କାବ୍ୟକୁ ଚିତ୍ରକଳ୍ପର ଏକ ରୋମାଞ୍ଚକର ବ୍ୟୂହ ରୂପେ ସ୍ୱୀକାର କରାଯାଇପାରେ । ପରସ୍ପର ବିରୋଧୀ ଚିତ୍ର, ପରସ୍ପର ସଂପୃକ୍ତ ଚିତ୍ର, ସାଂପ୍ରତିକ ଶୂନ୍ୟତା, ଅଗାମୀର ସ୍ୱପ୍ନ ଅତୀତର ସୁନେଲି ମୁହୂର୍ତ୍ତ; ବର୍ତ୍ତମାନର ନାସ୍ତିକତାଶମନ୍ତ ପରିସ୍ଥିତି ସବୁ ଯେମିତି ଏ କାବ୍ୟରେ କଳାତ୍ମକ ସମ୍ମାନ ଲଭିଛି । ଏ କାବ୍ୟର ପ୍ରାଣ ହୋଇଉଠିଛି 'ଚିତ୍ରକଳ୍ପ ।' ସାଂପ୍ରତିକ ସମୟର ଅସହାୟତାର ଚିତ୍ର—

''ବର୍ତ୍ତମାନ ଆଫ୍ରିକାର ସିଂହ ଗର୍ଜୁଚି; ଗର୍ଜୁଚି
ଲୋହିତ ମନର ଶାଣିତ ଗୋଧୂଳି ! କାନ୍ଦୁଚି
ହିରୋସିମାର ନର୍ମ୍ମମ ଝଂକୃତ ପଥର !! ବର୍ତ୍ତମାନ
କାମଧେନୁର ଦୁଃସହ ଦୃଷ୍ଟି ନାରେ ବନସ୍ପତିର ଲକ୍ଷ୍ମୀ
ଛଦାର୍ଣ୍ଣା । ଅମରଧ୍ୱନି ଅହଲ୍ୟାର ସ୍ତନରେ ଗରଳର
ଫୁତ୍କାର— ଜର୍ଜୀର ମାଟିର ଓଠରେ କଂକାଳର
ବିଦ୍ରୂପ ଭରା ହସ ।'      ଇତ୍ୟାଦି ।

'ଉତ୍ତରଣ' କାବ୍ୟର ପ୍ରତି କ୍ଷେତ୍ରରେ ଆମେ ଅନେକ ସୌନ୍ଦର୍ଯ୍ୟମୟ ଚିତ୍ରର ସମାବେଶ ଦେଖୁ । କିନ୍ତୁ ଗୋଟିଏ ପଙ୍କ୍ତିରେ ଟୁକୁରାଖଣ୍ଡ ପୃଥକ୍ ଦୃଶ୍ୟ ଭିତରେ କିପରି ଏକ ରସଘନ ନିର୍ଦ୍ଦିଷ୍ଟ ବକ୍ତବ୍ୟ ପ୍ରତିଫଳିତ ହୁଏ, ତାହାହିଁ ଆଶ୍ଚର୍ଯ୍ୟର ବିଷୟ ।

'ଉତ୍ତରଣରେ ରହିଛି ଆତ୍ମାର ଉତ୍ତରଣର ସୂଚନା— ଯାହା ସ୍ଥିତିବାଦ ଦର୍ଶନ ଦ୍ୱାରା ପ୍ରଭାବିତ । ତେଣୁ 'ସମ୍ରାଟ'ରୁ 'ଉପସଂହାର' ପର୍ଯ୍ୟନ୍ତ ଯେତେ ଅସଂପୃକ୍ତ ହେଲେ ମଧ୍ୟ ଆତ୍ମିକ କ୍ରମ ବିକାଶର ଦ୍ୟୋତନା ଅନୁଭୂତ ହୁଏ ।' (୪)

ଆଧୁନିକ ମଣିଷ ଆତ୍ମିକ ସ୍ତରରେ ନିଜକୁ ସମ୍ରାଟତ୍ୱର ସିଂହାସନରେ ଅଧିଷ୍ଠିତ କରେ । ଏ ସମ୍ରାଟତ୍ୱ ବି ଡିମୋକ୍ଲିସର ତରବାରିର ଭୟରେ ସର୍ବଦା ତ୍ରସ୍ତ ଏବଂ ଶଙ୍କିତ । ଏ ଅସହାୟତାକୁ 'ଅଂଧ ପଂଗୁଙ୍କର ପ୍ରଦକ୍ଷିଣ' ବା 'ଜରତାର ପୁଷ୍ଟ ଯୌବନର ତୀକ୍ଷ୍ଣ ବର୍ଚ୍ଛା ।' ବା 'ଅସ୍ତ ଜହ୍ନର କରୁଣା' ପ୍ରଭୃତି ଅନେକ ଚିତ୍ର ମାଧ୍ୟମରେ କବି ସ୍ପଷ୍ଟ କରିଛନ୍ତି । ଫଳରେ ଆଧୁନିକତା 'ଭସ୍ମର କ୍ରମଶଃ ବ୍ୟାପ୍ତିରେ

ବିଚ୍ଛିନ୍ନ ସବୁଜ ସ୍ୱପ୍ନର ଆଲେଖ୍ୟ ।' ସ୍ୱପ୍ନାପ୍ଲୁତ ମଣିଷର ସ୍ୱପ୍ନ ଆଜି ସୁଦୂର ପରାହତ । ପ୍ରେମର ମହତ୍ତ୍ୱ ଆବେଗ ଆଜି ହଜିଯାଇଛି । 'ଝରଣା କାନ୍ଦୁଛି ଓ କ୍ଷତବିକ୍ଷତ ଯନ୍ତ୍ରୀ ମାଗୁଛି କାଶିଗୃଏ ଅଗ୍ନିର ମମତା ।' ଏସବୁ ବିପର୍ଯ୍ୟସ୍ତ ପରିସ୍ଥିତି ଭିତରେ ମଧ୍ୟ ଏ ଧୂଳିର ଧରଣୀରେ କାବ୍ୟ ପୁରୁଷ ଅତି ପବିତ୍ର ଅଧିଷ୍ଠାନ ସୁରକ୍ଷିତ ରଖିଛି ନିଜ ପାଇଁ । 'ଏକ ଜମାଟ ବନ୍ଧା ଧୂଳିର ଚୌହଦୀ ଓ ଜକ୍‌ଜକ୍‌ ମୁକ୍ତାର ଫ୍ରେମରେ ମୋ ଅନ୍ତଃପୁରର ଯୌବନ ହସୁଚି ।'' ସର୍ବୋପରି ଆଜିର ମଣିଷ 'ଏକ ତୁରଙ୍ଗ ଚେତନା'ର ପେଟଭିତରେ ଏକ ବିଷଧର କୁଟିଳ ସମ୍ରାଟ ।'

'ଉତ୍ତରଣ' ଶ୍ରୀ ଲେଙ୍କାଙ୍କର ଚିତ୍ରକଳ୍ପ ପ୍ରୟୋଗର ବ୍ୟାପକ କ୍ଷେତ୍ର ପ୍ରସ୍ତୁତ କରିଛି । ଏ କବିତାର ସାମଗ୍ରିକ ମୂଲ୍ୟବୋଧ ଚିତ୍ରକଳ୍ପ ଦ୍ୱାରା ହିଁ ସୁନିୟନ୍ତ୍ରିତ । 'ଚିତ୍ରକଳ୍ପ ଢଗରେ କବି କବିତାଟିରେ ବିଭିନ୍ନ ପ୍ରକାର ପରୀକ୍ଷା କରିଛନ୍ତି ଏବଂ କବିତାଟିକୁ ଏକ ଉନ୍ନତମାନକୁ ନେବାପାଇଁ ଏହି ଚିତ୍ରକଳ୍ପ କବିଙ୍କୁ ଅନେକ ସାହାଯ୍ୟ କରିଛି । ଏଥିରେ ଅନେକ (କ) ଜଟିଳ ମାନସିକ ଅବସ୍ଥାର ରୂପାୟନ ପାଇଁ (ଖ) ଜୀବନ ଉପଲବ୍ଧିର ପ୍ରକାଶ ପାଇଁ ଏବଂ (ଗ) ଜୀବନ ସଂପର୍କୀୟ ଦୃଷ୍ଟିଭଙ୍ଗୀର ପରିଚୟ ଦେବା ପାଇଁ ଚିତ୍ରକଳ୍ପର ସାହାଯ୍ୟ ନିଆଯାଇଛି । ତେଣୁ ଆପାତ ଦୃଷ୍ଟିରେ ଅନେକ ଗୁଡ଼ିଏ ଚିତ୍ରକଳ୍ପ ସହଜବୋଧ୍ୟ ନୁହେଁ ।' (୫)

'ଉତ୍ତରଣ' ପରବର୍ତ୍ତୀ କବିତା ସଂକଳନ ସମୂହରେ କବିଙ୍କର ଦୃଷ୍ଟିଭଙ୍ଗୀ ବଦଳିଛି । ଚିତ୍ରକଳ୍ପ ଅଧିକ ସ୍ପଷ୍ଟ ଓ ପରିଚ୍ଛନ୍ନ ହୋଇ ପାରିଛି । କବିଙ୍କର ଏ ଚିତ୍ରକଳ୍ପ ତାଙ୍କର ବହୁମୁଖୀ ଅନୁଭୂତି, ବ୍ୟାପକ ବ୍ୟକ୍ତିତ୍ୱର ପରିଚୟ ପ୍ରଦାନ କରେ । ବାସ୍ତବ ଜୀବନରେ କବି ସୁଲଭ ଏକ ଉଦାତ୍ତ ପ୍ରାଣର ଅଧିକାରୀ ଶ୍ରୀ ଲେଙ୍କା । ତାଙ୍କର ବିସ୍ତୃତ ହୃଦୟବତ୍ତା ସମାଜର ସାମଗ୍ରିକ ରୂପକୁ ଅତି ନିବିଡ଼ ଭାବେ ଅନୁଭବିଛି । ତାକୁ ହିଁ ଚିତ୍ରାୟିତ କରିଛି ଶବ୍ଦ କଳାରେ ।

ବେଦନା ବୋଧରେ ନିପୀଡ଼ିତ ସଭ୍ୟ ମଣିଷର ଅନ୍ତର୍ବେଦନା ଆନନ୍ଦବୋଧର ଅଭିବ୍ୟକ୍ତି ଲଭିଛି । ତେଣୁ ନିଜ ଭିତରେ ଗୁମୁରୁଛି କବିଟିଏ । ''ମୁଁ ମୋ ଭିତରେ ବନ୍ଦୀ ଅଂଧାରର ଚଢ଼େଇ/ X X X ତୁମେ/ ମୋ: ଅବଚାହ୍ନନାର ଗର୍ଭରୁ ଲାଲ ଚନ୍ଦ୍ରାଂକ

(୪) ଆଧୁନିକ ଦୀର୍ଘ କବିତାର ପରିପ୍ରେକ୍ଷିତରେ 'ଉତ୍ତରଣ'— ଅକ୍ଷୟ କୁମାର ଦାସ

(୫) ଆଧୁନିକ ଦୀର୍ଘ କବିତାର ପରିପ୍ରେକ୍ଷିତରେ 'ଉତ୍ତରଣ'— ଅକ୍ଷୟ କୁମାର ଦାସ

ଜନଷ୍ଟ ପ୍ରାର୍ଥନାକୁ/ କାନାଅ,— ମୋ ଉନ୍ମାଦ/ ନଷ୍ଟ ପତ୍ରର ଅଳିଂଧୁ ଭିତରୁ/ ଶୂନ୍ୟରେ ଓହ୍ଲାଇଥିବା ଭଂଗା ଗୀତଟିର ଧଳା ଡେଣାକୁ ଦେଖ ।”

( ମୁଁ ମୋ ଭିତରେ— ଦୁଃଖ ସହ୍ୱ କଥାବାର୍ତ୍ତା )

ଏ ସମସ୍ତ ପଂକ୍ତିକୁ ବିଶ୍ଳେଷଣ କଲାବେଳେ ମନେ ପଡ଼ିଯାଏ Patrick Anderson ଙ୍କ ମନ୍ତବ୍ୟ “ I Shall to cry with my own voice ଏଥିରେ ହିଁ କବିର ମୌଳିକତା, ନିଜସ୍ୱ ଅଭିବ୍ୟକ୍ତି ସ୍ପଷ୍ଟ ହୁଏ । ଶ୍ରୀ ଲେଙ୍କାଙ୍କର 'ଗୀତ ଗା'ନାରେ ପକ୍ଷୀ' ଏବଂ ଦୁଃଖ ସହ୍ୱ କଥାବାର୍ତ୍ତା' ଏ ଦୃଷ୍ଟିରୁ ସର୍ବୋତ୍ତମ ସଫଳତା ଦାବୀ କରେ । (ଅଥଚ ବୌଦ୍ଧିକତାର ଜୀବନବାଦୀ ଅନୁଭବ “ଉତ୍ତରଣ”ର ଆବରଣରେ ପିଂଜିତ ହୋଇ ପାଠକଙ୍କୁ ଦୁର୍ବୋଧ୍ୟ କରିଥିବାର ଅଭିଯୋଗ ରହିଛି । ) ଏହା ସତ୍ତ୍ୱେ ଏ ଦୁଇ ଗ୍ରଂଥରସମସ୍ତ କବିତାର ପରିଚ୍ଛନ୍ନ ବାକ୍‌ଭଂଗୀ ଏବଂ ସୁତୀବ୍ର ଭାବାନୁଭୂତିକୁ କବିତ୍ୱମୂଳକ କାବ୍ୟଚର୍ଯ୍ୟା ରୂପେ ସ୍ମରଣ କରିଯାଇ ପାରେ । ଏ ପର୍ଯ୍ୟାୟରେ ସଂଚରଣ ଶୀଳ ଭାବର ଏକନିଷ୍ଠ ପ୍ରତିଫଳନ ରୂପେ ଚିତ୍ରକଳ୍ପ ମଧ୍ୟ ଛନ୍ଦାନୁଯାୟୀ ଅଧିକ ସାର୍ଥକ ଓ ପ୍ରାସଙ୍ଗିକ ହୋଇଛି ।

“ଫେରି ଆସିଲି ଆପଣାର ଖୋଳକୁ
ଯେମିତି ଖସି ଘନର ଝାଂକର ପେଟରୁ
ବର୍ଷା ମୁହେଁଇ ଆସେ ଆକାଶର
ଆଖିକୁ ।”

( ପୁନଶ୍ଚ ରାଜତ୍ୱ : ଦୁଃଖ ସହ୍ୱ କଥାବାର୍ତ୍ତା )

ପ୍ରାରମ୍ଭିକ ପର୍ଯ୍ୟାୟର ସାବଲୀଳ କାବ୍ୟ ଭୂମିକୁ କବିଙ୍କର ପୁନଶ୍ଚ ଆବାହନ ଏବଂ ଦୁର୍ବୋଧ୍ୟତା ଏବଂ ବୌଦ୍ଧିକତାର ଝାଂକରୁ ପୁଣି ଥରେ ମେଘ ମହ୍ଲାରର ସ୍ୱରରେ ଆକାଶର ଆଖିକୁ ଛଳ ଛଳ କରି ତୋଳିବାର ପ୍ରତିଶ୍ରୁତି କମଳାକାଂତଙ୍କ ଏ ସ୍ତରର ସଂକଳନ ଗୁଡ଼ିକୁ ଭେଟି ଦେଇଛି । ତାଙ୍କର ଜୀବନଚର୍ଯ୍ୟାର ଉତ୍ତରଣର ସ୍ୱାକ୍ଷର ଏ ସମସ୍ତ ସୃଷ୍ଟିରେ ସମୁଜ୍ଜ୍ୱଳ । ଚିତ୍ରକଳ୍ପ ପ୍ରୟୋଗ ଜନିତ ଏକ ସଦ୍‌ଗନ୍ଧ ମନଃସ୍ଥିତିର ଚିତ୍ରାଙ୍କନ ପରସ୍ପର ବିରୋଧୀ ବର୍ଣ୍ଣନାଦ୍ୱାରା ଅତି ସଫଳ ହୋଇ ପାରିଛି । ଆଧୁନିକ କବି ନିଜେ ସ୍ୱୀକାରୋକ୍ତି ବାଢେ “ I contradict myself, because I contain multitude” । ବିଭିନ୍ନତା ମଧ୍ୟରେ ଐକ୍ୟ ସଂଗଠନ କ୍ଷେତ୍ରରେ

ଅପୂର୍ବ ଦକ୍ଷତା କବି ଶ୍ରୀ ମୈଙ୍କାଙ୍କର ରହିଛି । ଏକ ଉଦାହରଣ" ଦୁଃଖ ସହ କଥା ବାର୍ତ୍ତାରୁ ନିଆଯାଇ ପାରେ—

"ମୁଁ ଫେରି ଆସିଛି ଉତ୍ତପ୍ତ ନର୍କକୁ
ସାରବତୀର ଝସର ଖୋଲ ଭିତରେ
ସକଉଥିବା ସ୍ପନ୍ଦିକୁ । ହ୍ରାଉ
ପାଆନ୍ତା କଲବଟ
କପଟତାକୁ, ଆଂଠୁଗଂଠିରେ
ବାଂଡ଼ି ବସିଥିବା ଦରଜର
କୋଟିନିଧିର ସ୍ୱର୍ଗକୁ ।"

[ ପୁନଶ୍ଚ ଘଜଲ୍ ]

ଏ ପଂକ୍ତିଗୁଡ଼ିକୁ ବିଶ୍ଳେଷଣ କଲେ 'ଉତ୍ତପ୍ତ ନର୍କ' ସାଂପ୍ରତିକ ସମାଜର ବିପର୍ଯ୍ୟସ୍ତତାକୁ, 'ଝସରଖୋଲ' ଜୀବନ ବୃତ୍ତରୁ ( Life circle ) ମଣିଷର ବିଚ୍ଛିନ୍ନତା ବୋଧ ତଥା ନିର୍ବାସନ ଏବଂ କ୍ଷୁଦ୍ର ପରିସରକୁ ପ୍ରତୀକିତ କରେ । "ହ୍ରାଉ ପାଆଂତା କଲବଟର କପଟତା" ଆଧୁନିକ ଜୀବନଚର୍ଯ୍ୟାର ପୁନେଲ ଆଶା ଏବଂ ଆଶା ଭଂଗକୁ ସୂଚାଏ । ଜୀବନକୁ ମସ୍କଟେଣା ରୂପେ ପ୍ରତିଭାତ କରାଏ । କଲବଟ ଏବଂ କପଟତା ପରସ୍ପର ବିରୋଧୀ ଅର୍ଥ ପ୍ରକାଶ କରୁଥିଲେ ମଧ୍ୟ ସାମଗ୍ରିକ ଭାବେ ଏ ଦୁଇଟି ଶବ୍ଦର ସନ୍ନିବେଶ କବିତାରେ ପ୍ରାଞ୍ଜଳ ଅନୁଭବ ଆଣି ଦେଇଛି । "ଆଠୁଂଗଂଠିରେ ବାଂଡ଼ି" ସମସ୍ୟା ବହୁଳ ମଣିଷର ବେଦନାବୋଧକୁ ଏବଂ ଜୀବନ ବଂଚିବାର ନିଷ୍ଠୁର ସତ୍ୟକୁ ଉଦ୍‌ଘାଟିତ କଲାବେଳେ 'କୋଟିନିଧିର ସ୍ୱର୍ଗ' ସ୍ୱପ୍ନ ଏବଂ ଆଶାବାଦର ସ୍ୱାକ୍ଷର ବହନ କରେ । ସ୍ୱତନ୍ତ୍ର ଭାବେ ପ୍ରତିଟି ଚିତ୍ରକଳ୍ପ ଅର୍ଥଦ୍ୟୋତନା ଭିନ୍ନ ଭିନ୍ନ ହେଲେ ମଧ୍ୟ ସାମଗ୍ରିକ ଭାବେ ଏସବୁର ପ୍ରୟୋଗ ଏକ ପ୍ରମୁଖ ଅର୍ଥ ପ୍ରକାଶ କରେ । ସମସ୍ତ ରଙ୍ଗର ମହୋତ୍ସବ ଭିତରେ ବର୍ଣ୍ଣୋଜ୍ଜ୍ୱଳ ଘର୍ଷଣ ଧଳାରଂଗକୁ ପ୍ରତିଫଳିତ କଲା ପରି ଏ ପଂକ୍ତି ଆଧୁନିକ ଜୀବନଚର୍ଯ୍ୟା ସଂଦର୍ଭ ଧର୍ମୀତାକୁ ହିଁ ସୂଚାଏ । ବହୁ ପ୍ରଶ୍ନଯୁକ୍ତ ଜୀବନର ଉତ୍ତର ପ୍ରଦାନ କରିବାରେ ସଫଳ ହୁଏ ।

ଶବ୍ଦ ଉପରେ ଶ୍ରୀମୈଙ୍କାଙ୍କର କର୍ତ୍ତୃତ୍ୱ ଖୁବ୍ ଅଧିକ । ପ୍ରଗାଢ଼ାତ୍ମକ ଶବ୍ଦର କେତୋଟି ଉଦାହରଣ ଏଠି ଦିଆଯାଇ ପାରେ । 'ଜବୋଧତାର ଦାଗ୍ ବାଜିଛି'

ମତ ଅଭିମତ ଭିନ୍ନମତ ॥

'ସ୍ୱପ୍ନର ଆତ୍ମୁଲ' ଜଳୌଭ ସମସ୍ତ' 'ଅଟବୀଳକର ଉରୁ' 'କୁଶଳୀ ଶବ୍ଦ' 'ଓଜନଥା ଦୁଃଖ' 'ପରମ ଆହ୍ଲାଦ' 'ଦର୍ପୀ ପବନ' 'ମାସ୍ତାବୀ ପ୍ରେମ' 'ବାଦ୍ମଳ ଚକ୍ରାର' 'ପ୍ରତ୍ୟାଶାର ଗୋଇଠି' ବହର୍ଣ୍ଣିତାର ଏକୁଂତ୍ତବଂଧ' 'କାଳୁଆ ମୌନତା' 'ଜଳପ୍ର ଦୂରତା' 'ଅଶ୍ୱସ୍ତ କଠୋରତା' 'ଯଂନ୍ତ୍ରଣାର କୋକନଦ' 'ଅସ୍ପୃର୍ଣ ଭୂମା' 'ରଶିଫୁଲିଆ ସ୍ୱଦ ପ୍ରଭୃତ । ଏତଦ୍ ବ୍ୟତୀତ ଯୁଗ୍ମ ଶବ୍ଦ ବ୍ୟବହାର କରି କବିତାର ସାଂଗୀତକତାକୁ ଗଭୀର କରି ତୋଳିବାରେ ଶ୍ରୀ ଲେଙ୍କାଙ୍କ କୃତିତ୍ୱ ଅନସ୍ୱୀକାର୍ଯ୍ୟ । ଏପରି କେତୋଟି ଉଦାହରଣ — ଘିର ଘିର୍, ଥିର୍ ଥିର୍, ଛଟପଟ, ଲଟପଟ, ଗୁଣ୍ ଗୁଣ୍, ଗମ୍ ଗମ୍, ଥମ୍ ଥମ୍, ଥପ୍ ଥପ୍, ଧୂନ୍ ଧୂନ୍, ଢେଉ ଢେଉକା, ମିଛି ମିଛି, ଖାଁ ଖାଁ, ଗ୍ରୁହ୍ନି ଗ୍ରୁହ୍ନି, ଠିକ୍ ଠିକ୍, ଖାଲ ଖାଲ ଇତ୍ୟାଦ ।

ସମାନ ବର୍ଣ୍ଣର ବାରଂବାର ପ୍ରୟୋଗ ଜନିତ ଏକ ଶ୍ରୁତି ମଧୁର ଚିତ୍ରକଳ୍ପ ସୃଷ୍ଟି କରିବାରେ ଶ୍ରୀଲେଙ୍କା ଅଦ୍ୱିତୀୟ । ଗଦ୍ୟ କାବ୍ୟର ଅନୁପ୍ରାସ ପ୍ରୟୋଗ ପରି ନିମ୍ନ ପ୍ରଦତ୍ତ ପଂକ୍ତିଗୁଡ଼ିକ ପାଠକର ହୃଦୟକୁ ଅନୁରଣିତ କରିବାରେ ସକ୍ଷମ ହୁଏ ।

(୧) ' ଜଳ ଜଳ କରି ସଜଳ ହୋଇଯାଏ
କଜଳ ମଖା ସକାଳ ।'
( ଛବିଟିଏ : ଦୁଃଖ ସହ କଥାବାର୍ତ୍ତା )

(୨) ସାମ୍ନାକୁ ନୀଳ
ଜଙ୍ଗଲର ସମୁଦ୍ର, ସାମ୍ନାକୁ ନୀଳନୀଳ ଅଚ୍ଛଣ୍ଣା
ଅଙ୍କର ଚକ୍ରବାଳ, ସାମ୍ନାକୁ ନୀଳ ନୀଳ ନୀଳ
ନୀଳାଚଳର, ଅଚଳ ଭୂଗୋଳ ।"
( ପ୍ରକୃତତ୍ତ୍ୱ— ଗୀତ ଗା' ନାରେ ପକ୍ଷୀ )

'କମଳାକାନ୍ତ ଜଣେ ଚିତ୍ରକଳ୍ପର ଯାଦୁକର । ଚିତ୍ରକଳ୍ପହିଁ ତାଙ୍କ କବିତାର ତାଙ୍କ ଜୀବନର ଇତିହାସ । ଉଚ୍ଚ ମୂଲ୍ୟବୋଧର ଆଦର୍ଶରେ ଏହା ପ୍ରଦୀପ୍ତ । ଆତ୍ମାନୁସନ୍ଧାନ ଓ ଆତ୍ମାନୁଭୂତ ଏହାର ସୀମା ସରହଦ । ବୌଦ୍ଧିକତା ଓ ଆବେଗିକ ଅନୁଭବ ତାଙ୍କ ଭାବ ସଂପନ୍ନ ଚିତ୍ରକଳ୍ପର ଜନକ ।" (୬) କବିଙ୍କ ସଂପର୍କରେ ଡକ୍ଟର ମଥୁରାନାଥ ହୋତାଙ୍କ ଉପରୋକ୍ତ ମନ୍ତବ୍ୟ ଅଳୀକ ପ୍ରଶଂସା ମାତ୍ର ନୁହେଁ' ବରଂ କବିଙ୍କ ଅନନ୍ୟ ପ୍ରତିଭା ପ୍ରତି ଏକନିଷ୍ଠ ଶ୍ରଦ୍ଧାଞ୍ଜଳି ।

|| କବି କମଳାକାନ୍ତ

କବି ଶ୍ରୀ ଲେଙ୍କାଙ୍କର ପ୍ରତିଟି କବିତା, ପ୍ରତି କବିତାର ପ୍ରତିଟି ଧାଡ଼ିରାଶି ରାଶି ଉଜ୍ଜ୍ୱଳ ଚିତ୍ରକଳ୍ପର ଦୃଷ୍ଟାନ୍ତ ବହନ କରେ । ପୁଣି ଜୀବନର ସସୀମତା ପରି ତା'ର ପ୍ରୟୋଗ କବିତା ଭିତରେ ସୀମାବଦ୍ଧ । ତାଙ୍କ ଚିତ୍ରକଳ୍ପ ସମୂହ ଦୈନନ୍ଦିନ ଜୀବନଚର୍ଯ୍ୟା ପଲ୍ଲୀଠାରୁ ନଗର ସଭ୍ୟତା ପ୍ରକୃତି, ପଶୁ ପକ୍ଷୀ, ସଂସ୍କୃତି ପରଂପରା, ପୁରାଣ, ଇତିହାସ, ଲୋକକଥା ଅନ୍ତ ସଂଗୃହୀତ ।

ଶ୍ରୀ ଲେଙ୍କାଙ୍କର ଚିତ୍ରକଳ୍ପ ସମୂହ ଜୀବନନିଷ୍ଠ। ଏ ଗୁଡ଼ିକ କବିଙ୍କ ଜୀବନାନୁଭୂତି ଦ୍ୱାରା ପୁନଃସ୍ପନ୍ଦିତ । ଚିତ୍ରକଳ୍ପ ପ୍ରୟୋଗରେ କବିଙ୍କର ଶୈଳ୍ପିକ ଚର୍ଯ୍ୟା ତାଙ୍କ କବିତାକୁ ଅଧିକ ହୃଦ୍ୟ ଓ ପ୍ରାଣବାନ କରି ପାରିଛି । ଆଧୁନିକ କବିତାର ପରିପ୍ରେକ୍ଷୀରେ ଜଣେ ଶ୍ରେଷ୍ଠ ଚିତ୍ରକଳ୍ପବାଦୀ କବିରୂପେ ଶ୍ରୀଲେଙ୍କାଙ୍କୁ ସନାକ୍ତ କରିବାରେ ଅସଂଗତ କିଛି ନାହିଁ । ବରଂ ଦୀର୍ଘ ତିନି ଦଶକ ଧରି ଏକ କବି ଯେ ନିଜର ଏକନିଷ୍ଠ ସାଧନା କାବ୍ୟାନୁଚିନ୍ତା ଏବଂ କାବ୍ୟରୂପ ଦ୍ୱାରା ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଏଥି ପାଇଁ ଆମେ ତାଙ୍କଠାରେ ଋଣୀ ।

ଫଣୀନ୍ଦ୍ର ଭୂଷଣ ନନ୍ଦ
ଦେବଗଡ଼, ସମ୍ବଲପୁର
୧୦ । ୧୧ । ୮୯

---

(୭) ଜୀବନ ତୀର୍ଥରେ କବି କମଳାକାନ୍ତ- ପୃ ୨୦୧— ଡକ୍ଟର ମଥୁରାନାଥ ହୋତା ପ୍ରକାଶକ - ଫ୍ରେଣ୍ଡସ୍ ପବ୍ଲିକ୍‌ସ, ବିନୋଦ ବିହାରୀ-କଟକ ୨ - ୧୯୮୭ ।

# କମଳାକାନ୍ତଙ୍କ ସ୍ଥିତିବାଦୀ କାବ୍ୟ-ଜଗତ

( ଏକ ସଂକ୍ଷିପ୍ତ ଆଲୋଚନା )

[ ଦଶମ ବାର୍ଷିକ ଉତ୍ସବ-୧୯୯୧ ବାର୍ଷିକ ସଂକଳନ-୩ ]

ସାଂପ୍ରତିକ ସାହିତ୍ୟର ସର୍ବାଧୁନିକ ଚେତନା ହେଉଛି ସ୍ଥିତିବାଦୀ ଦର୍ଶନ ଏହା ଏକ ଦାର୍ଶନିକ ଚିନ୍ତାଧାରା ହେଲେ ହେଁ ସାଂପ୍ରତିକ ସାହିତ୍ୟକୁ ବହୁଳ ଭାବରେ ପ୍ରଭାବିତ କରିଛି । ବିଶ୍ୱଯୁଦ୍ଧ ପରବର୍ତ୍ତୀ ସାହିତ୍ୟରେ ମଣିଷ ଜୀବନର ଯେଉଁ ଜଟିଳ ଚିତ୍ର ପ୍ରକାଶ ପାଇଛି । ତାହାହିଁ ସ୍ଥିତିବାଦୀ ଦର୍ଶନର ମୂଳ କଥା । ଦାର୍ଶନିକ ଦୃଷ୍ଟିକୋଣରେ ଯାହା ଅସ୍ତିତ୍ୱବାଦୀ ଚେତନାର ସ୍ୱର, କବି ବା ସାହିତ୍ୟିକର ଦୃଷ୍ଟିରେ ତାହାହିଁ ସାଂପ୍ରତିକ ମଣିଷର ଜୀବନର ସ୍ୱର । ବିଂଶ ଶତାବ୍ଦୀର କବିତାରେ ଏହି ସ୍ଥିତିବାଦୀ ଚେତନାର ସ୍ୱର ଓ ସ୍ୱାକ୍ଷର କ୍ରମଶଃ ସ୍ପଷ୍ଟ ହୋଇ ଉଠିଛି । ଡେନମାର୍କର ଦାର୍ଶନିକ ସୋରେନ୍ କିର୍କେଗାର୍ଡ଼ ଏହି ଦର୍ଶନର ପ୍ରଥମ ପ୍ରବକ୍ତା । ତାଙ୍କ ପରେ ଜ୍ୟାପଲ୍ ସାର୍ତ୍ତ୍ରେ ଏହି ଦାର୍ଶନିକ ଚେତନାକୁ ସାହିତ୍ୟର ଅନ୍ୟତମ ମୁଖ୍ୟ ଉପଜୀବ୍ୟ ଭାବରେ ଗ୍ରହଣ କରି ନେଲେ । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା ଜୀବନର ସଙ୍କଟରୁ ମୁକ୍ତି ପାଇବା ପାଇଁ ଅସ୍ତିତ୍ୱବାଦ ଭଳି ଏକ ସର୍ବାଧୁନିକ ଚେତନା ସାହିତ୍ୟରେ ପ୍ରକାଶ ପାଇବା ଉଚିତ । ଯୁଦ୍ଧ ପରବର୍ତ୍ତୀ ପୃଥିବୀର ସାହିତ୍ୟିକ ତଥା ଦାର୍ଶନିକ ବସ୍ତୁତଃ ବିଶ୍ୱଯୁଦ୍ଧ ପରେ ମଣିଷ ମନରୁ ଈଶ୍ୱରଙ୍କ ବିଶ୍ୱାସ ତୁଟିଗଲା । ତା' ମନରେ ଶଙ୍କା ଓ ସଙ୍କଟ ସୃଷ୍ଟି ହେଲା । ଜୀବନର ଶୂନ୍ୟତା, ଈଶ୍ୱରଙ୍କ ପ୍ରତି ଅବିଶ୍ୱାସ ଏବଂ ନିଜ ଭିତରେ ଆଶଙ୍କା ନେଇ ବଞ୍ଚିଥିବା ମଣିଷ ମୁକ୍ତିପ୍ରୟାସୀ ହେଲା । ଅସ୍ତିତ୍ୱବାଦହିଁ ମଣିଷକୁ ଯେଉଁ ମୁକ୍ତିର ପଥ ଦେଖାଇବାକୁ ସମର୍ଥ ହୋଇ ପାରିଥିଲା । ଯୁଦ୍ଧୋତ୍ତର ମାନସିକ ସଙ୍କଟ ଓ ଜୀବନଧାରାର ଶୂନ୍ୟତା କ୍ରମଶଃ ବିଶ୍ୱବ୍ୟାପି ଚେତନାରେ ପରିଣତ ହେଲା । ତେଣୁ ବିଶ୍ୱର ବିଭିନ୍ନ ଭାଷା ସାହିତ୍ୟରେ ଏହି ଚେତନାର ପ୍ରଭାବ ଲକ୍ଷ୍ୟ କରାଗଲା । କାବ୍ୟ, ଉପନ୍ୟାସ ଗଳ୍ପ ଓ ନାଟକରେ ଈଶ୍ୱରବିରୋଧୀ ଓ ଆତ୍ମପ୍ରତ୍ୟୟର ଚେତନା ପ୍ରତିଫଳିତ ହେଲା । ସବୁଠି ମଣିଷ ପାଇଁ

ମୁକ୍ତିର ପଥ ଖୋଜା ଚାଲିଲା । ବିଶ୍ୱଯୁଦ୍ଧର ଭୟାବହତାରୁ ବଞ୍ଚିଯାଇଥିବା ମଣିଷ ନିଜର ଶକ୍ତି, ସାମର୍ଥ୍ୟ ଓ ଆତ୍ମପ୍ରତ୍ୟୟ ଉପରେ ଯଥେଷ୍ଟ ଗୁରୁତ୍ୱ ଦେଲା ।

ଯୁଦ୍ଧ ପରବର୍ତ୍ତୀ ପୃଥିବୀରେ ପାରମ୍ପରିକ ସାମାଜିକ ଚେତନା ଅବକ୍ଷିପ୍ତ ହୋଇ ନୂତନ ମୂଲ୍ୟବୋଧ ପ୍ରତିଷ୍ଠିତ ହେଲା । ଆଜିର ପୃଥିବୀରେ ସେ ସବୁର ପରୀକ୍ଷା ନିରୀକ୍ଷା ଚାଲିଛି । ଜୀବନ ସଂଘର୍ଷକୁ ଅଙ୍ଗୀକାର କରି ସତ୍ୟ, ଶିବ, ସୁନ୍ଦରର ଉପଲବ୍ଧି ପାଇଁ ମଣିଷ ଉଦ୍ୟମ କରିଛି । ସାହିତ୍ୟ, କବିତା ମାଧ୍ୟମରେ ଏହାର ପ୍ରଚାର କରାଯାଇଛି । ପ୍ରଥାଗତ ଈଶ୍ୱର ବିଶ୍ୱାସ, ପାରଂପରିକ ଧର୍ମ ଧାରଣା ମଣିଷ ମନରୁ କ୍ରମଶଃ ଅନ୍ତର୍ହିତ ହୋଇଛି । ତେଣୁ ତଥାକଥିତ ନୈରାଶ୍ୟ ଓ ବିଷାଦବୋଧରୁ ମୁକ୍ତି ପାଇବା ପାଇଁ ମଣିଷ ଅସ୍ତିତ୍ୱବାଦୀ ଭାବରେ ବିକଳ ଚିତ୍କାର କରିଛି । ସେ ବିଷାଦନ୍ତ ହେଉ ତଥାପି ଆଶାବାଦ ଆଡ଼କୁ ତା'ର ମନ ସଂପ୍ରସାରିତ ହୋଇଛି । ଆଜିର କବିମାନେ ଏହି ଚେତନାବୋଧ ସହିତ ସମକାଳୀନ ଯୁଗ ଜୀବନଧାରା ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ଇତ୍ୟାଦିକୁ ସଂପର୍କିତକରି କାବ୍ୟ ରଚନା କରୁଛନ୍ତି । ଆଜି କବି ମାନେହିଁ ଏକ ନିଃସଙ୍ଗ ଜୀବନର ବାସ୍ତବତା ମଧ୍ୟରେ ପୀଡ଼ିତ । ତେଣୁ ନିଜର ପାରିପାର୍ଶ୍ୱିକ ପୃଥିବୀ ସହିତ ସେ ସଂପର୍କ ରଖିବାକୁ ଅକ୍ଷମତା ବୋଧ କଲେହେଁ ସେ ସେଥିରୁ ମୁକ୍ତି ପାଇ ପାରେ ନାହିଁ । ଫଳତଃ ଜଟିଳ ଜୀବନର ଅର୍ଥହୀନତା ତାକୁ ଖୁବ୍ ବାଧେ । ଅର୍ଥଶୂନ୍ୟ ଜୀବନରୁ ସେ ଜୀବନର ଅର୍ଥ ଖୋଜେ । ଆତ୍ମନିର୍ଯାତିତ ମାନବାତ୍ମାର ମୁକ୍ତି ପାଇଁ ସେ ପଥପ୍ରାନ୍ତିରେ ଠିଆ ହୁଏ । ଆଜିର ପ୍ରତ୍ୟେକ ମଣିଷ ଏ ପାର୍ଥିବ ଅନୁଭବର ଜଣେ ଜଣେ ସଫଳ ଅନୁଭବୀ । ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀରେ ଏହି ପରିବର୍ତ୍ତିତ ମୂଲ୍ୟବୋଧ ଓ ରୂପରେଖ ପ୍ରବୃତ୍ତି ଲକ୍ଷ୍ୟ କରାଯାଏ । ତାହାହିଁ ସାଂପ୍ରତିକ କବିତାର ମୁଖ୍ୟ ପ୍ରସଙ୍ଗ ।

ଅସ୍ତିତ୍ୱବାଦୀ ଚେତନାର ଆଉ ଏକ ରୂପ ହେଉଛି ହତାଶା ଓ ନିଃସଙ୍ଗତା । ମଣିଷ ମନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଭୂତିରୁ ହିଁ ଏହାର ସୃଷ୍ଟି । ନୈରାଶ୍ୟ ହିଁ ଏହାର ମୂଳ କାରଣ । ମଣିଷ ଜୀବନରେ ହତାଶା, ନିଃସଙ୍ଗତା, ନୈରାଶ୍ୟ ଓ ଅସହାୟତା ବୋଧ ଜଡ଼ିତ ହୋଇ ରହିଥାଏ । ଏହି ସମସ୍ତ ଚେତନା ମିଶି ମାନବାତ୍ମାକୁ ଯନ୍ତ୍ରଣା କାତର କରାଏ । ଆଜିର କବି ମଣିଷକୁ ଏ ଅସୁସ୍ଥ ଚେତନାରୁ ମୁକ୍ତି ଦେବାକୁ ଚାହେଁ ।

ମତ ଅଭିମତ ଭିନ୍ନମତ ॥

କବିତା ଯଦି ଜୀବନର ପ୍ରତିଛବି, ତେବେ କବି ବୋଧହୁଏ ଜୀବନର ଜଣେ ବଡ଼ ସମର୍ଥକ । କିନ୍ତୁ ଯେ ଜୀବନରେ ଯେ ନୈରାଶ୍ୟ ପରିବର୍ତ୍ତେ ଅମୃତର ଆକାଂକ୍ଷା କରେ । ଶୂନ୍ୟତା ଓ ବିଫଳତା ମଧ୍ୟରେ ସେ ସମୃଦ୍ଧି ଓ ପୂର୍ଣ୍ଣତା ଖୋଜେ । ଜୀବନର ସକଳ କାମନା, ବାସନା ଓ ପରିକଳ୍ପନା ଯେତେବେଳେ ବିଫଳତାରେ ବାଟବଣା ହୁଏ, ସେତେବେଳେ କବି ମନରେ ଅମୃତର ଆକାଂକ୍ଷା ଜୀବନକୁ ଏକ ମଧୁର ପଥରେ ଆଗେଇ ନିଏ । ଜୀବନ ଓ ମରଣର ପରିଧି ଭିତରେ ତା'ର ସ୍ୱପ୍ନ, ସମ୍ଭାବନା, ଆଶା, ପ୍ରତ୍ୟାଶା, ସୁଖ, ଦୁଃଖ ସବୁର ମୂଲ୍ୟାୟନ ହୁଏ ।

ହତାଶା ଓ ନିରାଶା ବ୍ୟଞ୍ଜକ ମୃତ୍ୟୁ ଚେତନା ମଣିଷ ଜୀବନକୁ ଅଧିକ ଶଙ୍କାକୁଳ କରିଛି । ପ୍ରତ୍ୟେକ ମଣିଷ ଭଲ ଭାବରେ ଜାଣିଛି ଯେ ମୃତ୍ୟୁହିଁ ତା' ଜୀବନର ଶେଷ ପରିଣତି । ଜୀବନ୍ତ ମରଣରେ ଦୁଃଖ ଭୋଗୁଥିବା ମଣିଷ ବେଳେ ବେଳେ ସୁଖ ଟିକେ ପାଇଁ ଅମୃତର ସନ୍ଧାନ କରେ । ଅନ୍ଧକାରରେ ବାଟବଣା ହୁଏ । ସେ ଆଲୋଡ଼ନରେ ପଥ ଖୋଜେ ବିଫଳତାରେ ମୃତ୍ୟୁର ଶୀତଳ ଆଲିଙ୍ଗନରୁ ଅସହାୟତାର କରୁଣ ସଙ୍ଗୀତ ଗାନ କରେ ।

ଓଡ଼ିଆ ସାହିତ୍ୟର ଅନ୍ୟତମ ଲବ୍ଧ ପ୍ରତିଷ୍ଠିତ କବି କମଳାକାନ୍ତ ଲେଙ୍କାଙ୍କ କବିତାରେ ସ୍ଥିତିବାଦୀ ଚେତନାର ସ୍ୱର ବିଶେଷ ଭାବରେ ଲକ୍ଷ୍ୟ କରାଯାଏ । ଉପରୋକ୍ତ ପୃଷ୍ଠଭୂମିରେ ତାଙ୍କ କବି ମାନସର ସ୍ଥିତିବାଦୀ ସ୍ୱର ତଥା ଏହାର ପ୍ରୟୋଗ ଓ ପରୀକ୍ଷା ଆଲୋଚନା କରାଯାଇପାରେ ।

ଜଣେ ବହୁ ପ୍ରକାଶିତ ଆଧୁନିକ କବି ଭାବରେ ଶ୍ରୀ କମଳାକାନ୍ତ ଲେଙ୍କା ଏକ ପରିଚିତ ନାମ । ସ୍କୁଲ ଜୀବନ ଠାରୁ ଅଦ୍ୟାବଧି ଏକନିଷ୍ଠ ସାଧକ ଭାବରେ ତାଙ୍କର କାବ୍ୟ ସାଧନା ଅବ୍ୟାହତ ରଖିଛନ୍ତି । ତାଙ୍କର କାବ୍ୟ ଜଗତ ମଣିଷ ଜୀବନର ବିଭିନ୍ନ ଅନୁଭୂତିକୁ ନେଇ ଆଧାରିତ । ତାଙ୍କର ମୁଖ୍ୟ ସ୍ୱର ହେଉଛି ଜୀବନସନ୍ଧ ଯୁଗ ଚେତନା । ସମାଜ, ମଣିଷ, ଈଶ୍ୱର ଏବଂ ଆଧିଭୌତିକ ଚେତନାକୁ ନେଇ ତାଙ୍କର କବିତା ଗୁଡ଼ିକ ରଚିତ । ନିଜକୁ ଖୋଜିବାକୁ ଯାଇ ସେ ବିଶ୍ୱ-ବ୍ୟକ୍ତିତ୍ୱକୁ ପାଇ ପାରିଛନ୍ତି । କମଳାକାନ୍ତଙ୍କ କାବ୍ୟକୃତିର ସ୍ଥିତିବାଦୀ ଚେତନା ସହିତ ଯଥେଷ୍ଟ ସମ୍ପର୍କ ରହିଛି । ତାଙ୍କ ଜୀବନ ଦର୍ଶନର ଅନେକ ମୁଖ୍ୟସ୍ୱର କବିତାରେ ଅନୁରଣିତ ।

॥ କବି କମଳାକାନ୍ତ

ସେଗୁଡ଼ିକ ହେଲା ଜୀବନ ଜିଜ୍ଞାସା, ଜୀବନବୋଧ ଓ ଜୀବନାଙ୍ଗୀକାର । ତାଙ୍କ ମନରେ ସଂଗ୍ରାମରତ ସ୍ଥିତିବାଦୀର ଧୈର୍ଯ୍ୟ ଓ ସାହସ 'ମୁନା ଫସଲ'ର ତରୁଣ କବି ମନକି ନିଜ ଅନୁଭୂତିର ଯନ୍ତ୍ରଣାବୋଧକୁ ଅତି କରୁଣ ସ୍ୱରରେ ବର୍ଣ୍ଣନା କରିଛି । ଏକ ସଚେତନଦୃଷ୍ଟି ଭଙ୍ଗୀରେ ବର୍ତ୍ତମାନର ମଣିଷ ସମାଜକୁ କାବ୍ୟାତ୍ମକ ଅନୁଧ୍ୟାନ କରିଛି । ଯେହେତୁ ମଣିଷ ଏକ ସାମାଜିକ ପ୍ରାଣୀ ତାକୁ ସମାଜରେ ରହିବାକୁ ହୋଇଥାଏ । ସମାଜରୁ ଯାହା ପାଏ, ସେ ପାଇଁ ତାକୁ କମ୍ ତ୍ୟାଗ ସ୍ୱୀକାର କରିବାକୁ ପଡ଼େ ନା । କବି ସୁଖ ଶାନ୍ତିର ଜୀବନଟିଏ ସମାଜ ଭିତରୁ ଖୋଜୁଛନ୍ତି । କିନ୍ତୁ ଶେଷ ପର୍ଯ୍ୟନ୍ତ ପାଇ ପାରି ନାହାନ୍ତି । ବର୍ତ୍ତମାନର ନଷ୍ଟ ମୂଲ୍ୟବୋଧ ଭୌତିକ ସଫଳତାକାମୀ ଆଧୁନିକ ମଣିଷର ବଞ୍ଚିବାକୁ ବାଟ । ତାହା ଯେମିତି ବି ହେଉ ସଫଳତା ଦରକାର । ସେଥିପାଇଁ ଅତୀତର ଗଢ଼ିଆସୁଥିବା ବାଟକୁ ଭୁଲିଯାଇ, ଭୂଇଁରେ ପାଦ ନ ପକାଇ ଉଠିଯାଇଛନ୍ତି । ଚିର ଆକାଂକ୍ଷିତ ସୁଖର ରାଜମହଲକୁ କବି କମଳାକାନ୍ତ ତେଲ ଲୁଣର ନିତିଦିନିଆ ଜୀବନ ଭିତରୁ ଦୂରେଇ ଆସି ପରଂପରାର ବାଟକୁ ଭୁଲି ଯେତେବେଳେ ଦୃଷ୍ଟିଭଂଗୀ ନେଇ ଏକ ଭିନ୍ନ ଦିଗନ୍ତକୁ ଚାହିଁଛନ୍ତି, ସେତେବେଳେ ଜୀବନର ଦୁଃଖରେ କଣ୍ଠାର ବିଛଣାରେ ପଡ଼ିସବୁ ଅସତ୍ୟକୁ ଅନୁଭବ କରିଛନ୍ତି । ପ୍ରଚଳିତ ସମାଜ ବ୍ୟବସ୍ଥାକୁ ସେ ଆଉଥରେ ଗ୍ରହଣ କରିପାରିନାହାନ୍ତି । ଜୀବନର ରୂପରେ ପରିବର୍ତ୍ତନ ହୋଇଛି । ତେଣୁ ସେ ନିଜର ହାତକୁ, ଶରୀରକୁ, ଆଖିକୁ ବିଶ୍ୱାସ କରୁ ନାହାନ୍ତି । କମଳାକାନ୍ତ ନିଜେ ସ୍ୱୀକାର କରନ୍ତି ଯେ କବିର ଏକ ତୃତୀୟ ଚକ୍ଷୁ ଅଛି । ଯାହା ସାହାଯ୍ୟରେ ବାହାର ଦୁନିଆକୁ ଦେଖି ହୁଏ, ଭିତର ଦୁନିଆକୁ ବୁଝି ହୁଏ, ତଥାପି ତାହା ତାଙ୍କୁ ଉଦ୍ଭଟ ମନେ ହୋଇଛି । ନିଃସଂଗତାବୋଧ, ବିଚ୍ଛିନ୍ନତାବୋଧ ଓ ଅସାମାଜିକ ଖବରଗୁଡ଼ିକ ତାଙ୍କ କବି ମାନସକୁ ବ୍ୟତିବ୍ୟସ୍ତ କରିଛି । ତେଣୁ ସେ ଦମ୍ଭୋକ୍ତି ପ୍ରକାଶ କରନ୍ତି ଯେ ଈଶ୍ୱର ଆଉ ନାହାନ୍ତି । ଏଣିକି ମଣିଷକୁ ନିଜର ଶକ୍ତି ଉପରେ ବିଶ୍ୱାସ କରି ବଞ୍ଚିବାକୁ ହେବ । ସେ ଅନୁଭବ କରିଛନ୍ତି ଯେ ଆଜିର ପୃଥିବୀରେ କୌଣସି ନୂତନ ଜୀବନର ସମ୍ଭାବନା ନାହିଁ । ତେଣୁ କବି ଈଶ୍ୱରଙ୍କ ଅନ୍ଧାର ଦେଶକୁ ଭୁଲି ନିଜେ ଏକ କାବ୍ୟ ଜଗତ ସୃଷ୍ଟି କରିଛନ୍ତି । ଯେଉଁଠି ସମସ୍ତ ଓ ଜୀବନ ଯାତ୍ରାର ସୁର ଅନୁରଣିତ । କମଳାକାନ୍ତଙ୍କ ବିଶାଳ କାବ୍ୟ ଜଗତରୁ ତାଙ୍କ

ମତ ଅଭିମତ ଭିନ୍ନମତ ॥

ସ୍ଥିତିବାଦୀ ଚେତନାର ସ୍ୱତନ୍ତ୍ର ଏକ ବିଶେଷ ପ୍ରବନ୍ଧ ଓ ଆଲୋଚନାର ଅପେକ୍ଷା ରଖେ । ଏହି ସୀମିତ ପ୍ରବନ୍ଧରେ ସେ ସବୁର ପୁଙ୍ଖାନୁପୁଙ୍ଖ ଆଲୋଚନା ହୋଇ ନପାରେ, ତେବେ ନିଜକୁ ଖୋଜିବା ଏବଂ ଖୋଜିବା ଭିତରେ ସମଗ୍ର ବିଶ୍ୱ ଆଡ଼କୁ ହାତ ବଢ଼ାଇବା ହିଁ କମଳାକାନ୍ତଙ୍କ କାବ୍ୟର ଉତ୍ତରଣ ମୁଖ୍ୟସ୍ୱର ।

ଅଧ୍ୟାପିକା କାନନ ମହାନ୍ତି

ମହାର ମହାବିଦ୍ୟାଳୟ, ମହାର

ବାସୁଦେବପୁର, ବାଲେଶ୍ୱର

ଦିଶି କମଳାକାନ୍ତି ॥